ନିର୍ମିତି ନିର୍ମାଣ

ଆଲୋଚକ :
**ଡକ୍ଟର ସନ୍ତୋଷ ତ୍ରିପାଠୀ**
ପ୍ରଧାପକ, ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

ପ୍ରକାଶକ :
**ନିଉ ହୋରାଇଜନ୍ ପବ୍ଲିକେସନ୍**
ସୁମିତ୍ରା ପ୍ଲାଜା, ବାଦାମବାଡ଼ୀ, କଟକ-୧୨

**ପ୍ରଥମ ସଂସ୍କରଣ : ରଜସଂକ୍ରାନ୍ତି-୨୦୦୭**

ମୁଦ୍ରଣ :
**ଜଗନ୍ନାଥ ପ୍ରୋସେସ୍**
ଷ୍ଟୋନିରୋଡ଼, କଟକ-୨

**ମୂଲ୍ୟ : ୧୪୦.୦୦**

**NIRMITI NIRMANA**

Writer :
**Dr. Santosh Tripathy**

Published by :
**New Horizon Publication**
Sumitra Plaza, Badambadi,
Cuttack-2

**First Edition : Raja-2007**

Printed at :
**Jagannath Process, Cuttack**

**Price : Rs.140.00**

# ପାଠଘର ଚିତ୍ରସଜ୍ଜା





ଯେତେ ଚାହିଁଲେ ବି ଟପି ପାରୁନଥିବା
ଯେତେ ନଚାହିଁଲେ ବି ଲୋଡି ହୋଇଯାଉଥିବା
ମୋର ଚିରନମସ୍ୟ ମହତ୍-ପ୍ରେରଣା-ପ୍ରବାହ—

• ଡକ୍ଟର ଦାଶରଥି ଦାସ
ମହୋଦୟଙ୍କୁ...

ସନ୍ତୋଷ

# ଦାଣ୍ଡ ଅଗଣାରୁ ପାଞ୍ଚପଦ...

- ଏ ମୋର ଦାଣ୍ଡ ଅଗଣା । ଅଗଣାରୁ ଘରର ବାହାରପାଖ ଦେଖିପାରନ୍ତି । ମାତ୍ର ସିଧା ଦାଣ୍ଡ ଦୁଆର ଖୋଲି ଏରୁଣ୍ଡି ଡେଇଁ ମୋ ପାଠଘର ଭିତରକୁ ଆପଣ ଆସିପାରନ୍ତି । ବିଗତ ତିନିବର୍ଷ ଧରି ମୁଁ ଆଠଟି ବଖରା ଏଘର ଭିତରେ ତିଆରି କରିଛି । ସବୁଗୁଡ଼ିକ ଉପରେ ଟିକେ ଆଖି ପକାଇ ପାରନ୍ତି– ଏ ମୋର ଅନୁରୋଧ, ସ୍ୱାଗତ ବି ।

- ପାଠଘର ତୋଳିବା ପୂର୍ବରୁ ମୁଁ ନିରୁତା ପାଠକ ଥିଲି । ଅନେକ ଜ୍ଞାନଘର ଓ କାବ୍ୟତୀର୍ଥ ବୁଲି ଦେଖିଛି । ଯେଉଁଠି ଯେଉଁ ଦୃଶ୍ୟ ମୋତେ ନୂଆ ଲାଗିଛି, ବିହ୍ୱଳ କରିଛି ସେଇଠି ବିଭୋରପଣରେ ସେଗୁଡ଼ିକ ସହିତ ନିଜକୁ ମିଶାଇଛି ଏଠାରେ ସେମାନଙ୍କ ଉତ୍କର୍ଷ ଓ ସୌନ୍ଦର୍ଯ୍ୟକୁ ଅନ୍ୟମାନଙ୍କୁ ଦେଖାଇଦେବାକୁ ଉଚିତବୋଧ କରିଛି ।

- ଏହି ଔଚିତ୍ୟବୋଧରୁ ଅନେକ କଟାଛଟା ଓ ଭଙ୍ଗାଯୋଡ଼ା ଦେଇ ଶୁଭଗମନରେ ଏ ପାଠଘରଟିକୁ 'ନିର୍ମିତି-ନିର୍ମାଣ' ନାଁରେ ଗଢ଼ିଛି । ଏ ଘରର ବସ୍ତୁଚୌହଦୀ ନିର୍ଦ୍ଦୋଷ ନ ହୋଇପାରେ; ମାତ୍ର ନୂଆ ଢ଼ଙ୍ଗରେ ଗୁଣାତ୍ମକ କରିବାକୁ ସବୁଦିଗରୁ ପ୍ରୟାସ କରିଛି । ଏଥିରେ ନପାରିଲା ପଣିଆର ନମୁନା ଅନେକ ଥାଇପାରେ । ଅନେକ ଖଣ୍ଡିଆ ଜକଜକ ହୋଇ ଦିଶିଯାଇ ପାରନ୍ତି । ମାତ୍ର ଆପଣଙ୍କ ମହାପ୍ରସାଦୀୟ ମନ ସବୁବେଳେ ଅନ୍ୟର ପାରଗପଣକୁ ଦେଖେ, ତେଣୁ ମୋର ପାଠର ସକଳ ଖଣ୍ଡିଆ ଅସନାକୁ ନ ଦେଖି ମୋର କିଛି ଯଦି ପାରଗତା ଥାଏ ତାକୁ ହିଁ ଦେଖିବ– ଏ ଆଶା ପୋଷଣ କରୁଛି । ସୁନ୍ଦର ଯଦି ଥାଏ ତାହା ଆପଣଙ୍କ ମନତୋଷକ ହେଉ, ଅଳିଆତକ ମୋର ହୋଇଥାଉ । ଆପଣଙ୍କ ପରାମର୍ଶ ଯଦି ପାଇବି ଅଳିଆତକ ତା' ଅନୁସାରେ ସଫାକରିଦେବି ।

- ଏ ଘର ତୋଳିଲାବେଳେ ମୋ ଝିଅ ନିବେଶୟା, ପୁଅ ବିଶ୍ୱ ଆଉ ପତ୍ନୀ ନିବେଦିତା କମ୍ କଷ୍ଟ ସହି ନାହାଁନ୍ତି । ସେମାନଙ୍କ ସମୟ ଚାହିଦା ଏପଟ ସେପଟ ହୋଇଯାଇଛି, ମାତ୍ର ପ୍ରତିବାଦ ଆସିନି । ଘର ତୋଳା ସରିବା ପରର ଖୁସିତକ ତାଙ୍କର । ଏଘର ପାଇଁ ଭଲମନ୍ଦରେ ମୁଁ ଛିଡ଼ା ହୋଇଛି କବିବଂଧୁ କ୍ଷୀରୋଦ ପରିଡା, ଅଜୟ ସ୍ୱାଇଁ ଓ କେଦାର ମିଶ୍ରଙ୍କ ପାଖରେ । ବେଶ୍ କୌତୁକମନା ହୋଇ ସହଯୋଗ କରିଛନ୍ତି ଓ ବେଳେବେଳେ କଂଚାମାଲ ବି ସେମାନେ ଯୋଗାଇ

ଦେଇଛନ୍ତି । ଏପଟସେପଟ ହୋଇ ମନ ଭାଙ୍ଗିପଡ଼ିଲା ବେଳେ, ସନ୍ଦେହ ଓ ଆଶଙ୍କା ଭିତରେ କରିବି ନ କରିବି— ଏମିତି ହେବାନହେବା ଉଚିତର ଦ୍ୱନ୍ଦ୍ୱ ଦେଖାଦେବା ସମୟରେ ପୂଜ୍ୟ ବିଜୟକୁମାର ଶତପଥୀ, ନମସ୍ୟା ସଂଘମିତ୍ରା ମିଶ୍ର ଏବଂ ଗାଳ୍ପିକ ବଂଧୁ ଦୀପ୍ତିରଂଜନ ପଟ୍ଟନାୟକ ଭରସା ଯୋଗେଇ ଦେଇଛନ୍ତି । ପାଠଘରକୁ ଏଥର ଏମିତି ସଜାଅ, ପାଠଘର ପ୍ରତି କାହିଁକି ଧ୍ୟାନ ଦେଉନୁ— ହସହସ ମୁହଁରେ ଏ ପ୍ରକାର ଗମ୍ଭୀର ଗୁରୁସମ୍ମିତ ତାଗିଦ୍ ଦେଇ ମୋତେ ଅଳସ ନ ଭାଙ୍ଗି ଏ ଘରକରଣାରେ ସବୁବେଳେ ଯିଏ ଛନ୍ଦି ଦେଇଥା'ନ୍ତି, ସେମାନେ ହେଉଛନ୍ତି ପୂଜ୍ୟଗୁରୁ ଡକ୍ଟର ବୈରାଗୀଚରଣ ଜେନା ଆଉ ପୂଜ୍ୟ ଡକ୍ଟର ବାଉରିବଂଧୁ କର । ଘରତୋଳା ପାଇଁ ଅନୁଦାନ ଦେଇ ଜଗାରଖାର ସବୁ ଦାୟିତ୍ୱ ନେଇଛନ୍ତି— ନିଉ ହୋରାଇଜନ୍ ପ୍ରକାଶନୀର ପରିବାର ସଭ୍ୟମାନେ । ନାଲୁବାବୁ, ସୋମୁବାବୁ ଓ ମାଧବବାବୁ ମୋ' କଳ୍ପଖୁସିକୁ ବାସ୍ତବରୂପ ଦିଆଇଛନ୍ତି । ସମସ୍ତଙ୍କ ପାଖରେ ବିଶମ୍ବଦ ରହୁଛି ।

- ଏଥିରେ ଅନେକ ନୂଆ ଜିନିଷ ସଜା ହୋଇଛି । ସଜାଇବାରେ ସଚ୍ଛିଦ୍ର ଯେ ନାହିଁ ଏକଥା କହୁନି । ଅନେକ ପୁରୁଣା ଜିନିଷକୁ ନୂଆ ଚାହିଦା ମୁତାବକ ନୂଆ ପ୍ରକାରେ ସବଳ କରି ଏ ଘରେ ସାଇତିଛି । ଏଥର ଦୁଆର ଖୋଲି ଦେଉଛି; ଏଣିକି ଏ ବହିଘର ଆପଣମାନଙ୍କର । ଇଚ୍ଛା କରି ଥାକରୁ ସଜଡା ଜିନିଷ ଆଣି ଦେଖିପାରନ୍ତି, ବ୍ୟବହାର କରିପାରନ୍ତି । ଭଲଲାଗିଲେ ଆପଣଙ୍କ କାମକୁ ଆସିଲେ ମୋ ଶ୍ରମ ସାର୍ଥକ ହେବ । ଯାହା ପସନ୍ଦ ହେଲା ତାହା ସବୁ ଆପଣଙ୍କର । ଲାଭ ପାଉଣା ମାଗିବନି— ଏ ପ୍ରତିଶ୍ରୁତି ମୋ ଆଗରୁ ମୋ ଗୁରୁ, ତାଙ୍କ ଗୁରୁ, ତାଙ୍କଙ୍କ ଗୁରୁ ଦେଇସାରିଛନ୍ତି । ମନ୍ଦ ଲାଗିଲେ ଭଲ ପାଇଁ ପରାମର୍ଶ ଦେବେ— ମାନିବି । ଆରଥରକୁ ନୂଆ ଉପଯୋଗିତାକୁ ଦେଖି ପୁଣି ଘରକୁ ନୂଆ ଢ଼ଙ୍ଗରେ ସଜାଇବି— ଏକଥା ଦେଉଛି ।

ଏଣିକି ଦାଣ୍ଡ ଦୁଆର ପାଖରେ ଛିଡ଼ା ନରହି, ଏ ଘରକୁ ଆପଣଙ୍କ ପାଠଘର ଭାବି ଭିତରକୁ ଆସନ୍ତୁ ।

ସନ୍ତୋଷ ତ୍ରିପାଠୀ
୧୪.୦୬.୦୭

# ତୁଳନାତ୍ମକ ସାହିତ୍ୟ ସଂପର୍କରେ

(ଏକ)

ପ୍ରାକ୍ କଥନ :

'ତୁଳନାତ୍ମକ ସାହିତ୍ୟ' ସାଂପ୍ରତିକ ଜଗତୀକରଣ ପ୍ରକ୍ରିୟାରେ ସାହିତ୍ୟ ପଠନ, ଅଧ୍ୟୟନ ଓ ସମାନ୍ତରାଳ ପରିଚର୍ଚ୍ଚା ଭିତ୍ତିରେ ଏକ 'ଅଭିନ୍ନବିଶ୍ୱ'ର ପରିକଳ୍ପନା ଉପରେ ଗୁରୁତ୍ୱାରୋପ କରିପାରିଛି। ସାହିତ୍ୟ-ସାହିତ୍ୟ ମଧ୍ୟରେ ଅଭେଦ ସଂଧାନ ଏବଂ କଥନ ମାଧ୍ୟମରେ ଏକକ ବିଶ୍ୱଗ୍ରାମର ପ୍ରତିଷ୍ଠା ଓ ପ୍ରସାର ସଂଭବ– ଏପ୍ରକାର ଧାରଣା ତୁଳନାତ୍ମକ ସାହିତ୍ୟର ପରିସରକୁ ବିସ୍ତାରଭାଜନ କରିପାରିଛି। ବିଶ୍ୱର ବିଭିନ୍ନ ଭୂଖଣ୍ଡ ଭିତରେ ନୃତତ୍ତ୍ୱ, ସଂସ୍କୃତି, ମାନବୀୟ ଆବେଦନ, ଲୋକାଚାର, କୃତ୍ୟାଙ୍ଗ, ଧର୍ମ, ଶାସନ ଓ ଶିଷ୍ଟତା ମଧ୍ୟରେ ପାରସ୍ପରିକ ବିନିମୟବୋଧର ଉପାଦାନ ଓ ସାମଞ୍ଜସ୍ୟ ରହିଛି– ତାହାକୁ ଲୋକାଭିମୁଖୀ କରାଇବା ନିମନ୍ତେ 'ତୁଳନାତ୍ମକ ସାହିତ୍ୟ' ପରିଭାଷାରେ ଏକ ସହବନ୍ଧିତ ସାହିତ୍ୟଚର୍ଚ୍ଚାର ପରଂପରା ଜ୍ଞାନଜଗତରେ ଉନ୍ମେଷ ଲାଭ କରିଛି। ମାନବୀୟ ମୂଲ୍ୟବୋଧର ସମଗୋତ୍ରୀୟ ବିକାଶ ଓ ପ୍ରତିଷ୍ଠା, ବିଶ୍ୱର ଭାବକୈନ୍ଦ୍ରିକ ଅଖଣ୍ଡତା ନିର୍ଦ୍ଧାରଣ, ମାନବୀୟ ଦାୟବଦ୍ଧତାର ଉତ୍ତରଣ, ପରିପୂରକ ସଦ୍‌ଭାବନାର ପ୍ରସାର ଓ ମାନବ ସମ୍ବଳର ସକରାତ୍ମକ ବିନିଯୋଗ ଆଦି ଉଦ୍ଦେଶ୍ୟଗୁଡ଼ିକୁ ସାଧନ କରି ନବ-ଐତିହାସିକ-ସଂସ୍କାର ସୃଷ୍ଟିକରିବା ଓ ଭେଦଶୂନ୍ୟ ମାନବ ସଂହତିର ପ୍ରଚାର କରିବା ଦିଗରୁ ତୁଳନାତ୍ମକ ସାହିତ୍ୟ ଅଧ୍ୟୟନ ବାର୍ତ୍ତମାନିକ ଜ୍ଞାନ ବିନିମୟଧାରାରେ ଏକାନ୍ତ ଉପଯୋଗୀ ବିବେଚିତ ହୋଇଛି।

'ତୁଳନାତ୍ମକ ସାହିତ୍ୟ'ର ପରିଭାଷା, ଉନ୍ମେଷ, ଉତ୍ତରଣ, ପରିସର, ପରିଚର୍ଚ୍ଚା ଓ ଉପଯୋଗିତା ସହିତ ପ୍ରାଚ୍ୟ-ପାଶ୍ଚାତ୍ୟ ଦୃଷ୍ଟି–

ପ୍ରତିପାଦ୍ୟ ଉଦ୍ଦେଶ୍ୟ :-

ଚର୍ଚ୍ଚାଯୋଗ୍ୟ ଶୀର୍ଷକ 'ତୁଳନାତ୍ମକ ସାହିତ୍ୟ ସଂପର୍କରେ' ଯେଉଁ ପ୍ରାସଙ୍ଗିକତାଗୁଡ଼ିକୁ ଉଦ୍ଦେଶ୍ୟ ଭାବରେ ଅଙ୍ଗୀକାର କରାଯିବ ସେଗୁଡ଼ିକ ହେଉଛି–

- ତୁଳନାତ୍ମକ ସାହିତ୍ୟର ଭିତ୍ତି, ପରିଭାଷା, ସ୍ୱରୂପ, ପ୍ରକାର ଓ ପରିସର ବିଷୟରେ ଅବଗତି ପ୍ରଦାନ କରିବା।

* ତୁଳନାତ୍ମକ ସାହିତ୍ୟର ମୌଳ ଉପାଦାନ, ଉପଯୋଗିତା ଓ ବିଶ୍ୱଦୃଷ୍ଟିକ ବୈଶିଷ୍ଟ୍ୟ ଉପରେ ଧାରଣା ପ୍ରଦାନ କରିବା।
* ତୁଳନାତ୍ମକ ସାହିତ୍ୟ ସଂପର୍କିତ ବିଚାର ବିମର୍ଶ ପରଂପରାର କ୍ରମୋନ୍ନତି ଉପରେ ଆଲୋକପାତ କରିବା।
* ଭାରତୀୟ ଓ ପାଶ୍ଚାତ୍ୟ ଦୃଷ୍ଟିକୋଣରୁ ତୁଳନାତ୍ମକ ସାହିତ୍ୟର ବିଶେଷତ୍ୱ ନିରୂପଣ କରିବା।
* ତୁଳନାତ୍ମକ ସାହିତ୍ୟର ବିଧାନ, ବିଧେୟ ଓ ବାର୍ତ୍ତମାନିକ ଆବଶ୍ୟକତା ଓ ପ୍ରକାର୍ଯ୍ୟ ସମ୍ବନ୍ଧରେ ଆକଳନ କରିବା।

ସଂପ୍ରତି ସଶ୍ରଦ୍ଧ ଦୃଷ୍ଟିଭଙ୍ଗୀ ମଧ୍ୟରେ ସାର୍ବକାଳୀନ, ସର୍ବଜନୀନ ଓ ସାର୍ବସ୍ଥାନିକ ଉପଲବ୍ଧି ଓ ପ୍ରତ୍ୟୟଗୁଡ଼ିକୁ ମେଳକସୂତ୍ରରେ ଖୋଜିବା, ଅନୁଧ୍ୟାନ କରିବା, ଗ୍ରହଣ କରିବା ଏବଂ ପ୍ରାୟୋଗିକ ଦିଗରୁ ଜୀବନ ଓ ଜଗତ ହିତେଷୀ କରି ତୋଳିବା ସହିତ ବିଶ୍ୱ-ସାମଗ୍ରିକତାକୁ ସାହିତ୍ୟ ଭିତ୍ତିରେ ଏକୀଭୂତ ଓ ଅଭିନ୍ନ କରି ଦେଖିବା-ବୁଝିବା-ଗ୍ରହଣ କରିବାର ଏକ ଅଭିନବ ପଠନ ପ୍ରକ୍ରିୟା ରୂପେ ତୁଳନାତ୍ମକ ସାହିତ୍ୟର ଉନ୍ମେଷ, ପ୍ରସାର ଓ ସମଯୋଜନା ସ୍ୱତନ୍ତ୍ର ଆବେଦନ କାରକ ହୋଇପାରିଛି। ଏଠାରେ ଉଲ୍ଲେଖଯୋଗ୍ୟ ତୁଳନାତ୍ମକ ସାହିତ୍ୟ ଉପନ୍ୟାସ ସାହିତ୍ୟ/ଗଳ୍ପ ସାହିତ୍ୟ/ ନାଟ୍ୟ ସାହିତ୍ୟ ପରି ଅଥବା ଓଡ଼ିଆ-ସାହିତ୍ୟ/ଇଂରାଜୀ-ସାହିତ୍ୟ/ମାର୍କିନ-ସାହିତ୍ୟ/ବୈଦିକ-ସାହିତ୍ୟ/ହାଇକୁ-କବିତା/ରୋମାଣ୍ଟିକ୍ ସାହିତ୍ୟ/ଧର୍ମ-ସାହିତ୍ୟ/ପ୍ରଗତିବାଦୀ-ସାହିତ୍ୟ ପରି ଏକ କଳା ପ୍ରଜାତିର ସମାଖ୍ୟା ନୁହେଁ। ଏହା ମଧ୍ୟ ପରସ୍ପର ମଧ୍ୟରେ ଭଲମନ୍ଦ, ସୁ-କୁ ଅଥବା ସାହିତ୍ୟ ସାହିତ୍ୟ ମଧ୍ୟରେ ଉତ୍କର୍ଷ, ଅପକର୍ଷ, ପ୍ରଭାବ-ପ୍ରଭାବିତ, ଅନୁକରଣ-ଅନୁସରଣ, ଯୁଗ-ଧର୍ମ-ବାଦ ଭିତ୍ତିକ ସାଦୃଶ୍ୟ-ତର୍କଣା ନିର୍ଦ୍ଧାରଣମୂଳକ ସମାଲୋଚନାତ୍ମକ ଅଧ୍ୟୟନ ନୁହେଁ। ଏହା ହେଉଛି ଦେଶ-କାଳ-ପାତ୍ର/ଭାଷା-ଲେଖକ-ସମୟ-ବିଚାର-ଶାସନ-ଭୂଖଣ୍ଡ-ସଂସ୍କୃତି ଉର୍ଦ୍ଧ୍ୱରେ ଲେଖାଲେଖ ଲେଖକ-ଲେଖକ/ସାହିତ୍ୟ-ସାହିତ୍ୟ ଭିତରେ ସମଭାବ ଓ ସମବୋଧର ସୌନ୍ଦର୍ଯ୍ୟକୁ ଆବିଷ୍କାର କରି ସାହିତ୍ୟର କଳାତ୍ମକ ନାନ୍ଦନିକ ବିଶେଷତ୍ୱ ଭିତ୍ତିରେ ବିଶ୍ୱମୈତ୍ରୀ ତଥା ମାନବ ସଂହତିର ସୂତ୍ରକୁ ଚିହ୍ନଟ କରାଇବାର ବିଦ୍ୟା। ସାହିତ୍ୟ ସୃଜନର ଓ ପଠନର ଏକ ସମସ୍ପନ୍ଦନଶୀଳ ଆବେଦନବୋଧ ଓ ବିଧାନକୁ ବିଶ୍ୱର ସର୍ବସ୍ତରୀୟ ଉଚ୍ଚାଙ୍ଗ-ସାହିତ୍ୟସୃଷ୍ଟିରେ ଦେଖି କଳା ସଂହତି ଓ ଭୌଗୋଳୀୟ ସାହିତ୍ୟ ଏକତା ପ୍ରତିଷ୍ଠା କରିବାର ସ୍ୱତନ୍ତ୍ର ଜ୍ଞାନ-ଧାରା ହେଉଛି– ତୁଳନାତ୍ମକ ସାହିତ୍ୟର ମୌଳ ଉଦ୍ଦେଶ୍ୟ।

ପୁନଶ୍ଚ, ତୁଳନାତ୍ମକ ସାହିତ୍ୟ ଏକ ଅଧ୍ୟୟନ ପଦ୍ଧତି/ସମାଲୋଚନାତ୍ମକ ପଦ୍ଧତି ନୁହେଁ। ବରଂ ବିଶ୍ୱ ସାହିତ୍ୟକୁ ସମଗୋତ୍ରୀ କରି ମାନବୀୟ ମୂଲ୍ୟବୋଧର ପ୍ରସାରସାଧନ କରିବାର ଏକ ସାଙ୍ଗଠନିକ ବିଚାର ବ୍ୟବସ୍ଥା। ଏହି ସାହିତ୍ୟ ବିଚାର ପ୍ରତି ବିଶ୍ୱସ୍ତ ଅନୁରାଗୀମାନେ ବିଶ୍ୱାସ କରନ୍ତି–

- ଯେ କୌଣସି ସାହିତ୍ୟ କୃତି, ଅନୁକୃତି, ଛାୟାକୃତି, ସେବିତାକୃତିଗୁଡ଼ିକରେ ସାର୍ବକାଳୀନ ଶାଶ୍ୱତ ମଣିଷର ସହଜାତ ଭାବ-ଅନୁଭାବ- ଅବବୋଧଗୁଡ଼ିକ ପ୍ରତ୍ୟକ୍ଷ ଉପସ୍ଥିତ ଥାଏ। ପ୍ରତିସ୍ଥଳର, ପ୍ରତିଭାଷାର, ପ୍ରତି ବ୍ୟବସ୍ଥାର ସାହିତ୍ୟ ମଣିଷକୁ, ମଣିଷର ମନନ-ଦର୍ଶନ-ଚିନ୍ତନକୁ, ତା'ର ସ୍ୱପ୍ନ-ଆଶା-ନୈରାଶ୍ୟକୁ, ତା'ର ଜନ୍ମ-ଜୀବନ- ପ୍ରେମ-ବିଚାର- ମୃତ୍ୟୁ ବିଷୟକ ଅନୁଭବକୁ ଏବଂ ପ୍ରକୃତି-ସମୟ-ଈଶ୍ୱରଙ୍କ ପ୍ରତି ତାହାର ରହସ୍ୟମୟ ଜିଜ୍ଞାସାକୁ ସାଗ୍ରହ ପ୍ରତିକ୍ରିୟାରେ ସମଗୁଣରେ ମାନବ ପ୍ରଗତିର ପ୍ରାକ୍ ସୋପାନରୁ ଏଯାବତ୍ ଶବ୍ଦାର୍ଥ କ୍ରୀଡାରେ ରୂପାନ୍ତରିତ କରିଆସିଛି। ଜଣେ ପ୍ରଭାବଶାଳୀ ଲେଖକର ଲେଖାରୁ ଅତ୍ୟଧିକ ଆଗ୍ରହବଶତଃ ଅନ୍ୟଜଣେ ଭାବ ରୂପ ଓ ଚରିତ୍ର ଆହରଣ କରିପାରେ। ନିଜ ସମୟ-ଭୂଗୋଳ-ପରଂପରା ସହିତ ତାକୁ ମିଶାଇ ସ୍ୱୀକରଣ କରି ଅଭିନବତ୍ୱ ଦେଖାଇପାରେ; ମାତ୍ର ତୁଳନାତ୍ମକ ସାହିତ୍ୟ ଏହାକୁ ପ୍ରଭାବ– ପ୍ରଭାବିତ ସମ୍ବନ୍ଧ ଦୃଷ୍ଟିରେ ବିଚାର ନ କରି ସମାନ୍ତରାଳ-ସାଦୃଶ୍ୟ ନିରୂପଣ କ୍ରମେ ପରବର୍ତ୍ତୀ ସୃଷ୍ଟି ଓ ସ୍ରଷ୍ଟାର ମହତ୍ତ୍ୱକୁ ଅନୁଶୀଳନ କରିବାକୁ ପରାମର୍ଶ ଦିଏ।

ମୋଟ ଉପରେ ଆଂଚଳିକ, ଦେଶୀୟ, ଧାର୍ମିକ, ରାଜନୀତିକ, ସାଂସ୍କୃତିକ ଓ ସଭ୍ୟତାସୂଚକ ସ୍ୱାତନ୍ତ୍ର୍ୟର ବ୍ୟବଧାନ ସତ୍ତ୍ୱେ ସମଗ୍ର ଭୂମିବୃତ୍ତରେ ଥିବା ଭିନ୍ନ ଭିନ୍ନ ଭାଷାର ଲେଖା ଓ ଲେଖକଙ୍କ ଭିତରେ ରହିଥିବା ସଂଶ୍ଳେଷଣାତ୍ମକ ସାଦୃଶ୍ୟ ଅନୁଭବଗୁଡ଼ିକୁ ଆକଳନ କରିବା ହିଁ ତୁଳନାତ୍ମକ ସାହିତ୍ୟଧାରାର ବିଜ୍ଞାପନଧର୍ମୀ (ପ୍ରଖ୍ୟାପିତ) ଲକ୍ଷ୍ୟ। ସ୍ଥାନ-କାଳ-ପାତ୍ର ଓ ପାରିପାର୍ଶ୍ୱିକ ଘଟଣା/ପ୍ରତ୍ୟୟ/ଧାରଣା/ସଂରଚନା ହେତୁ– ଲେଖା ଲେଖା ଭିତରେ ପାର୍ଥକ୍ୟ ଥିବା ସତ୍ତ୍ୱେ ସମତାଗର୍ଭକ ଆବେଗ ଓ ସମସ୍ପନ୍ଦନମୁଖର ନୃତାତ୍ତ୍ୱିକ ଓ ମାନବିକ ବୃତ୍ତି-ପ୍ରବୃତ୍ତିର କଳାତ୍ମକ ସମଗୁଣୀୟ ଅବସ୍ଥାନକୁ ଗ୍ରୀକ୍, ଆରବୀ, ଇଂରେଜୀ, ପାର୍ସି, ଜର୍ମାନୀୟ, ସ୍ପେନୀୟ ଚୈନିକ, ଆଫ୍ରିକୀୟ, ଭାରତୀୟ ସାହିତ୍ୟ କୃତିଗୁଡ଼ିକରେ ସହଜରେ ଲକ୍ଷ୍ୟ କରାଯାଇପାରେ। ଅନୁରୂପ ଭାବରେ ଉପନିବେଶୀୟ ଅଥବା ଉତ୍ତର ଉପନିବେଶୀୟ, ରାଜ୍ୟଗୋଷ୍ଠୀୟ ଅଥବା ୟୁରୋପୀୟ, ବିକଶିତ ରାଷ୍ଟ୍ରୀୟ ଅଥବା ବିକାଶନ୍ମୁଖୀ ଓ ବିକାଶଶୀଳୀୟ ଭୂଖଣ୍ଡର ସାହିତ୍ୟ ହେଉ ପ୍ରତ୍ୟେକ କଳାକକ୍ଷ ମଧ୍ୟରେ ଏକ ଅଚ୍ଛିଦ୍ର ଓ

ଅଭିନ୍ନ ଅନ୍ତଃରୀଣ ମନସ୍ତାତ୍ତ୍ୱିକ ଓ ମାନବିକ ବାସ୍ତବିକତାର ସଂପର୍କ ସୂକ୍ଷ୍ମରୂପରେ ବିଦ୍ୟମାନ ରହିଛି ଏହିପ୍ରକାର ସମ୍ବନ୍ଧସୂତ୍ରର ସତ୍ୟକୁ ତୁଳନାତ୍ମକ ସାହିତ୍ୟ ଖୋଜି-ଲୋଡ଼ି-ଚର୍ଚ୍ଚା କରି ପ୍ରମାଣସିଦ୍ଧ କରିଥାଏ। ଭାଷାଭେଦ ଓ ସୀମାଭେଦକୁ ଅତିକ୍ରମ କରି ସାହିତ୍ୟ ମାଧ୍ୟମରେ ଆନ୍ତର୍ଜାତୀୟ ଐକ୍ୟବୋଧ ପ୍ରତିଷ୍ଠା କରିବା ନିମନ୍ତେ ଏହି ସାହିତ୍ୟ ପ୍ରଜାତିର ଆବଶ୍ୟକତା ଏକାନ୍ତ ଜରୁରୀବୋଧ ହୋଇଛି।

**ତୁଳନାତ୍ମକ ସାହିତ୍ୟର ଉପଯୋଗିତା :-**

୧୮୪୮ ମସିହାରେ ମାଥ୍ୟୁ ଆରନୋଲଡ ପ୍ରଥମେ 'ତୁଳନାତ୍ମକ ସାହିତ୍ୟ' ଶବ୍ଦଟିକୁ ବ୍ୟବହାର କରିଛନ୍ତି। ସେ ଆରିଷ୍ଟୋଟଲ୍‌ଙ୍କ ଅନୁକରଣ ତତ୍ତ୍ୱକୁ ସମର୍ଥନ କରି ଲେଖା/ଲେଖକ ମଧ୍ୟରେ ସୃଜନଶୀଳତାର ସାଦୃଶ୍ୟକୁ ତୁଳନା କରିବା ଉପରେ ଗୁରୁତ୍ୱାରୋପ କରିଛନ୍ତି। ବିଂଶ ଶତକର ଅନ୍ୟତମ ପ୍ରସିଦ୍ଧ ତୁଳନାବାଦୀ ରେନେୱେଲ୍‌କ ଐତିହାସିକ ଅର୍ଥ ବିଜ୍ଞାନ ଅନୁଯାୟୀ ତୁଳନାତ୍ମକ ପ୍ରକ୍ରିୟାରେ ସାହିତ୍ୟର ମୂଲ୍ୟାୟନ ଓ ସାମ୍ୟ-ବୈଷମ୍ୟ ନିରୂପଣ ସଂଭବ ବୋଲି ମତ ଦେଇଛନ୍ତି। ଇଂରାଜୀ ସାହିତ୍ୟରେ ୧୭୯୮ରେ ଫ୍ରାନ୍‌ସିସ୍ ମେୟରସ ଇଂରାଜୀ କବି ଓ ଗ୍ରୀକ୍ ଲାଟିନ୍ କବିଙ୍କ ମଧ୍ୟରେ ଭାବଗତ ପ୍ରଥାସିଦ୍ଧ ସହସମ୍ବନ୍ଧକୁ ତୁଳନା କରି ତୁଳନାତ୍ମକ ସାହିତ୍ୟକୁ ସମାଲୋଚନା ପରିସରଭୁକ୍ତ କରିଛନ୍ତି। ୧୮୮୬ରେ ଏଚ୍.ଏମ୍. ପେସନେଟ 'କଂପାରେଟିଭ ଲିଟରେଚର'କୁ ଶିକ୍ଷାଦାନ ଧାରାରେ ସଂପୃକ୍ତ କରିଛନ୍ତି। ଇଟାଲୀରେ ତୁଳନାତ୍ମକ ସାହିତ୍ୟର ଅର୍ଥ ହେଉଛି ତୁଳନାତ୍ମକ ବ୍ୟୁତ୍ପତ୍ତି ଭିତ୍ତିରେ ଅର୍ଥବିଧାନ। ଫ୍ରାନ୍‌ସରେ ତୁଳନାତ୍ମକ ସାହିତ୍ୟର ଅର୍ଥ ଏକାଧିକ ଲେଖା ଓ ଲେଖକ ଭିତରେ ସାଦୃଶ୍ୟ-ବୈସାଦୃଶ୍ୟ ଅଧ୍ୟୟନ, ଜର୍ମାନୀରେ ତୁଳନାତ୍ମକ ସାହିତ୍ୟ ବିଜ୍ଞାନସମ୍ମତ ଅଧ୍ୟୟନ ଦ୍ୱାରା ବିଶ୍ୱର ଉଚ୍ଚାଙ୍ଗ କୃତିର ବିଶେଷତ୍ୱ ନିର୍ଦ୍ଧାରଣ କରିବା। ମାର୍କିନ୍ ବିଚାରରେ ତୁଳନାତ୍ମକ ସାହିତ୍ୟ ହେଉଛି ଏକ ଅଧ୍ୟୟନ ପଦ୍ଧତି; ଯାହାଦ୍ୱାରା ବସ୍ତୁବୋଧ ଓ ଭାବବୋଧ ଭିତ୍ତିରେ ବିଶ୍ୱର ବିଭିନ୍ନ ସାହିତ୍ୟ-ସୃଜନଗୁଡ଼ିକ ଭିତରେ ସାର୍ବଜନୀନ ମାନବ ସଂପ୍ରୀତିର ଅନୁଶୀଳନ କରିବା। ଚୀନ ଓ ଭାରତରେ ତୁଳନାତ୍ମକ ସାହିତ୍ୟର ବିଚାରଟି ତୁଲ୍ୟଧର୍ମିତା, ସାଦୃଶ୍ୟ ବିବେଚନା ଓ ସାହିତ୍ୟ-ସଂହତିସୂଚକ ସମ୍ବାଦ ଭାବରେ ବିଚାର୍ଯ୍ୟ ହୋଇଆସିଛି। ଭାଷା, ସାହିତ୍ୟ ଓ ଦେଶର ବନ୍ଧନରୁ ସାହିତ୍ୟ ସୃଜନର ବନ୍ଧନକୁ ମୁକ୍ତ କରି ଜ୍ଞାନ ଅର୍ଜନ କ୍ଷେତ୍ରରେ ଆଗେଇ ନେବାକୁ ଓ ବିଶ୍ୱମୁଖୀ ଭାବନାର ପ୍ରସାର କରିବାକୁ ତୁଳନାତ୍ମକ ସାହିତ୍ୟ ବିପୁଳ ପ୍ରେରଣା ଯୋଗାଇଆସିଛି। ବିଶ୍ୱବୋଧ ଏକ ଧାରାରେ ପ୍ରବହମାନ ଓ ନିରନ୍ତର ନିରବଚ୍ଛିନ୍ନ ଭାବରେ ଗତିଶୀଳ– ଏ ସତ୍ୟକୁ ତୁଳନାତ୍ମକ ସାହିତ୍ୟ ପ୍ରଚାର କରିଛି। ମାକ୍‌ସମୁଲାର ତୁଳନାତ୍ମକ ସାହିତ୍ୟକୁ ବିଶ୍ୱମାନବର ଜ୍ଞାନ ବଳୟ ବୃଦ୍ଧିକାରକ ବିଦ୍ୟାଭାବରେ ଗ୍ରହଣ କରିଛନ୍ତି। ଏଚ୍.ଏମ୍. ପୋସ୍‌ନେଟ ଏହାକୁ ଆଧାର କରି ବିଶ୍ୱର ବିବିଧ ଜାତି ପରସ୍ପରର

ନିକଟତର ହୋଇପାରିଥାଏ ବୋଲି– ଅଭିମତ ପ୍ରଦାନ କରିଛନ୍ତି। ଫ୍ରାନ୍‌ସିସ୍ ଜୋଷ୍ଟଙ୍କ ମତରେ ବିଶ୍ୱର ସମସ୍ତ ମହାନ ସାହିତ୍ୟକୃତିକୁ ଅନୁଶୀଳନ କଲେ ସ୍ପଷ୍ଟ ବୋଧ ହେବା ଯେ ସମଗ୍ର ମାନବ ଜାତିର ଶବ୍ଦକଳାର ମହାସ୍ରୋତରେ ଅଭିବ୍ୟକ୍ତ ମାନବ ଚେତନା ଓ ହୃଦୟବତ୍ତା ଏକ ଭଙ୍ଗୀରେ ତରଙ୍ଗାୟିତ ହୋଇ ଆଗେଇ ଚାଲିଛି।

ଏହି ଦିଗରୁ ବିଚାର କଲେ ତୁଳନାତ୍ମକ ସାହିତ୍ୟର ବିଧେୟ ବୈଚିତ୍ର୍ୟ ତଥା ଉପଯୋଗିତା ବହୁବିଧ। ସେଗୁଡ଼ିକ ମଧ୍ୟରୁ କେତୋଟି ନିମ୍ନପ୍ରକାରେ ଉଲ୍ଲେଖଯୋଗ୍ୟ–

- ବିଭିନ୍ନ ଭାଷାଭାଷୀ ସାହିତ୍ୟରେ ଅଭିବ୍ୟକ୍ତି ଲାଭ କରିଥିବା ମାନବୀୟ ଭାବଚେତନାର ଏକରୂପତାକୁ ନିରୂପଣ କରିବା।
- ବିଭିନ୍ନ ସାହିତ୍ୟ ଅନୁଶୀଳନ ଓ ପର୍ଯ୍ୟାଲୋଚନା ଦେଇ ବିଭିନ୍ନ ଭୂଖଣ୍ଡର ସାମାଜିକ, ସାଂସ୍କୃତିକ, ପ୍ରାକୃତିକ, କୃତ୍ୟାଙ୍ଗସମ୍ବଳିତ ବିଶେଷତ୍ୱଗୁଡ଼ିକୁ ଅନୁଭବ କରିବା।
- ୟୁରୋପୀୟ-ଭାରତୀୟ, ତେଲୁଗୁ-ଓଡ଼ିଆ, ସଂସ୍କୃତ-ନବୀନ ଭାରତୀୟ ଭାଷା ସଂଯୁକ୍ତ, ଚୈନିକ-ଜାପାନୀୟ, ଋଷୀୟ-ମାର୍କିନୀୟ ଜୀବନଚର୍ଯ୍ୟାର ବାହ୍ୟ ଆଚରଣ ଭିନ୍ନତା ସତ୍ତ୍ୱେ ଏସବୁ ସାହିତ୍ୟରେ ସମାନତା ଓ ମାନବୀୟ ଅଭିଳାଷଗୁଡ଼ିକ ସମଧର୍ମୀ, ଏହା ସହଜରେ ଉପଲବ୍ଧି କରିହୁଏ ଓ ମାନବୀୟ ଜ୍ଞାନର ସମୀକରଣ ସଂଭବ କରିହୁଏ।
- ମାନବୋଚିତ ବୃତ୍ତି ପ୍ରବୃତ୍ତି, ନାନ୍ଦନିକ ବିଶ୍ୱାସ ଭିତରେ ଏକଗ୍ରନ୍ଥିକ ସମସଂସ୍କୃତି ଥିବାରୁ ଚିତ୍ର-ଚରିତ୍ର-ଭାଷା ନିର୍ବିଶେଷରେ ସମଗ୍ର ବିଶ୍ୱର ସାହିତ୍ୟଧାରାରେ ସମାଭିପ୍ରାୟକ ସମ୍ବାଦ ନିଶ୍ଚିତ ଉପଲବ୍ଧ– ଏହା ତୁଳନାତ୍ମକ ସାହିତ୍ୟ ପ୍ରମାଣିତ କରିପାରିଛି।
- ବସ୍ତୁବୋଧ, ପରିପାର୍ଶ୍ୱ, ଜଳବାୟୁ, ଜୀବନଯାପନ ପ୍ରଣାଳୀ ଓ ସଂସ୍କାରୋଚିତ ବିଧାନ ଭିତରେ ଭେଦ-ପ୍ରଭେଦ ଥାଇ ମଧ୍ୟ ମାନବୀୟ ଚେତନାର ଉପାଦାନଗୁଡ଼ିକ ସମଭଙ୍ଗୀରେ ସାହିତ୍ୟକୃତିଗୁଡ଼ିକରେ ସଂଯୋଗିତ ରହିଛି ଏବଂ ଏ ଦୃଷ୍ଟିରୁ କାଳିଦାସ-ସେକ୍‌ସପିୟର, ସାରୋଳାଦାସ-ଦାନ୍ତେ, ରାଧାନାଥ-ଓଭିଡ୍, ଉପେନ୍ଦ୍ରଭଂଜ-ମିଲ୍‌ଟନ୍, ରବୀନ୍ଦ୍ରନାଥ-ୱାର୍ଡସ୍‌ୱାର୍ଥ ଆଦିଙ୍କ ସୃଜନଶୀଳ କଳ୍ପନା ଭିତରେ ନିରପେକ୍ଷ– ମେଦିନୀବୋଧର ଆବେଦନ ବର୍ତ୍ତମାନ ରହିଛି– ଏକଥା ତୁଳନାତ୍ମକ ସାହିତ୍ୟ ବିଶ୍ୱସହୃଦୟଙ୍କୁ ହୃଦ୍‌ବୋଧ କରାଇପାରିଛି।
- ଉତ୍କର୍ଷ–ଅପକର୍ଷ, ଆହରଣ-ସମୀକରଣ-ମୌଳିକୀକରଣ, ସମତା-ଅସମତା, ଅପହୃତି-ପ୍ରଭାବ-ପ୍ରୋତ୍ସାହନ-ଅପାରୋପଣ ଓ ସାଦୃଶ୍ୟ-ବୈସାଦୃଶ୍ୟ ଆଦି

ତର୍କଣାକୁ ଆଧାର କରି ପ୍ରସାର ଲାଭ କରିଥିବା ତୁଳନାତ୍ମକ ସାହିତ୍ୟ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଅସନ୍ତୁଳିତ ବିଶ୍ୱମାନସରେ ସହବନ୍ଧନୀ ମୂଲ୍ୟବୋଧ ଓ ସମ୍ବନ୍ଧ ପ୍ରତିଷ୍ଠା କ୍ରମେ ସାହିତ୍ୟର ତର୍କନିଷ୍ଠ ସମାଲୋଚନା ଅପେକ୍ଷା ସମବାୟିତ ସୌନ୍ଦର୍ଯ୍ୟ ନିରୂପଣଜନିତ ଭାବଗ୍ରାହୀ ପାଠକଧର୍ମ ଉପରେ ଗୁରୁତ୍ୱାରୋପ କରିଛି । ଫଳରେ ପ୍ରଭାବଶାଳୀ–ପ୍ରଭାବିତ, ନିୟାମକ-ନିୟମାନୁକରଣଶୀଳ ସାହିତ୍ୟ ଅଧ୍ୟୟନକୁ ପରିହାର କରି ତୁଳନାତ୍ମକ ସାହିତ୍ୟ ବିକାଶଶୀଳ ସାହିତ୍ୟ ସହିତ ବିକାଶମୁଖୀ ସାହିତ୍ୟର/ପ୍ରାଚ୍ୟ ସାହିତ୍ୟ ସହିତ ପାଶ୍ଚାତ୍ୟ ସାହିତ୍ୟର/ଉପେକ୍ଷିତ ବା ଦଳିତ ସାହିତ୍ୟ ସହିତ ପାରଂପରିକ ସମୃଦ୍ଧ ବର୍ଗର ସାହିତ୍ୟର/ଅତୀତ ସାହିତ୍ୟ ସହିତ ଚଳନ୍ତି ସାହିତ୍ୟର/ସାମ୍ରାଜ୍ୟବାଦୀ ସାହିତ୍ୟ ସହିତ ଉପନିବେଶବାଦୀ ଉତ୍ତର-ଉପନିବେଶବାଦୀ ସାହିତ୍ୟର/ପୁରୁଷପ୍ରଧାନ ସାହିତ୍ୟ ସହିତ ବାମାବାଦୀ ସାହିତ୍ୟର ଓ ଭାବବାଦୀ ସାହିତ୍ୟ ସହିତ ହେତୁବାଦୀ ସାହିତ୍ୟର ଅନ୍ତଃସୌନ୍ଦର୍ଯ୍ୟର ସମଗୁଣଗୁଡ଼ିକୁ ସମତୁଲ୍ୟକରି ସେସବୁ ଭିତରେ ମାନବ-ସମଗ୍ରତାକୁ ଅନୁଭବ କରାଇଦେବା ହିଁ ତୁଳନାତ୍ମକ ସାହିତ୍ୟର ପ୍ରତିପାଦ୍ୟ-ବିଧେୟ ହୋଇଉଠିଛି ।

- ଅନୁକରଣ–ଅନୁସରଣ-ଆହରଣ-ସ୍ୱୀକରଣ ଅଥବା ଅନୁସୃଜନ-ପରିସୃଜନ-ତୁଲ୍ୟ ସୃଜନ-ପ୍ରତିସୃଜନ ଧର୍ମାନୁସାରେ ବିଶ୍ୱର ସମୁଦାୟ ସାହିତ୍ୟକୁ ଭାବବିନିମୟତତ୍ତ୍ୱର ସେତୁରୂପ ଭାବରେ ଗ୍ରହଣ କରି ତୁଳନାତ୍ମକ ସାହିତ୍ୟ ଉତ୍ତରଗୋଲାର୍ଦ୍ଧରୁ ଦକ୍ଷିଣ ଗୋଲାର୍ଦ୍ଧ, ଥେମ୍ସ୍ ନଦୀର ଲଣ୍ଡନ ବ୍ରିଜ୍‌ରୁ କାଠଯୋଡ଼ି ନଦୀର କଟକୀ ସେତୁ ପର୍ଯ୍ୟନ୍ତ ପରିବ୍ୟାପ୍ତ ବିଶ୍ୱ ସାହିତ୍ୟକୁ ଏକାନୁରୂପ ସାରସ୍ୱତ ବାତାବରଣର ଫଳପ୍ରସୂ ଭାବରେ ଦେଖିବାର, ବୁଝିବାର ଓ ଗ୍ରହଣ କରିବାର ତୁଲ୍ୟ-ଦେହିତୁଲ୍ୟ ରଚନା ସମ୍ବାଦ ମାନଦଣ୍ଡରେ ବିବେଚନା କରିବାର ନବନ୍ୟାୟିକ ଦୃଷ୍ଟିଭଙ୍ଗୀଟିଏ ବିଶ୍ୱମୈତ୍ରୀବାଦୀମାନଙ୍କୁ ଦେଇପାରିଛି ।
- ତୁଳନାତ୍ମକ ସାହିତ୍ୟ ଏକ ବୃହତ୍ତର ଭୂମିବାଦୀ/ଭୂଗୋଳବୋଧର ବିଚାରତତ୍ତ୍ୱଟିଏ, ବିଶ୍ୱର ବୁଦ୍ଧିବାଦୀଧାରଣାକୁ ଏକ ପାରିବାରିକ ଭାବଧର୍ମରେ ବଂଚିବାର ନିଷ୍ଠାପର ପ୍ରୋତ୍ସାହନଟିଏ ଦେଇପାରିଛି ଏବଂ ବିଶ୍ୱପାଠକକୁ ଆଂଚଳିକତାର ସଂକୀର୍ଣ୍ଣ ପରିଧିରୁ ମୁକ୍ତ ହୋଇ ମାନବ ସଂହତି/ସଦ୍‌ଭାବନା/ସଂସ୍କୃତି/ଶୃଙ୍ଖଳା/ଶ୍ରେଷ୍ଠତ୍ୱ/ଶାନ୍ତି/ସମ୍ବଳତ୍ୱ/ସମବ୍ୟଥୀପଣ/ସମଯୋଜନାର ମାନ୍ତ୍ରିକ ଉଚ୍ଚାରଣକୁ ଅଙ୍ଗୀକାର କରି ବୃହତ୍ତର ହୃଦୟବତ୍ତାର ଉତ୍ତରଦାୟବଦ୍ଧତାକୁ ଅନୁସରଣ କରିବାକୁ ଆମନ୍ତ୍ରଣ ଜଣାଇଛି ।

- ତୁଳନାତ୍ମକ ସାହିତ୍ୟ ବିଶ୍ୱର ବହୁ ଭୂମିଖଣ୍ଡର ସାହିତ୍ୟକୁ ଭିନ୍ନ ସଂସ୍କୃତି/ଧର୍ମ/ ବିଶ୍ୱାସ/ଆବଶ୍ୟକତା ଓ ଆହ୍ଲାଦର ସାହିତ୍ୟ ଭାବରେ ବିବେଚନା ନ କରି ବାଲ୍ମିକୀ, ବ୍ୟାସ, ହୋମର, ଦାନ୍ତେ, କାଳିଦାସ, ମିଲିଟନ୍, ସେକ୍ସପିୟର, ରବୀନ୍ଦ୍ରନାଥ, ଗେଟେ, ଟଲଷ୍ଟୟ, ହାର୍ଡି, ଦସ୍ତୋଭସ୍କି, ସାର୍ତ୍ରେ, କାଫ୍କା, ହେମିଙ୍ଗ୍‌ୱେ, ଫକୀରମୋହନ, ପ୍ରେମଚାନ୍ଦ, ମହାଦେବୀ, ଶରତଚନ୍ଦ୍ର, ଗୋପୀନାଥ, ଶିବଶଙ୍କର, ସଲମାନ୍ ଓ ଶାନ୍ତନୁକୁମାର ମଧ୍ୟରେ ମନୁଷ୍ୟର ଜୀବନ-ବଂଚିବାପଣର ପ୍ରାଣିକ ଅଥଚ ମହତ୍ତମ ଭାବଧର୍ମକୁ ନେଇ ଏକ-ଅଭେଦ-କଳାସୂତ୍ରକୁ ଅନୁସଂଧାନ କରିବାର ତୁଲ୍ୟକକ୍ଷୀ ପଠନ-ବିଧାନ ନିରୂପଣ କରିଛି । ଏହି ପଠନ– ବିଧାନ ପାଠକକୁ ସଚେତନ କରାଇଦେଇଛି ଯେ ପ୍ରତ୍ୟକ୍ଷ ସୃଜନକର୍ମ ହେଉ ଅଥବା ଅନୁସୃଜନ କଳାକୃତି ହେଉ– ବିଶ୍ୱର ଯେକୌଣସି ସ୍ତରର ବାଙ୍ମୟ-କ୍ରୀଡା-ଗ୍ରନ୍ଥଟିକୁ ଅଧ୍ୟୟନ କରିବା ସମୟରେ ତାହାକୁ ମାନବିକ ଇଚ୍ଛା, ଆବେଗ, ଅଭିଳାଷ, ଅଧିକାର, କର୍ତ୍ତବ୍ୟ, କ୍ଷମା, କରୁଣା, ସମତା ଓ ଜୀବନ ନିର୍ବାହର ଜୀବାଧର୍ମପଣକୁ ଆଶ୍ରୟ କରିଥିବା ଏକ ଅଭିନ୍ନ-କୈନ୍ଦ୍ରିକ ଚେତନାର କଳାତ୍ମକ ସତ୍ତାରୂପ ଭାବରେ ବିଚାର କରିବା ଉଚିତ । ଫଳତଃ ସମୟ, ଅଂଚଳ, ସଭ୍ୟତା, ଭାଷା, ସଂସ୍କୃତି, ଅର୍ଥନୀତିକ ପ୍ରଭେଦ ଆଦି ବିଷମତାଗୁଡ଼ିକ ଊର୍ଦ୍ଧ୍ୱରେ ପାଠକ ନିଜକୁ, ନିଜର ପରିପାର୍ଶ୍ୱକୁ, ପ୍ରାରବ୍ଧକୁ, ବର୍ତ୍ତମାନକୁ, ଅତୀତକୁ, ନିଜ ଜାତିକୁ ଓ ବଂଚିବାର ସକଳ ବାସନାପଣଗୁଡ଼ିକୁ ଅନ୍ୟକର୍ତ୍ତୃକ କଳାକୃତିରୁ ଦେଖି, ବୁଝି, ଲୋଡ଼ି ତହିଁରେ ନିଜକୁ ଆତ୍ମୀଭୂତ କରିଥାଏ ।

- ତୁଳନାତ୍ମକ ସାହିତ୍ୟ ଅନ୍ୟ ସଂପୃକ୍ତିକରଣ ବା ସଂଯୋଗୀକରଣର ଏକ ସାହିତ୍ୟ-ଅଧ୍ୟୟନ ପ୍ରକ୍ରିୟା; ଯାହା ସୃଜନକର୍ମ-ପଠନକର୍ମ-ସମାଲୋଚନାକର୍ମକୁ ଅବଲମ୍ବନ କରି ବିଶ୍ୱ-ମାନବ-ଚେତନାର ଓ ସ୍ପନ୍ଦନର ସମବାୟ ସାଧନ କରିଥାଏ । ସର୍ଜନଶୀଳ ସତ୍ତା ପରିଦୃଶ୍ୟମାନ ବିଶ୍ୱପ୍ରକୃତି ଓ ବିଶ୍ୱମାନବର ଜୀବନ-ଯାପନ ବୈଚିତ୍ର୍ୟକୁ ଏହା ଅନୁକରଣାତ୍ମକ ରସୋତ୍ସାହ ମାନସିକତା ଭିତରେ ଉପଲବ୍ଧି କରିଥାଏ ଓ କରାଇଥାଏ । ଏହି ବସ୍ତୁବୋଧାତ୍ମକ ଉପଲବ୍ଧିର ଚିତ୍ରବୋଧକ ପ୍ରତିମାଗୁଡ଼ିକ ସ୍ଥାନ-କାଳ-ପାତ୍ର ସମ୍ବଳିତ ପରିପାର୍ଶ୍ୱ କ୍ରମେ ଭିନ୍ନ ଭିନ୍ନ (ଲେଖକରୁ ଲେଖକ/ଲେଖାରୁ ଲେଖା) ହେଲେ ମଧ୍ୟ ବସ୍ତୁସତ୍ତାର ଅନ୍ତଃବାସ୍ତବ ଆବେଦନ ଓ ତା'ର ଧର୍ମଟି ଏକ ଅଭିନ୍ନ-ମାନକ-ବାସ୍ତବତା (Standard reality as oneness) ଉପରେ ପ୍ରତିଷ୍ଠା ଲାଭ କରିଥାଏ । ଲେଖକ ଓ ଲେଖା ଅନୁସାରେ

ଭାଷା, ଚରିତ୍ରର ନାମକରଣ, ଆଚରଣ, ବେଶପୋଷାକ, ବସ୍ତୁ-ଆହାର୍ଯ୍ୟ, ଘଟଣାକେନ୍ଦ୍ର ଭିନ୍ନଭିନ୍ନ ହେଲେ ମଧ୍ୟ ତହିଁସବୁରେ ସାର୍ବଜନୀନ ଓ ସାର୍ବସ୍ତରୀୟ ବସ୍ତୁବୋଧର ଆବେଦନଟି ସାଦୃଶ୍ୟଧର୍ମରେ ବିଳସିତ ହୋଇ ଅନ୍ୟ-ପାଠକଙ୍କୁ ସମଗୁଣରେ ଆକୃଷ୍ଟ ଓ ପ୍ରବୋଧିତ କରିଥାଏ– ଏ ଧରଣର ଏକ ପାଠକୀୟ-ପ୍ରତିକ୍ରିୟାତ୍ମକ ସତ୍ୟକୁ ସାରସ୍ୱତ-ସମାଲୋଚନା ଓ ଅଧ୍ୟୟନର ଆଧାର ଭୂମିରେ ସମର୍ଥନ ଦେବା ତୁଳନାତ୍ମକ ସାହିତ୍ୟର ମୌଳ ଉଦ୍ଦେଶ୍ୟ।

- ଦେଶ-କାଳ-ପାତ୍ରର ବିଚାର ଓ ସ୍ଥାନୀୟତା ସାହିତ୍ୟର ମୂଳ ବିଷୟକକ୍ଷ (Stuff)ରେ ଥାଏ। ମାତ୍ର ବିସ୍ତାରିତ ବାହ୍ୟବିଷୟ ଭିତରେ ଏକ ଲୁକ୍କାୟିତ ମାନବୀୟ ଇଙ୍ଗିତ ପ୍ରାଣଶକ୍ତି ଭାବରେ ଥାଏ। ଏ ପ୍ରାଣଶକ୍ତିଟି ସ୍ଥାନୀୟତା ଊର୍ଦ୍ଧ୍ୱରେ ସାର୍ବିକ ମାନବୀୟ ଅବବୋଧର ଅଟେ। ତେଣୁ ବସ୍ତୁବୋଧର କଳାଗତ ବିନ୍ୟାସକୁ (Artistic-textual-structure) ଭାଙ୍ଗି ତାହାର ଭାଷା ଓ ସାମାଜିକ ଅଭିଳାଷର ଭିନ୍ନତାକୁ ଟପି ମାନବୀୟ ବସ୍ତୁବୋଧର ସମବୋଧାତ୍ମକ ଗୁଣଟିକୁ ବା ଇଙ୍ଗିତଟିକୁ ଚିହ୍ନି ବିଶ୍ୱର ଅନ୍ୟ ଭାଷାର ପାଠବସ୍ତୁ (text) ଭିତରେ ତାହାର ଅନୁରୂପତା ଆକଳନ କରିବା ହିଁ ତୁଳନାତ୍ମକ ସାହିତ୍ୟର ଧର୍ମ।

**ତୁଳନାତ୍ମକ ସାହିତ୍ୟର ପରିଭାଷା :-**

ତୁଳନାତ୍ମକ ସାହିତ୍ୟ ମୁଖ୍ୟତଃ ଏକ ସମଭାବ ସଙ୍କେତ ନିରୂପଣଧର୍ମୀ ଅଧ୍ୟୟନ ପ୍ରକ୍ରିୟା। ପାଠକ ବିଶ୍ୱସାହିତ୍ୟର ମହାନ୍ ଲେଖାଗୁଡ଼ିକ ମଧ୍ୟରେ ନିଜକୁ ସଂଭାବିତ କରିବାର ଆଗ୍ରହରୁ ଏହି ଅଧ୍ୟୟନ ପ୍ରକ୍ରିୟା ଜିଜ୍ଞାସାମୂଳକ ମନୋଭାବରୁ ଆରମ୍ଭ ହୋଇଥାଏ। ପାଠକ ନିଜର ବହୁଭାଷୀ ଜ୍ଞାନଶକ୍ତି ବଳରେ ହେଉ କିମ୍ବା ଅନୁବାଦାତ୍ମକ ରଚନା ସଂଭାର ମାଧ୍ୟମରେ ହେଉ ଅନ୍ୟ ସାହିତ୍ୟ ସଂପର୍କରେ ଆସିଥାଏ। ସେହି ସାହିତ୍ୟର ସ୍ଥୂଳରୂପ (ଯଥା- ଚରିତ୍ର, ବିଷୟ, ଘଟଣା, ଉପସ୍ଥାପନ ଚାତୁରୀ, ସମୟ ଚିତ୍ର, ପ୍ରାକୃତିକ ଦୃଶ୍ୟାବଳୀ ଇତ୍ୟାଦି) ଓ ସୂକ୍ଷ୍ମରୂପ (ଯଥା- ଚେତନା, ମାନବୀୟ ମହତ୍ ଗୁଣାବଳୀର ପ୍ରୟୋଗ, ସହଜାତ ପ୍ରବୃତ୍ତିର ଆବେଗାତ୍ମକ ପ୍ରଭାବ ଓ ସୌନ୍ଦର୍ଯ୍ୟ ଇତ୍ୟାଦି)କୁ ହୃଦ୍‌ବୋଧ କରି ତହିଁରେ ନିଜ ପରିଚିତ ସାହିତ୍ୟର କଳାତ୍ମକ ସମାନତା ଓ ଏକରୂପକତାକୁ ତର୍କଣା ବା ତୁଳନା କରିଥାଏ। ସ୍ଥୂଳରୂପର ସକଳ ପ୍ରକାର ଭିନ୍ନତା ଭିତରେ ସୂକ୍ଷ୍ମରୂପର ଏକ ଭାବଗତ ସମାନତାକୁ ସେ ଆବିଷ୍କାର କରି ବିହ୍ୱଳିତ ହୋଇଥାଏ। ସ୍ଥୂଳରୂପର ତଥ୍ୟାତ୍ମକ ଆବେଦନ ଅପେକ୍ଷା ସୂକ୍ଷ୍ମରୂପର ନାନ୍ଦନିକ ପ୍ରତିକ୍ରିୟା ଦ୍ୱାରା ପାଠକ ସାହିତ୍ୟ ସାହିତ୍ୟ ମଧ୍ୟରେ ମହାମିଳନର ସୂତ୍ରଟିଏ ଅନୁସଂଧାନ କରିଥାଏ ଏବଂ ଶାଶ୍ୱତ ମାନବୀୟ ସତ୍ୟ ଏକ ସାମୂହିକ ସମୁଚିତ ବିଷୟ ବୋଲି ଅନୁଭବ

କରିଥାଏ। ଏହି ମର୍ମରେ ପ୍ରସିଦ୍ଧ ତୁଳନାବାଦୀ ସମାଲୋଚକ ଇନ୍ଦ୍ରନାଥ ଚୌଧୁରୀ ମନ୍ତବ୍ୟ ଦେଇଛନ୍ତି– "ସାଂସ୍କୃତିକ ବିଚାର ଓ ସାମୟିକ ବ୍ୟବସ୍ଥା ମଧ୍ୟ ଦେଇ ବହୁ ଭାଷାର ବିବିଧ ପ୍ରକାରର ଗ୍ରନ୍ଥମାନଙ୍କର ଅଧ୍ୟୟନ ପ୍ରକ୍ରିୟା ହିଁ ତୁଳନାତ୍ମକ ସାହିତ୍ୟ। ଏହା ଏକ ପ୍ରକାର ଆନ୍ତର୍ବିଦ୍ୟା ଭିତ୍ତିକ ପଠନ ପ୍ରକ୍ରିୟା। ଏହା ସମୟ ଓ ଭୂଗୋଳକୁ ଅତିକ୍ରମ କରି ବିଭିନ୍ନ ସାହିତ୍ୟ ଭିତରେ ଭାବଗତ ସଂଯୋଗ ସ୍ଥାପନ କରେ।"

ତୁଳନାତ୍ମକ ସାହିତ୍ୟରେ ପାରସ୍ପରିକ ବିଚାରଦୃଷ୍ଟିର ସାଦୃଶ୍ୟସଙ୍କେତର ତୁଳନା ହେଉଛି କେନ୍ଦ୍ରୀୟ ବିଷୟ। ବିଶ୍ୱଚର୍ଚ୍ଚିତ ତୁଳନାତତ୍ତ୍ୱବିତ୍ ହେନରୀ ଏଚ.ଏଚ.ରିମାକଙ୍କ ବିଚାରରେ– 'ସାହିତ୍ୟ ସାହିତ୍ୟ, ଲେଖକ ଲେଖକ ଭିତରେ ତୁଳନାତ୍ମକତା ଏକ ସାଂଶ୍ଳେଷିକ ମାନସିକ ବ୍ୟାପାର।' ଏହି ବିଶେଷ ପ୍ରକାର ପାଠକୀୟ ମାନସିକ ଦୃଷ୍ଟିଭଙ୍ଗୀ ଦ୍ୱାରା– ଭୌଗୋଳିକ ଓ ଜାତୀୟସ୍ତର ଉପରେ ସାହିତ୍ୟର ଅନୁସଂଧାନାତ୍ମକ ପର୍ଯ୍ୟାଲୋଚନା ସଂଭବ ହୋଇଥାଏ। ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡର ପରିଧିକୁ ଟପି ଅନ୍ୟ ଏକ ଭୂଖଣ୍ଡର ସାହିତ୍ୟ ବୃତ୍ତର ପରିପାର୍ଶ୍ୱ ସହିତ ସମତୁଳିତ ହେବାର ଅଧ୍ୟୟନକୁ ତୁଳନାତ୍ମକ ସାହିତ୍ୟ କୁହାଯାଇପାରେ; ଯାହା କଳା, ଇତିହାସ, ସମାଜ ବିଜ୍ଞାନ ଧର୍ମଶାସ୍ତ୍ର ଓ ବିଜ୍ଞାନ ଆଦି ବିଭିନ୍ନ ବିଦ୍ୟାର ବିଚାରବିମର୍ଶ ଉପରେ ଅବଲମ୍ବିତ। ('Comparative literature is the study of literature beyond the confines of one particular country, and the study of the relationships between literature on the one hand and other areas of knowledge and belief, such as the arts, philosophy, history, the social science, the sciences, and religion etc.– Comparative Literature: Its Definition and Function–P-1/2) ସାଧାରଣତଃ ଗୋଟିଏ ଭାଷାର ଲେଖକମାନଙ୍କ ଭିତରେ, ଲେଖାଭିତରେ, ଅଥବା ଗୋଟିଏ ଭୂଖଣ୍ଡର ନିର୍ଦ୍ଦିଷ୍ଟ ଏକ ସାହିତ୍ୟଧାରାରେ ପରିଚାଳିତ ଲେଖାବଳୀ ମଧ୍ୟରେ ତୁଳନା ସଂପାଦନକୁ ତୁଳନାତ୍ମକ ସାହିତ୍ୟ ସମର୍ଥନ କରେ ନାହିଁ। ଗୋଟିଏ ଭାଷା ଓ ଭୂଖଣ୍ଡର ସାହିତ୍ୟ-ସାହିତ୍ୟିକଙ୍କ ସହିତ ଅନ୍ୟଭାଷାର ତୁଳନା କରିବାର ଆବଶ୍ୟକତାକୁ ତୁଳନାତ୍ମକ ସାହିତ୍ୟ ସଂପୂର୍ଣ୍ଣ ଭାବରେ ପ୍ରାଧାନ୍ୟ ଦେଇଥାଏ। ଏ ଦୃଷ୍ଟିରୁ ରାଧାନାଥଙ୍କ ସହିତ ଗଙ୍ଗାଧର, ଗୋପୀନାଥଙ୍କ ସହିତ କାହ୍ନୁଚରଣ ତୁଳନୀୟ ନୁହଁନ୍ତି। ରବୀନ୍ଦ୍ରନାଥଙ୍କ ସହିତ ମଧୁସୂଦନ ରାଓ, ଇଲିୟଟଙ୍କ ସହିତ ଗୁରୁପ୍ରସାଦ, କବୀରଙ୍କ ସହିତ ଭୀମଭୋଇ ଫକୀରମୋହନଙ୍କ ସହିତ ପ୍ରେମଚାନ୍ଦ ତୁଳନା ପରିସରଭୁକ୍ତ ହୋଇଥା'ନ୍ତି।

ତୁଳନାତ୍ମକ ସାହିତ୍ୟ ଗୋଟିଏ ଅବଧାରଣା ପ୍ରସାରିତ କରିପାରିଛି ଯେ ପୃଥିବୀର ଭୂଗୋଳ-ଇତିହାସ-ଧର୍ମ-ସଂସ୍କୃତି-ଭାଷା-ଶାସନ-କୃତ୍ୟାଙ୍ଗ ମଧ୍ୟରେ କୌଣସି ନା କୌଣସି କାରଣରୁ ଏକ ସୂକ୍ଷ୍ମତମ ଭୌତିକ ସମ୍ମେଳନ ରହିଛି। ତେଣୁ ବିଶ୍ୱର ପ୍ରତ୍ୟେକ ମାନବ-

ଦରଦୀପଣରେ ସାହିତ୍ୟ ଏକ ଉତ୍ସରୁ ଉପାଦାନ ସଂଗ୍ରହ କରିଛି– ତାହା ହେଉଛି ସୌନ୍ଦର୍ଯ୍ୟମୟ, ଶୁଭଗ ଓ ବିଶ୍ୱାସଶବଳିତ ଜୀବନ। ଏହି କାରଣକୁ ପ୍ରଥମେ ବିଶ୍ୱବିଖ୍ୟାତ ଜର୍ମାନୀ ଚିନ୍ତାନାୟକ ଗେଟେ ଅନୁସଂଧାନ କରି ବିଶ୍ୱସାହିତ୍ୟକୁ ମାନବ ଜାତିର ସଂପତ୍ତି ଭାବରେ ବିଚାର କରିଛନ୍ତି। ତୁଳନାଶାସ୍ତ୍ରୀ ୟୁରି ବୋରେଭ ବିଶ୍ୱର ମହତ କଳାକୃତି ଭିତରେ ପୁଷ୍ପପରାଗ ସଂଗମ ପରି ଭାବ ସଂପୃକ୍ତିର ଅନ୍ତଃକ୍ରିୟା ସାଧିତ ହୋଇଥାଏ ଏବଂ ଏହି କାରଣରୁ ବିଶ୍ୱର ପ୍ରତ୍ୟେକ ପ୍ରସାରିତ ନାନ୍ଦନିକ ଭାବବାଦୀ ଲେଖକଙ୍କ ସୃଜନପଣ ଭିତରେ ଆଶ୍ଚର୍ଯ୍ୟଜନକ ଭାବରେ ସାଦୃଶ୍ୟ ପରିଦୃଷ୍ଟ ହୁଏ ବୋଲି ଅଭିମତ ଦେଇ ତୁଳନାତ୍ମକ ସାହିତ୍ୟକୁ ଅନ୍ତଃକ୍ରିୟା ପ୍ରଭାବୀ ସାହିତ୍ୟ ଅଧ୍ୟୟନ ଭାବରେ ପରିଭାଷିତ କରିଛନ୍ତି (Literature of inter-action) ମାର୍କିନ ତୁଳନାତ୍ମକ ସାହିତ୍ୟ ଆନ୍ଦୋଳନର ଅନ୍ୟତମ ପ୍ରବକ୍ତା ଚାର୍ଲସ ମିଲସ୍ ଗେଲ୍ ଏହାକୁ ମାନବ ଜାତିର ଆନୁଷ୍ଠାନିକ ଓ ମନସ୍ତାତ୍ତ୍ୱିକ ପରିପ୍ରକାଶ ଭାବରେ ସଂଜ୍ଞାୟିତ କରିଛନ୍ତି। ବ୍ୟକ୍ତିର ଓ ନିର୍ଦ୍ଦିଷ୍ଟ ଜାତୀୟତାର ଅବସ୍ଥା ଓ ପାରିପାର୍ଶ୍ୱିକ ପ୍ରଭାବ କ୍ରମେ ସାହିତ୍ୟ ବାହ୍ୟରୂପରେ ଭିନ୍ନ ଭିନ୍ନ ହୋଇଯାଉଥିଲେ ମଧ୍ୟ ମାନବୀୟ ଜୈବିକ ଆକାଂକ୍ଷା, ସ୍ୱପ୍ନ, ଅଭିଳାଷ, ଆଚରଣ ଦିଗରୁ ସାହିତ୍ୟ ସାହିତ୍ୟ ମଧ୍ୟରେ ଏକ ବଂଶୀୟ ଯୋଗାଯୋଗ ରହିଥାଏ। ସମାଜତତ୍ତ୍ୱଦର୍ଶୀ ଆଲୋଚକ ଫ୍ରାଙ୍କୋଇସ ଜୋଷ୍ଟଏହି କ୍ରମରେ ଯଥାର୍ଥରେ କହିଛନ୍ତି– 'ତୁଳନାତ୍ମକ ସାହିତ୍ୟ ବିଶ୍ୱଧର୍ମର ମହତ୍ତ୍ୱକୁ ସମର୍ଥନ କରେ। ଏଥିରେ ସମଗ୍ର ବିଶ୍ୱର ସାହିତ୍ୟ, ମାନବୀୟ ପରିପାର୍ଶ୍ୱ, କଳାତ୍ମକ ଭାବନା ଓ ସାଂସ୍କୃତିକ ମୂଲ୍ୟବୋଧର ପ୍ରତିଫଳନ ଘଟିଥାଏ।' (Comparative literature represents more than an academic discipline. It is an overall view of literature, of the world of letters, a humanistic ecology, a literary weltanschung, a vision of the cultural universe, inclusive and comprehensive– F.Jost. Introduction to Comparative Literature-1974.) ସାଦୃଶ୍ୟ ଅଧ୍ୟୟନ, ପ୍ରଭାବ ନିରୂପଣ, ବୈସାଦୃଶ୍ୟ କଥନ ଓ ଅନୁସରଣ ଭିତ୍ରେ ଗୋଟିଏ ଲେଖା ସହିତ ଅନ୍ୟଲେଖାର ତୁଳନାତ୍ମକ ବିଚାର ନୁହେଁ, ବରଂ ଚରିତ୍ର, ବିଷୟ, ପ୍ରକରଣ ଓ ଚିନ୍ତାଧାରା ଭିତରେ ଥିବା ଅନ୍ତର୍ମୁଖୀ ସାଦୃଶ୍ୟ ସଂବନ୍ଧକୁ ସାହିତ୍ୟ-ସାହିତ୍ୟ/ ଲେଖା-ଲେଖା/ଲେଖକ-ଲେଖକ ମଧ୍ୟରେ ବିଶ୍ଳେଷଣ କରିବା ହିଁ ତୁଳନାତ୍ମକ ସାହିତ୍ୟର ଉପଯୋଗୀ ପ୍ରକାର୍ଯ୍ୟ। କେବଳ ତୁଳନା ନୁହେଁ ପୁନଃସୃଷ୍ଟି, ପୁନର୍ବିନ୍ୟାସ, ବିଶ୍ଳେଷଣ, ମୂଲ୍ୟାୟନ, ଅନ୍ତଃଶାସ୍ତ୍ରୀୟ ବିଚାର ମାଧ୍ୟମରେ ତୁଳନାତ୍ମକ ସାହିତ୍ୟର ଯଥାର୍ଥ ପରିଭାଷା ହେଉଛି– ''ଏହା ହେଉଛି ମାନବ ଜାତିର ସାର୍ବଜନୀନ ସାମାଜିକ, ଐତିହାସିକ ଓ ଉଦାରମାନବବାଦୀ ବିଷୟ; ଯେଉଁଥିରେ ମାନବୀୟ ଭାବରାଶିର କଳାତ୍ମକ ଚିତ୍ର ଭିତରେ ଥିବା ଏକାତ୍ମୀଭୂତ ରହସ୍ୟକୁ ଅନୁଭବ କରିହୁଏ। ବିଶ୍ୱଭ୍ରାତୃତ୍ୱ ଓ ବିଶ୍ୱ ପ୍ରାଣତାର ସମବ୍ୟଥୀ ହୃଦୟବତ୍ତା ନେଇ ଜଣେ ଅନ୍ୟଭାଷୀ ସାହିତ୍ୟକୁ ଅଧ୍ୟୟନ କରି ତହିଁରେ ନିଜର ସ୍ୱାଭିମାନକୁ

ସଂପର୍କିକୃତ କରିବାର ଏକ ବିଶେଷ ପଦ୍ଧତି ବା ଶୃଙ୍ଖଳା ଭାବରେ ଏହାକୁ ଅର୍ଥନିଷ୍ଠ କରିବା ଉଚିତ।

(ଦୁଇ)

ତୁଳନାତ୍ମକ ସାହିତ୍ୟର ବିଭିନ୍ନ ଦିଗ/ଆଧାରଭୂମି :-

ତୁଳନାତ୍ମକ ସାହିତ୍ୟ ମୁଖ୍ୟତଃ ଏକ ଅଧ୍ୟୟନାତ୍ମକ ଶୃଖଳା ଉପରେ ପର୍ଯ୍ୟବସିତ। ତୁଳନାତ୍ମକ ଅଧ୍ୟୟନ ଦ୍ୱାରା ଗୋଟିଏ ସାହିତ୍ୟ ସହିତ ଅନ୍ୟ ସାହିତ୍ୟର ପାରସ୍ପରିକ ସାଦୃଶ୍ୟ, ବୈସାଦୃଶ୍ୟ, ସାମଞ୍ଜସ୍ୟ, ସମାନ୍ତରାଳଧର୍ମୀ ଅନ୍ତଃକ୍ରିୟା, ଅନୁକରଣାତ୍ମକ ପ୍ରତିଫଳନ, ପ୍ରଭାବ ସୂତ୍ରୀୟ ସଂପର୍କ ଆଦି ପର୍ଯ୍ୟାଲୋଚିତ ହୋଇଥାଏ। ସାଦୃଶ୍ୟ ସତ୍ୟ ଓ ସମାନ୍ତରାଳ ଭଙ୍ଗୀରେ ବିଳସିତ ତଥ୍ୟର ଅବଧାରଣା ଓ ପରିଚିତି ଉପରେ ଏହା ପ୍ରାଧାନ୍ୟ ଦେଇଥାଏ। ନିମ୍ନଲିଖିତ ଦିଗଗୁଡ଼ିକୁ ତୁଳନାତ୍ମକ ସାହିତ୍ୟର ପ୍ରାସଙ୍ଗିକତା ଓ ଆଧାରଭୂମିର ବୈଶିଷ୍ଟ୍ୟ ଭାବରେ ବିଚାର କରାଯାଏ।

* ପ୍ରଭାବ ଓ ଅନୁକରଣ।
* ଆହରଣ ଓ ସ୍ୱୀକରଣ/ଗ୍ରହଣ ଓ ପ୍ରତ୍ୟାଖ୍ୟାନ।
* ସାଦୃଶ୍ୟ ଓ ବୈସାଦୃଶ୍ୟ ନିରୂପଣ।
* ସମାନ୍ତରାଳ ଅଧ୍ୟୟନ।
* ଅନୁବାଦ ବା ଅନୁସୃଜନାତ୍ମକ କଳାର ଭୂମିକା।

ପ୍ରଭାବ ଓ ଅନୁକରଣ :-

ସମାଜଶାସ୍ତ୍ରବିତ୍ ଆରିଷ୍ଟୋଟଲ୍, ନୈର୍ବ୍ୟକ୍ତିକ ବିଷୟ ସମ୍ବନ୍ଧବାଦୀ ଟି.ଏସ୍. ଇଲିୟଟ ହୁଅନ୍ତୁ ଅଥବା ଲୋକବୃତ୍ତିବିଶ୍ୱସ୍ତ ରସବାଦୀ ଆଚାର୍ଯ୍ୟ ଭରତ ଓ ଶବ୍ଦାର୍ଥବାଦୀ ଆନନ୍ଦବର୍ଦ୍ଧନ ହୁଅନ୍ତୁ– ବହୁ ପ୍ରାଚୀନକାଳରୁ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ବୁଦ୍ଧିଜୀବୀମାନେ ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଆସିଛନ୍ତି ଯେ ସାହିତ୍ୟ ହେଉଛି ଏକ ସହିତ ବା ମିଳନର ପ୍ରସଙ୍ଗ। ସଂସ୍କୃତି ସହିତ ସଂସ୍କୃତି, ଧର୍ମ ସହିତ ଧର୍ମ, ସମୟ ସହିତ ସମୟ, ଭୂଖଣ୍ଡ ସହିତ ଭୂଖଣ୍ଡ ଓ ମଣିଷ ସହିତ ମଣିଷର ସଂପର୍କ ହିଁ ସାହିତ୍ୟର ଆଧାର। ଏହି ଆଧାରିତ ଅନୁଭୂତିଟିକୁ ଜୀବନ-ଜଗତ-ସମୟ-ସଂସ୍କୃତିର ଅନୁକରଣ ଜନିତ ପରିଣତି ଭାବରେ ଲେଖକ ସୂକ୍ଷ୍ମଦୃଷ୍ଟିରେ ଗ୍ରହଣ କରି ଶବ୍ଦକଳା ମାଧ୍ୟମରେ ସାହିତ୍ୟରେ ରୂପାୟିତ କରିଥାଏ। ପ୍ରକୃତିର ବସ୍ତୁବୋଧାତ୍ମକ ନନ୍ଦନସତ୍ତା, ଦୃଶ୍ୟମାନ ବାସ୍ତବତାର ତଥ୍ୟାତ୍ମକ ଚିତ୍ର, ରହସ୍ୟମୟ ଭୌତିକ ଜଗତସମ୍ବନ୍ଧୀ ବିସ୍ମୟୋତ୍ପାଦକ ଭାବସତ୍ତା ଓ ମହା ଜାଗତିକସତ୍ତାର ରହସ୍ୟମୟ ମାନ୍ତ୍ରିକ

ଉପଲବ୍ଧିର ସ୍ୱାଭାବିକ ଅବସ୍ଥାରୁ ସତ୍ୟ ଓ ତଥ୍ୟ ଅନୁକରଣ କରି ସାହିତ୍ୟସ୍ରଷ୍ଟା ସୃଜନକର୍ମ ସଂପାଦନ କରିଥାଏ । ବଳଶାଳୀ ଲେଖକଙ୍କର ବିଚିତ୍ର ଜୀବନାନୁଭୂତିର କଳାକର୍ମରୁ ପରବର୍ତ୍ତୀ କାଳର ମୁଗ୍ଧଭାବୁକ ଭାବସତ୍ତା ମଧ୍ୟ ଅନୁକରଣ କରିଥାଏ । ଏହି ମର୍ମରେ ତୁଳନାତ୍ମକ ସାହିତ୍ୟ ଅଧ୍ୟୟନ ଦ୍ୱାରା କେଉଁ ସାହିତ୍ୟ ଓ ସାହିତ୍ୟକାର କେତେ କେଉଁ ମୌଳ କଳ୍ପନାରୁ ଭାବବସ୍ତୁ ଅନୁକରଣ କରିଛନ୍ତି ତାହା ଅନୁଶୀଳନୀୟ ହୋଇଥାଏ । ତୁଳନାତ୍ମକ ସାହିତ୍ୟ ବିଶ୍ୱାସ କରେ ଯେ କୌଣସି ଲେଖକ ଶତପ୍ରତିଶତ ମୌଳିକ ନୁହଁନ୍ତି ଏବଂ ଅନୁକରଣାତ୍ମକ ସଂରଚନା ବ୍ୟାପାରଠାରୁ ମୁକ୍ତ ନୁହଁନ୍ତି । ଲେଖକ ଲେଖକ ମଧ୍ୟରେ ପ୍ରତିଭା ବିନିମୟ ବା କାବ୍ୟ ସମ୍ବାଦ ଘଟିଥାଏ । ଏହି ମର୍ମରେ ପାଶ୍ଚାତ୍ୟ କାବ୍ୟଶାସ୍ତ୍ରୀ ଆଲେକ୍‌ଜାଣ୍ଡର ବିନ୍ଦେ ଓ ଇଲିୟଟ ସ୍ପଷ୍ଟ ଅଭିମତ ଦେଇଛନ୍ତି ଯେ– 'ଉତ୍ତମ ପ୍ରତିଭାଧାରୀ ନବକଳ୍ପକମାନେ ଆହରଣ ଓ ଅନୁକରଣ ସୂତ୍ରରେ ପୂର୍ବ ପ୍ରସିଦ୍ଧ କୃତିଗୁଡ଼ିକରୁ କଳାସତ୍ୟ ଗ୍ରହଣ କରି ତାହାକୁ ନୂଆଭଙ୍ଗୀରେ ନବରୁଚିର ତଥ୍ୟ ରୂପରେ ପ୍ରଖ୍ୟାପନ କରିଥା'ନ୍ତି । ସୁତରାଂ ତୁଳନାତ୍ମକ ସାହିତ୍ୟ ଅନୁକରଣ କଳାର ବିଶେଷ ଲକ୍ଷଣତ୍ରୟୀ ଆହରଣ– ପୁନର୍ବିନ୍ୟାସୀକରଣ– ବିଘଟନୀକରଣ ପଦକ୍ଷେପକୁ ମୁଗ୍ଧ ଭାବୁକତାର ପ୍ରସଙ୍ଗ ଭାବରେ ସମର୍ଥନ କରିଛି । ଏହି ସୂତ୍ରରେ ସାରଳାଙ୍କ କୃତିରେ ବ୍ୟାସଙ୍କ କୃତି, ଭଂଜଙ୍କ କାବ୍ୟରେ ନୈଷଧର ଛାୟା, ଗଙ୍ଗାଧରଙ୍କ ସୃଷ୍ଟିରେ କାଳିଦାସଙ୍କ ବର୍ତ୍ତମାନତା ଓ ଗୁରୁପ୍ରସାଦଙ୍କ କବିତାରେ ଇଲିୟଟଙ୍କ ଚେତନାର ପ୍ରତିଫଳନକୁ ସହଜ ଓ ସ୍ୱାଭାବିକ ଭଙ୍ଗୀରେ ତୁଳନା କରିବାର ଅବକାଶ ହିଁ ତୁଳନାତ୍ମକ ସାହିତ୍ୟ ଶୃଙ୍ଖଳା ଭିତ୍ତିରେ ସଂଭବ ହୋଇପାରିଛି ।

ଅପରପକ୍ଷରେ ଗୋଟିଏ ସାହିତ୍ୟ ଉପରେ ଅନ୍ୟ ଏକ ଭୂଖଣ୍ଡର ସାହିତ୍ୟର ଉପାଦାନ, ବିଷୟ, ଚରିତ୍ର, ଘଟଣା, ଶୈଳୀ ଓ ବର୍ଣ୍ଣନା ପ୍ରଭୃତିର ସମରୁଚିକର ପ୍ରଭାବ କିପରି ସଂଘଟିତ ହୋଇଛି ତାହାକୁ ତୁଳନାତ୍ମକ ସାହିତ୍ୟ ('ପ୍ରଭାବ ପ୍ରକ୍ରିୟା ବିଶ୍ଳେଷଣ' ରୂପରେ) ଦର୍ଶାଇ ଦେଇଥାଏ । ଭାବଗତ, ତଥ୍ୟଗତ ଓ ଆବେଦନଗତ ପ୍ରଭାବର ଉତ୍ସ ସଂଧାନ କରି ତାହା କିପରି ଅନୁସରଣକାରୀ ପରସୂରୀ ଦ୍ୱାରା ନବୀନରୂପ ଲାଭ କରି ମୌଳିକ ହୋଇଉଠିଛି ତାହାକୁ ତୁଳନାତ୍ମକ ସାହିତ୍ୟ ଅଧ୍ୟୟନ ଭିତ୍ତିରେ ଅନୁଭବ କରିହୁଏ । ଏ କ୍ଷେତ୍ରରେ ରାଧାନାଥଙ୍କ ଉପରେ ଓଭିଡ୍‌ଙ୍କର ପ୍ରଭାବ, ଗୁରୁପ୍ରସାଦଙ୍କ କାଳପୁରୁଷରେ ଓ୍ୱେଷ୍ଟଲାଣ୍ଡ୍‌ର ପ୍ରଭାବ, ସବୁଜକବିଙ୍କ ଉପରେ ରବୀନ୍ଦ୍ରନାଥଙ୍କ ପ୍ରଭାବର ବିଚାରକୁ ସଦୃଷ୍ଟାନ୍ତ ନିଆଯାଇପାରେ ।

ସୁତରାଂ ତୁଳନାତ୍ମକ ସାହିତ୍ୟ ଦ୍ୱାରା ପଠନ, ପ୍ରଭାବ, ଅନୁକରଣ, ସ୍ୱୀକରଣ ସୂତ୍ରରେ କିପରି ସାହିତ୍ୟ ସାହିତ୍ୟ ଭିତରେ ଏକରୂପତା ଓ ସାମଗ୍ରିକ ମାନବୀୟ ମୂଲ୍ୟବୋଧର

ଅନୁରୂପତାର ଅଖଣ୍ଡ ନିର୍ମାଣ ସଂଭବ ହୋଇପାରିଛି ଏବଂ ପ୍ରଭାବ ଓ ଅନୁକରଣ ସୂତ୍ରରେ ତୁଳନାତ୍ମକ ସାହିତ୍ୟର ବୈଚିତ୍ର୍ୟ ସଂପାଦିତ ହୋଇଛି ସାରଣୀ- ୧ ମତେ ବିଚାର କରାଯାଇପାରେ–

ତୁଳନାତ୍ମକ-ସାହିତ୍ୟ (ସାରଣୀ-୧)

| ସାଦୃଶ୍ୟମୂଳକ | ପ୍ରଭାବମୂଳକ/ସଂଶ୍ଲେଷଣାତ୍ମକ | ତର୍କଣାମୂଳକ |
|---|---|---|
| ♦ ସମାନ୍ତରାଳ ବିଚାର | ♦ ମୂଳଭାବ/ଚେତନା/ଉପାଦାନର ଅନୁକରଣ | ♦ ସଂଯୋଗୀକରଣ |
| ♦ ସମାନ୍ତରାଳ ଦୃଷ୍ଟିଭଙ୍ଗୀ | ♦ ଅବିକୃତ ଅନୁକରଣ | ♦ ବିଭାବନ ଓ ବିଘଟନ |
| ♦ ସମାନ୍ତରାଳ ବସ୍ତୁବୋଧ | ♦ ବିକୃତ ଅନୁକରଣ | ♦ ନୃତାତ୍ତ୍ୱିକ ଓ ଆବେଗିକ ସଂଯୋଗ |
| ♦ ସମଧର୍ମୀ ବିଷୟ | ♦ ବାହ୍ୟାନୁସରଣ | ♦ ସମାଜତାତ୍ତ୍ୱିକ ସଂଯୋଗ |
| ♦ ଚାରିତ୍ରିକ ସମରୂପତା | ♦ ଅନ୍ତାଃନୁସରଣ | ♦ ମନସ୍ତାତ୍ତ୍ୱିକ ସଂଯୋଗ |
| ♦ ବକ୍ତବ୍ୟର ପ୍ରତିରୂପତା/ ଅନୁରୂପତା | ♦ ଛାୟାନୁସରଣ ଓ ଆରୋପଣ<br>♦ ଆହରଣ (ସ୍ୱୀକରଣ) ନୂତନୀକରଣ | ♦ ଦର୍ଶନତାତ୍ତ୍ୱିକ ସଂଯୋଗ |
| ♦ ସମ-ଆଭିବ୍ୟକ୍ତିକ ଆବେଦନ | ♦ ତୁଲ୍ୟାନୁସଂଧାନ<br>♦ ସାଦୃଶ୍ୟ-ବୈସାଦୃଶ୍ୟ କଥନ | ♦ ଆବେଗିକ ସଂଯୋଗ |
| ♦ ସମକ୍ରିୟା-ପ୍ରତିକ୍ରିୟାତ୍ମକ ଘଟଣା | ♦ ଉତ୍କର୍ଷ-ଅପକର୍ଷ ବିଚାର<br>♦ ପ୍ରତିଭା ଔଚିତ୍ୟ କଳନା | ♦ ସିଦ୍ଧାନ୍ତମୂଳକ ସଂଯୋଗ |
| ♦ ଶୈଳୀଗତ ଓ ସ୍ୱର-ସମ୍ବନ୍ଧ ବିଚାର | ♦ ନିୟାମକ ଓ ନିୟମାନୁସାରୀ ବିଚାର | ♦ ଆନ୍ତଃଶାସ୍ତ୍ରୀୟ ତର୍କଣା ଓ ସଂଯୋଗ |
| ♦ ମହାଜାଗତିକ ସତ୍ୟ ପ୍ରତି ସମାନୁପାତିକ ଦୃଷ୍ଟି | ♦ ଭାବପ୍ରଭାବକ ଓ ଭାବଗ୍ରହିତା ବିଚାର | ♦ ଆନ୍ତଃସାଂସ୍କୃତିକ ବିଚାର<br>♦ ସମାନୁଭୂତି ତର୍କଣା |

ଉପରୋକ୍ତ ଦିଗଗୁଡ଼ିକୁ ମୁଖ୍ୟ ସାଧନ ଭାବରେ ଗ୍ରହଣ କରି ତୁଳନାତ୍ମକ ସାହିତ୍ୟ ଲେଖା-ଲେଖା ଭିତରେ ଶବ୍ଦ-ବାକ୍ୟ-ବକ୍ତବ୍ୟର ଅନୁରୂପତାକୁ ପର୍ଯ୍ୟାଲୋଚନା କରିବା ଉପରେ ବିଶେଷ ଗୁରୁତ୍ୱ ନ ଦେଇ ବରଂ ଲେଖାଲେଖା ଭିତରେ ଥିବା ଜୀବନବୋଧ ଓ ସୌନ୍ଦର୍ଯ୍ୟବୋଧର ନିକଟ ସଂଯୋଗକୁ ଦେଖାଇଦେବା ଉପରେ ଅଧିକ ଧ୍ୟାନ ଦେଇଥାଏ।

**ଆହରଣ/ସ୍ୱୀକରଣ/ଗ୍ରହଣ/ପ୍ରତ୍ୟାଖ୍ୟାନ :-**

ତୁଳନାତ୍ମକ ସାହିତ୍ୟ ଜଣେ ଲେଖକ ଅନ୍ୟ ଭାଷାର ଲେଖାରୁ କେତେ ଗ୍ରହଣ କରିଛି, ଆହରଣର ମୌଳ ମନୋଭାବଟି କେଉଁକେଉଁ ଦିଗକୁ ଗୁରୁତ୍ୱ ଦେଇଛି (ରୂପ, ପ୍ରକୃତି, ଚରିତ୍ର, ଘଟଣା, ଶୈଳୀଭିତ୍ତିକ ଦିଗ) ମୂଳ ଲେଖାରୁ ସେ କ'ଣ କାହିଁକି ପ୍ରତ୍ୟାଖ୍ୟାନ କରିଛି, ନିଜ ବିଶ୍ୱାସ-ପରଂପରା-ଭୂମିବୋଧ ମଧ୍ୟରେ ଆରୋପ ଓ ଆତ୍ମୀକରଣ କିପରି କରିଛି; ସେହିସବୁ ଦିଗପ୍ରତି ସଚେତନ ରହି ସାହିତ୍ୟ-ସାହିତ୍ୟ ଭିତରେ ଥିବା ସମ୍ବନ୍ଧର ନିବିଡ଼ତାକୁ ଆକଳନ କରିଥାଏ।

ବ୍ୟାସଙ୍କ ମହାଭାରତର ଗୀତା ପର୍ଯ୍ୟାୟକୁ ସାରଳା ପ୍ରତ୍ୟାଖ୍ୟାନ କରିବା, ବ୍ୟାସଙ୍କ ଚରିତ୍ରର ଦିବ୍ୟବୋଧ ଓ ଧର୍ମନିଷ୍ଠାକୁ ସାରଳା ଚରିତ୍ର ଚିତ୍ରଣ ଅବକାଶରେ ପରିତ୍ୟାଗ କରି ଭୂମିବାଦୀ ବାସ୍ତବତା ଭିତରେ ରୂପାୟନ କରିବା, ଅଥଚ ବ୍ୟାସଙ୍କ ଶ୍ରୀମଦ ଭାଗବତ ମହାପୁରାଣର ଆଲୌକିକ ଗାମ୍ଭୀର୍ଯ୍ୟକୁ ଜଗନ୍ନାଥ ଦାସ ସ୍ୱୀକରଣ କରିବା, ରାଧାନାଥ ଓଭିଡ୍, ମିଲିଟନ, ମଧୁସୂଦନ ଦତ୍ତ ଓ ଟେନିସନଙ୍କୁ ଓଡ଼ିଶୀ ସଂସ୍କରଣରେ ରୂପାନ୍ତରିତ କରିଦେବା ବିଷୟଗୁଡ଼ିକୁ ଏଠାରେ ଉଦାହରଣପୂର୍ବକ ଗ୍ରହଣ କରାଯାଇପାରେ।

**ସାଦୃଶ୍ୟ, ବୈସାଦୃଶ୍ୟ ଓ ସମାନ୍ତରାଳ ଅଧ୍ୟୟନ :-**

ବିଭିନ୍ନ ଭାଷାର ସାହିତ୍ୟକୃତି ସାହିତିକଙ୍କ ସୃଜନଶୀଳ ମନୋଭାବ ମଧ୍ୟରେ ଥିବା ସାମଞ୍ଜସ୍ୟକୁ ବିଷୟବିନ୍ୟାସ, ବକ୍ତବ୍ୟ, ଦର୍ଶନ, ଆବେଦନ ଶୈଳୀ, ଆଦର୍ଶ, ଚରିତ୍ର ଓ ମାନବୀୟ ବୃତ୍ତି-ପ୍ରବୃତ୍ତି ଦିଗରୁ ବିଚାର କରି ଅନୁରୂପତା ପ୍ରଦର୍ଶନ ଓ ପ୍ରମାଣିତ କରିବା ତୁଳନାତ୍ମକ ସାହିତ୍ୟର ଅନ୍ୟତମ ବୈଶିଷ୍ଟ୍ୟ। ଭୌଗୋଳିକ ପ୍ରତିବେଶୀୟ ସଂପର୍କ, ଶାସକ-ଶାସିତ ସଂପର୍କ, ବାଣିଜ୍ୟିକ ସଂପର୍କ, ସାଂସ୍କୃତିକ ସଂପର୍କ, ଆଧ୍ୟାତ୍ମିକ ସଂପର୍କ ଓ ସହଜାତ ମାନବୀୟ ପ୍ରବୃତ୍ତିର ସଂପର୍କ କାରଣରୁ ସାହିତ୍ୟ ସାହିତ୍ୟ ଭିତରେ ମିଳନର ଉଦାରଭାବ ସାଦୃଶ୍ୟ ସଂଘଟିତ ହୋଇଥାଏ। ଏହି ମିଳନାତ୍ମକ ସାଦୃଶ୍ୟବୋଧଗୁଡ଼ିକୁ ଦେଖାଇଦେଇ ସାହିତ୍ୟ-ସାହିତ୍ୟ ଭିତରେ ଥିବା ଅଭେଦତ୍ୱକୁ ନିର୍ଦ୍ଦିଷ୍ଟ କରିବା ତୁଳନାତ୍ମକ ସାହ୍ୟିର ଅନ୍ୟତମ ଭୂମିକା। ପୁନଶ୍ଚ, ଏକ ସମୟଚକ୍ର ଏକ ଘଟଣାବୃତ୍ତରେ ଥାଇ ବି ସାହିତ୍ୟ ସାହିତ୍ୟ ଭାବବାଦୀ ଦର୍ଶନ ଓ ବସ୍ତୁବାଦୀ ଦର୍ଶନ କ୍ରମେ ବିଭିନ୍ନ ହୋଇଯାଏ। ଏପ୍ରକାର ବୈସାଦୃଶ୍ୟ ବିଲକ୍ଷଣକୁ ତର୍ଜମା କରିବା ମଧ୍ୟ ତୁଳନାତ୍ମକ ସାହିତ୍ୟର ଆନୁସଙ୍ଗିକ ପ୍ରସଙ୍ଗ। ଏହି ମର୍ମରେ ଡ଼ାଁ ଟେଗ୍ହମ୍ ଯଥାର୍ଥରେ କହିଛନ୍ତି– ବିଭିନ୍ନ ସାହିତ୍ୟ ପଠନ ଓ ଗୋଟିଏ ସହିତ ଅନ୍ୟର ନିହତ

ସାଦୃଶ୍ୟ-ବୈସାଦୃଶ୍ୟ ଅନୁଶୀଳନ ଦ୍ୱାରା ତୁଳନାତ୍ମକ ସାହିତ୍ୟ ବିଶ୍ୱର ପାଠକବର୍ଗଙ୍କୁ ଭିନ୍ନ ଭୂଗୋଳଜ୍ଞାନୀ କରିପାରିଛି ।

ତୁଳନାତ୍ମକ ସାହିତ୍ୟର ଅନ୍ୟତମ ବିଶେଷତ୍ୱ ହେଉଛି ସମାନ୍ତରାଳ ଅଧ୍ୟୟନ (parallal study) । ତୁଳନାତ୍ମକ ସାହିତ୍ୟ ବିଶ୍ୱାସ କରେ ଯେ କାଳାନୁକ୍ରମିକ ମାର୍ଗରେ ଗତି କରୁଥିବା ଅବସ୍ଥାରେ ଏକାଧିକ ଭାଷା-ସଂସ୍କୃତିର ସ୍ରଷ୍ଟାଗଣ ସମକାଳରେ ବା ବିଷମ କାଳରେ ଜ୍ଞାତ-ଅଜ୍ଞାତସାରରେ ଏବଂ ବୟକ୍ତିକ ଦୃଷ୍ଟିଭଙ୍ଗୀର ସମବୋଧ ଅନୁସାରେ ସେମାନଙ୍କର ଚିନ୍ତାଧାରା, ବକ୍ତବ୍ୟ, ଚରିତାୟନ, ଘଟଣା ସଂଯୋଜନା ଭିତରେ ସାଧାରଣ ମାନବିକ ଆବେଦନର ସମତାଗୁଣ ବିଦ୍ୟମାନ ଥାଏ । ତୁଳନାତ୍ମକ ସାହିତ୍ୟ ବିଧାନ ଏହି ସମତାକୁ ସମାନ୍ତରାଳ ଭଙ୍ଗୀରେ ଦେଖାଇ ଦେଇଥାଏ । ଏହି ପରିପ୍ରେକ୍ଷରେ ରବୀନ୍ଦ୍ର ସମକାଳରେ ସମଗ୍ର ଭାରତୀୟ ସାହିତ୍ୟରେ ରୋମାଣ୍ଟିକ୍ ରହସ୍ୟବାଦୀ ଚେତନାର ପ୍ରବହମାନତାକୁ, ମାର୍କସଙ୍କ ଚେତନା ଦ୍ୱାରା ଅନୁପ୍ରାଣିତ ପ୍ରଥମ ବିଶ୍ୱଯୁଦ୍ଧୋତ୍ତର ବାସ୍ତବବାଦୀ ସାହିତ୍ୟର ଧାରାକୁ, ସାର୍ତ୍ରେ-ନିତ୍‌ସେ-କାଫ୍‌କା-କିର୍କଗାର୍ଡଙ୍କ ସଂସ୍ଥିତିଶୀଳ ଅବବୋଧ ଅନୁପ୍ରାଣିତ ବିଶ୍ୱ ସ୍ଥିତିବାଦୀ ଚେତନାର ସାହିତ୍ୟ କୃତିଗୁଡ଼ିକୁ ଅଥବା ଫ୍ରୟେଡ ଓ ୟଙ୍ଗ୍‌ଙ୍କ ମନୋବିଶ୍ଳେଷଣାତ୍ମକ ସିଦ୍ଧାନ୍ତ ଭିତ୍ତିରେ ପରିକଳ୍ପିତ ସମଗ୍ର ମାନବଜାତିର ମନସ୍ତାତ୍ତ୍ୱିକ ଚେତନାଶ୍ରିତ କଳାକୃତିଗୁଡ଼ିକୁ ସମାନ୍ତରାଳ ଅଧ୍ୟୟନ କରିବାଦ୍ୱାରା ମାନବୀୟ ପ୍ରତ୍ୟୟଗୁଡ଼ିକ ଅନ୍ତଶ୍ଚେତନାରେ କେତେ ପାରସ୍ପରିକ ସମ୍ବନ୍ଧରେ ଅନୁବନ୍ଧିତ ସହଜରେ ଅନୁଭବ କରିହୁଏ ।

ଏଦୃଷ୍ଟିରୁ ତୁଳନାତ୍ମକ ସାହିତ୍ୟ ଅଖଣ୍ଡ ବିଶ୍ୱସାହିତ୍ୟ ପରିକଳ୍ପନା ଅବକାଶରେ ସାଦୃଶ୍ୟ ଓ ସମାନ୍ତରାଳ ବିଚାର ଯୋଗ୍ୟତା ରଖିଥିବା ସମ୍ବେଦନଶୀଳ ପାଠକବୃତ୍ତି ଲୋଡ଼ିଥାଏ । ସାଦୃଶ୍ୟ ଓ ସମାନ୍ତରାଳ ଅଧ୍ୟୟନ ନିମନ୍ତେ ତୁଳନାତ୍ମକ ସାହିତ୍ୟ ଚର୍ଚ୍ଚାରେ ତୁଳନାଯୋଗ୍ୟ ସମଭୂମିର ଆବଶ୍ୟକ ପଡେ । ଭାବ-ରୂପ-ଚେତନା ସମ୍ବଳିତ· ତୁଲ୍ୟ ଦେହୀ ସମଭୂମିରେ ରହି ଲେଖାଲେଖା/ଲେଖକ ଲେଖକଙ୍କୁ ବିଚାର କଲା ସମୟରେ କିଏ ପ୍ରଭାବିତ– କିଏ ବିକଳ୍ପ ଉତ୍ସଟିଏ ଅନୁସରଣକରି କଳ୍ପନା କରିଛି କି ଆରୋପିତ କରିଛି, ନିଜର ସ୍ୱାତନ୍ତ୍ର୍ୟ ଓ ମୌଳିକତା କି ପ୍ରକାର ନିର୍ମାଣ କରିଛି ଏବଂ ଉଭୟ ମଧ୍ୟରେ କି ଭଳି ଅନ୍ତଃରୀଣ ସଂଯୋଗ ଅଭିସୂତ୍ରିତ ରହିଛି ତାହାର ବିବେଚନା ଅତ୍ୟନ୍ତ ଜରୁରୀ । ନଚେତ୍ ତୁଳନାତ୍ମକ ସାହିତ୍ୟ ତା'ର ମୂଳ ପ୍ରୟୋଜନୀୟ କେନ୍ଦ୍ରରୁ ଦୂରେଇଯାଇ କେବଳ ଦୋଷଦର୍ଶୀ ଓ ଖଣ୍ଡନଧର୍ମୀ ମେଳକ ପ୍ରଦର୍ଶନ ତଥା ଚୌର୍ଯ୍ୟବୃତ୍ତିର ସାରତ୍ୱ ନିରୂପଣର ପ୍ରସଙ୍ଗ ହୋଇଯିବାର ଯଥେଷ୍ଟ ସଂଭାବନା ରହିଛି । ତୁଳନାତ୍ମକ ସାହିତ୍ୟ ଆଧାରଭୂମିକୁ ନିମ୍ନମତେ ବିଚାର କରାଯାଇପାରେ ।

## ତୁଳନାତ୍ମକ-ସାହିତ୍ୟର ଭୂମିସତ୍ତା (ସାରଣୀ-୨)

| ସମଗୋତ୍ରୀୟଭୂମି | ଭୌଗୋଳିକ ଭୂମି | କାଳାଶ୍ରୟୀଭୂମି | ସାଂସ୍କୃତିକ ଭୂମି |
|---|---|---|---|
| ଭୌତିକ, ଆଧିଭୌତିକ, ମାନସିକ ଓ ସହଜାତ ପ୍ରବୃତ୍ତି ଭିତ୍ତିକ ମାନବୀୟ ଗୁଣରାଜି ଉପରେ ତୁଳନା ଆଶ୍ରିତ ହୋଇପାରେ। | ଆଞ୍ଚଳିକତା, ପ୍ରାଦେଶିକତା, ପ୍ରତିବେଶୀ ସଂପର୍କ, ଏକଦେଶିକତା ଓ ବହୁଦେଶିକତା ପୃଷ୍ଠଭୂମିରେ ସାହିତ୍ୟର ମେଳ ବିଚାର କରାଯାଇପାରେ। | କାଳାନୁକ୍ରମିକ ତୁଳନା। ସମକାଳୀନ ସାହିତ୍ୟର ତୁଳନା ସାଂପ୍ରତିକ ବିଚାରରେ ତୁଳନା। ଉପନିବେଶ ଓ ଉପନିବେଶୋତ୍ତର ସାହିତ୍ୟ ତୁଳନା। | ମିଶନାରୀ/ପାତ୍ରୀ/କାଥୋଲିକ/ ମହମ୍ମଦିଆନ୍/ବୈଦିକ/ବୌଦ୍ଧ-ଜୈନ-ବୈଷ୍ଣବ-ସୁଫି ସାହିତ୍ୟ ତୁଳନା। |
| ନୃତତ୍ତ୍ୱ, ସମାଜତତ୍ତ୍ୱ, ମନସ୍ତତ୍ତ୍ୱ, ଦର୍ଶନ, ବୌଦ୍ଧିକ> ସ୍ୱଚ୍ଛନ୍ଦ> ବାସ୍ତବ> ସ୍ଥିତିବାଦ ଆଦି ତତ୍ତ୍ୱ ଭିତ୍ତିରେ ତୁଳନା ପର୍ଯ୍ୟବସିତ ହୋଇପାରେ। | ଆଫ୍ରୋ-ଆମେରିକୀୟ, ଏସୀୟ-ୟୁରୋପୀୟ, ଇଣ୍ଡୋୟୁରୋପୀୟ, ଏସୀୟ-ଅଷ୍ଟ୍ରେଲୀୟ, ପ୍ରାଚ୍ୟ-ପାଶ୍ଚାତ୍ୟ ମିଳିତ ରାଜ୍ୟଗୋଷ୍ଠୀୟ, ଋଷୀୟ-ଜର୍ମାନୀୟ ଓ ଆଂଗ୍ଲୋ-ଇଣ୍ଡିୟାନ୍ ଇତ୍ୟାଦି ଭୂମିବୋଧ ବିଚାରରେ ସାହିତ୍ୟ ସମ୍ବନ୍ଧ ନିରୂପଣ କରାଯାଇପାରେ। | ରାଜତନ୍ତ୍ରୀୟ ଓ ଗଣତାନ୍ତ୍ରିକ ବ୍ୟବସ୍ଥାର ସାହିତ୍ୟ-ତୁଳନା। ପ୍ରାଚୀନ-ମଧ୍ୟଯୁଗୀୟ-ଆଧୁନିକ ସାହିତ୍ୟର ତୁଳନା। ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ସ୍ୱାଧୀନତୋତ୍ତର ସାହିତ୍ୟ ତୁଳନା। | ତନ୍ତ୍ର ସାହିତ୍ୟ/ସନ୍ଥସାହିତ୍ୟ/ନଦୀ ସଂସ୍କୃତିର ସାହିତ୍ୟ/ପଲ୍ଲୀ ସାହିତ୍ୟ/ସହରୀ ସାହିତ୍ୟ/ଅଷ୍ଟିକ ସାହିତ୍ୟ/ଦଳିତ ସାହିତ୍ୟ/ ଦରବାରୀ ସାହିତ୍ୟ ଆଦି ଭିତରେ ମେଳ ସଂଧାନ। |
| ଆଧୁନିକତା, ପାରଂପରିକତା, ଯୁକ୍ତିପ୍ରବଣତା, ନୈତିକ ମୂଲ୍ୟବୋଧ, ରାଜନୀତିକ ଅବବୋଧ ଦିଗରୁ ତୁଳନା କରାଯାଇପାରେ। | ହିମମଣ୍ଡଳୀୟ, ଗ୍ରୀଷ୍ମ ମଣ୍ଡଳୀୟ, ଦ୍ୱୀପାଂଚଳୀୟ, ପ୍ରଶାନ୍ତ ମହାସାଗରୀୟ, ଆଦି ପାରିପାର୍ଶ୍ୱିକ ସମତାର ଭୂମିବୋଧକୁ ନେଇ ତୁଳନା କରାଯାଇପାରେ। | ମୋଗଲ/ମରହଟ୍ଟା/ବ୍ରିଟିଶ୍ କାଳୀନ ସାହିତ୍ୟ। ନବଜାଗରଣର ପୃଷ୍ଠଭୂମିର ସାହିତ୍ୟ ତୁଳନା। ଯୁଦ୍ଧୋତ୍ତର ସାହିତ୍ୟ। | |
| ସମ ଆବେଦନର ଘଟଣା, ସମସ୍ୟା ଓ ପାରିପାର୍ଶ୍ୱିକତାକୁ ଆଧାର କରି ତୁଳନା ଆକଳନ ହୋଇପାରେ। | | ଷୋଡ଼ଶ/ସପ୍ତଦଶ/ଅଷ୍ଟାଦଶ/ବିଂଶାଦି ଇତିହାସ ପୃଷ୍ଠଭୂମିର ସାହିତ୍ୟ ତୁଳନା।...ଇତ୍ୟାଦି | |

(ତିନି)

ତୁଳନାତ୍ମକ ସାହିତ୍ୟର ପରିସର:-

ସମାଜ ବିଜ୍ଞାନ, ନୃତତ୍ତ୍ୱ, ମନସ୍ତତ୍ତ୍ୱ, ଦର୍ଶନ, କଳା, ଇତିହାସ ଓ ବିଜ୍ଞାନ ସହିତ ଲୋକ ସଂସ୍କୃତିର ଭାବପିଣ୍ଡକୁ ଅବଲମ୍ବନ କରି ତୁଳନାତ୍ମକ ସାହିତ୍ୟର ପରିସର ବ୍ୟାପକ। ତୁଳନାତ୍ମକ ସାହିତ୍ୟ ପ୍ରମାଣ କରିଛି ସାହିତ୍ୟ ମାଧ୍ୟମରେ ଆନ୍ତର୍ବିଦ୍ୟାର ପ୍ରତିଫଳନ ଘଟିଥାଏ। ବିଶ୍ୱର ପ୍ରତ୍ୟେକ ସ୍ଥଳର ପ୍ରତ୍ୟେକ ବିଦ୍ୟାର ସାରତତ୍ତ୍ୱକୁ ନେଇ ସାହିତ୍ୟ ସାହିତ୍ୟ ଭିତରେଏକ ଅଣୁରୂପୀୟ ଯୋଗସୂତ୍ର ରହିଛି। ଅନ୍ୟ ସାହିତ୍ୟ ଭିତରେ ନିଜର ଅବବୋଧମାନଙ୍କୁ ଦେଖି ପାଠକର ଜୀବନ ଦୃଷ୍ଟି ବିସ୍ତାରିତ ହୋଇଯାଏ ଓ ଜ୍ଞାନଶକ୍ତି ପ୍ରବୋଧିତ ହୋଇଉଠେ। ସୀମାବଦ୍ଧତାରୁ ପାଠକ ମୁକ୍ତ ହୋଇଯାଏ, ପାଠକୀୟ ବ୍ୟକ୍ତିସତ୍ତାଟି ବିଶ୍ୱବ୍ୟକ୍ତିରେ ରୂପାନ୍ତରିତ ହୋଇଯାଏ। ମୁଖ୍ୟତଃ ତିନୋଟି ଆଲମ୍ବନ ସତ୍ତାକୁ କେନ୍ଦ୍ରକରି ତୁଳନାତ୍ମକ ସାହିତ୍ୟର ପରିସର ନିରୂପିତ ହୋଇଥାଏ। ଯଥା–




(କ) ପ୍ରଥମ ସତ୍ତା :– ପ୍ରଥମେ ଯେକୌଣସି ଦେଶ କାଳ ପାତ୍ର ସମ୍ବନ୍ଧୀ ଲେଖକ ଜଗତ-ଜୀବନ-ପରଂପରା-ମାନବୀୟ ସହଜାତ କ୍ରିୟା ପ୍ରତିକ୍ରିୟାକୁ ଆଶ୍ରୟ କରି ବ୍ୟକ୍ତିସାପେକ୍ଷ ଅନୁଭୂତିର ବୀଜଟିଏ ମାନସିକ-ଭାବନାସ୍ତରରେ ବପନକରେ ଏବଂ ପରେ ଯୁକ୍ତି, ଆଧାର-ନିରାଧାର ତର୍କଣା, ସତ୍ୟ-ଅସତ୍ୟର ମୂଲ୍ୟାୟନ ଦେଇ ନୈର୍ବ୍ୟକ୍ତିକ ରୂପାୟନ ଦେଇଥାଏ। ତେଣୁ ଚିରାୟତ କଳାଗୁଣର ବଳିଷ୍ଠ କୃତିଗୁଡ଼ିକରେ ଲେଖକୀୟ ପ୍ରତ୍ୟୟ ସାମୁଦାୟିକ ପ୍ରତ୍ୟୟରେ ସୂକ୍ଷ୍ମତ ରୂପାନ୍ତରିତ ହୋଇସାରିଥାଏ।

(ଖ) **ଦ୍ୱିତୀୟ ସତ୍ତା :–** ଦ୍ୱିତୀୟ ସତ୍ତାଟି ଅପରପର ବିଚାର ଉର୍ଦ୍ଧ୍ୱରେ ଆତ୍ମଆଶ୍ୱସ୍ତି ପାଇବାପାଇଁ ସାହିତ୍ୟକୃତିଟିକୁ ସାପେକ୍ଷ ଦୃଷ୍ଟି ଦେଇ ନିଜ ଆଗ୍ରହରେ ମୁକ୍ତମନା ହୋଇ ପାଠକରେ। ଏହି ସତ୍ତାଟି ନିରୁତା ଭାବାମୋଦୀ ପାଠକୀୟ ବା ଗ୍ରାହକ ସତ୍ତା। ବହୁ ଶାସ୍ତ୍ରୀୟ ଜ୍ଞାନ, ବହୁଭାଷୀ ଦକ୍ଷତା ଅଥବା ଅନୁବାଦ ପ୍ରୟାସ ମାଧମରେ ଭିନ୍ନଭାଷୀ ଗ୍ରନ୍ଥଟିକୁ ବାରମ୍ବାର ପାଠକରି- ପାଠ ଭିତରେ ଥିବା ଲେଖକର ମନୋଭୂମିରୁ ସଂଜାତ ଅଣୁରୂପ ସହିତ ଯୋଗସୂତ୍ର ସ୍ଥାପନ କରେ ଓ ନିଜ ମାଟିବୋଧର ସାହିତ୍ୟ ଭିତରେ ତାହାକୁ ଖୋଜିବସେ।

(ଗ) **ତୃତୀୟ ସତ୍ତା :–** ଲେଖା-ଲେଖା, ଲେଖକ-ଲେଖକ (ନିଜ ଭାଷାର ଲେଖା ଓ ଅନ୍ୟଭାଷାର ଲେଖା / ନିଜ ସମକାଳର ଅଥବା ବିଷମକାଳର ଦୁଇ ଭିନ୍ନ ଲେଖକର ଲେଖା) ଭିତରେ ତୁଳନା କରି ମାନବୀୟ ଉପଲବ୍ଧିର ସ୍ୱାଭାବିକ ବୀଜୀସତ୍ୟକୁ ଦେଖି ଦେଖାଇ ଦେବାର ସାମର୍ଥ୍ୟ ରଖିଥିବା ନିରପେକ୍ଷ ସମାଲୋଚକର ସତ୍ତା।

ତୁଳନା ପ୍ରକ୍ରିୟାଟି ତିନୋଟିସ୍ତର ଦେଇ ଅଭିବ୍ୟକ୍ତି ଲାଭ କରିଥାଏ। ପ୍ରଥମ ସ୍ତରରେ 'ଲେଖକ' 'କ' ଦୃଶ୍ୟମାନ ବାସ୍ତବତାକୁ କଳ୍ପନା ବଳରେ କଳାତ୍ମକ ବାସ୍ତବତାରେ ଚିତ୍ର ସାଦୃଶ୍ୟ ଅଭିବ୍ୟକ୍ତି ଦେଇଥା'ନ୍ତି ଯାହାର ଅପର ସମାଖ୍ୟା 'ସୃଜନାଭିବ୍ୟକ୍ତି'। ଦ୍ୱିତୀୟ ସ୍ତରରେ ସହୃଦୟ ପାଠକ 'ଖ' ନିଜର ପଠନ କର୍ମ ମଧ୍ୟରେ ନିଜସ୍ୱ ବିଶ୍ୱାସ ଓ ଅନୁଭୂତି କ୍ରମେ ସେଥିରୁ ଅନୁରୂପତା (ପୂର୍ବ ପ୍ରସିଦ୍ଧ ସହିତ ସାଦୃଶ୍ୟଥିବା ଉପଲବ୍ଧି) ଖୋଜି ଲୋଡି ନେଇଥାଏ, ଏହାକୁ ଗ୍ରହୀତା-ଭୋକ୍ତି କୁହାଯାଇପାରେ। ତୃତୀୟ ସ୍ତରରେ ପାଠକୀୟ ସତ୍ତା/ 'ଖ' ନିଜକୁ ସମାଲୋଚକ ସତ୍ତା/'ଗ' ଭୂମିକାରେ ରୂପାନ୍ତରିତ କରାଇ ନିଏ। 'କ'ର ଧାରଣ 'ଖ' ସହିତ ମିଳୁଛି। ପାଠକ ଭାବରେ 'ଖ' ପୂର୍ବରୁ 'କ' ବ୍ୟତୀତ କ$_{୧}$- କ$_{୨}$- କ$_{୩}$- କ$_{୪}$ - କ$_{୫}$ ପ୍ରମୁଖଙ୍କ ଲେଖାକୁ ପାଠ କରିଛି। 'ଖ' ପରି ଖ$_{୧}$, -ଖ$_{୨}$ -ଖ$_{୩}$ - ଖ$_{୪}$ ପ୍ରମୁଖ କ/କ$_{୧}$/କ$_{୨}$/କ$_{୩}$ ପ୍ରମୁଖଙ୍କ ଲେଖା ପଢ଼ିଛନ୍ତି। ଭିନ୍ନ ଭିନ୍ନ ଅର୍ଥସିଦ୍ଧାନ୍ତ, ଘଟଣା ବୃତ୍ତ, ଆବେଗ, ଚରିତ୍ର, ମାନସିକତା, ବକ୍ତବ୍ୟ ସତ୍ତ୍ୱେ 'ଖ' ସମୁଦାୟଙ୍କ (ପାଠକ$_{୧}$/ ପାଠକ$_{୨}$/ ପାଠକ$_{୩}$ ଇତ୍ୟାଦି) ଧାରଣା 'କ' ସମୁଦାୟଙ୍କ ସୃଜନସ୍ୱର ସମ୍ବନ୍ଧରେ (ଲେଖକ$_{୧}$/ଲେଖକ$_{୨}$/ ଲେଖକ$_{୩}$ ଅଥବା ଲେଖା$_{୧}$/ଲେଖା$_{୨}$/ଲେଖା$_{୩}$କୁ ଆଧାର କରି) ବହୁ ସାଦୃଶ୍ୟ ଓ ସମାନୁପାତିକତା ଉପରେ ନିର୍ଭର ଓ ପ୍ରତିଷ୍ଠା କରିଛି। 'ଗ' ଭୂମିକାରେ ସମାଲୋଚନାର ଦାୟିତ୍ୱ ସଂପାଦନ କରିବାକୁ ଯାଇ 'ଖ' ତାହାର ପାଠକୀୟ ସିଦ୍ଧାନ୍ତରେ ପହଞ୍ଚିଛି ଯେ ତା' ପରି ଯେକୌଣସି ସ୍ତରର, କାଳର, ଅବସ୍ଥାର ପାଠକ 'କ' ସମୂହଙ୍କ ଭିତରେ ସମଭାବାପନ୍ନ

ସାର୍ବଜନୀନ ମାନବୀୟ ବୃତ୍ତି - ଅନୁବୃତ୍ତି - ପ୍ରବୃତ୍ତିର ମେଳକ ସଂପାତକୁ ସନ୍ଦର୍ଶନ କରିପାରିବେ। ଏଠାରେ ପ୍ରତିପାଦନ ଯୋଗ୍ୟ - ମୋର ସାହିତ୍ୟ, ମୋ ଧର୍ମ ସାହିତ୍ୟ, ମୋ କାଳର ସାହିତ୍ୟ, ମୋ ଭାଷା ଓ ଜାତିର ସାହିତ୍ୟ, ମୋ ଦେଶର ସାହିତ୍ୟ ହୋଇଥିବାରୁ ଗୁଣାତ୍ମକ ଓ ତାହା ଅନ୍ୟର ସଂସ୍କୃତି - ସମାଜ - ପରଂପରାର ସାହିତ୍ୟ ଠାରୁ ଉତ୍କର୍ଷ - ଏପ୍ରକାରର ସାପେକ୍ଷିକ ବିଚାରର ବଶବର୍ତ୍ତୀ ହେଲେ 'ଖ'/ସହୃଦୟ ପାଠକଟି ଠାରେ ତୁଳନାତ୍ମକ ସାହିତ୍ୟର 'ପାଠକ-ସମାଲୋଚକ' ମୋହର ଲାଗିବା ସଂଭବ ହେବନାହିଁ।

ଅବଶ୍ୟ ତୁଳନାତ୍ମକ ସାହିତ୍ୟ ଭିନ୍ନ ଭିନ୍ନ ଭୂଖଣ୍ଡ ଓ ଭାଷାଭାଷୀ ସାରସ୍ୱତ-ଭାବଜୀବୀଙ୍କ ମଧ୍ୟରେ ମେଳବିଧାନକୁ ମୁଖ୍ୟତଃ ସମର୍ଥନ କରିଆସିଛି। ସହଧର୍ମୀ ଭାବମେଳଣର କ୍ଷେତ୍ର ବାଙ୍ମୟ ପରଂପରାର ପରିଧିରେ ଭାବସମ୍ମେଳନର ବୈଚିତ୍ର୍ୟକୁ ନେଇ ତୁଳନାତ୍ମକ ସାହିତ୍ୟର ପରିସରରେ ଚାରିପକାର ପ୍ରଜାତି ଭେଦ ନିରୂପିତ ହୋଇଛି। ଯଥା-

(କ) ଏକ ଭାଷାଶ୍ରିତ ସାହିତ୍ୟର ତୁଳନା।

(ଖ) ଭିନ୍ନଭିନ୍ନ ଭାଷା ସାହିତ୍ୟ ମଧ୍ୟରେ ପ୍ରଭାବ ଓ ପ୍ରତିରୂପତା ଆକଳନ।

(ଗ) ଦୁଇ ବା ତହିଁରୁ ଅଧିକ ସାହିତ୍ୟ/ସ୍ରଷ୍ଟା ମଧ୍ୟରେ ସାମ୍ୟ-ଦର୍ଶନ।

(ଘ) ସମକାଳୀନ ଓ ବିଷମ କାଳୀନ ସାହିତ୍ୟ ମଧ୍ୟରେ ତୁଳନା ଓ ସାଦୃଶ୍ୟ ପ୍ରଖ୍ୟାପନ।

(କ) ଏକ ଭାଷାଶ୍ରିତ ସାହିତ୍ୟ ସାହିତ୍ୟ ମଧ୍ୟରେ ସାଦୃଶ୍ୟ ଓ ମେଳ ସଂଧାନ ସମତାଧର୍ମୀ ସମାଲୋଚନା ବା ଅଧ୍ୟୟନର ପରିଚାୟକ ଭାବରେ ତୁଳନାତ୍ମକ ସାହିତ୍ୟଶାସ୍ତ୍ରୀମାନେ ବିଚାର କରି ଆସିଛନ୍ତି। ମାତ୍ର ଯୁଦ୍ଧୋତ୍ତର ଓ ଜଗତୀକରଣ ମୂଲ୍ୟବୋଧ ପ୍ରତି ବିଶ୍ୱସ୍ତ ସମୟଖଣ୍ଡରେ ଗୋଟିଏ ଭାଷା ଅନ୍ତର୍ଗତ ସାହିତ୍ୟ ସୃଷ୍ଟି-ସୃଷ୍ଟିକୁ/ସ୍ରଷ୍ଟା-ସ୍ରଷ୍ଟାଙ୍କୁ ଆଉ ବିଶ୍ୱବୋଧ ଠାରୁ ଭିନ୍ନାଂଶ କରି ଭାବିବାର ଭେଦଦୃଷ୍ଟି ସଂପ୍ରତି ଅପସୃୟମାଣ ହୋଇପଡ଼ିଛି। ଏହି କ୍ରମେ ଗୋଟିଏ ଭାଷାର ସମକାଳୀନ/ବିଷମକାଳୀନ ଲେଖକ-ଲେଖକ, ଲେଖା-ଲେଖା ମଧ୍ୟରେ ପ୍ରବୃତ୍ତି, ଯୁଗଧର୍ମ, ଭାବସମତା, ସ୍ୱରସମତା, ଶୈଳୀତର୍କଣା, ଚିତ୍ର-ଚରିତ୍ର ମୀମାଂସା ଦିଗରୁ ତୁଳନା କରାଯାଇପାରେ। ଯଥା– ଶୂନ୍ୟବାଦୀ ଧାରଣା ଦିଗରୁ ଅଚ୍ୟୁତାନନ୍ଦ ଓ ଭୀମଭୋଇ, ସୌନ୍ଦର୍ଯ୍ୟ ଓ ପ୍ରକୃତି ଚିତ୍ରଣ ଦିଗରୁ ରାଧାନାଥ, ଗଙ୍ଗାଧର, ମାନସିଂହ, ପଲ୍ଲୀଚେତନା ରହସ୍ୟବାଦୀ ଚେତନା ଦିଗରୁ ନନ୍ଦକିଶୋରଙ୍କର ଗ୍ରାମ୍ୟ ହାଟ, ସଚ୍ଚିଦାନନ୍ଦଙ୍କ ଛୋଟ ମୋର ଗାଁଟି/ଗ୍ରାମଖଳା/ଲକ୍ଷ୍ମୀକାନ୍ତ-କୁନ୍ତଳାକୁମାରୀ-ବୈକୁଣ୍ଠନାଥ, କୃଷିକୈନ୍ଦ୍ରିକ ଭୂମିବାଦୀ ଜୀବନବୋଧ ଭିତ୍ତିରେ ଫକୀରମୋହନ-

କାଳିନ୍ଦୀଚରଣ- ଗୋପୀନାଥ-ଶାନ୍ତନୁ-ପ୍ରତିଭା, ନବନୈତିକ- ନବନ୍ୟାୟିକ ମାନବବାଦୀ-ସଂସ୍ଥିତିବୋଧ ଦିଗରୁ ସୁରେନ୍ଦ୍ର-ମନୋଜ-ଶାନ୍ତନୁ- ଚନ୍ଦ୍ରଶେଖର ଇତ୍ୟାଦିଙ୍କ ଭିତରେ ତୁଳନା, ସବୁଜ ସାହିତ୍ୟ ଧାରା ଓ ସତ୍ୟବାଦୀ ସାହିତ୍ୟ ଧାରା ମଧ୍ୟରେ ସାଦୃଶ– ବୈସାଦୃଶ୍ୟ ନିରୂପଣ, କାଞ୍ଚନିକ କାବ୍ୟ ଓ ବୈଷ୍ଣବକାବ୍ୟ ମଧ୍ୟରେ ରସଗତ, ଆବେଦନଗତ ତୁଳନା ଏବଂ କଳାକଉତୁକ- ରସ କଲ୍ଲୋଳ - ବିଦଗ୍ଧ ଚିନ୍ତାମଣି ମଧ୍ୟରେ ତର୍କଣା– ଏପ୍ରକାର ଅଧ୍ୟୟନର ନମୁନା ।

ଏପରିକି ମନସ୍ତାତ୍ତ୍ୱିକ ସମୀକ୍ଷା ବିଧାନ ପ୍ରତି ଅନୁକୂଳମାନସ ପୋଷଣ କରୁଥିବା ପାଠକ ମଧ୍ୟ ଏକକ ଲେଖକର ବିଭିନ୍ନ ବୟାବସ୍ଥାର (ଜୀବନାବସ୍ଥାର) ବିଭିନ୍ନ ଦୃଷ୍ଟିଭଙ୍ଗୀକୁ ନେଇ ବିଭିନ୍ନ ସମୟରେ ଲିଖିତ ବିଭିନ୍ନଭାବ ଓ ଅବବୋଧର ଲେଖାଗୁଡ଼ିକ ମଧ୍ୟରେ ସମୟର, ଯୁଗଧର୍ମର, ଜୀବନ ପ୍ରତି ବିଚାର ବତ୍ତାର, ଜଗତ ପ୍ରତି କ୍ରିୟା-ପ୍ରତିକ୍ରିୟାତ୍ମକ ଦୃଷ୍ଟିର ମେଳ ବୈଚିତ୍ର୍ୟ ଓ ବୈସାଦୃଶ୍ୟବିଧାନକୁ ଲକ୍ଷ୍ୟ କରି ତୁଳନାତ୍ମକ ମନୋଭାବର ବଶବର୍ତ୍ତୀ ହୋଇ ଭାବାସ୍ୱାଦନ କରିଥାଏ। ଏ ଦୃଷ୍ଟିରୁ ମଣିଷର ଅନ୍ତଃସତ୍ତା ମଧ୍ୟରେ ନବନ୍ୟାୟିକ ପ୍ରତିଷ୍ଠାରେ ଆପଣାକୁ ପ୍ରସାରିତ କରିବାର ଆତ୍ମଭରସା ହିଁ ଯଥାର୍ଥ ଜୀବନଚର୍ଯ୍ୟା- ଏପ୍ରକାର ଏକ ସୂକ୍ଷ୍ମଦର୍ଶନ ଭିତ୍ତିରେ ଶାନ୍ତନୁ କୁମାରଙ୍କ ନିରକିନ୍ନର, ଶତାବ୍ଦୀର ନଚିକେତା, ଦକ୍ଷିଣାବର୍ତ୍ତ, ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ, ଶକୁନ୍ତଳା, ଧରିତ୍ରୀର କାନ୍ଦ ମଧ୍ୟରେ ଏକ ଅନ୍ତଃରୀଣ ଭାବ ମେଳର ସଂଧାନ କରିହୁଏ ଏବଂ ୧୯୦୦ରୁ ୧୯୮୦ ମସିହା ପର୍ଯ୍ୟନ୍ତ ଆମ ଜାତିର ଐତିହାସିକ ବାସ୍ତବତାକୁ ଏକସୂତ୍ରରେ ବାଂଧି ହୋଇ ଏକମାର୍ଗରେ ଅଗ୍ରସର ଓ ବିବର୍ତ୍ତିତ ହୋଇ ଚାଲିଥିବାର ଲକ୍ଷ୍ୟ କରିହୁଏ। ଅନୁରୂପ ଭାବରେ ଗୋପୀନାଥଙ୍କ ପରଜା, ଅମୃତର ସନ୍ତାନ, ଦାଦିବୁଢ଼ା, ଶିବଭାଇ ଅଥବା ଚନ୍ଦ୍ରଖେରଙ୍କ ଅସୂର୍ଯ୍ୟ ଉପନିବେଶ, ଯନ୍ତାରୂଢ଼, ନବଜାତକ କିମ୍ବା ମାୟାଧରଙ୍କ ଧୂପ – ହେମ ପୁଷ୍ପ – ହେମଶସ୍ୟ – କ୍ରୁଶ ସଂକଳନ ଭିତରେ ଜୀବନ ପ୍ରତି ଥିବା ଦାର୍ଶନିକ ବାସନାପଣର ଐକ୍ୟବୋଧକୁ ଦେଖିବା ସଙ୍ଗେ ସଙ୍ଗେ ତାରୁଣ୍ୟ, ପ୍ରୌଢ଼ ଓ ପରିଣତ ଜୀବନାବସ୍ଥାର ଅମେଳ ଦୃଷ୍ଟିଭଙ୍ଗୀ ଓ ବିବର୍ତ୍ତିତ ବିଚାରବତ୍ତାକୁ ମୂଲ୍ୟାୟନ କରାଯାଇପାରେ। ଏପ୍ରକାର ତୁଳନାତ୍ମକ ଅଧ୍ୟୟନ ବରଂ ତୁଲ୍ୟ ତର୍କଣା ଓ ପଠନ ବିବେଚନାରୁ ଜଣାଯାଏ ଲେଖକଟିଏ ନିଜର ପୂର୍ଣ୍ଣାଙ୍ଗ ଜୀବନକାଳରେ ସତେଯେପରି ଜୀବନକୁ ନେଇ ଗୋଟିଏ ମୁଗ୍ଧ ଅନୁଭୂତିର ଖେଳ ଖେଳିଛି ଅଥବା ତା' ଜୀବନର ବିଭିନ୍ନ ସ୍ତରରେ ଜୀବୀଧର୍ମର ଘଟାନ୍ତର କ୍ରମେ ଲେଖା ଲେଖା ମଧ୍ୟରେ ଅନେକ ବୈସାଦୃଶ୍ୟ ଉପଲବଧି 'ବାଘନିଶ ହନାଲା'ର ଚିତ୍ରବିମ୍ବ ନିର୍ମାଣ କରିଛି।

(ଖ) ତୁଳନାତ୍ମକ ସାହିତ୍ୟ ଏହି ସତ୍ୟରେ ସଂପ୍ରତି ଉପନୀତ ହୋଇଛି ଯେ ବିଶ୍ୱର ସାହିତ୍ୟକ-ପ୍ରସାରଣ-ଇତିହାସଟି ମୁଖ୍ୟତଃ ନିୟାମକ– ନିୟମିତ, ପ୍ରଭାବଶାଳୀ– ପ୍ରଭାବିତ, ବଳଶାଳୀ – କ୍ୱବଳିତ ବିଧାନ ଉପରେ ଅତି କୌଶଳର ସହିତ ସଂଘଟିତ ହୋଇଛି। ସାଂସ୍କୃତିକ ଅଧ୍ୟୟନ ଓ ଆନ୍ତଃ ସାଂସ୍କୃତିକ ଅଧ୍ୟୟନ ପ୍ରତି ବିଶ୍ୱସ୍ତ ପାଠକମାନେ ନିଶ୍ଚିତ ଅନୁଭବ କରିଆସିଛନ୍ତି ଯେ ବଳଶାଳୀ ସଂସ୍କୃତିର ସାହିତ୍ୟ ପ୍ରଭାବର ମୂଳଉତ୍ସ ବା ନିୟାମକ ଭାବରେ ଦମନୀୟ ସଂସ୍କୃତିର ସାହିତ୍ୟକୁ ନୂଆ କରାଇବାର ଓ ନୂଆ ହେବାର ମାନସିକତା ମଧ୍ୟରେ ଅନୁପ୍ରେରଣାର ଉପାଦାନ ଯୋଗାଇ ଦେଇଛି। ପ୍ରଭାବିତ ସଂସ୍କୃତିର ସାହିତ୍ୟକୁ ନିଜର ଭୋଗ୍ୟାକଳ୍ପନା ଓ ଭାବନାଗୁଡ଼ିକୁ ପ୍ରେରଣା ସୂତ୍ରରେ ଯୋଗାଇ ଦେଇ ବଳଶାଳୀ ସାହିତ୍ୟ ଆଗେଇ ଯାଇଛି। କବଳିତ ସାହିତ୍ୟ ଅନୁସରଣ, ଅନୁକରଣ, ଆହରଣ କରି କେବଳ ନିଜକୁ ପୁରୁଣା ବୋଧ-ଅବବୋଧଠାରୁ ଦୂରେଇ ନେଇଯାଇପାରିଥିବାର ଆତ୍ମଶାନ୍ତ୍ୱନା ପାଇଛି। ତଥାପି ମାନବୀୟ ମହତ ସମବ୍ୟଥୀ ଓ ଉଦାର ଦୃଷ୍ଟିଭଙ୍ଗୀ କଦବା କ୍ୱଚିତ ଯେ ଦୁର୍ବଳ-ସବଳ/ଭାବୀ-ଅଭାବୀ/ବିଜିତ-ପରାଜିତ/ ବିକଶିତ-ଅବିକଶିତ ପ୍ରାର୍ଥ୍ୟକ୍ୟ ବା ତାରତମ୍ୟ ସତ୍ତ୍ୱେ ସାଂସ୍କୃତିକ ଭାବବିନିମୟର ସର୍ଜନ ସମ୍ବାଦ ବା ମେଳକ ରହସ୍ୟ ସୃଷ୍ଟି ନ କରିଛି ଏକଥା ଅସ୍ୱୀକାର କରାଯାଇନପାରେ। ଏହି କାରଣରୁ ଭାରତୀୟ ସାହିତ୍ୟ ଉପରେ ପାଶ୍ଚାତ୍ୟ ୟୁରୋକୈନ୍ଦ୍ରିକ ସାହିତ୍ୟର ପ୍ରଭାବ, ଉପନିବେଶବାଦୀ ଓ ଉତ୍ତର ଉପନିବେଶିକ ସାହିତ୍ୟ ସର୍ଜନଧାରାରେ ବିଲାତୀ ସାହିତ୍ୟର ତିର୍ଯ୍ୟକ (ସମାନ୍ତର ଧରାତଳ ଭିତ୍ତିରେ ତେରଛା) ପ୍ରଭାବ ଓ ପ୍ରତିଫଳନ କ୍ରିୟା-ପ୍ରତିକ୍ରିୟା, ଆକର୍ଷଣ ଓ ବିକର୍ଷଣ କ୍ରମେ ଏଯାବତ୍ ସଂଭବ ହୋଇଚାଲିଛି। ଏବେବି ଓଡ଼ିଆ, ବଙ୍ଗଳା, ଅହମୀୟା, ହିନ୍ଦୀ ଆଦି ଭାରତୀୟ ସାହିତ୍ୟ ଆଫ୍ରିକୀୟ ସାହିତ୍ୟ, ଲାଟିନ ଆମେରିକାର ସାହିତ୍ୟ, ପୂର୍ବ ୟୁରୋପୀୟ ସାହିତ୍ୟ ସାହିତ୍ୟରେ ଚରିତ୍ରମାନଙ୍କର କ୍ରିୟାବୃତ୍ତି ଆଚରଣରେ ଔପନିବେଶୀ - ସ୍ୱାମୀ ଭକ୍ତିପଣ, ଜ୍ୟେଷ୍ଠ ଶବଳ ଧର୍ମ (Gallantry and Chivalry) ସମଗ୍ର ବିଶ୍ୱ ବ୍ୟବସ୍ଥାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ତ୍ରିସ୍ତରୀୟ ସାଂସ୍କୃତିକ ରାଜନୀତିର ପ୍ରସାର ସାଧନ କରିଛି। ବିକଶିତ ରାଷ୍ଟ୍ର, ବିକାଶମୁଖୀ ରାଷ୍ଟ୍ର ଓ ଅବିକଶିତ ରାଷ୍ଟ୍ର (ପ୍ରଥମବିଶ୍ୱ-ମଧ୍ୟବିଶ୍ୱ-ତୃତୀୟ ବିଶ୍ୱ) ଏ ପ୍ରକାର ତ୍ରିବୋଧର (ସାଂସ୍କୃତିକ-ରାଜନୀତିକ ସଂପର୍କର). ପାରସ୍ପରିକ ପ୍ରଭାବ ଓ ଭାବ ବିନିମୟ ସୃଜନଶୀଳ ଭାବନାକୁ ନିୟନ୍ତ୍ରଣ କରିଛି। ଫଳରେ ବିକଶିତ ରାଷ୍ଟ୍ରର ମାର୍ଗଦର୍ଶୀ ସାହିତ୍ୟର ବଳିଷ୍ଠତା ଓ ଜ୍ୟେଷ୍ଠତ୍ୱ ଅତି ପ୍ରଚ୍ଛନ୍ନରେ ବିଶ୍ୱ ସମୁଦାୟ ଉପରେ ସଂଚରିତ ଓ ଆଚ୍ଛାଦିତ କରିଦିଆଯାଉଛି ଏବଂ ସେହି ସାହିତ୍ୟର ଆତ୍ମିକ-ଆଙ୍ଗିକ କଳାଧର୍ମର ପ୍ରଭାବରେ ତଥା ସେହି ସାହିତ୍ୟର ଅନୁଧାବନ ସୂତ୍ରରେ ଅନ୍ୟ ଦୁଇ

ଶ୍ରେଣୀୟ ରାଷ୍ଟ୍ରର ସୃଜନଧର୍ମବୋଧମାନେ (କାରୟିତ୍ରୀ ଓ ଭାବୟିତ୍ରୀ ପ୍ରତିଭାପଣ) ଯେଉଁ ସାହିତ୍ୟିକ ସୃଜନବଳୟଟି ନିର୍ମାଣ କରୁଛନ୍ତି ତାହା ତୁଳନାତ୍ମକ ସାହିତ୍ୟର ଉଦ୍ଦେଶ୍ୟ/ବିଧେୟକୁ ନିମ୍ନମତେ ନୂଆ ପରିସରର କରିତୋଳିଛି। ଯଥା-

(i) ନିୟାମକ ସାହିତ୍ୟ – ନିୟମାନୁସାରୀ ସାହିତ୍ୟର ତୁଳନା ଉପରେ ଗୁରୁତ୍ୱାରୋପ ହୋଇଛି।

(ii) ପ୍ରଭାବଶାଳୀ/ବିକଶିତ ସାହିତ୍ୟର ଅନୁଧାବନ କ୍ରମେ ଉପସାହିତ୍ୟ (Sub-literature), ପ୍ରତିସାହିତ୍ୟ (counter-literature) ଓ ପାର୍ଶ୍ୱବର୍ତ୍ତୀ ସାହିତ୍ୟ

## ରେଖାଚିତ୍ର-୪



(Marginal literature) ସୃଷ୍ଟି ହୋଇଚାଲିଛି ଏବଂ ପ୍ରଥମଟିର ବ୍ୟାପକ ଓ ଜ୍ୟେଷ୍ଠତ୍ୱର ଛାୟାସତ୍ତ୍ୱ ଅନ୍ୟ-ତିନୋଟି ଭିତରେ ଅନୁପ୍ରବେଶ କରିଛି। ଅନୁବୃତ୍ତିକରଣ ଜନିତ ସାଦୃଶ୍ୟ ବିଚାରକ୍ରମେ ଏହାକୁ ଦେଖାଇଦେବା ତୁଳନାତ୍ମକ ସାହିତ୍ୟର ଅଧ୍ୟୟନ ନିଷ୍ଠା ହୋଇଉଠିଛି।

(iii) ବିକଶିତ, ବିକାଶମୁଖୀ ଓ ଅବିକଶିତ ସାହିତ୍ୟର ଭେଦ ଭିତରେ ମାନବୀୟ ଆବେଗର ଅଭେଦ ଓ ନାନ୍ଦନିକ ମହତ୍ତ୍ୱଗୁଡ଼ିକର ସମାନତା, ଏକରୂପତା

### ରେଖାଚିତ୍ର-୫

ପରିଗ୍ରହ ପ୍ରକ୍ରିୟା

ଆହରଣ ଉତ୍ସ-୧
(ଭିନ୍ନଭୂମି ଖଣ୍ଡୀୟ/ଅନ୍ୟଗୋତ୍ରୀୟ)

ଟେନିସନ
+
କାଫ୍‌କା
+
ଟି.ଏସ୍. ଇଲିଅଟ
+
ଜେମସ୍ ଜୟେସ
+
ଲିଓଟଲଷ୍ଟୟ

- ପ୍ରଗତିବାଦୀ ସାହିତ୍ୟ
- ରୋମାଣ୍ଟିକ୍ ସାହିତ୍ୟ
- ସ୍ଥିତିବାଦୀ ଦର୍ଶନ
- ବାମାବାଦୀ ଚେତନା
- ବ୍ୟକ୍ତିବାଦୀ ଦୃଷ୍ଟିଭଙ୍ଗୀ
- ଚିତ୍ରକଳ୍ପବାଦୀୟ କଳା ବିନ୍ୟାସ
- ବାସ୍ତବବାଦୀ ଚିନ୍ତାଧାରା
- ଉତ୍ତର ଆଧୁନିକ ଚିନ୍ତାଧାରା
- ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ

ଇତ୍ୟାଦି___ ।

ଆହରଣ-କାରୀ/ ଗ୍ରହୀତା

ଆହରଣ ଉତ୍ସ-୨
(ସମଭୂମି ଖଣ୍ଡୀୟ/ସମଗୋତ୍ରୀୟ)

- ବୌଦ୍ଧ-ବୈଷ୍ଣବ ଦର୍ଶନ
- ଚାର୍ବାକ୍ ଦର୍ଶନ
- ରସବାଦୀ ବିଚାର
- ଗାନ୍ଧୀବାଦୀ ଦର୍ଶନ
- ଛାୟାବାଦୀୟ ଦୃଷ୍ଟିଭଙ୍ଗୀ
- ଜୀବନଦେବତାବାଦ ଓ
- ରହସ୍ୟବାଦ

ଜୟଦେବ
+
ସାରଳା
+
ରୀତି ସାହିତ୍ୟ
+
କାଳିନ୍ଦୀଚରଣ
+
ତେଲୁଗୁ ବନ୍ଧକାବ୍ୟ
+
ମହାଦେବୀବର୍ମା
+
ରବୀନ୍ଦ୍ରନାଥ

ଇତ୍ୟାଦି___ ।

### ରେଖାଚିତ୍ର-୬



ଓ ସହସମ୍ବନ୍ଧ ରଙ୍ଗକୁ ଦେଖାଇବାକୁ ଯାଇ ସଂପ୍ରତି ହେତୁବାଦୀ ପ୍ରଭାବଶାଳୀ ବିକଶିତ ସାହିତ୍ୟବର୍ଗଗୁଡ଼ିକ ତୁଳନାତ୍ମକ ସାହିତ୍ୟ ଦ୍ୱାହିରେ ବିକାଶମୁଖୀ ଓ ଅବିକଶିତ ସାହିତ୍ୟ ମଧ୍ୟରେ ନିଜର ପ୍ରଭାବଶାଳୀ ଛାୟାକୁ କେବଳ ମୂଲ୍ୟାୟନ କରିଚାଲିଛନ୍ତି। ତଥାପି ପ୍ରଭାବ ପ୍ରକ୍ରିୟା, ପରିଗ୍ରହ ବା ଆହରଣ ପ୍ରକ୍ରିୟା ଓ ବିଭାବନୀକରଣ ବା ସ୍ୱୀକରଣ ପ୍ରକ୍ରିୟା ବଳରେ ତୁଳନାତ୍ମକ ସାହିତ୍ୟ ବିଶ୍ୱ ବାଙ୍‌ମୟ ପରଂପରାରେ ସମତା ନିର୍ଦ୍ଧାରଣ କରିପାରିଛି। ନିମ୍ନ ରେଖାଚିତ୍ର ତ୍ରୟୀକୁ ଲକ୍ଷ୍ୟ କରାଯାଉ–

ଉପରୋକ୍ତ ରେଖାଚିତ୍ର ତ୍ରୟୀକୁ ଆଧାରକରି ତୁଳନାତ୍ମକ ସାହିତ୍ୟର ପରିସରକୁ ନିର୍ଦ୍ଦିଷ୍ଟ କରିପାରିବା–

- ଲେଖାଟିଏ ନିର୍ମାଣ କରାଯାଇଥାଏ ଓ ଏଥିପାଇଁ ଲେଖକଟିଏ କେବଳ ନିଜ ଅନୁଭୂତି ଭଣ୍ଡାରକୁ ପୁଂଜି କରିନପାରେ।
- ଲେଖାକୁ ସୀମିତ ଭାବ ଦୀର୍ଘିକାରୁ ଡିଆଁଇ ସାର୍ବକାଳିକ, ସାର୍ବଜନୀନ ଓ ସର୍ବସ୍ତରୀୟ କରିବାପାଇଁ ତାକୁ ନିଜ ଅନୁଭୂତି ସହିତ ମେଳଖାଉଥିବା, ମିଶିପାରୁଥିବା ଓ ସବଳିତ କରିପାରୁଥିବା ଅନ୍ୟର ଅନନ୍ୟ ଅନୁଭୂତି ସଂପନ୍ନ ଦୀର୍ଘ ପ୍ରବାହୀ ନଦୀ ଅଥବା ଗୁରୁଗମ୍ଭୀର ସମୁଦ୍ର ଶଯ୍ୟାର ନିକଟତର ହେବାକୁ ପଡିବ। ଅନ୍ୟ ଭାବନାର ଉପକୂଳରୁ ମୂଲ୍ୟବାନ ମିଶ୍ରଧର୍ମୀ ଉପାଦାନକୁ ସଂଗ୍ରହ କରିଆଣି ନିଜ ମଧ୍ୟରେ ଅନୁପ୍ରବେଶ କରାଇବାର ପ୍ରଭାବ ପ୍ରକ୍ରିୟାଟି ଲେଖକପାଇଁ ଶୁଭଙ୍କର ପ୍ରୋତ୍ସାହନ ହୋଇଥାଏ। ଏଠି ନିଜଦୃଷ୍ଟିରେ ବିଶ୍ୱକୁ ବାଂଧିରଖିବାର ସଂକଳ୍ପ ଦଶପୁରୀ।
- ପରଂପରା, ସଂସ୍କୃତି, ସମାଜ, ସମୟ, ପରିପାର୍ଶ୍ୱ ଉର୍ଦ୍ଧ୍ୱରେ ବିବିଧ ସ୍ତରରୁ ପ୍ରଭାବୋଚିତ ଉପାଦାନଗୁଡ଼ିକୁ ପୂର୍ବସ୍ୱରୀଙ୍କ ଦ୍ୱାରା ନିରୂପିତ ପୂର୍ବପ୍ରସିଦ୍ଧିମୂଳକ ଉତ୍ସରୁ, ବିଷୟ-ଚରିତ୍ର-ପରିବେଶ-ଦୃଷ୍ଟିଭଙ୍ଗୀର ସମ-ସମ୍ବନ୍ଧ ଉତ୍ସରୁ, ନିଜ ଭାବାନୁରୂପ ଅନ୍ୟ ଲେଖକର ବିକଳ୍ପଭାବ ଉତ୍ସରୁ, ନିଜ ପାରଦ୍ଧ ଓ ଅନ୍ୟ ଦ୍ୱାରା ପ୍ରମାଣସିଦ୍ଧ ହୋଇଥିବା ସହଯୋଗୀ କଳ୍ପନାଉତ୍ସରୁ ପ୍ରାପକ ବା ଗ୍ରାହୀ ଲେଖକଟି ସାଦୃଶ୍ୟ-ସଂଯୋଗ ଓ ପ୍ରଭାବ ସଂଯୋଗ ସୂତ୍ରରେ ସଂଗ୍ରହ କରିଥାଏ ।
- ଏ ଉପାଦାନକୁ ବହୁପାଠୀ ଭାବରେ ଅନ୍ୱେଷାବୃତ୍ତି ବଳରେ ଏକାଧିକ ଲେଖକ, ଲେଖା, ସଂସ୍କୃତି, ଭାଷା, ସମୟ, ଭୂମିଖଣ୍ଡ ବିଚାର ନିର୍ବିଶେଷରେ ସେ ସଂଧାନ କରି ନିଜ ସୃଜ୍ୟମାନ ଚିତ୍ର-ଚରିତ୍ର ପ୍ରତି ତା'ର ଉପଯୋଗିତାକୁ ବାରମ୍ବାର ମାନସିକ ଯୁକ୍ତି ଦ୍ୱାରା ପରୀକ୍ଷା ନିରୀକ୍ଷା କରି ସ୍ୱୀକରଣ କରିଥାଏ।

- ସମଗୋତ୍ରୀ ଅଥବା ଅନ୍ୟଗୋତ୍ରୀ ହେଉ ଆହୃତ ଉପାଦାନର ଉପଯୋଗିତା ଯଦି ଗ୍ରହଣକାରୀ ଲେଖକର ଅନୁଭୂତି ତଥା ପ୍ରତିପାଦ୍ୟ ଚିନ୍ତାଧାରା, ଚରିତ୍ର, ଦୃଷ୍ଟିକୁ ବଳିଷ୍ଠ, ସଂବୃଦ୍ଧିଶୀଳ ଓ ଗୁଣାତ୍ମକ କରିପାରିବ ବୋଲି ସେ ସ୍ଥିର ସିଦ୍ଧାନ୍ତ ନିଏ ତେବେ ତାହାର ବିନିଯୋଗ କରିବାକୁ ସେ ପ୍ରଯତ୍ନଶୀଳ ହୋଇପଡ଼େ।
- ଏହି ସୃଜନ ପ୍ରକ୍ରୟାର ପରବର୍ତ୍ତୀ ସୋପାନଟି ହେଉଛି ସ୍ୱୀକୃତୀକରଣ ଓ ଶେଷ ସତ୍ୟଟି ହେଉଛି ବିଭାବନୀକରଣ। ଅନ୍ୟର ଉପାଦାନ ଆହରଣକାରୀ ଲେଖକଟି ନିଜର ବିଶ୍ୱାସ, ପରିପାର୍ଶ୍ୱ, ସାମୁଦାୟିକ ଗ୍ରହଣଯୋଗ୍ୟତା, ପ୍ରାରବ୍ଧ ନନ୍ଦନବୋଧ ଓ ଅନୁଭୂତିର କଳେବର ମଧ୍ୟରେ ସଂଯୁକ୍ତ କରିଥାଏ। ଅନ୍ୟକୁ ବିସ୍ତାରମନା ହୋଇ ନିଜ ମଧ୍ୟରେ ସ୍ୱୀକୃତିଦିଏ। ଅନ୍ୟର ଉପାଦନକୁ ଆଧାର ଭୂମିରେ ରଖି ତହିଁ ଉପରେ ନିଜ ଭାବନା-କଳ୍ପନା-ପ୍ରତ୍ୟକ୍ଷାନୁଭୂତିକୁ ଛିଡ଼ା କରାଇଦିଏ; ଯେଉଁଠି ଆହୃତ ସତ୍ତାଗୁଡ଼ିକ ପୂର୍ବ ଅର୍ଥଭାବନାର ପ୍ରସିଦ୍ଧି ଅପେକ୍ଷା ଏକ ନୂତନ ଓ ମୌଳିକ ଆବେଦନଗୁଣରେ ବିଭାବିତ ହୋଇଉଠନ୍ତି।
- ଏହି ଦୃଷ୍ଟିରୁ ଓଡ଼ିଆ କବିତା କ୍ଷେତ୍ରରେ ଗୁରୁପ୍ରସାଦ, ଇଲିୟଟ, ପାଉଣ୍ଡ, ଫ୍ରୟେଡ଼, ସାର୍ତ୍ରେଙ୍କୁ ନିଜ କଳ୍ପଲୋକରେ ଅନ୍ତର୍ନିହିତ କରିଛନ୍ତି ସତ; କିନ୍ତୁ ତା'ର ପାଠକୀୟ ଆବେଦନ ଆମ ପରଂପରା, ପରିପାର୍ଶ୍ୱ, ସଜୀବ ସମୟ ଖଣ୍ଡରେ ସ୍ୱତନ୍ତ୍ର ହୋଇଉଠିଛି। ଅନୁରୂପ ଭାବରେ ରାଧାନାଥ ଓଭିଡ୍, ମିଲିଟନ, ଦାନ୍ତେ, ହୋମର, ମାଇକେଲ୍, ଟେନିସନ ଓ କାଳିଦାସ ଇତ୍ୟାଦିଙ୍କ ପୂର୍ବବ୍ୟାପାରକୁ ଆହରଣ କରିଛନ୍ତି; ମାତ୍ର ଚରିତ୍ର, ଘଟଣା, ଆବେଗ, ବକ୍ତବ୍ୟର ନିଜ ସ୍ୱଦେଶୀ ବାତାବରଣରେ ଆରୋପିତ କରି (ଆଂଚଳିକ ପୁରାଣ-ଭୂଗୋଳ-ଇତିହାସ-ନନ୍ଦନତତ୍ତ୍ୱ କ୍ରମେ) ବିଭାବନ ଗୁଣରେ ଅନସ୍ୱାଦିତ ପୂର୍ବ କରିଦେଇଛନ୍ତି। ଏପ୍ରକାର ରୂପାନ୍ତରୀତକରଣ ପ୍ରବିଧିରେ ମୂଳ ଉପାଦନର ପୂର୍ବଧର୍ମ ଭିନ୍ନରୂପର ଓ ଭିନ୍ନସ୍ୱରର ପ୍ରତିଭୂ ହୋଇପାରିଛି।
- ସୁତରାଂ ତୁଳନାତ୍ମକ ସାହିତ୍ୟର ପ୍ରଭାବ ପ୍ରକ୍ରିୟାଟି ପୂର୍ବ କଥନର ଅବିକଳ ଅନୁକରଣ ଭିତ୍ତିକ ପୁନଃକଥନ ଅପେକ୍ଷା ଯୁଗନ୍ନଦ୍ଧ-ସମ୍ବନ୍ଧ ବୋଧର ଚମତ୍କାରିତା ଉତ୍ପାଦନ ଉପରେ ପ୍ରତିଷ୍ଠିତ ଯେଉଁଠି ବିଶ୍ୱବୋଧର ମହାମିଳନ ଦୃଶ୍ୟମାନ ହୋଇଥାଏ। ଅତଏବ ତୁଳନାତ୍ମକ ସାହିତ୍ୟ ହେଉଛି ମେଦିନୀ ଦୃଷ୍ଟିର ସହବନ୍ଧନୀର ସାହିତ୍ୟ; ଯେଉଁଠି ଜଣେ ପ୍ରତିଭାର ସଫଳତା-ବିଫଳତା,

ଆଶା-ନୈରାଶ୍ୟ, ଆବେଗ-ଯୁକ୍ତି, ସୃଜନ-ଧ୍ୱଂସ, ସଂକୀର୍ଣ୍ଣ ବିଚାର-ସର୍ବୋତ୍ତମ ଅଭିଳାଷ, ପ୍ରତିହିଂସା-ଉଦାରତା ଆଦି ବିରୋଧଭାସୀୟ ଅନୁଭୂତିର ଚିତ୍ର ପ୍ରତିମା/କଳ୍ପ ପ୍ରତିମାକୁ ଅନ୍ୟ ପ୍ରତିଭାର ଶବ୍ଦକ୍ରୀଡାର ପ୍ରାଙ୍ଗଣ ଭିତରୁ ସହଜରେ ଦେଖି ହୋଇପାରୁଛି।

ଆଜି ବିଶ୍ୱମାନବ ପାଖରେ ରୁଚିଗତ, ବିଚାରଗତ ଓ ସମୟଗତ ବ୍ୟବଧାନ କମିଯାଇଛି। ପଚାଶ ବର୍ଷ ପୂର୍ବରୁ ପାଶ୍ଚାତ୍ୟ ଲେଖକର ସୃଜନପଣଟି ଶତାବ୍ଦୀ ଶତାବ୍ଦୀ ଧରି ବୌଦ୍ଧିକବାଦୀ, ନବବୌଦ୍ଧିକବାଦୀ, ରୋମାଞ୍ଚବାଦୀ, ବାସ୍ତବବାଦୀ, ପ୍ରତୀକବାଦୀ, ଚିତ୍ରକଳ୍ପବାଦୀ, ଭାବବାଦୀ, ସ୍ୱଭାବ ବାଦୀ, ଅତିବାସ୍ତବବାଦୀ ଓ ସ୍ଥିତିବାଦୀ ଦୃଷ୍ଟିଭଙ୍ଗୀଗୁଡ଼ିକ ଏକ ଏକ ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ ସାମୁଦାୟିକ ମାନସିକ ଅବସ୍ଥାର ସ୍ପନ୍ଦନକୁ ଅବଲମ୍ବନକରି ଭିନ୍ନ ଭିନ୍ନ ସୂତ୍ରରେ କଳାତ୍ମକ ରୂପାୟନ ପାଇ ଆସିଥିବା ବେଳେ ଭାରତର ସାହିତ୍ୟ-ପ୍ରେକ୍ଷାପଟ୍ଟରେ ଏସବୁ ୧୮୫୦ରୁ ଏଯାବତ୍ ମିଶ୍ରରାଗରେ ଆତ୍ମପ୍ରକାଶ କରିଛି। ତୁଳନାତ୍ମକ ସାହିତ୍ୟ ଅଧ୍ୟୟନ ଓ ବିଚାର ୧୯୬୦ ପରବର୍ତ୍ତୀ କାଳରେ ପାଶ୍ଚାତ୍ୟ ସାହିତ୍ୟ-ସର୍ଜନଶୀଳତାର ପରଂପରାରେ ମାନବୀୟ ଦୃଷ୍ଟିଭଙ୍ଗୀଗୁଡ଼ିକର ମିଶ୍ରରାଗୀୟ ମେଳସାଧନ ପାଇଁ ଭିତ୍ତିଟିଏ ଦେଇପାରିଛି ଏବଂ ବିଶ୍ୱ ସାହିତ୍ୟର ଜାତକ ବିଚାରରେ କ୍ରମଶଃ ମେଳକ ଦୃଷ୍ଟାନ୍ତ ବୃଦ୍ଧି ପାଇପାରିଛି। ସଂପ୍ରତି ବିଶ୍ୱପାଠକର ସଶ୍ରଦ୍ଧ ଡୋଳାଟି ଥୋମାସ୍ ହାର୍ଡି, ଟଲଷ୍ଟୟ, ପଲ୍‌ସବର୍ଗ, ନେରୁଦା, ଫକୀରମୋହନ, ତାରାଶଙ୍କର, ପ୍ରେମଚାନ୍ଦ, ଶାନ୍ତନୁ,– ଗୁଡ୍‌ଆର୍ଥ, କ୍ରାଇମ୍ ଏଣ୍ଡ ପନିସ୍‌ମେଣ୍ଟ, ୱାର ଏଣ୍ଡପିସ୍, ଗୋଦାନ, ଗଣଦେବତା, ଛମାଣ ଆଠଗୁଣ୍ଠ ଆଦିରେ ଭେଦ ନଦେଖି କେବଳ ମାନବ ସମ୍ବଳର ଶ୍ରେଷ୍ଠତାଗୁଡ଼ିକୁ ଦେଖିପାରୁଛି। ଏପରିକି ୧୯୨୦ରେ 'କ' ଭାଷାରେ ଲିଖିତ ସମାଜବାଦୀ ବସ୍ତୁବାଦୀ ସାହିତ୍ୟର ଚିତ୍ର-ଚରିତ୍ରର ଧର୍ମ ଓ ପ୍ରୟୋଜନ ୧୯୪୭ ପରେ 'ଖ' ଭାଷାରେ ଲିଖିତ ସମାଜବାଦୀ ସମତାବୋଧ ବିରୋଧି ନବମାନବବାଦୀ ସାହିତ୍ୟ କୃତିରେ ଅଥବା ୧୯୯୦ ପରେ ରଚିତ ଭାବବାଦୀ ଗାଣତାନ୍ତ୍ରିକ ମୂଲ୍ୟବୋଧ ପ୍ରତି ଆସ୍ଥାଶୀଳ ସାହିତ୍ୟ ସଂଘଟନାରେ କିପରି କାହିଁକି, କେଉଁ ଦିଗରୁ ବଦଳିଯାଇଛି ଅଥବା ସୂକ୍ଷ୍ମ-ରୂପରେ ବର୍ତ୍ତମାନ ରହିଛି, ତାହାର ସଂଚାରଣଶୀଳ ବିଶ୍ଳେଷଣ ଓ ସଂଶ୍ଳେଷଣାତ୍ମକ ଅନୁଶୀଳନ ଦେଇ ମାନବବୋଧର ଅଖଣ୍ଡତାକୁ ପ୍ରମାଣ କରିବାରେ ତୁଳନାତ୍ମକ ସାହିତ୍ୟ ଅଧ୍ୟୟନର ଭୂମିକା ଜଗତୀକରଣ ବ୍ୟବସ୍ଥାରେ ଅବଧାରିତ ହୋଇପଡୁଛି।

ପୁନଶ୍ଚ, ତୁଳନାତ୍ମକ ସାହିତ୍ୟ ସଂପର୍କରେ ବିଚାର ବିମର୍ଶ କରିବା ଅବକାଶରେ ଆଂଚଳିକ ସାହିତ୍ୟ, ସାଧାରଣ ସାହିତ୍ୟ, ବିଶ୍ୱସାହିତ୍ୟ, ପ୍ରତିବେଶୀ ସାହିତ୍ୟ, ମହାଦେଶୀୟ

ସାହିତ୍ୟ, ଜାତୀୟ ସାହିତ୍ୟ– ଏପ୍ରକାର ପ୍ରଜାତିଗୁଡ଼ିକ ନାନା ଦିଗରୁ ବିରୋଧ ପରିସ୍ଥିତି ସୃଷ୍ଟି କରନ୍ତି। ଏ କ୍ଷେତ୍ରରେ ଗୋଟିଏ ନିର୍ଦ୍ଦିଷ୍ଟ ଅଂଚଳର ସାହିତ୍ୟକୃତି/କୃତି/ଲେଖିକା/ /ଲେଖକ ମଧ୍ୟରେ ସାଦୃଶ୍ୟ, ପାର୍ଥକ୍ୟ ଓ ସମାନ୍ତରାଳ ସ୍ୱାତନ୍ତ୍ର ଅଧ୍ୟୟନ କରିବାକୁ ପରଂପରାବାଦୀ ତୁଳନାଶାସ୍ତ୍ରୀମାନେ ନାପସନ୍ଦ କରନ୍ତି। ଏ ଦୃଷ୍ଟିରୁ ଆଂଚଳିକ ଓଡ଼ିଆ ଭାଷାରେ ଲେଖନୀ ଧାରଣ କରିଥିବା ସମାଜବାଦୀ ଶିଳ୍ପୀ ଫକୀରମୋହନ- କାଳିନ୍ଦୀ- ଗୋପୀନାଥଙ୍କ ଭିତରେ ତୁଳନାକୁ ପ୍ରହସନ ଓ ଗୌଣ ତର୍କଣା ଭାବରେ ବିବେଚନା କରାଯାଏ। କିନ୍ତୁ ଭାରତ ପରି ବହୁଭଙ୍ଗୀ ମାତ୍ର ସମଗୋତ୍ରୀ ପାରମ୍ପ/ସାଂସ୍କୃତିକ ପ୍ରତ୍ୟୟ ଅନୁଗାମୀ ଭୂଖଣ୍ଡର ଜାତୀୟ ସାହିତ୍ୟ ପରଂପରାରେ ବଙ୍କିମଚନ୍ଦ୍ର– ଫକୀର ମୋହନ – ତାରାଶଙ୍କର – ପ୍ରେମଚାନ୍ଦ – ଶିବଶଙ୍କର ଅବଶ୍ୟ ତୁଳନା ପରିସରର୍ଭୁକ୍ତ ହୋଇପାରନ୍ତି। ଏମାନଙ୍କ ଭିତରେ ଭୂମିସଂଲଗ୍ନ ଅବବୋଧର ସାଦୃଶ୍ୟ-ବୈସାଦୃଶ୍ୟକୁ ସମାନ୍ତରାଳ ଅଧ୍ୟୟନ କରାଯାଇପାରେ। ତଥାପି ତୁଳନାବିତ୍‌ମାନେ ଏ ପ୍ରକାର ତର୍କଣାରେ ସୀମାବଦ୍ଧ-ମୂଲ୍ୟାୟନର ସଂଭାବନା କରିଛନ୍ତି ଏବଂ ସମଗୋତ୍ରୀୟ ଭୂଖଣ୍ଡର ବାହ୍ୟ ଭେଦର ଶରୀର ଭିତରେ ସୂକ୍ଷ୍ମଭାବରେ ମେଳ ରହିବାର ସ୍ୱାଭାବିକତା ଥିବାରୁ ଏପ୍ରକାର ତୁଳନା ବିସ୍ତାରୀତ ଦୃଷ୍ଟିରହିତ ଓ ଏକ ଆବେଗ ପ୍ରବଣ ଜାତୀୟତା ବୋଧର ପ୍ରଦର୍ଶନ ମୁଖୀନତା ପ୍ରବିଧି ବୋଲି ମତ ଦେଇଛନ୍ତି। ବରଂ ଏକ ସ୍ୱତନ୍ତ୍ର ସାଂସ୍କୃତିକ ସଂଚାଳନକୁ କେନ୍ଦ୍ରକରି ସାର୍ବଭୌମିକ ଭୂଖଣ୍ଡର ସ୍ୱାଭିମାନରେ ଋଦ୍ଧିମନ୍ତ ଏକ ଜାତୀୟ ସାହିତ୍ୟ ସହିତ ଭିନ୍ନ ସ୍ୱାତନ୍ତ୍ୟର ଅନୁଗାମୀ ଭୂମିଖଣ୍ଡର ଜାତୀୟ ସାହିତ୍ୟର ତୁଳନା କରାଯାଇ ବିଭେଦ ଭିତରେ ମାନବୀୟ ଲକ୍ଷଣଗୁଡ଼ିକର ଅଭେଦ କଥନକୁ ଯଥାର୍ଥରେ ସାଧାରଣ ସାହିତ୍ୟ/ବିଶ୍ୱ ସାହିତ୍ୟ/ତୁଳନାତ୍ମକ ସାହିତ୍ୟ ରୂପରେ ଅଭିହିତ କରାଯାଇଛି। ଏହି ଦୃଷ୍ଟିରୁ ଇଟାଲୀର କାଥଲିକ୍ ସାହିତ୍ୟ, ଇରାନର ସୁଫି ସାହିତ୍ୟ, ବିଲାତର ମିଶନାରୀ ଆଧିଭୌତିକ ସାହିତ୍ୟ ଓ ଭାରତର ରହସ୍ୟବାଦୀ ସାହିତ୍ୟ, ଅଥବା ଟଲଷ୍ଟୟ, ନାଥାନିଏଲ ହର୍ଣ, ଟମାସ୍ ହାର୍ଡି, ପଲ୍‌ବର୍କ, ଚେକଭ୍, ଫକୀର ମୋହନ, ପ୍ରେମଚାନ୍ଦ ଇତ୍ୟାଦିଙ୍କୁ ତୁଳନା ପରିସରଭୁକ୍ତ କରାଯାଇପାରେ। ମଧୁସୂଦନ- ରବୀନ୍ଦ୍ରନାଥ, ପ୍ରେମଚାନ୍ଦ- ତାରାଶଙ୍କର, ମୀରାବାଈ-ବିଦ୍ୟାପତି, ରାମଚରିତମାନସ- ଜଗନ୍ମୋହନ ରାମାୟଣ, କୀଟସ୍- ୱାର୍ଡ଼ସ୍‌ୱାର୍ଥ, ବାଇରନ୍- ଟେନିସନ୍, ନୈଷଧ ଚରିତଂ- କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ତୁଳନା ଅପେକ୍ଷା ସେକ୍‌ସ୍‌ପିୟର-କାଳିଦାସ, ଫକୀରମୋହନ- ଚେଖଭ, ରବୀନ୍ଦ୍ରନାଥ-ୟେଟ୍‌ସ, ଗୁରୁପ୍ରସାଦ- ଇଲିୟଟ, ଅରବିନ୍ଦ-ନିତ୍‌ସେ, ଗାନ୍ଧୀ-ମାର୍କସ, ଏଣ୍ଡିଆନ୍‌ଇକ୍-ଗ୍ରୀନ୍‌ଇଙ୍କ୍- ଦାନାପାଣି, ରସାଭିବ୍ୟକ୍ତିବାଦ ଓ ଏକସ୍ପ୍ରେସନାଲିଜିମ୍, କୁନ୍ତଳ- ଭର୍ତ୍ତୃହରି- ଜାକବ୍‌ସନ ପ୍ରମୁଖଙ୍କ କଳାଜଗତର ତୁଳନା ଯଥାର୍ଥ ଓ ଗୋଟିଏ

ଅଭିନ୍ନ ମେଦିନୀ ଦୃଷ୍ଟିର ପ୍ରବୋଧକ। ଏଠାରେ ତୁଳନାତ୍ମକ ସାହିତ୍ୟର ପରିଭାଷାଟି ଏହିପରି ହେବ– ''ଯେଉଁ ସାହିତ୍ୟର ପରିସର ଭୂଗୋଳ – ଇତିହାସ – ସମାଜତତ୍ତ୍ୱର ଜ୍ଞାନ ଦୀପ୍ତ ପ୍ରାଚୀର ଏବଂ ଲୋକାଚାର, ସଂସ୍କୃତି, ପ୍ରଥାସିଦ୍ଧ କଳାବୋଧର ବାଡକୁ ଡେଇଁ ବିଶ୍ୱମାନବର ପ୍ରତ୍ୟୟ ଓ ସଂହତିକୁ ସହକ୍ରୀଡାରେ ଅନୁବନ୍ଧିତ କରିପାରିଛି ଏବଂ ଧ୍ୱଂସ ସୃଜନର ବିଭଙ୍ଗ ବ୍ୟବସ୍ଥା ଭିତରେ ମାନବ ଅଭିପ୍ରାୟର ମେଳନ ସଂପାଦନ କରିଛି ତାହାହିଁ ତୁଳନାତ୍ମକ ସାହିତ୍ୟ। ଏଥିପାଇଁ ରୂପାନ୍ତରୀକରଣର ବିଶ୍ୱସ୍ତ ଅନୁବାଦଟିଏ ହିଁ ପାଠକକୁ ବିଶ୍ୱସାହିତ୍ୟ ସଂପୃକ୍ତି କରାଇଦିଏ ଧାରଣା ବଳିଷ୍ଠ ହୋଇଛି।

(ଚାରି)

**ତୁଳନାତ୍ମକ ସାହିତ୍ୟର ଐତିହାସିକ ବିକାଶକ୍ରମ :–**

ଏଠାରେ ଗୋଟିଏ ବିଷୟ ପ୍ରଥମରୁ ସ୍ପଷ୍ଟ କରି ଦିଆଯାଇପାରେ ଯେ– ଏ ଯାବତ୍ ତୁଳନାତ୍ମକ ସାହିତ୍ୟର ଅନୁଧ୍ୟାନ ଓ ବିଚାର ବିମର୍ଶ ପଟାଟିକୁ ପ୍ରାୟଶଃ ସାମ୍ରାଜ୍ୟବାଦୀ ସ୍ୱାମୀତ୍ୱପଣର ଜାହିର୍‌ରେ ପାଶ୍ଚାତ୍ୟ ବିଚାରବିତ୍‌ମାନେ ସତ୍ତ୍ୱଧାରୀ ରୂପେ ରଖିଛନ୍ତି। ମାତ୍ର ଏକଥା ସତ୍ୟ ଏହି ପଟାର ପୈତୃକ ଉତ୍ତରାଧିକାର ପ୍ରଥମେ ପ୍ରାଚୀନ ଭାରତୀୟ କାବ୍ୟଶାସ୍ତ୍ରୀଙ୍କ ସପକ୍ଷରେ ଯିବ। ପାଶ୍ଚାତ୍ୟ କାବ୍ୟତତ୍ତ୍ୱରେ ତୁଳନାତ୍ମକ ସାହିତ୍ୟ ବିଚାର ଉନ୍ମେଷ ଲାଭ କରିବାର ୭୦୦ ବର୍ଷ ପୂର୍ବରୁ ଭାରତୀୟ ସାହିତ୍ୟ ସିଦ୍ଧାନ୍ତରେ ତୁଲ୍ୟ ଦେହୀ ତୁଲ୍ୟ କାବ୍ୟ ସାମ୍ୟାଦ ବା ସାରସ୍ୱତ ପ୍ରତିଭାର ମେଳକତତ୍ତ୍ୱ ପ୍ରସାର ଲାଭ କରିସାରିଛି। ପାଶ୍ଚାତ୍ୟ ସାହିତ୍ୟତତ୍ତ୍ୱ ବିଶ୍ୱସାହିତ୍ୟ ପରିକଳ୍ପନା ପ୍ରସଙ୍ଗକୁ ସାମାଜିକ– ସାଂସ୍କୃତିକ– ରାଜନୀତିକ– ମନସ୍ତାତ୍ତ୍ୱିକ ଦାୟବଦ୍ଧତା ଦିଗରୁ ସାଦୃଶ୍ୟ କାରକ ମୂଲ୍ୟାୟନ ଓ ବିଶ୍ଲେଷଣ ଭାବରେ ଅର୍ଥନିଷ୍ଠ କରି ସାମୂହିକ ମାନବଜାତିର ସାହିତ୍ୟମୂର୍ତ୍ତିଟିଏ ନିର୍ମାଣ କରିପାରିଥିବା ସ୍ଥଳେ ଭାରତୀୟ ସାହିତ୍ୟ ମୀମାଂସା ଏହାକୁ ଭାବ-ସୌନ୍ଦର୍ଯ୍ୟର ମେଳସାଧନ ଓ ସନ୍ଦର୍ଶନ ଭାବରେ ବ୍ୟାଖ୍ୟା କରିଛି।

**ପାଶ୍ଚାତ୍ୟ ସାହିତ୍ୟ ବିଚାରରେ ତୁଳନାତ୍ମକ ସାହିତ୍ୟ :–**

ପାଶ୍ଚାତ୍ୟ ଧାରଣାରେ ସାହିତ୍ୟର ସର୍ଜନଶୀଳ ବିଧାନଟିକୁ ଆରିଷ୍ଟୋଟଲ ଓ ନରଥ୍ରପ୍ ଫ୍ରାଇଙ୍କ୍‌ଙ୍କ ସମୟରୁ ଅନୁକରଣ, ସଂଶ୍ଳେଷଣ, ବିରେଚନ କର୍ମ ଭାବରେ (mimesis/Imitation/Catharsis) ବିବେଚନା କରାଯାଇଆସିଛି। ଏହାରି ଭିତରେ ତୁଳନାତ୍ମକ ସାହିତ୍ୟର ବୀଜ ବପନ (ଅନୁବୃତ୍ତିତତ୍ତ୍ୱ ନାମରେ) ଘଟିଛି। ଏହାର ୧୫୦୦ ବର୍ଷ ପରେ ସେକ୍‌ସପିୟର ଏକ ଚରିତ୍ରର ଅନ୍ତଃସ୍ୱଭାବ ଓ ଆଚରଣରେ ଅନ୍ୟ ଚରିତ୍ରର ସମଧର୍ମା ଲକ୍ଷଣକୁ ଦେଖାଇ ଦେବାକୁ ଯାଇ କଂପାରେଟିଭିୟସ ଶବ୍ଦଟିକୁ ହେନରୀ-IV

ନାଟକରେ ବ୍ୟବହାର କରିଛନ୍ତି। ତୁଳନା ଏକ ନାସ୍ତିବାଚକ (Negative-vision) ଦୃଷ୍ଟି। ତଥାପି ତୁଳନାର ନାସ୍ତିବାଚକ ଦିଗ ଦ୍ୱାରା ଚରିତ୍ର ଓ ସ୍ୱଭାବରେ ଆସ୍ତିବାଚକ (ପ୍ରତିଯୋଗିତାଧର୍ମୀ) ପରିବର୍ତ୍ତନ ଘଟିଥାଏ। ସାହିତ୍ୟରେ ମଧ୍ୟ ଏପ୍ରକାର ଜୈବିକ ପରିବର୍ତ୍ତନ ତୁଳନାତ୍ମକ ଅଧ୍ୟୟନ/ଆଲୋଚନା ଦ୍ୱାରା ସଂଭବ ହୋଇପାରେ ଏବଂ ଅନ୍ୟ ସାହିତ୍ୟ ସହିତ ସାଦୃଶ୍ୟ-ପ୍ରଭାବ ସମ୍ବନ୍ଧ ରକ୍ଷା କରି ନିଜକୁ ସମୃଦ୍ଧ ଅନ୍ୟାନୁରୂପ କରି ଗଢ଼ିହୁଏ– ଏ ଧାରଣାର ବଶବର୍ତ୍ତୀ ହୋଇ ୧୫୯୮ରେ ଫ୍ରାନ୍‌ସିସ ମରିସ, ୧୭୪୨ରେ ମଣ୍ଟେସ୍କୁ, ୧୮୧୫ରେ ଆମେରିକାର ଶିକ୍ଷାବିତ୍ ଜନ୍ ଗ୍ରୀସ୍‌କମ୍ ତୁଳନାତ୍ମକ ଦୃଷ୍ଟିରେ ଅନ୍ୟର ଶିକ୍ଷା-ସଂସ୍କୃତି-ପରଂପରା-ଜୀବନାଚାରକୁ ଦେଖିବାକୁ ସଖ୍ୟ ସୁଲଭ ପରାମର୍ଶ ଦେଇଛନ୍ତି। ୧୮୧୮ ମସିହାରେ ଜର୍ମାନ-କବି ଗେଟେ ''ୱେଲ୍‌ତ ଲିଟରାତୁର'' ଶବ୍ଦଟି ବ୍ୟବହାର କରିଥିଲେ ଓ ବିଶ୍ୱର ସ୍ମରଣୀୟ (ବିଭିନ୍ନ ଭାଷାର) କୃତିଗୁଡ଼ିକୁ (ଅଡେଶୀ, ଡିଭାଇନ୍ କମେଡି, ରାମାୟଣ, ମହାଭାରତ, ଆବେସ୍ତା, ଅଭିଜ୍ଞାନ ଶାକୁନ୍ତଳଂ, ପାରାଡାଇଜ୍ ଲଷ୍ଟ, ଅଥେଲୋ ଆଦି) ଅଧ୍ୟୟନ କରି ୧୮୨୭ ମସିହାରେ ସେ ସିଦ୍ଧାନ୍ତ ପ୍ରଦାନ କରିଥିଲେ ଯେ ବିଶ୍ୱର ଯେକୌଣସି ଭାଷାର ମୂର୍ଦ୍ଧନ୍ୟ ଗ୍ରନ୍ଥଗୁଡ଼ିକ ଭୂଗୋଳ, ଇତିହାସ,ଧର୍ମବୋଧ ଓ ସଂସ୍କୃତିର ସୀମା ପାର ହୋଇ ଭାବପ୍ରସିଦ୍ଧି ଓ ପାଠକୀୟ ସମାଦୃତି ପାଇପାରୁଥିବାରୁ ସେହିସବୁ ଦେଶ-କାଳ-ଉତ୍ତୀର୍ଣ୍ଣ କୃତିକୁ 'ବିଶ୍ୱ ସାହିତ୍ୟ'ର ମର୍ଯ୍ୟାଦା ଦିଆଯାଇପାରେ। ଏଥି ପୂର୍ବରୁ ୧୮୨୪ ମସିହାରେ ଫ୍ରାନ୍‌ସର ବିଦ୍ୱାନ ଜାନେରାଙ୍କ ଓ ଜର୍ମାନ ବିଦ୍ୱାନ ବପ୍ ଗ୍ରୀମ୍ ବିଶ୍ୱଭାଷାର ବର୍ଗୀକରଣ କରି ତୁଳନାତ୍ମକ ଭାଷାତତ୍ତ୍ୱର ବିକାଶ ସାଧନ ପୂର୍ବକ ଦୃଢ଼ ଧାରଣାଟିଏ ପ୍ରତିଷ୍ଠା କରିଥିଲେ ଯେ– ପ୍ରତ୍ୟେକ ଭାଷା-ପାରିବାରିକ-ଶୃଙ୍ଖଳାରେ ଭାଷା-ଭାଷା ମାଧ୍ୟମରେ ସାମାଜିକ – ସାଂସ୍କୃତିକ – ସହଜାତ ଆବେଗିକ ସମ୍ବନ୍ଧଗୁଡ଼ିକର ବିନିମୟ ନିରୂପିତ ହୋଇଥାଏ ଏବଂ ଭାଷା ବିଶ୍ଳେଷଣ ଦେଇ ଏହି ବିନିମୟର ସାଦୃଶ୍ୟ/ରୂପସାମ୍ୟକୁ ଅନୁଧ୍ୟାନ କରାଯାଇପାରେ। ୧୮୨୮ରେ ଫ୍ରାନ୍‌ସର ସର୍‌ବୋଁ ବିଶ୍ୱବିଦ୍ୟାଳୟର କୁଳପତି ଦାଏସ୍ ଜୁଏସ୍‌ସାଁ ସାହିତ୍ୟ-ସାହିତ୍ୟ ଭିତରେ ଭାଷାଭେଦ ସତ୍ତ୍ୱେ ସମାନୁପାତିକ ଅବବୋଧ ରହିଛି ଏବଂ ସାମଗ୍ରିକ-ସାହିତ୍ୟ ବିଦ୍ୟାର ତୁଳନା ଦ୍ୱାରା ଏହାର ଔଚିତ୍ୟ ପ୍ରତିପାଦନ ପାଇଁ ଅଧ୍ୟୟନ ବ୍ୟବସ୍ଥା ଶିକ୍ଷାଧାରାରେ ପ୍ରଚଳନ କରିଛନ୍ତି। ୧୮୪୮ ମସିହାରେ ମାଥ୍ୟୁ ଆରନୋଲ୍‌ଡ କେବଳ ବୁଦ୍ଧିବାଦୀ ମହଲରେ ଅଧ୍ୟୟନ ଦ୍ୱାରା ବିଶ୍ୱ ସାହିତ୍ୟର ପାରସ୍ପରିକ ସମ୍ବନ୍ଧ ନିରୂପିତ ହୋଇପାରିବ ନାହିଁ– ବରଂ ଭାଷା-ସଂସ୍କୃତି-ସମାଜବ୍ୟବସ୍ଥା ପ୍ରତି ସଚେତନ ରହି ସଂଶ୍ଳେଷଣାତ୍ମକ ମୂଲ୍ୟାୟନ ଦ୍ୱାରା ବିଶ୍ୱ ସାହିତ୍ୟର ଭାବବିନିମୟାତ୍ମକ ସୌନ୍ଦର୍ଯ୍ୟ ଉଦ୍‌ଘାଟନ ହୋଇପାରିବ ବୋଲି ଦୃଢ଼ ମତ ଦେଇଛନ୍ତି। ଫଳତଃ ୧୮୫୬ ବେଳକୁ ଫ୍ରାନ୍‌ସ, ଜର୍ମାନ, ଇଂଲଣ୍ଡରେ ଶିକ୍ଷା ବ୍ୟବସ୍ଥାରେ

ତୁଳନାତ୍ମକ ସାହିତ୍ୟ ବିଭାଗମାନ ଖୋଲିଯାଇଛି। ୧୮୫୪ରେ ଜର୍ମାନ-ବିଶାରଦ ମୋରିଜ କାରିୟର ଏହାର ପ୍ରତିଶବ୍ଦ ''ଭରଗ୍ଲିଚେନରଦୀ ଲିତରେ ଗୁଗୁସ୍‌ଖିଚ୍' ବା 'ପ୍ରତିରୂପ ସାହିତ୍ୟ' ନିର୍ମିତ ହୋଇଛି। ୧.୯୧୦ ମସିହା ମଧ୍ୟରେ ହ୍ୟୁଗୋ ମେଲତଜ, ଏଚ.ଏ. ଯୋସ୍‌ନେତ୍, ଉଇଲିୟମ ଜୋନ୍‌ସ, କାର୍‌ଲାଇଲ୍, ଗାୟାର୍ଡ୍, ରିମାର୍କ ପ୍ରମୁଖ ବିଶ୍ୱସାହିତ୍ୟବିତ୍‌ମାନେ ଆନ୍ତଃମାନବୀୟ ଓ ଆନ୍ତଃ ସାଂସ୍କୃତିକ ଆବେଦନ ଭିତ୍ତିରେ ବିଶ୍ୱ-ସୃଜନ ଧାରାରେ ଆନୁଷଙ୍ଗିକ ପ୍ରତିରୂପତାର ଐକ୍ୟ ଉଦ୍‌ଘାଟନ କରିଛନ୍ତି।

୧୯୫୪ରେ ଯୁଦ୍ଧୋତ୍ତର ବିଶ୍ୱର ରାଜନୀତିକ କ୍ଷମତା ବିଳାସୀ ଦର୍ଶନ ଓ ମାନସିକତାକୁ ମାନବୀୟ-ଉଦାରପଣର ହୃଦୟଭାବ ଅନୁସାରେ ସଂଚାଳିତ କରିବାର ଉଦ୍ଦେଶ୍ୟ ପ୍ରତି ସଚେତନ ରହି ସାହିତ୍ୟ ମାଧ୍ୟମରେ ବିଶ୍ୱ ସଂହତିର ଅବଧାରଣା ସୃଷ୍ଟି କରିବାର ମହତ ବିଚାରକୁ ଅବଲମ୍ବନ କରି ଆନ୍ତର୍ଜାତୀୟ ତୁଳନାତ୍ମକ ସାହିତ୍ୟ ପରିଷଦ (I.C.L.A.) ଗଠିତ ହୋଇଛି। ୧୯୫୫ରେ ଭେନିସ୍ ସହରରେ ଏହାର ପ୍ରଥମ ଅଧିବେଶନରେ ଏହି ସାହିତ୍ୟବୋଧର ପରିସର ସ୍ୱଷ୍ଟରୂପ ନିମ୍ନମତେ ନିର୍ଦ୍ଦିଷ୍ଟ କରିଛି–

- ଏହିଧାରା ଦ୍ୱାରା ଭାବବିନିମୟର ପରଂପରାଟିଏ ନୂଆ କରି ସୃଷ୍ଟି ହୋଇଛି।
- ସାହିତ୍ୟିକ ନନ୍ଦନବୋଧଟି ଭୂମିର, ଧର୍ମର, ସଂସ୍କୃତିର, ଭାଷାର, ବର୍ଣ୍ଣର, ଗୋଷ୍ଠୀର ନୁହେଁ, ସମଗ୍ର ମୈତ୍ରୀବାଦୀ ମଣିଷ ଜାତିର।
- ସାହିତ୍ୟ ମାଧ୍ୟମରେ ଭୂଗୋଳ, ଇତିହାସ, ମନସ୍ତତ୍ତ୍ୱ, ଦର୍ଶନ, ଗଣିତ, ନୃତତ୍ତ୍ୱ,କଳା, ଆଦି ଆନ୍ତଃବିଦ୍ୟାର ସହଯୋଗୀମୂଳକ ପ୍ରସାରଣ ଘଟିଥାଏ।
- ବିଶ୍ୱର ଭାବବାଦୀ ଚିରାୟତ ସତ୍ୟାନୁରକ୍ତ ଲେଖକଙ୍କ ଭିତରେ ଜୀବନ, ଜଗତ, ମାନବୀୟ ପ୍ରତ୍ୟୟକୁ କେନ୍ଦ୍ରକରି ଗୋଟିଏ ଆନୁଷଙ୍ଗିକ ସମଗ୍ରତାର ନିର୍ଯ୍ୟାସ ବଳବତ୍ତର ରହିଛି।
- ସାହିତ୍ୟର ପରିଭାଷା ହେଉଛି ମାନବୀୟ ବୃତ୍ତିର ସମରୂପକ ବିଦ୍ୟା।
- ସାହିତ୍ୟ ଅଧ୍ୟୟନର ମୁଖ୍ୟ ଓ ଏକମାତ୍ର ଶୁଭଗ ବିଧେୟ ହେଉଛି ସୁସ୍ଥକର ଓ ସତ୍ୟର କାଳୋତ୍ତୀର୍ଣ୍ଣ ସୌନ୍ଦର୍ଯ୍ୟକୁ ନିରପେକ୍ଷ ଦୃଷ୍ଟି ଓ ହୃଦୟ ନେଇ ଅନୁଭବ କରିବା ଓ ବିଚାରବୋଧଗୁଡ଼ିକ ମଧ୍ୟରେ ପାରସ୍ପରିକ ସମ୍ବନ୍ଧ ରକ୍ଷାକରିବା।

ଆଇ.ସି.ଏଲ୍.ଏକୁ ମାଧ୍ୟମ କରି ଓ୍ୱାର୍ଣ୍ଣର ଫ୍ରେଡ଼ରିକ୍, ରେନୀ ୱେଏକ୍, କାରେ, ଆର୍.ଏମ.ସୋମାରିନ୍, ଏନ୍.ଏସ୍.ପାଭଲୋଭା, ନିଉ ପୋକାଇଭା ସାହିତ୍ୟରେ ବିଶ୍ୱର

ଦରଦୀ ବିଶ୍ୱାସ, ମାନବ-ସମଷ୍ଟିବୋଧର ଚେତନା ପ୍ରମୁଖ ଉପାଦାନ ଭାବରେ ରୂପାୟିତ ହେବା ଉଚିତ ବୋଲି ଦୃଢ଼ମତ ଦେଇଛନ୍ତି। ୧୯୬୨ ମସିହାରେ ପୂର୍ବ ୟୁରୋପରେ ବୁଦାପେଷ୍ଟଠାରେ ପ୍ରଖ୍ୟାତ ତୁଳନାଶାସ୍ତ୍ରୀ ଆରନ୍, ଟଏନବୀ, ମାର୍ଟିଅର, ରାଓସେଟ୍,ଭଏଜିନ୍, ମେରିଆ ଜାନିଅନ୍, ଓ୍ୱେର୍ଣର କ୍ରାନେସ୍ ପ୍ରମୁଖ ବିଶ୍ୱର ପ୍ରତ୍ୟେକ ଜାତୀୟ ସାହିତ୍ୟର (National literature) ପୁନର୍ମିଳନ ଭିତରେ ବିଶ୍ୱସାହିତ୍ୟ ବ୍ୟବସ୍ଥାର ମହତ୍ତ୍ୱ ଓ ଆବେଦନକୁ ମୂଲ୍ୟାୟନ କରାଯିବା ଉପରେ ପ୍ରାଧାନ୍ୟ ଦେଇଛନ୍ତି। ୧୯୬୪ ମସିହାରେ ହଙ୍ଗେରିଆନ ତୁଳନାତ୍ମକ ସାହିତ୍ୟ ଏକାଡେମୀ ବିଶ୍ୱର ମହତ୍‌ଚେତନାର ଭାବ ବିନିମୟ ତାକୁ ହିଁ ତୁଳନା, ସାଦୃଶ୍ୟ, ପ୍ରଭାବ ଊର୍ଦ୍ଧ୍ୱରେ ସାହିତ୍ୟ ଅଧ୍ୟୟନର ମାନଦଣ୍ଡ ରୂପେ ଗ୍ରହଣ କରିବାକୁ ଆହ୍ୱାନ ଦେଇ ତୁଳନାତ୍ମକ ସାହିତ୍ୟ ବିଚାର ସମ୍ବନ୍ଧୀ ଏକ ମାନକ-ଆଲୋଚନା ସଂକଳନ ପ୍ରକାଶ ପାଇଛି। ଏହି ସଂକଳନର ନିଷ୍କର୍ଷ ଏକ ସର୍ବବାଦୀ ସମର୍ଥନର ପରିଭାଷାଟିଏ ତୁଳନାତ୍ମକ ସାହିତ୍ୟ ସଂପର୍କରେ ଯୋଗାଇ ଦେଇଛି; ତାହା ହେଉଛି– ତୁଳନାତ୍ମକ ସାହିତ୍ୟ ସାହିତ୍ୟ ଇତିହାସର ଏକ ଗୁଣାତ୍ମକ ଶାଖା ଯାହାକି ମାନବ ସମ୍ବଳର କଲ୍ୟାଣକର ବିଷୟବସ୍ତୁ ଓ ଜୀବନାନୁଭୂତିର ସାମ୍ୟବୋଧ ଉପରେ ବିଶ୍ୱ-ସର୍ଜନଶୀଳ-କଳ୍ପନାକୁ ଏକସୂତ୍ରୀ କରିପାରିଛି। ସାହିତ୍ୟ ସାହିତ୍ୟ ମଧ୍ୟରେ ବୁଝାମଣା ସ୍ୱାକ୍ଷରିତ ହୋଇ ବିଶ୍ୱୈକ ମାନବସମ୍ବଳର ଅଗ୍ରଗତି ଘଟିଛି।

ତୁଳନାତ୍ମକ ସାହିତ୍ୟ ସିଦ୍ଧାନ୍ତ ଏବଂ ପ୍ରକାରର କ୍ରମବିକାଶ ମାର୍ଗରେ ଚାରୋଟି ମାର୍ଗଦର୍ଶୀ ଅଧ୍ୟୟନଶୀଳ ଶାଖାର ବିକାଶ ଘଟିଛି। ଯଥା– (କ) ଫ୍ରେଞ୍ଚ– ଜର୍ମାନୀ ଶାଖା ବା ପରଂପରା ବାଦୀ ଶାଖା, (ଖ) ମାର୍କିନ ଶାଖା ବା ଉଦାରତାବାଦୀ ଶାଖା (ଗ) ଋଷୀୟ ସମାଜତତ୍ତ୍ୱବାଦୀ ଶାଖା ବା ହେତୁବାଦୀ ଶାଖା (ଘ) ବ୍ରିଟିଶ ଶାଖା/ସମନ୍ୱୟବାଦୀ ଶାଖା। ପରଂପରାବାଦୀ ଫ୍ରେଞ୍ଚ-ଜର୍ମାନୀୟ ଶାଖାର ତୁଳନାବାଦୀମାନେ (ଫରନାଦ ବାଲ୍‌ଡେନ୍, ଏମ.ଏଫ୍.ଗାୟାର୍ଦ୍ଦ, ପି. ଭାଁ ତିଗେହମ୍, ଜାଁ ମେରୀ କାରେ, ଡୁଫ୍ରେନ୍, ରେବିନାସ୍, ଗାଦାମେର, ୟାଉସ୍, ହର୍ବଟ ମାକ୍ୟୁଜ୍, ମାଇକେଲ ରିଫାଦେର, ମିଶେଲ ଫୁକୋଲ ଓ ରିକୋଆ ପ୍ରମୁଖ ଐତିହସାସିକ-ମାନବୀୟ ମୂଲ୍ୟବୋଧର ପାରଂପରିକ ଅନ୍ତଃସମ୍ବନ୍ଧ ଭିତ୍ତିରେ ବିଶ୍ୱସାହିତ୍ୟର ଯୋଗସୂତ୍ର ନିର୍ଦ୍ଧାରଣ କରିଛନ୍ତି। ଏମାନଙ୍କ ପ୍ରତିପାଦ୍ୟ ବିଶେଷତ୍ୱଟି ହେଉଛି– ଯେକୌଣସି ସାହିତ୍ୟ ନିଜ ଭୂମିଖଣ୍ଡରେ ଆଂଚଳିକ/ସାମୟିକ/ ସାଧାରଣ/ଜାତୀୟ ହୋଇଥାଏ ଏବଂଏହା ଅନ୍ୟ ଭୂମିଖଣ୍ଡରେ ସାମାଜିକ ଆକୃତି ଓ ସାଂସ୍କୃତିକ ସଂବୃତ୍ତି କ୍ରମେ ସଂଚାରିତ ହୋଇଥାଏ। ଏମାନଙ୍କ ବିଚାରରେ ସାହିତ୍ୟ ଓ ସାହିତ୍ୟ ସମାଲୋଚନା ଏକ ନୂଆ ପରିଭାଷା ପାଇଛି, ଯଥା– ''ପାରଂପରିକ ସୂତ୍ରରେ ମାନବୀୟ ମୂଲ୍ୟବୋଧର ବାହାକ ହେଉଛି ସାହିତ୍ୟ'' ଏବଂ ''ସାହିତ୍ୟ ସମାଲୋଚନା

ହେଉଛି ଭିନ୍ନବଳୟର ସ୍ରଷ୍ଟା ଓ ସୃଷ୍ଟିର ବୋଧମେଳର ମୂଲ୍ୟାୟନ। ସାହିତ୍ୟ ସାହିତ୍ୟ ଭିତରେ ଆପେକ୍ଷିକ ଗୁଣାରୋପ ଓ ପାରଂପରିକ ଅବବୋଧର ମେଳସଂଧାନ ହିଁ ମୂଲ୍ୟାୟନ। ଏମାନେ ପାରଂପରିକ ଜୀବନ ସଂବୃତ୍ତିକୁ ଆନ୍ତର୍ବିଷୟ ଆଲୋଚନା ଓ ବିଷୟତାତ୍ତ୍ୱିକ ମେଳ ମଧ୍ୟରେ ଦେଖି ସମଗ୍ର ବିଶ୍ୱ ସାହିତ୍ୟକୁ ସାମୁଦାୟିକ ସାଧାରଣ ସାହିତ୍ୟ ରୂପେ ବିବେଚନା କରିଛନ୍ତି। ଏମାନେ ବିଶ୍ୱାସ କରନ୍ତି ଯେ ସମାନ୍ତରୀକରଣ ଓ ପରିଗ୍ରହଣ ଭାବାଧାର କ୍ରମେ ସାହିତ୍ୟ-ସାହିତ୍ୟ ଭିତରେ ଐତିହାସିକ/ପାରଂପରିକ ସମ୍ବନ୍ଧ ନିର୍ଦ୍ଧିଷ୍ଟ ହୋଇଯାଏ।

ଅପରପକ୍ଷରେ ଉଦାରତାବାଦୀ ମାର୍କିନ- ତୁଳନାତ୍ମକ ସାହିତ୍ୟଶାଖାର ତତ୍ତ୍ୱବିତ୍‌ମାନେ (ହେରୀଲେବିନ୍, ଡେଭିଡ୍ ମିଲୋନ୍, ରେନେୱେଲେକ୍, ଫେଡରିକ୍ ଇଂଗ୍ଲେସ୍, ଷ୍ଟେଁଲେଫିଶ୍, ଟେରୀ ଇଗ୍ଲଟନ, ପ୍ରେଡେରିକ୍ ଜେମସନ୍, ହିର୍ଶ, ମିଲର, (ଆମେରିକା) ଭିକ୍ଟର ଗ୍ରାହାମ, ଏମ୍. ହାଇନେ, ଡି. ଜୋନ୍‌ସ, ରୋନାଲ୍‌ଡ, ଫିଲିପ୍ ଷ୍ଟ୍ରାଟଫୋର୍ଡ (କାନାଡା) ବିଭିନ୍ନ ଭାଷାର ସାହିତ୍ୟ ମଧ୍ୟରେ ମାନବବାଦୀ ଅଧିକାରବୋଧ, ସଂପ୍ରୀତିବୋଧ, ସମବ୍ୟଥୀ ଉଦାର ଗୁଣବୃତ୍ତିର ଏକକ ପରିଚିତିକୁ ଅଧ୍ୟୟନ କରିଛନ୍ତି। ଏମାନେ ବିଶ୍ୱର ମାନବ ଦରଦୀପଣର ଚିରାୟତ କୃତିଗୁଡ଼ିକ ନିର୍ଯ୍ୟାସମୂଳକ ବିଷୟବସ୍ତୁଗୁଡ଼ିକୁ ନେଇ ପାଠକ ଭିତ୍ତିକ ସଂକ୍ଷିପ୍ତସାର ପାଠଗ୍ରନ୍ଥ ନିର୍ମାଣ କରି ଦେଖାଇ ଦେଲେ ଯେ ତୁଳନାତ୍ମକ ସାହିତ୍ୟ ଦ୍ୱାରା ମାନବୀୟ ସୌନ୍ଦର୍ଯ୍ୟ ବୃତ୍ତି ଗୁଡ଼ିକର ମେଳଣସାଧନ ହୋଇଆସିଛି। ମାନବୀୟ ଜ୍ଞାନ, ବସ୍ତୁପ୍ରତି ସୌନ୍ଦର୍ଯ୍ୟ ପ୍ରତୀତି ଓ ମାନବୀୟ ବୈଚାରିକ କ୍ଷେତ୍ରଗୁଡ଼ିକର ଅପୂର୍ବ ମିଳନ ଉନ୍ନତମାନର ସାହିତ୍ୟ ଭିତରେ ରହିଛି। ସାହିତ୍ୟ ସହିତ ସାହିତ୍ୟର ମିଳନ ଘଟିବା ଦ୍ୱାରା ସାହିତ୍ୟିକ ବାତାବରଣର ପ୍ରଭାବ ଦେଇ ମାନବ ଐତିହ୍ୟରେ ନବନ୍ୟାୟିକ ଦୃଷ୍ଟିଭଙ୍ଗୀମାନ ନିର୍ମାଣ ହେଉଛି। ଚାଷ୍ (ଅବିଭକ୍ତ)ରେ ତୁଳନାତ୍ମକ ସାହିତ୍ୟ ମୁଖ୍ୟତ ଐତିହାସିକ ସାମାଜିକ ଦ୍ୱନ୍ଦବାଦୀ ବ୍ୟବସ୍ଥା ଉପରେ ବିଶ୍ୱ ସାହିତ୍ୟର ସଂପର୍କକୁ ବିଚାର କରିଛି। ତୁଳନାତ୍ମକ ସାହିତ୍ୟକୁ ଚାଷ୍ ପରେ ଚୀନ୍‌ର ବାମମାର୍ଗୀ ସମାଜ ବ୍ୟବସ୍ଥାର ସାହିତ୍ୟରେ ସହ-ସମାଜବୋଧର ପ୍ରସଙ୍ଗ ଭାବରେ ବିଚାର କରାଯାଇଛି। ସାହିତ୍ୟ ଅଦଳବଦଳର ପ୍ରଭାବ-ପରିଣତି ନୁହେ କି ଦେଶଦେଶ ମଧ୍ୟରେ ବୈଦେଶିକୀ ବାଣିଜ୍ୟ କାରବାର ନୁହେଁ, ବରଂ ମାନବ ସମାଜ ମଧ୍ୟରେ ଦ୍ୱନ୍ଦ୍ୱାତ୍ମକ ସମାଜବାଦୀ ସମ୍ବନ୍ଧ ନିରୂପଣ ଓ ମାନବବାଦୀ ଐକ୍ୟସ୍ଥାପନ ଉପରେ ମାର୍କସ୍‌ବାଦୀ ତୁଳନାବୋଧ ପ୍ରତିଷ୍ଠା ଲାଭ କରିଛି। ୧୯୬୦/ ୧୯୬୨ର ମସ୍କୋ ଓ ବୁଦାପେଷ୍ଟର ଆନ୍ତର୍ଜାତୀୟ ତୁଳନାତ୍ମକ ସାହିତ୍ୟ ସଂପାନରେ

ଇ.ଜି. ନୈପୋକୋଭା, ଇଟାଏମୂଲ୍, ଗୋରୋଲ୍, ଲିଖାଚେଭ୍ ପ୍ରମୁଖ ତୁଳନାଶାସ୍ତ୍ରୀମାନେ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି :–

- ବିଶ୍ୱରେ ଗାଣତାନ୍ତ୍ରିକ ଓ ସମାଜବାଦୀୟ ବ୍ୟବସ୍ଥାର ଦୁଇ ଶ୍ରେଣୀୟ ସାହିତ୍ୟ ବଳବତ୍ତର ରହିଛି।
- ଐତିହାସିକ ପ୍ରାମାଣିକତା ଅପେକ୍ଷା ସମକାଳୀନ ବିଶ୍ୱମାନବର ସାଧାରଣ ସମସ୍ୟା ଓ ସମାଜ ସଂପୃକ୍ତି ସହିତ ସାର୍ବକାଳିକ ନନ୍ଦନତାତ୍ତ୍ୱିକ ସତ୍ୟଦର୍ଶୀ ସ୍ୱଷ୍ଟବିଚାରର ମିଳନରେ ଏକ ପ୍ରଗତିବୋଧର ବିଶ୍ୱସାହିତ୍ୟ ନାଗରିକତା ସୃଷ୍ଟି ହେବା ଉଚିତ।
- ମଣିଷର ଶ୍ରେଷ୍ଠତ୍ୱ, ବସ୍ତୁଭେଦଶୂନ୍ୟ ସମତାବୋଧ ଓ ମାନବୀୟ ସୌନ୍ଦର୍ଯ୍ୟବୋଧର ମିଳନରେ ତୁଳନାତ୍ମକ ସାହିତ୍ୟର ବିଶେଷତ୍ୱ ନିରୂପିତ ହେବା ଏବଂ ପ୍ରତିମଣିଷ ଭିତରେ ବିଶ୍ୱ ମଣିଷର ପ୍ରତୀକ ବିରେଚନ କରିବା ଉଚିତ।

ଏଥିପୂର୍ବରୁ ମାର୍କସ ଓ ଏଞ୍ଜେଲସ୍ ''କମ୍ୟୁନିଷ୍ଟ ମାନିଫେଷ୍ଟୋ''ରେ ପୁରାତନ ଆଂଚଳିକତା, ଜାତୀୟ ସ୍ୱାଭିମାନର ଏକ ପାକ୍ଷିକତା ଓ ବ୍ୟକ୍ତିବିଳାସୀ ଅହଂତ୍ୱ ଉର୍ଦ୍ଧ୍ୱରେ ପରସ୍ପର ନିର୍ଭରଶୀଳତାର ମହାଭାବଟିଏ ବିଶ୍ୱମାନବ ଭାବନାର ଏକୀକରଣ କ୍ରମେ ସାହିତ୍ୟରେ ପ୍ରଖ୍ୟାପନ କରିବା ଉପରେ ପ୍ରାଧାନ୍ୟ ଦେଇଛନ୍ତି। ବିଶ୍ୱର ଯେକୌଣସି କୋଣର ସାମାଜିକ ମାନବର ଶ୍ରେଷ୍ଠତା ଆକଳନ କରିଥିବା ସାହିତ୍ୟକୁ ଉଦାର ମାନବୀୟ ସମତାବୋଧର ପ୍ରତୀକ ଏକ-ସମୁଦାୟ-ମାନବଜାତିର ପ୍ରାଜ୍ଞିକ ସଂପତ୍ତି ଭାବରେ ଆକଳନ କରାଯାଇଛି।

ଏ କ୍ଷେତ୍ରରେ ୧୯୮୫ ମସିହାରେ ସେନ୍‌ଝେଂ ବିଶ୍ୱବିଦ୍ୟାଳୟରେ ଚୀନ-ବିଦ୍ୱାନମାନଙ୍କ ମାଧ୍ୟମରେ ପ୍ରାଚ୍ୟ ଦେଶୀୟ ସାହିତକୁ ନେଇ ଯେଉଁ ତୁଳନାତ୍ମକ ସଂପାନ ସଂଘଟିତ ହୋଇଥିଲା ସେଥିରେ ଏକ ସିଦ୍ଧାନ୍ତ ନିରୂପିତ ହୋଇଛି ଯେ ନୀତିଭିତ୍ତିକ ମଣିଷ, ଆଦର୍ଶବାଦିକ ମଣିଷ, ଈଶ୍ୱରାନୁଗତ ଭୟ-ଭକ୍ତିମୂଳକ ମଣିଷର ଏକରୂପତା ପ୍ରାଚ୍ୟ ମଣ୍ଡଳୀୟ ସାହିତ୍ୟଗୁଡ଼ିକର ମୁଖ୍ୟ ଉପାଦାନ ହୋଇଛି ଓ ପ୍ରାଚ୍ୟସାହିତ୍ୟ ମାନବୀୟ ସହନଶୀଳତାର ବିଜୟ ଘୋଷଣା କରି ଆସିଛି। ଚୀନର ତୁଳନାତ୍ମକ ସାହିତ୍ୟ ବିଷାରଦ କ୍ୱାନ୍ ଝୁଙ୍ଗ୍‌ସ ପାଶ୍ଚାତ୍ୟ ଓ ବିଶେଷକରି ପ୍ରତିବେଶୀ ଦେଶୀୟ ପ୍ରାଚ୍ୟ ସାହିତ୍ୟରେ (ଦେଶୀୟ-ଥାଇ, ଜାପାନ, ବର୍ମା, ସିଂହଳ, ମାଳୟ, ଭାରତ, ବଙ୍ଗଳାଦେଶ ଇତ୍ୟାଦି) ପ୍ରତିଫଳିତ କାବ୍ୟିକ ମନ ସହିତ ଚୀନର ସାରସ୍ୱତୀୟ ସୃଜନମନର ତୁଳନା କରି ଦର୍ଶାଇଛନ୍ତି ଯେ ଆବେଗିକ ମନର ପ୍ରସଙ୍ଗକୁ ନେଇ ସାହିତ୍ୟର ତୁଳନା ବିଶ୍ୱମୈତ୍ରୀ ଓ ମାନବ-ଏକୀବନ୍ଧନ ସୃଷ୍ଟି

କରିପାରିବ ନାହିଁ। ବରଂ ସାମାଜିକ ବିଷୟଗତ କଳାମନ ମାଧ୍ୟମରେ ସାହିତ୍ୟ ବିଶ୍ୱ ମଣିଷକୁ ସମଗ୍ରତା ଦିଗରୁ ଏକୀକରଣରେ ପ୍ରବୋଧିତ ଓ ପରିଚାଳିତ କରିପାରିବ। ବ୍ରିଟିଶ ତୁଳନାତ୍ମକ ଶାଖା ଓ ରାଜ୍ୟଗୋଷ୍ଠୀୟ ସାହିତ୍ୟ ସଂଦୃଷ୍ଟି ମଧ୍ୟ ବିଷୟଗତ ଏକୀକରଣକୁ ତୁଳନାତ୍ମକ ସାହିତ୍ୟର ସମନ୍ୱୟାତ୍ମକ ଲକ୍ଷ୍ୟହେବା ଉପରେ ଗୁରୁତ୍ୱ ଦେଇଆସିଛି।

ମୋଟ ଉପରେ ଗେଟେଙ୍କଠାରୁ ଆରମ୍ଭ ହୋଇଥିବା ବିଶ୍ୱସାହିତ୍ୟ ତୁଳନାତ୍ମକ ସାହିତ୍ୟ ପରଂପରାଟି ବର୍ତ୍ତମାନକୁ ଏହି ବିନ୍ଦୁରେ ଉପନୀତ ହୋଇଛି ଯେ ବିଶ୍ୱର ସ୍ମରଣୀୟ ଗ୍ରନ୍ଥ ଓ ବରେଣ୍ୟ କଳ୍ପକମାନଙ୍କ କଳ୍ପଲୋକ ମଧ୍ୟରେ ସହୃଦୟ-ସମ୍ବେଦୀ ଦୃଷ୍ଟିନେଇ ଦୁଃସାହାସିକ ଓ ତୁଳନା ସଂଯୋଗୀ ଅଭିଯାନ କରିବା ଦ୍ୱାରା ଏକ ସମବୋଧର ଓ ସମସମ୍ବଳର ସଂଯୋଗାତ୍ମକ ଚେତନାଭୂମି ବିଶ୍ୱମାନବ ପାଇଁ ସଂଭବ ହୋଇଛି ଓ ହୋଇପାରିବ।

(ପାଞ୍ଚ)

**ଭାରତୀୟ ବିଚାର-ବିମର୍ଶ ତୁଳନାତ୍ମକ ସାହିତ୍ୟ :–**

ପ୍ରଥମରୁ କହିରଖୁଛି ଆମକୁ ଲାଗେ ତୁଳନାତ୍ମକ ସାହିତ୍ୟ କହିଲେ ଦୁଇ ବା ତହିଁରୁ ଅଧିକ ସାହିତ୍ୟ ଭିତରେ ଉଧାରୀ ସଂପର୍କକୁ ମାପି ଦେଖାଇଦେବା। ଏ ପ୍ରକାର ବିଚାର-ବିମର୍ଶର ମାର୍ଗଟି ଆମ ପରଂପରାରେ ସଂପୂର୍ଣ୍ଣ ବହିରାଗତ, ଅର୍ବାଚୀନ ଓ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ୧୯୦୬ରେ ପ୍ରଦତ୍ତ ଅଭିଭାଷଣ ନିର୍ଯ୍ୟାସ– 'ବିଶ୍ୱସାହିତ୍ୟ' ତର୍କଣାରୁ ଏକରକମ ଆରମ୍ଭ। ଏହା ଆଂଶିକ ସତ୍ୟ ଓ ଏଠାରେ ପୂର୍ଣ୍ଣସତ୍ୟଟି ହେଉଛି– ଭରତ – ଭାମହ – ଦଣ୍ଡୀ – ଆନନ୍ଦବର୍ଦ୍ଧନ – ରାଜଶେଖର – ବିଶ୍ୱନାଥ – ଜଗନ୍ନାଥଙ୍କ ଦ୍ୱାରା ସିଦ୍ଧାନ୍ତ ନିଷ୍ପ ହୋଇଥିବା ସାଦୃଶ୍ୟାତ୍ମକ / ସମ୍ବାଦାତ୍ମକ / ତୁଲ୍ୟକଳ୍ପକ ଭାଷ୍ୟ / ମୀମାଂସାଗୁଡ଼ିକ ଯଦି ଉପନିବେଶବାଦୀ / ସାମ୍ରାଜ୍ୟବାଦୀ ସାଂସ୍କୃତିକ ଚକ୍ରବ୍ୟୂହୀୟ ତାଡନାରେ ପଡିନଥାନ୍ତା, ତେବେ ଭାରତୀୟ ବୈଦିକ ସ୍ୱରର ମାନ୍ତ୍ରିକ ଭିତ୍ତି ଓ ହିତବାଦିନୀ ତୁଲ୍ୟଦେହୀ, ରଚନା ସମ୍ବାଦ ବିଶ୍ୱ ସାହିତ୍ୟ ତତ୍ତ୍ୱରେ ବିସ୍ତାରଣ ପ୍ରକ୍ରିୟା ସାଧନ ପୂର୍ବକ ଏକ ସାରସ୍ୱତ-କୁଟୁମ୍ବୀ ଅମୃତଦୃଷ୍ଟିର ମାନବବାଦୀ ମେଦିନୀବୋଧର ମିଶ୍ରକଳ୍ପଲୋକଟିଏ ସୃଷ୍ଟି କରିସାରନ୍ତାଣି। ଆରିଷ୍ଟୋଟଲ କାଳୀନ ସଂଶ୍ଳେଷଣ/ଅନୁକରଣ/ବିରେଚନ ତତ୍ତ୍ୱ ଭିତ୍ତି ଭାବରେ ରହିଥିଲେ ବି ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱରେ ବିଶ୍ୱ ସାହିତ୍ୟରମେଳକ ବିଚାରଟିଏ ନିର୍ଣ୍ଣୟ ପାଇଁ ୧୫୦୦ ବର୍ଷ ଧରି ଗେଟେଙ୍କୁ ଅପେକ୍ଷା କରାଯାଇଛି। ମାତ୍ର ଲୋକବୃତ୍ତିକ ଅନୁକୃତି ନାଟ୍ୟକଳାର ରସ-ସଂଯୋଗ-ନିଷ୍ପତ୍ତି ଉପରେ ପ୍ରତିଷ୍ଠିତ ଭରତଙ୍କ ମେଳକ ବିଚାର ଭାମହ-ଦଣ୍ଡୀ-

ଭର୍ତ୍ତୃହରି-ଆନନ୍ଦ- ରାଜଶେଖର ପ୍ରମୁଖଙ୍କୁ କେନ୍ଦ୍ରକରି ଶତାବ୍ଦୀକୁ ଶତାବ୍ଦୀ ବ୍ୟବଧାନରେ ନୂଆ ନୂଆ ସିଦ୍ଧାନ୍ତମୁଖୀ ହୋଇ ସଂପ୍ରସାରିତ ହୋଇଛି। ଭାରତୀୟ ସିଦ୍ଧାନ୍ତ ସହିତ ପାଶ୍ଚାତ୍ୟ ସିଦ୍ଧାନ୍ତର ମିଳନ ମଧ୍ୟରେ ବିଶ୍ୱସାହିତ୍ୟର ତୁଳନାତ୍ମକ ସାଧନ କେନ୍ଦ୍ରର ମାନକ ନିରୂପଣ ହେବାର ଔଚିତ୍ୟ ସଂପ୍ରତି ଦେଖାଦେଇଛି।

ଭରତଙ୍କ 'ନାଟ୍ୟଶାସ୍ତ୍ରଂ' ପ୍ରଥମେ ନାଟକରେ ଲୋକବୃତ୍ତିର ଅନୁକୃତି, ସଂସ୍କୃତ ସହିତ ଭାରତର ଅନ୍ୟାନ୍ୟ ପ୍ରାକୃତଭାଷା ଓ ବିଭାଷାଗୁଡ଼ିକର ସଂଯୋଗ ଉପରେ ଗୁରୁତ୍ୱ ଦେଇଛି। ଭାଷା ସଂଯୋଗ ସହିତ ଭାବକ୍ରିୟାର ସଂଯୋଗ ନିଷ୍ପତ୍ତି ଉପରେ ସାହିତ୍ୟର ରସାବେଦନର ପରିଣତିକୁ ଭରତନାଟ୍ୟ ବା କାବ୍ୟସୌନ୍ଦର୍ଯ୍ୟ ଭାବେ ସ୍ଥିର କରିଦେଇଛନ୍ତି। ୫ମ ଶତାବ୍ଦୀରେ ଭର୍ତ୍ତୃହରି ବାକ୍ୟପଦୀୟରେ ଶବ୍ଦ ବ୍ରହ୍ମବାଦ/ସ୍ଫୋଟ କଳ୍ପନା ପ୍ରସଙ୍ଗ ଉତ୍‌ଥାପନ କରି ଭାବମେଳକ ନିମନ୍ତେ ଭିନ୍ନ ଭିନ୍ନ କ୍ଷେତ୍ରର ଆହାର୍ଯ୍ୟଜ୍ଞାନଗର୍ଭକ ଭାଷିକ ଶବ୍ଦ ପ୍ରସିଦ୍ଧିର ମିଳନ ଉପରେ ଗୁରୁତ୍ୱାରୋପ କରିଛନ୍ତି। ଏଥିପୂର୍ବରୁ ନାଗାର୍ଜୁନ ଯୌଗରଢ଼ ତତ୍ତ୍ୱ (ସ୍ୱତନ୍ତ୍ର କେନ୍ଦ୍ରୀୟ ଭାବବିଧାନ କ୍ରମେ ସ୍ୱାଧୀନ ଭାବରେ କିଛି ଘଟୁନି; ସମସ୍ତ ମାନବ ଚେତନା ଏକ ପ୍ରାକୃତିକ ସମ୍ବନ୍ଧ କ୍ରମେ ତୁଳନାଧର୍ମୀ ଶବ୍ଦାଶ୍ରିତହୋଇ ଘଟୁଛି) ସ୍ଥାନ-କାଳ ଊର୍ଦ୍ଧ୍ୱରେ ମାନବୀୟ ଭାବନାର ସମ୍ବନ୍ଧ ନିର୍ଦ୍ଧାରଣ କରିଛି। ଭାମହଙ୍କ ମତରେ କବିବୃତ୍ତି ବା ସାରସ୍ୱତ ମାର୍ଗଟି ହେଉଛି 'ମାଲ୍ୟକାର ବୃତ୍ତି'। ବିବିଧ ମାଳିଙ୍କ ଗୁନ୍ଥନକୌଶଳକୁ ଅନୁକରଣ କରି ପୂର୍ବସୂରୀଙ୍କ ବଗିଚାରୁ ଭାବପୁଷ୍ପ ସଂଗ୍ରହ କରି ଭିନ୍ନ ଓ ନବଶୋଭା-ବର୍ଦ୍ଧକ ଆଳଙ୍କାରିକ ମିଳନ ସାଧନ ହିଁ ଭାମହଙ୍କ ବିଚାରରେ ସୃଜନ ଧର୍ମ। କବିମାନେ କାବ୍ୟରଚନାର ଭିତ୍ତିକଳ୍ପ ନିମନ୍ତେ ବହୁଶାସ୍ତ୍ରଦର୍ଶୀ ହେବା ଉପରେ ଭାମହ ପ୍ରାଧାନ୍ୟ ଦେଇଛନ୍ତି। କାବ୍ୟ ସୃଜନ ଏକ ସମ୍ବାଦ ଭାବପ୍ରଖ୍ୟାପକ ପ୍ରସଙ୍ଗ– ଯାହା କାବ୍ୟ ବିଦ୍‌ର କ୍ରିୟାକଳ୍ପରେ ରସଗ୍ରହଣ ଓ ମେଳୀକରଣ ବ୍ୟତୀତ ଅନ୍ୟ କିଛି ନୁହେଁ। ଧନଞ୍ଜୟଙ୍କ ମତରେ କବି ପୂର୍ବାପର ତୁଲ୍ୟକଳ୍ପୀ ଓ ଭାବସମ୍ମିତ କଳ୍ପୀ। ମମ୍ମଟଙ୍କ ଦୃଷ୍ଟିରେ କାବ୍ୟର ଉପାଦେୟତା, ସୃଜନ ଓ ପଠନ ସମ୍ବାଦଟି ହେଉଛି 'ସଦ୍ୟ ପରାପର ନିବୃତ୍ତିଃ ବ୍ୟାପାର'; ଯାହା ଭାବମାନଙ୍କର ସାର୍ବକାଳୀନ ସମ୍ବନ୍ଧକୁ ସମର୍ଥନ କରୁଛି। ଏହି କ୍ରମରେ ରୀତ୍ୟାଙ୍ଗିକ/ସଂଘଟନାବାଦୀ ଆଳଙ୍କାରିକମାନେ ସଂଗୃହୀତ ଭାବ ପ୍ରସିଦ୍ଧିଗୁଡ଼ିକୁ ନୂଆ ନୂଆ ଆମୋଦଧର୍ମରେ ବିଭାବନକାରକ କରିବାପାଇଁ ଭାରତୀୟ କବିବ୍ୟାପାରୀମାନଙ୍କ ନିମନ୍ତେ ସାଦୃଶ୍ୟ ବା ତୁଳନାଧର୍ମୀ ଅଳଙ୍କାରର ପ୍ରତିବିମ୍ବାୟନ ବ୍ୟବହାର କିପରି ବଳବର୍ଦ୍ଧକ ହୋଇଛି ତାହାଉପରେ ଊଣା ଅଧିକେ ସମସ୍ତେ ସହମତି ସୂଚକ ଅଭିମତ ଦେଇଆସିଛନ୍ତି। ଅପ୍ପୟ ଦୀକ୍ଷିତ ପରିଗ୍ରହୀ କବିତ୍ୱକୁ ତୁଲ୍ୟ

ଦୃଷ୍ଟାନ୍ତୀ'ସାଦୃଶ୍ୟ ଦୃଷ୍ଟାନ୍ତୀ ଭାବରେ ବିବେଚନା କରିଛନ୍ତି। ଯଥେଷ୍ଟ ପୂର୍ବରୁ ବାମନାଚାର୍ଯ୍ୟ 'କାବ୍ୟାଳଙ୍କାର ସୂତ୍ରରେ ଅନ୍ୟଭାବ ଗ୍ରହଣକାରୀ କବିତ୍ୱକୁ ଅନ୍ୟ ଛାୟା ଯୋନି କାବ୍ୟାର୍ଥ ବିଷୟ ଭାବରେ ପ୍ରତିପାଦନ କରି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ ଛାୟାନୁଶୀଳନ କବିତ୍ୱ ସାର୍ଥକ ପଦ ସଂଘଟନାରେ ସିଦ୍ଧହସ୍ତ। ଉତ୍ତରାଧିକାରୀ ସୂତ୍ରରେ ଭାବବାଦୀ କବିଙ୍କ ଛାୟାନୁସରଣ କରି ଗୁଣ-ପ୍ରବୋଧକ ପଦ-ସଂରଚନାରେ ଚମତ୍କାରିତା ସୃଷ୍ଟି କରିବା ସଫଳ କବିତ୍ୱର ପରିଚାୟକ।

ଏ ପର୍ଯ୍ୟାୟରେ ଆନନ୍ଦବର୍ଦ୍ଧନ ଓ ରାଜଶେଖର ବିଚାର-ବିମର୍ଶ ଦୃଷ୍ଟିଭଙ୍ଗୀ ଅଧିକ ସ୍ୱଚ୍ଛ, ଉଦାର, ବ୍ୟାପକ, ଯୁକ୍ତିପ୍ରଦ ଓ ବିଜ୍ଞାନ ସମ୍ମତ ହୋଇପାରିଛି। ଏ ଉଭୟ ବିଶ୍ୱାସ କରନ୍ତି– କବି ପ୍ରତିଭାର ଅବଧାରିତ ଭାଗ୍ୟ ଅତୀତର ଇଙ୍ଗିତକୁ ମନୋଭୂମିରେ ଆଶୀର୍ବାଦରୂପେ ଧାରଣ କରିବା। ଜଣେ ପୂର୍ବ-ସ୍ୱରୀର ସ୍ୱର, ଭାବ, ଶିଳ୍ପଚାତୁରୀର ଅଭିବ୍ୟଂଜନାତ୍ମକ କବି ପ୍ରସିଦ୍ଧିମୂଳକ ସାଦୃଶ୍ୟ ବା ମେଳକକୁ ସମ୍ବରୀର ସୃଜନ ବ୍ୟାପାରରେ ଲକ୍ଷ୍ୟ କରାଯିବାର ପ୍ରସଙ୍ଗକୁ ଧ୍ୱନ୍ୟାଲୋକକାର କାବ୍ୟସମ୍ବାଦ/ ରଚନା ସମ୍ବାଦ ଭାବରେ ପରିଭାଷିତ କରିଛନ୍ତି। ପର ରଚନାର ସ୍ୱାଦ ଗ୍ରହଣରେ ବିରତମନା ମୌଳିକ କବି ପ୍ରତିଭା କ୍ୱଚିତ ପରିଦୃଷ୍ଟ। 'ଧ୍ୱନ୍ୟାଲୋକ'ର 'ଚତୁର୍ଥ ଉଦ୍ୟୋତରେ' ପ୍ରତିଭାର ନିଦର୍ଶନ, ଅବସ୍ଥାଦି ଭେଦରେ କାବ୍ୟଭେଦ ଓ ସୃଜନ ପ୍ରକ୍ରିୟାର ମେଳ ସମ୍ବାଦକୁ ବିଶ୍ଳେଷଣ କରି ଆନନ୍ଦ ବର୍ଦ୍ଧନ କାବ୍ୟବୋଧ ନିମନ୍ତେ ଯେଉଁ ନୂଆ ଉପଲବ୍ଧି ଓ ବିଚାର ବିଶ୍ୱ ସାହିତ୍ୟ ମୀମାଂସା କ୍ଷେତ୍ରରେ ପ୍ରଥମ କରି ଶୁଣାଇଛନ୍ତି ସେସବୁର ନିର୍ଯ୍ୟାସ ହେଉଛି ଏହିପରି–

- ଯେମିତି ମଧୁମାସରେ ମଳୟ ସ୍ପର୍ଶରେ ପୁରୁଣା ବୃକ୍ଷରେ ନବପତ୍ର ପଲ୍ଲବିତ ହୁଅନ୍ତି, ଠିକ୍ ସେହିପରି ରସଧ୍ୱନି ବଳରେ ନୂଆ ଭାବନାର କବି ପ୍ରତିଭା ସଂସ୍ପର୍ଶରେ ଆସି ପୁରୁଣା ରଚନାଗୁଡ଼ିକର ଭାବ ନୂଆ ସ୍ୱାଦରେ ଅଭିବ୍ୟକ୍ତି ଲାଭକରେ।
- କାବ୍ୟ ସମ୍ବାଦ ବା ମେଳବୋଧ ହେଉଛି ସାହିତ୍ୟର ଧ୍ୱନ୍ୟାତ୍ମକ ସାଦୃଶ୍ୟ ବିବେଚନ।
- କାବ୍ୟଯୋଗ୍ୟ ଅନୁଭବମାନେ ଅପରିମିତ ଏବଂ ତାହା ସବୁ କଦାପି ଶେଷ ସୃଜନ ରୂପ ପାଇପାରନ୍ତି ନାହିଁ। ତେଣୁ ପରସ୍ୱରୀଙ୍କ କଳ୍ପନାରେ ସେମାନେ ପୁରୁଣାକୁ ଆଶ୍ରୟ କରି ଆଂଶିକ ଧର୍ମରେ ନୂତନ ଅଭିବ୍ୟଂଜନା ଧର୍ମରେ ବିଳସିତ ହୋଇଉଠନ୍ତି। ତେଣୁ କବି କବି ମଧ୍ୟରେ ଦେଶ-କାଳ ଅବସ୍ଥାଦି ଭେଦରେ ସମ୍ବାଦ ବା ସାଦୃଶ୍ୟ ସଂସାଧନ ହେବା ଏକ ସଂଯୋଗୀ-ବ୍ୟାପାର।

- କବିଠାରୁ କବି ଅନୁସାରେ ଦେଶକାଳାଦି ଭେଦରେ ଭାବର ଔଚିତ୍ୟାନୁସାରୀ ବସ୍ତୁଗତି (ଆହରଣ ଓ ଆରୋପଣ) ସାଧିତ ହୋଇଥାଏ ଏବଂକାବ୍ୟବୋଧର ନୂତନ ନୂତନ କାବ୍ୟାର୍ଥ ପ୍ରକାଶ ପାଇଥାଏ।
- ପୂର୍ବ ବର୍ଣ୍ଣିତ କାବ୍ୟବସ୍ତୁ ପରବର୍ତ୍ତୀ କବିମାନଙ୍କ ଠାରେ ଉକ୍ତିବୈଚିତ୍ର୍ୟ ଆଶ୍ରିତ ହୋଇ ଅଭିନବ ଭାବବୈଚିତ୍ର୍ୟରେ ଧ୍ୱନିତ ହୁଏ।
- ଅବସ୍ଥା ଭେଦରେ ଭାବର ସମତା ବା ସାଦୃଶ୍ୟ ଥାଇ ମଧ୍ୟ ନୂତନ କବିଙ୍କର 'ପ୍ରତିଭାନନ୍ତ୍ୟ' ପ୍ରତିପାଦିତ ହେଉଥିବାରୁ ରଚନା ସମ୍ବାଦ କାବ୍ୟବୋଧର ଅନନ୍ତତ୍ୱ ଓ ଅଖଣ୍ଡତ୍ୱକୁ ଓ ଭାବସଂଯୋଜନକୁ ସମର୍ଥନ କରେ।
- କାବ୍ୟୋଚିତ ପ୍ରତୀତିଗୁଡ଼ିକ ଭିନ୍ନ ଭିନ୍ନ କବିମତିରେ ଭିନ୍ନ ଭିନ୍ନ ଭଙ୍ଗୀରେ ଉପଭୋଗ୍ୟ। ହେଲେ ମଧ୍ୟ ସୂକ୍ଷ୍ମତଃ ସେମାନଙ୍କ ମଧ୍ୟରେ ମେଳଯୋଗରହିଛି ଓ ନୂତନ ପ୍ରକାରର ଶୋଭାକାରକ ହୋଇ ସେମାନଙ୍କର ପରିବର୍ଦ୍ଧନ ଘଟୁଛି।
- ସୁତରାଂ ମେଧାବୀ କବିମାନଙ୍କ ମଧ୍ୟରେ ପରିପାର୍ଶ୍ୱ ଭେଦରେ ବୁଦ୍ଧିର ସମ୍ବାଦ (ଭାବ-ବକ୍ତବ୍ୟ-ବିଚାର-ବର୍ଣ୍ଣନାର ମେଳ ଭିତ୍ତିରେ) ଘଟେ।
- ଧ୍ୱନାତ୍ମକ କବି ବ୍ୟାପାର ଏପ୍ରକାର ପାରସ୍ପରିକ ମେଳକୁ ଭିନ୍ନ ଚମତ୍କାରିତାରେ ପ୍ରତିଷ୍ଠା ଦେଇଥାଏ ଏବଂ ଗୋପନରେ ନିଜ ନିର୍ମିତିପଣରେ ପୂର୍ବସ୍ୱରୀକୁ ସାଇତି ରଖିଥାଏ।

ଆଚାର୍ଯ୍ୟ ଆନନ୍ଦବର୍ଦ୍ଧନ ମେଳ ସାହିତ୍ୟ ବା ରଚନା ସମ୍ବାଦ ବିଚାର ଅବକାଶରେ ଏକ ଭିନ୍ନ ମତିରେ ସମ୍ବାଦାଗ୍ରହୀ ପାଠକର ପରିଯୋଜନା କରିଛନ୍ତି। ବ୍ୟବସ୍ଥା ଭେଦରେ କବି-କବି/କାବ୍ୟ-କାବ୍ୟ/ଲେଖା-ଲେଖକ ଭିତରେ ରଚନାର ସମ୍ବାଦ ଘଟୁଥିବାରୁ ସମ୍ବାଦାଗ୍ରାହୀ ପାଠକ ଏହିପ୍ରକାର ସୃଜନକର୍ମକୁ ଏକପ୍ରକାର ଓ ଅବିକୃତ ପ୍ରକାର ବୋଧ କରିବା ଉଚିତ ନୁହେଁ। ଏହି କ୍ରମରେ ଧ୍ୱନ୍ୟାଲୋକ-ବିଚାର ତିନିପ୍ରକାର ତୁଳନା ବା ମେଳର ପ୍ରସଙ୍ଗ ଉତ୍‌ଥାପନ କରିଛି : ଯଥା– ପ୍ରତିବିମ୍ବାତ୍ମକ ସମ୍ବାଦ, ଆଲେଖ୍ୟାତ୍ମକ ସମ୍ବାଦ, ତୁଲ୍ୟଦେହୀ ତୁଲ୍ୟ ସମ୍ବାଦ (ଚିତ୍ରସାରଣୀ-୬ ଅଧ୍ୟାୟ ଶେଷରେ ସଂଯୁକ୍ତ ହୋଇଛି)।

ମୋଟ ଉପରେ ଆନନ୍ଦ ବର୍ଦ୍ଧନଙ୍କ ତୁଲ୍ୟ ଦେହୀ– ରଚନା ସମ୍ବାଦ ପ୍ରକଳ୍ପ–

- ତୁଳନାତ୍ମକ କାବ୍ୟ ମୀମାଂସାର ମହତ୍ତ୍ୱ ପ୍ରତିପାଦନ କରିଛି।

- ସଜୀବ ସାହିତ୍ୟ ଓ ସାର୍ବକାଳୀନ ପୁରୁଷାର୍ଥ ଚରିତାର୍ଥକ ଅର୍ଥଭରା ସର୍ଜନକର୍ମର ବିଚାର କ୍ଷେତ୍ରରେ ତୁଲ୍ୟକଳ୍ପକ କବି ଓ ତୁଲ୍ୟଗ୍ରାହୀ ପାଠକର ପ୍ରୟୋଜନ ଲୋଡ଼ିଛି।
- ଅପୂର୍ବ ସ୍ଫୁରଣ ଶକ୍ତି ବଳରେ ପରଂପରାବୋଧ ନୂଆ ରୂପରେ ପ୍ରତିଭାତ ହୁଏ ଏବଂ ଅପୂର୍ବ ବାସନାବୋଧଗୁଡ଼ିକର ମେଳ କବିକବିଙ୍କ ମଧ୍ୟରେ ଘଟିବା ସ୍ୱାଭାବିକ ପ୍ରକ୍ରିୟା – ଏହି ସତ୍ୟର ଉଦ୍‌ଘୋଷଣା କରିଛି। ବ୍ୟୁତ୍ପତ୍ତି ବା ପାଣ୍ଡିତ୍ୟ ଓ ଅଭ୍ୟାସ ବଳରେ ପୁରୁଣାର ଦୋଷାଦୋଷ ବୁଝି ନିର୍ଦ୍ଦୋଷ ଗୁଣାତ୍ମକ ନବସୃଜନଟିଏ ନିର୍ମାଣ କରିବାହିଁ ପ୍ରତିଭାର ପରିଭାଷା ହୋଇଛି।

ଏହି ବିଚାରର ଅନ୍ୟତମ ବିଶ୍ୱସ୍ତ ଚିନ୍ତାନାୟକ ହେଉଛନ୍ତି– କାବ୍ୟ ମୀମାଂସାର ରଚୟିତା ରାଜଶେଖର। ଆନନ୍ଦବର୍ଦ୍ଧନଙ୍କ ପରି ସେ ବ୍ୟାସ – ବାଲ୍ମୀକି ସମା ସ୍ୱୟଂକଳ୍ପ/ ଚିନ୍ତାମଣି କଳ୍ପ/ଉତ୍ପାଦନକଳ୍ପ/କବିତ୍ୱ ସର୍ବଦା ଦୁର୍ଲ୍ଲଭ ବୋଲି ଘୋଷଣା କରିଛନ୍ତି। ତାଙ୍କ ମତରେ କାବ୍ୟ ସ୍ଫୁରଣ ନିମନ୍ତେ ପ୍ରାୟଶଃ ଦ୍ୱାଦଶ ଶ୍ରେଣୀୟ କବି ପରିଦୃଷ୍ଟ ହୁଅନ୍ତି। ମହାକବି, ଉତ୍ପାଦକ କବି, ଚିନ୍ତାମଣି କବି, ଶାସ୍ତ୍ର କବି, ହୃଦୟ କବି, ଅନ୍ୟାପଦେଶୀ କବି, ଘଟମାନ କବି, ସେବିତା କବି, ଅଯୋନି କବି, ଅନ୍ୟଯୋନି କବି ଓ ନିହ୍ନୁତଯୋନି କବି। କବିତ୍ୱ ଭେଦର ଏହି ତାଲିକା ମଧ୍ୟରୁ ଉତ୍ପାଦକ କବି/ଶାସ୍ତ୍ର କବି/ସେବିତା କବି ଓ ନିହ୍ନୁତ ଯୋନି କବିଙ୍କ ସାଧନା ଭିତରେ ଅନୁକରଣ/ପ୍ରଭାବ ପ୍ରବିଧି/ସ୍ୱୀକରଣ ଚାତୁରୀ/ ପରିଗ୍ରହଣ ପ୍ରବିଧିର ତୁଲ୍ୟକଳ୍ପୀ ଲକ୍ଷଣ ବର୍ତ୍ତମାନ ରହିଛି। ଏ ଶ୍ରେଣୀୟ କବି ଅଯୋନି ସଂଭୂତା କବିଙ୍କ ପରି ପୂର୍ଣ୍ଣ ମୌଳିକ ଓ ସ୍ୱକଳ୍ପକ ନୁହଁନ୍ତି। ଏମାନେ ଆହରଣ– ଅନୁବର୍ତ୍ତନ– ପରିବର୍ତ୍ତନ– ବିଭାବନ– ନବୀକରଣ– ସ୍ୱୀକରଣ– ଆଚ୍ଛାଦନ– ପୁନର୍ଗଠନ ଧର୍ମ ପାଳନରେ ବେଶ ପ୍ରଯତ୍ନମନା। ଏମାନେ ପରଂପରା ପ୍ରସିଦ୍ଧିରୁ ଭାବ ସଂଗ୍ରହ କରିଛନ୍ତି। ବିବିଧ ଶାସ୍ତ୍ର ଅଧ୍ୟୟନ କରି ପ୍ରାକ୍ତନ କାବ୍ୟାନୁଭୂତିର ଅନୁଧାବନ କରି ଓ ସେବା ମନୋଭାବ + ଅନୁରାଗ – ବିରାଗ-ସଂଜାତ ମନୋଭାବ ନେଇ ଏମାନେ ପୂର୍ବ ପ୍ରସିଦ୍ଧିମୂଳକ କବି–ବ୍ୟାପାରରୁ ଉପାଦାନ ସଂଗ୍ରହ କରି ପ୍ରତିଭା ପ୍ରଦର୍ଶନରେ ପ୍ରଭାବ ଓ ପ୍ରତିରୂପତାକୁ ଅଙ୍ଗୀକାର କରିନେଇଛନ୍ତି। ବାଣଭଟ୍ଟ ମଧ୍ୟ ଉତ୍ପାଦକ କବିତ୍ୱକୁ ଏହି ଧାରାର ସଙ୍କେତ ଭାବରେ ସ୍ୱୀକାର କରିଛନ୍ତି। ସେବିତା କବି ଅନ୍ୟଛାୟାରେ ନିଜ ରଚନାପିଣ୍ଡ ନିର୍ମାଣ କରୁଥିବା ବେଳେ ଶାସ୍ତ୍ରକବି ଓ ଅନ୍ୟ·ଯୋନି କବି ବହୁପଠନ ଦ୍ୱାରା ପୂର୍ବାବବୋଧଗୁଡ଼ିକୁ ପୁଂଜି ଭାବରେ ବରଣ କରିଥାଏ। ନିହ୍ନୁତ ଯୋନି କବିର ପ୍ରଭାବ ଉତ୍ସ ନିର୍ଦ୍ଧାରଣ କଷ୍ଟକର ବ୍ୟାପାର। କାରଣ ବହୁମୁଖୀ ପରିଗ୍ରହଣ ଓ ତାହାର ଅପୂର୍ବ ସ୍ୱୀକରଣ ସହିତ ଏପ୍ରକାର କବି ବ୍ୟାପାର ସଂପୃକ୍ତ ଥାଏ। ପ୍ରତିବିମ୍ବ କଳ୍ପ ଓ

ଆଲେଖ୍ୟ ପ୍ରଖ୍ୟ କାବ୍ୟାର୍ଥର କବି ଆହରଣ ଓ ଭାବମେଳନ କରିଥିଲେ ମଧ୍ୟ ଭାବର ନିଜ ପରିପାର୍ଶ୍ୱ ଭିତ୍ତିରେ ସଂସ୍କାର ଓ ଉପସ୍ଥାପନା ପଦ୍ଧତିରେ ଭିନ୍ନ ଆବେଦନର କରି ତୋଳିଥାଏ। ଦ୍ରାବକ କବି ଅନ୍ୟଗୋତ୍ରୀୟ ଭାବନାକୁ ମନୋଭୂମିରେ ବପନ କରି ତାହାର ପୁନର୍ଗଠନ ବା ଶଙ୍କରୀକରଣ କରିଥା'ନ୍ତି। ଉତ୍ପାଦକ କବିର ମୂଳ ଭାବର ବୀଜଟି ପରସ୍ୱ; ମାତ୍ର ତାହାର ପରିପୋଷଣ ନିଜ ସଂସ୍କୃତି, ଭୂଗୋଳ, ବାସନାତତ୍ତ୍ୱ ଭିତ୍ତିରେ ହୋଇଥାଏ। ଏ ଦୃଷ୍ଟିରୁ କାଳିଦାସ-ଗଙ୍ଗାଧର, ଭବଭୂତି-ଗଙ୍ଗାଧର, ଶୀହର୍ଷ-ଉପେନ୍ଦ୍ର, ରାଧାନାଥ-ମାଇକେଲ୍-ଓଭିଡ୍-ଟେନିସନ୍, ଗୁରୁପ୍ରସାଦ-ଇଲିୟଟ, ବୈକୁଣ୍ଠନାଥ-ରବୀନ୍ଦ୍ରନାଥ, ମାନସିଂହ-କୀଟ୍ସ୍, ସେକ୍ସ୍‌ପିୟର-ମାନସିଂହଙ୍କ ଚତୁର୍ଦ୍ଦଶପାଦୀ କବିତା କେତେଦୂର କେତେ କବିଦ୍ୱଗୁଣରେ ପରସ୍ପର ସମ୍ବନ୍ଧିତ ବିଚାର ସାପେକ୍ଷ।

ଆକର୍ଷଣ ସଂଜାତ ପ୍ରଭାବ ହେଉ, ଅନୁରାଗ ବିରାଗ ସଂଜାତ ତୁଲ୍ୟ- ବୋଧାତ୍ମକ ସମ୍ବନ୍ଧ ହେଉ କାବ୍ୟ ରଚନା କ୍ଷେତ୍ରରେ ତୁଲ୍ୟ-ଦେହୀ-ତୁଲ୍ୟ ରଚନା ସମ୍ବାଦକୁ ଭାରତୀୟ ସାହିତ୍ୟଶାସ୍ତ୍ରୀମାନେ ସମର୍ଥନ କରିଆସିଛନ୍ତି। ବିଷୟର/ଚରିତ୍ରର/ଘଟଣାର/ଦେଶ-କାଳ-ପାତ୍ରର ଭେଦ ସତ୍ତ୍ୱେ ଉତ୍ତମ ଓ ମହାନୁଭାବନାର କବିମାନଙ୍କ ଭିତରେ ପ୍ରତିଭାକର୍ଷକ ହେତୁ ଆବେଗାତ୍ମକ/ଭାବଗତ/ସୌନ୍ଦର୍ଯ୍ୟାତ୍ମକ/ସତ୍ୟାଶ୍ରିତ ସାଦୃଶ୍ୟ ଘଟି ରଚନା ସମ୍ବାଦରେ ଅଭେଦ ପରିଦୃଷ୍ଟ ହୋଇଥାଏ– ଏପ୍ରକାର ଏକ ସର୍ବୋତ୍ତମ ବିଚାରବୋଧ ସର୍ଜନ-ପ୍ରକ୍ରିୟାର ଇତିହାସରେ ଭାରତୀୟ ଅଳଙ୍କାରଶାସ୍ତ୍ରୀମାନେ ପ୍ରତିଷ୍ଠା କରିପାରିଛନ୍ତି।

ମୋଟ ଉପରେ ରଚନା ବିଧାନରେ ଭାବ ଗ୍ରହଣ ଓ ତା'ର ବିଭାବନୀକରଣ ଏକ ମନ୍ଦ ପରଂପରାର ପ୍ରସଙ୍ଗ ନୁହେଁ; ବରଂ ସାହିତ୍ୟ ସାହିତ୍ୟ ମଧ୍ୟରେ ଏକ ସମଭାବ–ସଂଯୋଗର ମୂଲ୍ୟବୋଧ କାରକ ଉପାୟ – ପ୍ରାଚ୍ୟ ବିଦ୍ୱାନଙ୍କର ଏ ପ୍ରକାର ଶାସ୍ତ୍ରୀୟ-ତୁଳନାତ୍ମକ ଦୃଷ୍ଟିଭଙ୍ଗୀ ବିଶ୍ୱରେ ମିତ୍ର କବିଦ୍ୱର ଓ ମଧୁକୋଷ କୀର୍ତ୍ତିକାରକ ସୃଜନଧର୍ମର ମହିମା ପ୍ରଖ୍ୟାପନ କରିପାରିଛି।

ଏହି ପ୍ରସିଦ୍ଧିର ଯଥାର୍ଥ ଆଧୁନିକ ଦାୟାଦ ଓ ଚିନ୍ତାକଳ୍ପକ ହେଉଛନ୍ତି ବିଶ୍ୱକବି ରବୀନ୍ଦ୍ରନାଥ। ବହୁଭାଷୀ ଓ ବହୁଜାତୀୟ ସ୍ୱାଭିମାନର ସ୍ୱାତନ୍ତ୍ର୍ୟ ଦ୍ୱାରା ପରିଚାଳିତ ଭାରତୀୟ ମନୋଭାବକୁ ଏକ ଅଖଣ୍ଡ ଓ ସର୍ବୋତ୍ତମ ଲକ୍ଷ୍ୟ ଦିଗରେ ଅଗ୍ରସର କରାଇ ନେବା ନିମନ୍ତେ ସାହିତ୍ୟର ସଂହତି ଉପରେ ରବୀନ୍ଦ୍ରନାଥ ଗୁରୁତ୍ୱାରୋପ କରିଛନ୍ତି। ଜାତୀୟ ଶିକ୍ଷାନୀତି ଓ ସାହିତ୍ୟର ପାରସ୍ପରିକ ଅନୁଷଙ୍ଗ ଅଧ୍ୟୟନ ମାଧ୍ୟମରେ ମୈତ୍ରୀବୋଧର ବିକାଶ ହେବା ସଙ୍ଗେ ସଙ୍ଗେ ଭାରତୀୟ ସାହିତ୍ୟବୋଧଟି ବିଶ୍ୱ ଦରବାରରେ ଉଦାର ଚିତ୍ର ପ୍ରତିମାରେ ଛିଡ଼ା ହୋଇପାରିବ– ଏହି ମର୍ମରେ ରବୀନ୍ଦ୍ରନାଥ ୧୯୦୭ରେ 'ବିଶ୍ୱସାହିତ୍ୟ' ପ୍ରସଙ୍ଗ ଉତ୍‌ଥାପନ କରିଛନ୍ତି। ତାଙ୍କ ମତରେ–

(i) ସାହିତ୍ୟ ଲେଖା-ଲେଖକ-ଜାତି-ଆଚଂଳିକତାର ମନୋଭୂମି ଉପରେ ସୀମିତ ଓ ପ୍ରତିଷ୍ଠିତ ନୁହେଁ।

(ii) ସ୍ୱ ପରିପାର୍ଶ୍ୱକୁ ଭୂମି ରୂପରେ ଗ୍ରହଣ କରି ତାହାକୁ ଏକ ବୃହତ୍ତର ଆବେଦନରେ ବିସ୍ତାରିତ କରିଥିବା ଲେଖକର କଳାରେ ଗୋଟିଏ ମାନବତାବୋଧର ସମଗ୍ରତାକୁ ଦେଖିବା ଉଚିତ।

(iii) ବିଶ୍ୱର ପ୍ରତ୍ୟେକ ସାହିତ୍ୟରେ ସୂକ୍ଷ୍ମ ଭାବରେ ମଣିଷକୁ ସମଦୃଷ୍ଟିରେ ଓ ସମଭାବାପନ୍ନ ସହିତ ବିଚାର କରାଯାଇଥିବାର ସଂଯୋଗସୂତ୍ର ରହିଛି।

(iv) ସାହିତ୍ୟ ହେଉଛି ବିଶ୍ୱ-ମାନବୀୟ ଭାବନାର ବିସ୍ତୃତ କ୍ଷେତ୍ର ଏବଂଏହାର ପ୍ରତିପାଦ୍ୟ ହେଉଛି ବିଶ୍ୱମୈତ୍ରୀ ଓ ମର୍ତ୍ତ୍ୟ ପ୍ରୀତି।

ଏହାଦ୍ୱାରା ପାଶ୍ଚାତ୍ୟ ତୁଳନାତ୍ମକ ସାହିତ୍ୟ ସଂପର୍କିତ ଦୃଷ୍ଟଭଙ୍ଗୀ ''ବସ୍ତୁବୋଧାଶ୍ରିତ ସାଧାରଣ ସତ୍ୟର ସାଦୃଶ୍ୟ ଆକଳନ'' ସହିତ ଏକ ଭିନ୍ନ ଅବବୋଧର ମିଳନ ଘଟିଛି; ଯାହା ପରଂପରା ପ୍ରାରବ୍ଧ ଭାବନା ସମନ୍ୱୟରେ ମାନବୀୟ ଭାବତତ୍ତ୍ୱର ମାନକରେ ବିଶ୍ୱ ସାହିତ୍ୟର ଅଭେଦ ଅନୁଶୀଳନ କରିବା ପ୍ରସଙ୍ଗକୁ ଅର୍ଥନିଷ୍ଠ କରୁଛି। ଏହି ବିଚାର କଳ୍ପ ଉପରେ ପ୍ରିୟରଂଜନ ଦାସ, ଇନ୍ଦ୍ରନାଥ ଚୌଧୁରୀ, ଶିଶିର ଦାସ, ଅମୀୟ ଦେବ, ସପନ ମଜୁମଦାର, ଡଃ ନଗେନ୍ଦ୍ର, ଦାଶରଥିଦାସ, ଉମେଶ ପ୍ରସାଦ ସିଂହ, ଦେବିନ୍ଦର ମୋହନ ପ୍ରମୁଖ ବିଦ୍ୱାନମାନେ ଭାରତୀୟ-ତୁଳନାତ୍ମକ ସାହିତ୍ୟର ପରିସରକୁ ବୃଦ୍ଧି କରିଥିଲେ ମଧ୍ୟ ଏଯାବତ୍ ଆମ ପରଂପରାରେ ତର୍କଣା ଓ ସମଦୃଷ୍ଟି ସଂପନ୍ନ ନାନ୍ଦନିକ ଅଧ୍ୟୟନର ଶୃଙ୍ଖଳାଟି ବିଶ୍ୱମୁଖୀ ହୋଇପାରିନାହିଁ। ଓଡ଼ିଆ, ବଙ୍ଗଳା, ହିନ୍ଦୀ, ଅହମିୟା, ପଂଜାବୀ, ତାମିଲ୍, କନ୍ନଡ, ମୈଥିଳୀ, ମରାଠୀ ଆଦି ଭାଷାକଳ୍ପ ଉର୍ଦ୍ଧ୍ୱରେ ଏକ ଭାବବାଦୀ ସାହିତ୍ୟ କଳ୍ପର ସମଗୋତ୍ରକୁ ନେଇ ''ଭାରତୀୟ ସାହିତ୍ୟ'' ଏକ ସମବୋଧକ ଜାତୀୟ ସାହିତ୍ୟର ପ୍ରତୀକ ହୋଇପାରିଛି। କୃଷି ସଭ୍ୟତା, ଧର୍ମବିଶ୍ୱସ୍ତତା, ଭାଗ୍ୟ-କର୍ମବୋଧ ପ୍ରବଣତା, ଆଦର୍ଶବାଦିତା, ବସୁଧାଦୃଷ୍ଟି ଓ ସହନଶୀଳତା ସହିତ ଚତୁଃବର୍ଗ ଫଳପ୍ରାପ୍ତି ଓ ଶିବସଂକଳ୍ପ ଇତ୍ୟାଦି ଆବେଦନ ଭାଷାବୈଷମ୍ୟ ସତ୍ତ୍ୱେ ଭାରତୀୟ ସାହିତ୍ୟର ବୈଶିଷ୍ଟ୍ୟ ହୋଇରହିଛି। ପାଶ୍ଚାତ୍ୟ ସ୍ଥିତିବାଦ, ଭାବସମ୍ଭେଦୀ ଚିନ୍ତାଧାରା, ବସ୍ତୁବାଦୀ ନୈତିବାଚକ ଦୃଷ୍ଟିଭଙ୍ଗୀ ଭାରତୀୟ ସୃଜନକଳ୍ପନାରେ ନକାରାତ୍ମକ ବିଚ୍ଛିନ୍ନତାବୋଧର ସ୍ମାରକୀ ନ ହୋଇ (ବରଂ ପ୍ରତିକୂଳତା ଭିତରେ ଅନୁକୂଳତାର ସଂଭାବନା ରହିଛି ବୋଲି) ସକାରାତ୍ମକ କାବ୍ୟ ସନ୍ଦେଶରେ ରୂପାନ୍ତରିତ ହୋଇଯାଇଛି। ରାମାୟଣ, ମହାଭାରତ ଓ ଭାଗବତର କାବ୍ୟ ହେତୁ

ଏଯାବତ୍ ଭାଷାର ଭିନ୍ନତା ସତ୍ତ୍ୱେ ଭାରତୀୟ ସାହିତ୍ୟରେଏକ ଆତ୍ମିକ ଭାବମିଳନ ଘଟାଇ ଚାଲିଛି । ରବୀନ୍ଦ୍ରନାଥ, ଫକୀରମୋହନ, ପ୍ରେମଚାନ୍ଦ, ବଙ୍କିମଚନ୍ଦ୍ର, ତାରାଶଙ୍କର, ଶିବଶଙ୍କର, କାଳିନ୍ଦୀଚରଣ, ମହାଦେବୀ, ବିଷ୍ଣୁ ଖାଣ୍ଡେକର, ଅମୃତା, ପ୍ରୀତମ୍, ବେଜ୍‌ବରୁଆ ପ୍ରମୁଖ ସମକାଳୀନ ଓ ସମଭାଷୀ ନହେଲେ ମଧ୍ୟ ପ୍ରସଙ୍ଗ ନିର୍ବାଚନ, ଚରିତ୍ର ଚିତ୍ରଣ, ମେଦିନୀଦୃଷ୍ଟି, ଭୂମିବାଦୀ ବିଶ୍ୱାସ, ସାଂସ୍କୃତିକ ଆଦର୍ଶବାଦ, ପାରଂପରିକ ମୂଲ୍ୟବୋଧର ଆଧୁନିକୀକରଣ ଦିଗରୁ ଅତି ଚମତ୍କାର ଭାବରେ ଏମାନଙ୍କ ସୃଷ୍ଟିରେ ଅନ୍ତର୍ନିହିତ ଭାରତୀୟତାର ସ୍ୱାଭିମାନ ରହିଛି । ସ୍ୱାଧୀନତା ପୂର୍ବରୁ ମୁକ୍ତିକାମୀ ମାନସିକତାର ଅଥବା ସ୍ୱାଧୀନତୋତ୍ତର ପରିବର୍ତ୍ତିତ ଜାତୀୟ ମୂଲ୍ୟବୋଧର ଅଭିନବ ପ୍ରସାରକାରକ ସାହିତ୍ୟ ମାନସିକତାର ସୃଷ୍ଟିଗୁଡ଼ିକୁ ତୁଳନା କଲେ ଦେଖାଯାଏ ଉଦାର ମାନବବାଦ ସହିତ ଏକ ଓ ଅଭିନ୍ନ ଜାତୀୟ ଆକାଙ୍‌କ୍ଷା ଓ ପାରିପାର୍ଶ୍ୱିକ ବାସ୍ତବତା ସବୁ ସ୍ରଷ୍ଟାଙ୍କ କଳ୍ପଶକ୍ତିକୁ ଏକାପିଣ୍ଡରେ ବସାଇ ରଖିଛି ଏବଂ ପ୍ରାଦେଶିକ ସାହିତ୍ୟ ଭିତରେ ସଂହତି ସ୍ଥାପିତ ହୋଇପାରିଛି । ପ୍ରତ୍ୟେକ ସାହିତ୍ୟ ଏ ଭାଷାର, ସେ ଭାଷାର ତା' ଭାଷାର, ମୋ' ଭାଷାର ସାହିତ୍ୟ ଅପେକ୍ଷା 'ଭାରତୀୟ ସାହିତ୍ୟ' ସମାଖ୍ୟା ଗ୍ରହଣ କରିଛି ।

ସଂପ୍ରତି ଯାଦବପୁର ବିଶ୍ୱ ବିଦ୍ୟାଳୟ, ଗୌହାଟୀ ବିଶ୍ୱବିଦ୍ୟାଳୟ, ଦିଲ୍ଲୀ ବିଶ୍ୱ ବିଦ୍ୟାଳୟ, କଲିକତା ବିଶ୍ୱ ବିଦ୍ୟାଳୟ, ବିଶ୍ୱଭାରତୀ, ସମ୍ବଲପୁର ବିଶ୍ୱ ବିଦ୍ୟାଳୟ, ମାନ୍ଦ୍ରାଜ ବିଶ୍ୱ ବିଦ୍ୟାଳୟ ଆଦିରେ ତୁଳନାତ୍ମକ ସାହିତ୍ୟ ଅଧ୍ୟୟନ ଜ୍ଞାନରପରିସରକୁ ବିସ୍ତୃତ କରିଦେଇଛି । ଭାରତୀୟ ସାହିତ୍ୟକୁ ଏକ ଶୃଙ୍ଖଳାର ଏକ ଜାତୀୟ ସାହିତ୍ୟ ଭାବରେ ସ୍ୱପନ୍ ମଜୁମଦାର ଘୋଷଣା କରି ଭାରତୀୟ ସାହିତ୍ୟ ଏକ ସାଧାରଣ ଜାତିତତ୍ତ୍ୱ ଓ ଦର୍ଶନତତ୍ତ୍ୱ (Philosophical ethos) ଉପରେ ପ୍ରତିଷ୍ଠିତ ବୋଲି ଅଭିମତ ଦେଇଛନ୍ତି । ୧୯୮୧ରେ ଭାରତୀୟ ତୁଳନାତ୍ମକ ପରିଷଦ ଗଠିତ ହୋଇ ସମଗ୍ର ଭାରତୀୟ ବାଙ୍‌ମୟ ପରଂପରାକୁ ପାଶ୍ଚାତ୍ୟ ପ୍ରବୃତ୍ତିଗତ ସତ୍ୟାନୁସଂଧାନର ସମୀକ୍ଷା ଯନ୍ତ୍ର ଦ୍ୱାରା ନ ମାପି ଐତିହ୍ୟବାଦୀ ଦୃଷ୍ଟିଭଙ୍ଗୀ ମଧ୍ୟରେ ହଜାର ହଜାର ବର୍ଷଧରି ମିଳନାନ୍ତକ ଆଶାବାଦର ଯେଉଁ ଅପୂର୍ବ ଦୃଷ୍ଟିଭଙ୍ଗୀରେ ଭାରତୀୟ ସାହିତ୍ୟ ପ୍ରବହମାନ ହୋଇ ଆସିଛି ତାହାର ରଚନାସମ୍ପାଦାଙ୍କୁ ବା ମେଳତ୍ୱକୁ ବିଚାର କରିବା ଉପରେ ଗୁରୁତ୍ୱ ଆରୋପ ହୋଇଛି । ପ୍ରଫେସର ଅମୀୟ ଦେବ ପ୍ରଭାବ, ଅନୁକରଣ, ଅଭିଗ୍ରହଣ ଓ ଉଦ୍‌ବର୍ତ୍ତନ ଭିତ୍ତିକ ବିଚାର ପଦ୍ଧତିଗୁଡ଼ିକୁ ତୁଳନାଶାସ୍ତ୍ରୀମାନେ ସହାୟକ ଭାବରେ ଗ୍ରହଣ କରିବା ସମୟରେ ପାରସ୍ପରିକ ସମଗ୍ର ସାହିତ୍ୟ ସମ୍ବନ୍ଧକୁ ବିଚାରକୁ ନେବା ଉଚିତ ବୋଲି ମତ ଦେଇଛନ୍ତି । ମୋଟ ଉପରେ ଭାରତୀୟ ସାହିତ୍ୟର ତର୍କଣା ଅବକାଶରେ ସାଦୃଶ୍ୟ ସମ୍ବନ୍ଧ, ତୁଲ୍ୟ ଦେହୀ ସମ୍ବନ୍ଧ, ସମ୍ମେଳନ ସମ୍ବନ୍ଧ,

ଆଭିପ୍ରାୟିକ ସମ୍ବନ୍ଧ, ପାରଂପରିକ ବାସନାସମ୍ବନ୍ଧ, କଲ୍ୟାଣବାଦୀ ଦୃଷ୍ଟିଭଙ୍ଗୀର ସମ୍ବନ୍ଧ ଏବଂ ଭୂମିବାଦୀ ଜୀବନଚର୍ଯ୍ୟାଭିତ୍ତିକ ସମ୍ବନ୍ଧର ବିବେଚନ ହେବା ଉଚିତ। ଉତ୍କର୍ଷ-ଅପକର୍ଷ, ପ୍ରଭାବ-ଅନୁସରଣ ଚର୍ଚ୍ଚା ଦଣ୍ଡୀଟିକୁ ଗଣ୍ଡିଲିରେ ବାନ୍ଧି ଆଉ ଆଲୋଚନାରେ ଆଗେଇବାରେ ସଂଭାବନା ନାହିଁ।

ଉପରୋକ୍ତ ଆଲୋଚନାକୁ ଭିତ୍ତିକରି ଭାରତବର୍ଷରେ ତୁଳନାତ୍ମକ ସାହିତ୍ୟର ପଞ୍ଚପ୍ରସ୍ଥୀୟ ଆନୁଷଙ୍ଗିକ ବୈଶିଷ୍ଟ୍ୟ ପ୍ରତି ସଚେତନତା ପ୍ରକାଶ ପାଇ ଆସିଛି; ଯାହାକୁ ବିଦେଶୀ ଭାଷା ବିଜ୍ଞାନୀମାନଙ୍କର ଭାରତୀୟ ଭାଷା ସମ୍ବନ୍ଧୀ ତୁଳନାତ୍ମକ ଅଧ୍ୟୟନ, ଲୋକସାହିତ୍ୟ ଓ ଲୋକାଭିପାୟଗୁଡ଼ିକର ତୁଳନାତ୍ମକ ଅଧ୍ୟୟନ, ଧର୍ମ ଦର୍ଶନର ତୁଳନାତ୍ମକ ଅଧ୍ୟୟନ, ପ୍ରିୟରଂଜନ ଦାସଙ୍କ ଭାରତୀୟ ସାହିତ୍ୟ ସଂପର୍କରେ ଯୋଗାତ୍ମକ ଅଧ୍ୟୟନ, ଇନ୍ଦ୍ରନାଥ ଚୌଧୁରୀଙ୍କ ଭାରତୀୟ ସାହିତ୍ୟର ଭାବକୈନ୍ଦ୍ରିକ ତୁଳନାତ୍ମକ ବିଚାର, ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଗ୍ରନ୍ଥଭିତ୍ତିକ ତୁଳନାତ୍ମକ ଅଧ୍ୟୟନ ମଧ୍ୟରେ ଆରମ୍ଭ ହୋଇଥିବାର ଲକ୍ଷ୍ୟ କରାଯାଏ। ଏହି ପାଞ୍ଚୋଟି ବୈଶିଷ୍ଟ୍ୟ ହେଉଛି–

(କ) ପ୍ରାଚୀନ ଭାରତୀୟ ଭାଷା ସାହିତ୍ୟ ସହିତ ଆଧୁନିକ ଭାରତୀୟ ଭାଷା ସାହିତ୍ୟର ତୁଳନା ବା ସମତା ଆକଳନ।

(ଖ) ମୌଖିକ ଭାଷାର ସାହିତ୍ୟ, ଅଷ୍ଟ୍ରିକ ଭାଷାର ସାହିତ୍ୟ ଓ ମାନକ ଭାଷାର ସାହିତ୍ୟ ମଧ୍ୟରେ ତୁଳନା।

(ଗ) ଜାତୀୟ ପ୍ରାସଙ୍ଗିକତା ଓ ବାସନାତତ୍ତ୍ୱ ଅବଲମ୍ବନରେ ଭାରତୀୟ ପ୍ରାନ୍ତୀୟ ସାହିତ୍ୟ ଭିତରେ ତୁଳନା ବା ସାମଞ୍ଜସ୍ୟ କଳନା।

(ଘ) ପ୍ରାଦେଶିକ ଭାଷାର ପ୍ରାମାଣିକ ଓ ମହନୀୟ ସାହିତ୍ୟକୁ ବିଶ୍ୱ ସାହିତ୍ୟ ଧାରାରେ ସଂଯୁକ୍ତ କରାଇ ମାନବ-ସଂପ୍ରୀତିକାରକ ଆବେଦନ ଦିଗରୁ ତୁଳନା ବା ସାହିତ୍ୟିକ ସହବନ୍ଧନର ଅଧ୍ୟୟନ।

(ଙ) ମନୋବୈଜ୍ଞାନିକ ସାଦୃଶ୍ୟ, ମାନବବାଦୀ ଦରଦୀ ଦର୍ଶନତତ୍ତ୍ୱ, ଶୈଳୀତାତ୍ତ୍ୱିକ ଓ ସୌନ୍ଦର୍ଯ୍ୟ ତାତ୍ତ୍ୱିକ ସମାନ୍ତରାଳ ବିଶ୍ଳେଷଣ ଦିଗରୁ ସାହିତ୍ୟ ସାହିତ୍ୟ ମଧ୍ୟରେ ତର୍କଣା ଓ ମେଳ ସଂଧାନ।

**ଓଡ଼ିଆ ସାହିତ୍ୟରେ ତୁଳନାତ୍ମକ ସାହିତ୍ୟର ବିଚାର ଓ ପରଂପରା :–**

ପ୍ରତିବେଶୀ ବଙ୍ଗଳା, ଅହମିୟା, ହିନ୍ଦୀ, ତେଲଗୁ, କନ୍ନଡ ଆଦି ସାହିତ୍ୟ ପରିମଣ୍ଡଳରେ ଭାରତବର୍ଷରେ ତୁଳନାତ୍ମକ ସାହିତ୍ୟ ପ୍ରସଙ୍ଗରେ ଯେପରି ପ୍ରାଧାନ୍ୟ ଦିଆଯାଇଛି ଏଯାବତ୍ ସେପରି ଗୁରୁତ୍ୱ ଓଡ଼ିଆ ଭାଷା ସାହିତ୍ୟ କ୍ଷେତ୍ରରେ ସମ୍ଭବ

ହୋଇନାହିଁ। ଯଦିଓ ନବଜାଗରଣ ପର୍ବର ଆଦି ପର୍ଯ୍ୟାୟରୁ ଆମ ବିଦ୍ୱାନମାନେ ଏ ସଂପର୍କରେ ସଚେତନ ଅଛନ୍ତି ତଥାପି ଶ୍ରମଭୀରୁତା ଆମ ଜ୍ଞାନ ମଣ୍ଡଳୀୟ ବାତାବରଣରେ ଆମକୁ ଆଖିଦୃଶିଆ ସଫଳତା ଦେଇପାରି ନାହିଁ।

ଓଡ଼ିଆ ତୁଳନାତ୍ମକ ସାହିତ୍ୟର ପ୍ରଥମ ଦୃଷ୍ଟାନ୍ତ ହେଉଛି ମଧୁସୂଦନ ରାଓଙ୍କ ଦ୍ୱାରା ଉନବିଂଶ ଶତାବ୍ଦୀର ଶେଷପାଦରେ ଲିଖିତ ରାମାୟଣ ପ୍ରବଂଧ। । ଏଥିରେ ସେ ରାମାୟଣ ଓ ଇଲିୟାଡର ବିଷୟବସ୍ତୁ ଓ ଚରିତ୍ରକୁ ତୁଳନା କରିଛନ୍ତି। ସର୍ଜନଶୀଳ କଳ୍ପନାବଳରେ ରାଧାନାଥ ସର୍ବପ୍ରଥମେ ବିଶ୍ୱଦୃଷ୍ଟିର ପରିଚୟ ଦେଇ ଆମ କାବ୍ୟବୋଧକୁ ବାଲ୍ମୀକୀ, ବ୍ୟାସ, କାଳିଦାସ, ତୁଳସୀଦାସ, ହୋମର୍, ଭର୍ଜିଲ, ମିଲିଟନ୍, ଦାନ୍ତେ, ଟେନିସନ୍, ବାଇରନ୍‌ଙ୍କ ଅନୁରୂପ କରାଇଛନ୍ତି। ଲାଲା ରାମନାରାୟଣଙ୍କ ଭଂଜସାହିତ୍ୟ ଓ ଆଧୁନିକ କାବ୍ୟ ସାହିତ୍ୟର ତୁଳନା ଓ ଚନ୍ଦ୍ରଶେଖର ନନ୍ଦଙ୍କ ପାଶ୍ଚାତ୍ୟ ଗଳ୍ପକଳା ଦିଗରୁ ଓଡ଼ିଆ ଗଳ୍ପର ତର୍କଣା, ସାରୋଳ ଚରିତରେ ପଣ୍ଡିତ ମୃତ୍ୟୁଂଜୟ ରଥଙ୍କର ସାରଳା ଓ ବ୍ୟାସଙ୍କ ଦୃଷ୍ଟିଭଙ୍ଗୀର ତୁଳନା ଏକ୍ଷେତ୍ରରେ ପ୍ରାରମ୍ଭିକ ଉଦ୍ୟମ ରୂପରେ ସ୍ମରଣୀୟ। ପଣ୍ଡିତ ଗୋପୀନାଥ ନନ୍ଦଙ୍କ 'ଶ୍ରୀ ଭାରତ ଦର୍ପଣ' ଗ୍ରନ୍ଥ ଯଥାର୍ଥରେ ସମଗ୍ର ଭାରତୀୟ ସାହିତ୍ୟରେ ତୁଳନାତ୍ମକ ଅଧ୍ୟୟନର ଶ୍ରେଷ୍ଠ ଆଦିମାନକ। ବ୍ୟାସ ଓ ସାରଳାଙ୍କ ମହାଭାରତୀୟ ଚରିତ୍ର, କଥାବସ୍ତୁ, ଉପାଖ୍ୟାନ ଓ ବର୍ଣ୍ଣନାଚାତୁରୀର ତୁଳନାତ୍ମକ ବିଚାର କରି ପଣ୍ଡିତ ନନ୍ଦ ତୁଲ୍ୟ ଧର୍ମୀ କାବ୍ୟ ସମ୍ବାଦର ବଳିଷ୍ଠ ଭିତ୍ତି ପକାଇଥିଲେ ମଧ୍ୟ ଏଯାବତ୍ ଏ ଭିତ୍ତିଉପରେ ଆମେ ଓଡ଼ିଆ ସୁରୋଚକ ସ୍ତମ୍ଭଟିଏ ମାତ୍ର ଛିଡ଼ା କରିବାରେ ସମର୍ଥ ହୋଇନାହୁଁ।

ପରବର୍ତ୍ତୀ ପର୍ଯ୍ୟାୟରେ ଡକ୍ଟର ମାୟାଧର ମାନସିଂହଙ୍କ ତୁଳନାତ୍ମକ ଗବେଷଣା ନିବନ୍ଧ 'କାଳିଦାସ ଓ ସେକ୍‌ସପିୟରଙ୍କ ନାଟ୍ୟକୃତି', କ୍ଷେତ୍ରବାସୀ ନାୟକଙ୍କ ଆଧୁନିକ ଓଡ଼ିଆ କବିତାରେ ପାଶ୍ଚାତ୍ୟ ପ୍ରଭାବ, ସୁରେନ୍ଦ୍ରନାଥ ମିଶ୍ରଙ୍କ ଜଗମୋହନ ରାମାୟଣ ଓ ବାଲ୍ମୀକି ରାମାୟଣର ତୁଳନାତ୍ମକ ଅଧ୍ୟୟନ ଓ ଡକ୍ଟର ଦାଶରଥି ଦାସଙ୍କ 'କାବ୍ୟ ସମ୍ବାଦ' ଏହି ମର୍ମରେ ସ୍ମରଣୀୟ ବିଧାନ। ଏତତ୍ ବ୍ୟତୀତ ନରେନ୍ଦ୍ରନାଥ ପ୍ରଧାନ, ଚିତ୍ତରଂଜନ ଦାସ, ସୀତାକାନ୍ତ ମହାପାତ୍ର, ତାରିଣୀ ଚରଣ ଦାସ, ଖଗେଶ୍ୱର ମହାପାତ୍ର, ଅନନ୍ତଚରଣ ଶୁକ୍ଳା,ବୈଷ୍ଣବ ଚରଣ ସାମଲ, ଆଦିକନ୍ଦ ସାହୁ, ନୀଳାଦ୍ରିଭୂଷଣ ହରିଚନ୍ଦନ, ସଂଘମିତ୍ରା ମିଶ୍ର, ବିଜୟକୁମାର ଶତପଥୀ, ନିତ୍ୟାନନ୍ଦ ନାୟକ, ବୈରାଗୀ ଚରଣ ଜେନା, ଗଗନେନ୍ଦ୍ରନାଥ ଦାସ, ଶରତଚନ୍ଦ୍ର ପ୍ରଧାନ, ସୁଦର୍ଶନ ଆଚାର୍ଯ୍ୟ, କୁମୁଦରଂଜନ ପାଣିଗ୍ରାହୀ, କୃଷ୍ଣଚରଣ ବେହେରା, ହେମନ୍ତକୁମାର ଦାସ, ବାଉରିବଂଧୁ କର କୃଷ୍ଣଚନ୍ଦ୍ର ଭୂୟାଁ, ମନୋରଂଜନ ପ୍ରଧାନ, କୈଳାସ ପଟ୍ଟନାୟକ, ରତ୍ନାକର ଚଇନି, ନୃସିଂହଚରଣ ଷଡ଼ଙ୍ଗୀ,

ଗୌରାଙ୍ଗ ଦାଶ, ହୃଷିକେଶ ପଣ୍ଡା ଓ ସନ୍ତୋଷ ତ୍ରିପାଠୀ ପ୍ରମୁଖଙ୍କ ଯୋଗଦାନ ଓଡ଼ିଆ ତୁଳନାତ୍ମକ ସାହିତ୍ୟ ପରିଚର୍ଚ୍ଚାକୁ ଧାବମାନତା ଦେଇପାରିଛି।

୧୯୩୬ ମସିହାରେ ସ୍ୱର୍ଗତ ଭଗବତୀଚରଣ ପାଣିଗ୍ରାହୀ 'ଆଧୁନିକ' ପତ୍ରିକାରେ 'ଭାରତୀୟ ସାହିତ୍ୟ ପରିଷଦ' ଶୀର୍ଷକରେ ସମଗ୍ର ଭାରତୀୟ ସାହିତ୍ୟ ସମାଜବାଦୀ ବାସ୍ତବତା ଓ ବାମପନ୍ଥୀ ସମତାବୋଧର ସାହିତ୍ୟ ବୃତ୍ତି ପ୍ରତି ଅନୁରକ୍ତ ହୋଇଉଠୁଥିବା ପ୍ରସଙ୍ଗ ବିଶ୍ଳେଷଣ କରି ତୁଳନାତ୍ମକ ସାହିତ୍ୟ ଭିତ୍ତିରେ ସମ୍ୟକ ଅଧ୍ୟୟନ ପଦ୍ଧତିର ସୂଚନା ଦେଇଛନ୍ତି। ସଂସ୍କୃତିଗତ ଓ ଭାବଗତ ସାମ୍ୟ ଅନୁଯାୟୀ ସମଗ୍ର ଭାରତୀୟ ସାହିତ୍ୟାନୁସାରେ ଓଡ଼ିଆ ସାହିତ୍ୟ ପ୍ରଗତିବାଦୀ ଅନୁକୂଳ ହେବା ଉଚିତ – ଏହା ପ୍ରତିପାଦନ କରୁ କରୁ ତୁଳନାଧର୍ମୀ ସାହିତ୍ୟ ବ୍ୟାଖ୍ୟା ଏଥିରେ ସଂଭବ ହୋଇଛି। ଏ କ୍ଷେତ୍ରରେ ଡକ୍ଟର ନିତ୍ୟାନନ୍ଦ ନାୟକଙ୍କ ଫକୀର ମୋହନ, ବଙ୍କିମଚନ୍ଦ୍ର ଓ ପ୍ରେମଚାନ୍ଦଙ୍କ ଉପନ୍ୟାସ ସଂପର୍କିତ ତୁଳନାତ୍ମକ ଅଧ୍ୟୟନ ଏବଂ ଡକ୍ଟର ସଂଘମିତ୍ରା ମିଶ୍ରଙ୍କ ଓଡ଼ିଆ ଓ ହିନ୍ଦୀ ପ୍ରତୀକବାଦୀ ନାଟକର ତୁଳନାତ୍ମକ ଅଧ୍ୟୟନ ନିର୍ଭରଯୋଗ୍ୟ ଗବେଷଣା ବିଧାନର ସୂଚନା ଦେଇପାରିଛି। ଅନୁରୂପ ଭାବରେ ଜ୍ୟୋତ୍ସ୍ନା ରାଉତଙ୍କ ଶୋଧ ନିବନ୍ଧ ଓଡ଼ିଆ ଅହମିୟା ଲୋକସାହିତ୍ୟ, ସନ୍ତୋଷ ତ୍ରିପାଠୀଙ୍କ ଓଡ଼ିଆ କବିତା ଓ ରବୀନ୍ଦ୍ରନାଥ ଏବଂ ନୃସିଂହ ଷଡ଼ଙ୍ଗୀଙ୍କ ବିଶ୍ୱ ସାହିତ୍ୟରେ ଫକୀରମୋହନ ତୁଳନାତ୍ମକ ଅଧ୍ୟୟନର ସଂଭାବନାକୁ ପ୍ରୋତ୍ସାହିତ କରିପାରିଛି। ସୀତାକାନ୍ତ ମହାପାତ୍ରଙ୍କ ବିଶ୍ୱସାହିତ୍ୟ ସମ୍ବନ୍ଧୀ ଆଲୋଚନା ଏ କ୍ଷେତ୍ରରେ ଅନ୍ୟତମ ପ୍ରେରଣା ହୋଇପାରିଛି।

ଏସବୁ ସତ୍ତ୍ୱେ ଗଭୀର ଶାସ୍ତ୍ର ଦର୍ଶୀ ଅଧ୍ୟୟନ ବଳରେ ସାହିତ୍ୟ ସାହିତ୍ୟ ମଧ୍ୟରେ ସମ୍ବାଦ/ମେଳ ସଂଧାନକରି ବିଶ୍ୱମଣିଷକୁ ଗୋଟିଏ ଭୂମିପିଣ୍ଡରେ ସମ୍ମିଳିତ କରାଇ ତହିଁରେ ନିଜକୁ ଦେଖିବାର ଏକ ପ୍ରଶସ୍ତ ମନୋବୃତ୍ତି ଏବେବି ଓଡ଼ିଆ ସାହିତ୍ୟ ଓ ସହୃଦୟବତ୍ତା କ୍ଷେତ୍ରରେ ଅପେକ୍ଷାମାଣ ପ୍ରସଙ୍ଗ ହୋଇରହିଛି।

(ଛଅ)

**ପରିଶିଷ୍ଟ ବିଚାର**

**(କ) ତୁଳନାତ୍ମକ ସାହିତ୍ୟର ବିଶିଷ୍ଟ ଚିନ୍ତାନାୟକ କତିପୟ :–**

**ଜର୍ମାନୀ କବି ଗେଟେ (Goethe) :** ୧୮୨୭ ମସିହାରେ ସେ ସର୍ବପ୍ରଥମେ 'ୱେଲ୍‌ତ ଲିତରାତୁ' ବା ବିଶ୍ୱସାହିତ୍ୟ ପ୍ରସଙ୍ଗ ଉତ୍‌ଥାପନ କରି ଦର୍ଶାଇଲେ ଯେ ବିଶ୍ୱର ବିଭିନ୍ନ ଭାଷାର ସ୍ମରଣୀୟ ସାହିତ୍ୟ ହିଁ ବିଶ୍ୱ ସାହିତ୍ୟ। ଏସବୁରେ ପ୍ରତ୍ୟେକ ପାଠକ ମାନବର ପ୍ରଜ୍ଞା ଓ ଅବବୋଧକୁ ଭାଷା ଓ ଭୂଗୋଳର ସୀମାପାର ହୋଇ ହୃଦୟଙ୍ଗମ

କରିପାରିବେ। ସର୍ବୋତ୍ତମ ମାନବୀୟ ଅନୁଭବର ସଂପର୍କର କଥା ମହନୀୟ ଗ୍ରନ୍ଥମାନେ କହି ଆସିଛନ୍ତି; ଯାହାକୁ ସବୁକ୍ଷେତ୍ରର ପାଠକ ଜାଣିବା ଉଚିତ।

ମାଥ୍ୟୁ ଆର୍‌ନୋଲ୍‌ଡ– ଇଂରାଜୀ କବି ମାଥ୍ୟୁ ଆର୍‌ନୋଲ୍‌ଡ ୧୮୪୮ ମସିହାରେ ସବପ୍ରଥମେ 'ତୁଳନାତ୍ମକ ସାହିତ୍ୟ' (Comparative literature) ଶବ୍ଦ ବ୍ୟବହାର କରିଛନ୍ତି। ସମକାଳୀନ ଗଳ୍ପକାର, କବି, ନାଟ୍ୟକାର, ଔପନ୍ୟାସିକ ଓ ପ୍ରାବଂଧିକଙ୍କ ସହିତ ନିଜର ସୃଜନଶୀଳ ମନୀଷାକୁ ତୁଳନା କରି କୃତି ଭିତରେ ଏକ ତୁଳନାତ୍ମକ ସାହିତ୍ୟ ନିର୍ମାଣ ମନୋଭାବ ବିକସିତ ଥାଏ ବୋଲି ସେ ମତ ଦେଇଛନ୍ତି। ନିଜ ସାହିତ୍ୟପାଇଁ ତୁଳନାତ୍ମକ ଶବ୍ଦ ବ୍ୟବହାର କରିଥିବାରୁ ଆର୍‌ନୋଲଡଙ୍କ ମନ୍ତବ୍ୟ ପରବର୍ତ୍ତୀ ପର୍ଯ୍ୟାୟରେ ବିବଦମାନ ହୋଇଥିଲେ ମଧ୍ୟ ସାହିତ୍ୟ ସୃଜନଶୀଳତା ଯେ ଏକ ତୁଳନାତ୍ମକ ପ୍ରକ୍ରିୟାର ପ୍ରସଙ୍ଗ ଏହା ସେ ପ୍ରମାଣ କରିଛନ୍ତି। ତାଙ୍କ ବିଚାରରେ– ପୃଥିବୀର ବିଭିନ୍ନ ଭାଷା, ଧର୍ମ, ସଂସ୍କୃତି ଭିତରେ ସଂପର୍କ ରହିଛି। କୌଣସି ଏକକ ସାହିତ୍ୟ ଅନ୍ୟ ସାହିତ୍ୟ ସଂପର୍କରେ ନ ଆସିଲେ ପୂର୍ଣ୍ଣତା ପାଏ ନାହିଁ; ଯାହା ତୁଳନାତ୍ମକ ବିଚାର ବ୍ୟତୀତ ଅନ୍ୟ କିଛି ନୁହେଁ।

ରବୀନ୍ଦ୍ରନାଥ– ତୁଳନାତ୍ମକ ସାହିତ୍ୟ ପର୍ଯ୍ୟାଲୋଚନାର ପରଂପରାରେ ଭାରତୀୟ ନୋବେଲ୍-ପ୍ରତିଭା ରବୀନ୍ଦ୍ରନାଥଙ୍କ 'ବିଶ୍ୱ ସାହିତ୍ୟ' ପ୍ରସଙ୍ଗ ଏକ ଗୁରୁତ୍ୱପୂର୍ଣ୍ଣ ଦିଗନ୍ତ ଉନ୍ମୋଚନ କରିଛି। ଜାତୀୟ ଶିକ୍ଷାନୀତି ସଂପର୍କରେ ଅଭିମତ ଦେବାକୁ ଯାଇ ୧୯୦୭ ମସିହାରେ ରବୀନ୍ଦ୍ରନାଥ 'ବିଶ୍ୱସାହିତ୍ୟ' ବିଷୟ ଯାଦବପୁର ଶିକ୍ଷା ପରିଷଦ ସଭାରେ ବ୍ୟକ୍ତ କରିଥିଲେ। ବିଶ୍ୱର ବିଭିନ୍ନ ସାହିତ୍ୟ ଅଧ୍ୟୟନ କରି ତୁଳନାତ୍ମକ ଭାବରେ ତହିଁରୁ ମନୁଷ୍ୟର ସାଂସ୍କୃତିକ ଇତିହାସର ଗତିଧାରାକୁ ଉପଲବ୍ଧି କରିବାର ସମୀଚିନତା ସେ ଦର୍ଶାଇଥିଲେ। ତୁଳନାତ୍ମକ ପ୍ରକ୍ରିୟାରେ ବିଶ୍ୱ ସାହିତ୍ୟ ପଠନ ଦ୍ୱାରା ସମଗ୍ର ବିଶ୍ୱସାହିତ୍ୟ ଏକ ଅଭିନ୍ନ ଅଖଣ୍ଡ ଓ ସାମଗ୍ରିକ ବିଚାରବୋଧର ସତ୍ୟ ପ୍ରତିପାଦନ କରି ଆସିଛି– ଏପ୍ରକାର ରାବୀନ୍ଦ୍ରିକ ସିଦ୍ଧାନ୍ତ ମାନବ ଜାତିର ସାହିତ୍ୟିକ ସୃଜନଗୁଡ଼ିକୁ ସହବନ୍ଧନର ପ୍ରସଙ୍ଗ ଭାବରେ ବିବେଚନା କରିବାର ସୁଯୋଗ ଦେଇଛି।

ରେନେ ୱେଲକ୍– The Crisis of Comparative Literature, The Theory of Literature ଓ Discrimination ଇତ୍ୟାଦି ରଚନାରେ ଉଦାରତାପନ୍ଥୀ ତୁଳନାଶାସ୍ତ୍ରୀ ରେନେ ୱେଲକ୍ ତୁଳନାତ୍ମକ ସାହିତ୍ୟକୁ ବିଶ୍ଳେଷଣାତ୍ମକ ଅଧ୍ୟୟନ, ପ୍ରଭାବସ୍ୱତ୍ରୀୟ ବ୍ୟାଖ୍ୟା ଓ ଅନୁକରଣାତ୍ମକ ମୂଲ୍ୟାଙ୍କନ ଅପେକ୍ଷା ଐତିହାସିକ ଅର୍ଥବିଜ୍ଞାନ ଭିତ୍ତିରେ ସାହିତ୍ୟ ସାହିତ୍ୟ ଭିତ୍ତିରେ ଏକ ସମାନ୍ତରାଳ ସାଦୃଶ୍ୟଚିହ୍ନଟ କରିବାର ମାଧ୍ୟମ

ଭାବେ ପ୍ରାଧାନ୍ୟ ଦେଇଛନ୍ତି। ତାଙ୍କ ବିଚାରରେ ସାମ୍ୟ ବୈଷମ୍ୟ କଳନା ଦେଇ ସାହିତ୍ୟ ସାହିତ୍ୟ ମଧ୍ୟରେ ଏକରୂପତା ନିର୍ଦ୍ଧାରଣ ହିଁ ତୁଳନାତ୍ମକ ସାହିତ୍ୟ ପ୍ରଭାବ, ସାଦୃଶ୍ୟ, ସମାନ୍ତରାଳ ତର୍କଣା ଆହରଣ-ସ୍ୱାତନ୍ତ୍ୟ ସଂଚାଳନ ମାଧମରେ ବିବିଧ ସାହିତ୍ୟର ସାଂସ୍କୃତିକ ଓ ମାନବିକ ମୂଲ୍ୟବୋଧର ସଂଶ୍ଳେଷଣ ଓ ବିରେଚନ ହିଁ ତୁଳନାତ୍ମକ ସାହିତ୍ୟର ମୌଳ ଗୌରବ। ସାଧାରଣ ସାହିତ୍ୟ, ଜାତୀୟସାହିତ୍ୟ ଓ ବିଶ୍ୱ ସାହିତ୍ୟ/ଆନ୍ତର୍ଜାତୀୟ ସାହିତ୍ୟ - ଏପ୍ରକାର ସ୍ତରକୁ ସମର୍ଥନ ନ କରି ରେନେଓ୍ୱେଲ୍କ ମାନବ ସଂପ୍ରୀତିବୋଧକ ଏକ ଅଭିନ୍ନ ତୁଳନାତ୍ମକ ସାହିତ୍ୟ ଭାବରେ ବିଶ୍ୱର ବାଙ୍ମୟ ପରଂପରାକୁ ଉଦାର ମନରେ ବିଚାର ଓ ଗ୍ରହଣ କରିବାକୁ ଆହ୍ୱାନ ଦେଇଛନ୍ତି। ତାଙ୍କ ଦୃଷ୍ଟିରେ ତୁଳନାତ୍ମକ ସାହିତ୍ୟ ଏକ ତର୍କମୂଳକ ସ୍ୱତନ୍ତ ବିଦ୍ୟା/ଶୃଙ୍ଖଳା (Discipline of Knowledge)।

(ଖ) ତୁଳନାତ୍ମକ ସାହିତ୍ୟ ସଂପର୍କରେ ଗ୍ରହଣଯୋଗ୍ୟ ଅଭିମତ :-

- 'ତୁଳନାତ୍ମକତା ସାଂଶ୍ଳେଷିକ ମାନସିକ ଦୃଷ୍ଟି; ଯାହାଦ୍ୱାରା ଭୌଗୋଳିକ ଓ ଜାତୀୟ ସ୍ତର ଉର୍ଦ୍ଧ୍ୱରେ ସାହିତ୍ୟ ଭିତରେ ଥିବା ସମବୋଧଗୁଡ଼ିକୁ ଅନୁଭବ କରାଯାଇପାରେ।' -ରୋମାକ୍।
- 'ତୁଳନାତ୍ମକ ସାହିତ୍ୟହେଉଛି ବିଶ୍ୱସାହିତ୍ୟ ସହିତ ପାଠକ ସଂପ୍ରୀତି ସାଧନ କରିବାର ଏକ ଶୃଙ୍ଖଳା। ସାରସ୍ୱତ ଭାବନାରେ ବିଶ୍ୱଭାବନାର ସାଧାରଣୀକରଣ ଓ ପ୍ରତିଫଳନ ଘଟିଥାଏ- ଏହିସତ୍ୟ ପ୍ରତି ଅନୁରକ୍ତ ସାହିତ୍ୟ ହିଁ ତୁଳନାତ୍ମକ ସାହିତ୍ୟ।' -ଫ୍ରାନ୍‌କାଇସ୍ ଜୋଷ୍ଟ୍।
- 'ତୁଳନାତ୍ମକ ସାହିତ୍ୟ ଆନ୍ତର୍ଜାତିକ ମାନବ ସଂପର୍କକୁ ଆଧାର କରିଥିବା ସାହିତ୍ୟ ଇତିହାସର ଏକ ଶାଖା। ଏଦ୍ୱାରା ବିଶ୍ୱ-ସଂପର୍କର ଗଭୀର ଅଧ୍ୟୟନ ଓ ଭାବମାନଙ୍କର ସାଦୃଶ୍ୟ ବିଧାନ କରାଯାଇଥାଏ।' -ଜେ.ଏମ୍.କାରେ।
- 'ତୁଳନାତ୍ମକ ସାହିତ୍ୟ ଆନ୍ତର୍ଜାତିକ ସଂପର୍କର ଏକ କଳାତ୍ମକ ଇତିହାସ।'-ଗେୟାର୍ଡ଼।
- 'ତୁଳନାତ୍ମକ ସାହିତ୍ୟ ହେଉଛି ମାନବ ମାନବ, ସଂସ୍କୃତି ସଂସ୍କୃତି ଭିତରେ ଥିବା କଳାତ୍ମକ ସଂପର୍କର ଅନୁଧ୍ୟାନକାରୀ ବିଦ୍ୟା।' -ଇନ୍ଦ୍ରନାଥ ଚୌଧୁରୀ।

(ଗ) ତୁଳନାତ୍ମକସାହିତ୍ୟର ଉଦ୍ଦେଶ୍ୟ :-

- ସାହିତ୍ୟ ସାହିତ୍ୟ ଭିତରେ କିପରି ଏକ ମିଳନର ମହାଭବ ସଂପୃକ୍ତ ରହିଛି ଏବଂ ଗୋଟିଏ ସହିତ ଅନ୍ୟ ଗୋଟିଏ ସାହିତ୍ୟର ଭାବଗତ ମେଳନ କିପରି ସଂପାଦିତ ହୋଇଛି- ତାହାକୁ ଅନୁଶୀଳନ କରିବା ତୁଳନାତ୍ମକ ସାହିତ୍ୟର ଲକ୍ଷ୍ୟ।

- ଜ୍ଞାନର ବିସ୍ତାର, ବିଶ୍ୱଚେତନାକୁ ସାଦୃଶ୍ୟ ଜ୍ଞାନରେ ଅବଲୋକନ କରିବାର ଶ୍ରଦ୍ଧାଶୀଳ ମନୋଭାବର ବିକାଶ, ବିଶ୍ୱସାହିତ୍ୟ ଚେତନାର ଏକତା ନିରୂପଣ ଓ ସାହିତ୍ୟ ମାଧ୍ୟମରେ ମେଦିନୀଦୃଷ୍ଟିର ଅଭିନ୍ନତା ସନ୍ଦର୍ଶନ– ତୁଳନାତ୍ମକ ସାହିତ୍ୟର ଉଦ୍ଦେଶ୍ୟ।
- ଚିରାୟତ ପ୍ରତିଭାର ଦୃଷ୍ଟିଭଙ୍ଗୀ ମଧ୍ୟରେ ବିଶ୍ୱର ବିବର୍ତ୍ତନକୁ ଅନୁଭବ କରାଇବାର ପ୍ରଯତ୍ନ ସହିତ ଭାବମାନଙ୍କର ସାର୍ବଭୌମିକ ସ୍ୱରୂପ ଉଦ୍‌ଘାଟନ– ଏହାର ଅନ୍ୟତମ ବିଧେୟ।

**(ଘ) ତୁଳନାତ୍ମକ ସାହିତ୍ୟ ଓ ଅନୁବାଦ :**

ତୁଳନାତ୍ମକ ସାହିତ୍ୟ ତତ୍ତ୍ୱବିତ୍‌ଙ୍କ ବିଚାରରେ 'ଅନୁବାଦ' ହେଉଛି ବିଶ୍ୱ ସାହିତ୍ୟର ନିକଟତର ହେବାର ପ୍ରକୃଷ୍ଟ ମାଧ୍ୟମ। 'ଅନୁବାଦ' ହେଉଛି ମୂଳ ଲେଖାର ପୁନଃଲିଖିତ ବା ଅନୁସୃଜନ। ଭାବାତ୍ମକ ଅନୁବାଦ ଦ୍ୱାରା ମୂଳଲେଖାର ସାମଗ୍ରିକ ଆବେଦନକୁ ଜଣେ ଭିନ୍ନଭାଷୀ ପାଠକ ସହଜରେ ଅନୁଭବ କରି ତହିଁରେ ନିଜକୁ ଆତ୍ମୀଭୂତ କରିପାରେ। ମୂଳ ଲେଖାକୁ ପଢ଼ିବା ଓ ମୂଳ ଭାଷା ଭିତ୍ତିରେ ତା'ର ଭାବ ସହିତ ସଂପୃକ୍ତ ହେବା ସାଧାରଣ ପାଠକ ପକ୍ଷରେ ଅସମ୍ଭବ। ଶତକଡ଼ା ୨ରୁ ୫ ଭାଗ ପାଠକ ବିଶ୍ୱରେ ଅଛନ୍ତି ଯେଉଁମାନେ ନିଜ ଭାଷା ବ୍ୟତୀତ ଭିନ୍ନ କେତୋଟି ଭାଷାର ଲେଖାକୁ ପ୍ରତ୍ୟକ୍ଷ ପାଠ କରି ତହିଁରୁ ମାନବୀୟ ଭାବରାଜିଗୁଡ଼ିକୁ ଅନୁଭବ କରିବାରେ ସମର୍ଥ ହେବେ। ଏ ଦୃଷ୍ଟିରୁ ବିଶ୍ୱର ଉଚ୍ଚାଙ୍ଗ ସାହିତ୍ୟ ଭିତରେ ମାନବୀୟ ମୂଲ୍ୟବୋଧକୁ ପ୍ରବୋଧିତ କରିପାରୁଥିବା ବିଶ୍ୱ-ଦୃଷ୍ଟିକ ଭାବ ସହିତ ଭିନ୍ନଭାଷୀ ସହୃଦୟକୁଏକୀଭୂତ କରିବା ପାଇଁ ଅନୁସୃଜନମୂଳକ ସୃଷ୍ଟିର ଆବଶ୍ୟକତା ତୁଳନାତ୍ମକ ସାହିତ୍ୟ ପରଂପରା ବିଚାରରେ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ। ଅନୁବାଦ ମାଧ୍ୟମରେ ସାହିତ୍ୟ ସାହିତ୍ୟ ଭିତରେ ଥିବା ସାଦୃଶ୍ୟ ଓ ସାମ୍ୟବୋଧଗୁଡ଼ିକର ସହଜ ରୂପାନ୍ତରୀକରଣ ଘଟିଥାଏ। ଅନୁବାଦ ଯଥାର୍ଥରେ ତୁଳନାତ୍ମକ ବିଚାର, ପଠନ, ଅଧ୍ୟୟନ, ଭାବ ଆକଳନ ଓ ବସ୍ତୁଗ୍ରହଣ ନିମନ୍ତେ ସର୍ବୋତ୍‌କୃଷ୍ଟ ଉପକାରକ।

**(ଙ) ତୁଳନାତ୍ମକ ସାହିତ୍ୟର ପ୍ରବିଧି :**

ତୁଳନାତ୍ମକ ସାହିତ୍ୟ ମୁଖ୍ୟତଃ ତିନିଶ୍ରେଣୀୟ ପ୍ରଜାତି ଓ ବିଶ୍ଳେଷଣାତ୍ମକ ପ୍ରବିଧିକୁ ନେଇ ପ୍ରତିଷ୍ଠା ପାଇଛି। ଯଥା :-

(i) **ଏକ ଭାଷା-ସାହିତ୍ୟ ସଂପର୍କିତ ତୁଳନାତ୍ମକ ବିଚାର :** ଗୋଟିଏ ଭାଷାରେ ଗୋଟିଏ କାଳରେ ବା ବିବିଧ ସମୟଖଣ୍ଡରେ ରଚିତ ସୃଷ୍ଟି ସୃଷ୍ଟି ଭିତରେ

ଭାବଗତ ଓ ପ୍ରକାରତାଗତ ତୁଳନାକୁ ଏହି ମର୍ମରେ ସମର୍ଥନ କରାଯାଏ। ମାତ୍ର ଏହା ଏକ ଦୁର୍ବଳ ବିଚାରର ଉପଲକ୍ଷ୍ୟ। ଏକାଧିକ ଲେଖା ଓ ଲେଖକ ସାହିତ୍ୟିକ ପ୍ରବୃତ୍ତି ମଧ୍ୟରେ ତୁଳନା – ବଳରାମ ଦାସ ଓ ଉପେନ୍ଦ୍ରଭଂଜ/ ଦାଣ୍ଡୀ ରାମାୟଣ ଓ ବୈଦେହୀଶ ବିଳାସ,ସବୁଜ ସାହିତ୍ୟ ଓ ପ୍ରଗତିବାଦୀ ସାହିତ୍ୟ।

(ii) **ଏକ ସାହିତ୍ୟ ସହିତ ଅନ୍ୟ ସାହିତ୍ୟର ପ୍ରଭାବ ଓ ସାଦୃଶ୍ୟ ଜନିତ ତୁଳନା :** ଏ କ୍ଷେତ୍ରରେ ଛାୟାବାଦୀ ସାହିତ୍ୟ ଓ ଓଡ଼ିଆ ସବୁଜସାହିତ୍ୟର ତୁଳନା, ଓଡ଼ିଆ ରୀତିକାବ୍ୟ ଉପରେ ସଂସ୍କୃତ କାବ୍ୟର ପ୍ରଭାବ, ଋଷୀୟ ଲୋକକଥା ଓ ଭାରତୀୟ ଲୋକକଥାର ସାଦୃଶ୍ୟ ବିଧାନ, ସ୍ୱାଧୀନତୋତ୍ତର ଓଡ଼ିଆ ପ୍ରୟୋଗବାଦୀ କବିତା ସହିତ ଇଲିୟଟ ଓ ପାଉଣ୍ଡ୍‌ଙ୍କ ସୃଜନକଳ୍ପର ପ୍ରଭାବଓ ପ୍ରତିରୂପ ନିରୂପଣ ଇତ୍ୟାଦିକୁ ସଦୃଷ୍ଟାନ୍ତ ଗ୍ରହଣ କରାଯାଇପାରେ।

(iii) **ସାଦୃଶ୍ୟ-ବୈସାଦୃଶ୍ୟ ଓ ତୁଲ୍ୟଦେହୀ ଅଧ୍ୟୟନ :** ଏ ପ୍ରକାର ତୁଳନାତ୍ମକ ସାହିତ୍ୟ ବିଚାର ଲେଖକ ଲେଖକ/ଲେଖାଲେଖା/ସାହିତ୍ୟିକ ପ୍ରବୃତ୍ତି ପ୍ରବୃତ୍ତି/ ସାହିତ୍ୟିକ ପ୍ରଜାତି ପ୍ରଜାତି ମଧ୍ୟରେ ଚରିତ୍ର, ବିଷୟ ଓ ପ୍ରକରଣ ଦିଗରୁ ଥିବା ମେଳର ଆକଳନ ଉପରେ ଗୁରୁତ୍ୱ ଦେଇଥାଏ। ଏଠାରେ ରହସ୍ୟବାଦୀ ଚିନ୍ତାଧାରା ଦିଗରୁ କବିର, ଭୀମଭୋଇ, ରବୀନ୍ଦ୍ରନାଥ, ମଧୁସୂଦନଓ ବୈକୁଣ୍ଠନାଥଙ୍କ କବିତ୍ୱର ତୁଳନା ରାମଚରିତ ମାନସ ସହିତ ବିଚିତ୍ର ରାମାୟଣର ତୁଳନା, ମହାଯାତ୍ରା ସହିତ ମେଘନାଥବଧର ତର୍କଣା, ହିନ୍ଦୀ ପ୍ରୟୋଗବାଦୀ ନାଟକ ସହିତ ଓଡ଼ିଆ ନାଟକର ତୁଳନା, ଇଂରାଜୀ, ବଙ୍ଗଳା ଓ ଓଡ଼ିଆ କବିତାରେ ରୋମାଣ୍ଟିକ୍ ଚେତନାର ତୁଳନା, ଅହମିୟା-ବଙ୍ଗଳା-ଓଡ଼ିଆ ରୂଢ଼ୀର ତୁଳନା ଇତ୍ୟାଦିକୁ ପରିସରଭୁକ୍ତ କରାଯାଇପାରେ। ସ୍ଥୁଳତଃ ସାଂସ୍କୃତିକ, ସାମାଜିକ ଓ ସହଜାତ ମାନବୀୟ ଭାବଧାରା ଭିତ୍ତିରେ ଅଧ୍ୟୟନ କରି ସାହିତ୍ୟ-ସାହିତ୍ୟ ଭିତରେ ଥିବା କଳାତ୍ମକ ଅନ୍ତଃମିଳନକୁ ଉପଲବ୍ଧି କରିବା ଉପରେ ତୁଳନାତ୍ମକ ସାହିତ୍ୟର ଏପ୍ରଜାତିଟି ଅଧିକ ଆକର୍ଷଣ ଓ ଆଦୃତ ହୋଇଥାଏ।

(ସାତ)

**ଶେଷ କଥନୀରୁ ଆରମ୍ଭ :-**

ସ୍ଥୁଳତଃ ତୁଳନାତ୍ମକ ସାହିତ୍ୟ ହେଉଛି ଆନ୍ତର୍ଜାତୀୟ ସାହିତ୍ୟିକ ସଂପର୍କର ଇତିହାସ ଉପରେ ପ୍ରତିଷ୍ଠିତ ('Comparative Literature is the history of

international literary relations– M.F. Guymard– La Literatual Comparee-1951) ଏକ ସ୍ୱତନ୍ତ୍ର କଳା-ଶୃଙ୍ଖଳା।

ମାନବୀୟ ସଂପର୍କର ସଂଯୋଗୀକରଣ କ୍ରମେ ସାହିତ୍ୟ ସାହିତ୍ୟର ଅନୁରୂପତା ଆକଳନ ଓ ସମାନ୍ତରାଳ ଅଧ୍ୟୟନ ଉପରେ ଏହି ସାହିତ୍ୟ ପ୍ରଜାତି ଲକ୍ଷ୍ୟନିଷ୍ଠ ରହିଥାଏ।

ପାଶ୍ଚାତ୍ୟ ବିଦ୍ୱାନ ଓ ସାହିତ୍ୟ ତତ୍ତ୍ୱଦର୍ଶୀଙ୍କ ମତରେ ତୁଳନାତ୍ମକ ସାହିତ୍ୟ ଏକ ଉଦ୍‌ବୋଧିତ ପଠନ ପ୍ରକ୍ରିୟାର ଆନ୍ଦୋଳନ; ଯାହା ମାଧ୍ୟମରେ ବିଶ୍ୱସାହିତ୍ୟକୁ ଅଖଣ୍ଡ ଓ ଅଚ୍ଛିଦ୍ର ଭାବରେ ଏକ ମଂଚାସୀନ କରାଇବା। ଅପର ପକ୍ଷରେ ରଷୀୟ ଓ ଚୈନିକ ସାରସ୍ୱତ ବିଚାର ବ୍ୟବସ୍ଥାରେ ତୁଳନାତ୍ମକ ସାହିତ୍ୟର ଆବଶ୍ୟକତା ସମାଜତାତ୍ତ୍ୱିକ ସମତାବୋଧ ଉପରେ ପ୍ରତିଷ୍ଠିତ ହେବା ଉଚିତ ଏବଂ ପ୍ରତ୍ୟେକ ସାରସ୍ୱତ ମନ ଭିତରେ ମଣିଷର ଶ୍ରେଷ୍ଠତ୍ୱ ଘୋଷଣାର ବାସ୍ତବ ଦରଦୀବୋଧ ରହିବା ସମୀଚୀନ।

ମାତ୍ର ଭାରତୀୟ ତୁଳନାତ୍ମକ ସାହିତ୍ୟ ବିଚାର ଏହି କ୍ରମରେ ଅଧିକ ସକାରାତ୍ମକ ମୌଳିକ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛି। ପରଂପରାର ମହତ୍ତ୍ୱ ପ୍ରତିପାଦନ୍, ମାନବବାଦୀ ଚେତନା ଭିତ୍ତିରେ ମୂଲ୍ୟବୋଧର ମୂଲ୍ୟାୟନ ଓ ଭାରତୀୟ ପାରତ୍ୱବାସନା ତଥା ଅମୃତମୟ ଦରଦୀ ଭାବବୋଧ ଅନୁଯାୟୀ ବିଶ୍ୱସାହିତ୍ୟର ଇତିହାସ ନିର୍ମାଣ ଉପରେ ଭାରତୀୟ ବିଚାର ବିମର୍ଶ ଆସ୍ଥା ପ୍ରକଟ କରିଆସିଛି।

'ସାହିତ୍ୟ ହେଉଛି ସହିତର ଶୁଭଗ ଚେତନାକୁ ନେଇ ଏକ ମହାମିଳନର ପରିମଣ୍ଡଳ। ମଣିଷ ସହିତ ମଣିଷର, କାଳ ସହିତ କାଳର, ଭୂଖଣ୍ଡ ସହିତ ଭୂଖଣ୍ଡର, ସଂସ୍କୃତି ସହିତ ସଂସ୍କୃତିର, ଭୂମି ସହିତ ଭୂମାର, ନୃତତ୍ତ୍ୱ ସହିତ ଜୀବନ ତତ୍ତ୍ୱର, ଦର୍ଶନ ସହିତ ମନନର, ପ୍ରକୃତି ସହିତ ପୁରୁଷର ମିଳନ ଘଟାଇବାର ଅକଳ୍ପନୀୟ ସାମର୍ଥ୍ୟ ରହିଛି ସାହିତ୍ୟର। ଏସବୁ ନିହାତି ପୁରୁଣା ତଥାପି ନୂଆ। ନୂଆ ହେଉଛି– ଜୀବନର, ମୂଲ୍ୟବୋଧର, ସମ୍ଭାବନାର, ସତ୍ୟର ଓ ସୌନ୍ଦର୍ଯ୍ୟର କଥା ଏକ ବୃହତ୍ତର ପରମ୍ପରାକୁ ଭିତ୍ତିକରି ସାହିତ୍ୟ କହିଥାଏ। ଡେଇଁଯିବାର, ମିଶିଯିବାର, ଏକାତ୍ମୀଭୂତ ହୋଇଯିବାର, ବିସ୍ତାରିଯିବାର ଓ ଗଭୀରତାକୁ ଛୁଇଁଯିବାର ମାନ୍ତ୍ରିକ ସୂତ୍ରଟି ସାହିତ୍ୟଫୁଲ ଫୁଟିବା ପରି ସ୍ୱାଭାବିକ ଭଙ୍ଗୀରେ ସନ୍ତର୍ପଣରେ ବତାଇ ଦେଇଥାଏ। ଏସବୁ କଥା ଶୁଣିବା ଏବଂ ଏ ପ୍ରକାର ପ୍ରତିଭୂରେ ପରିଣତ ହୋଇଯିବାର ମାନସିକତା ବିଶ୍ୱର ସବୁଭାଷାର, ସବୁ ସ୍ଥଳର ସବୁ ମଣିଷଙ୍କ ଭିତରେ ସମସୂତ୍ରରେ ସବାସନାମୂଳକ ହୋଇରହିଛି। ତେଣୁ ମୋର, ମୋ ଭାଷାର, ମୋ ପ୍ରଦେଶର, ମୋ ଧର୍ମର, ମୋ ସମୟର, ମୋ ସମ୍ପ୍ରଦାୟର, ମୋ

ବଂଧୁର, ମୋ ମାଲିକର, ମୋ ଠାକୁରର– ଏତେ ଏତେ ମୋର ସମ୍ବନ୍ଧବାଚକ ସଂକୀର୍ଣ୍ଣ ବଳୟର ପରମ୍ପରା ଭିତରେ ଛୋଟିଆ ଆଖିଗୁଡ଼ିକ ସାହିତ୍ୟକୁ ସୀମାବଦ୍ଧ କରି ଦେଇଥା'ନ୍ତି । ଏ ଧାରଣାର ଲୋଚନଗୁଡ଼ିକ ଅର୍ଦ୍ଧନିର୍ମିଳିତହୋଇ ଉତ୍କର୍ଷ-ଅପକର୍ଷ, ଅନୁସରଣ-ପ୍ରତିଫଳନ ପରି ଛାଞ୍ଚ-ନିକିତିରେ ତଉଲି ସାହିତ୍ୟକୁ ବିଚାର କଳନା ନକରି ବ୍ୟବଚ୍ଛେଦ କରିଥା'ନ୍ତି । ଏହାକୁ ସାହିତ୍ୟ ସମୀକ୍ଷାର ଭିନ୍ନ ସୂତ୍ର ଭାବରେ ଗ୍ରହଣ କରିଥା'ନ୍ତି– ଯାହା ପ୍ରକାରାନ୍ତରେ ଗୋଟିଏ ଅଣବେଉସା ପ୍ରସଙ୍ଗ ବୋଲି ସଂପ୍ରତି ପ୍ରମାଣିତ ହୋଇସାରିଛି । ପ୍ରକୃତ ସାହିତ୍ୟ ସାଙ୍ଗରେ ମିତ ବସିଥିବା ମଣିଷ, ଜାତି, ବୁଦ୍ଧି, ଭାବ ଓ ଗୋଷ୍ଠୀ ଭଲଭାବରେ ଜାଣନ୍ତି– ସାହିତ୍ୟ ସର୍ବଦା ବଞ୍ଚିବାର ନୃତାତ୍ତ୍ୱିକ ଓ ସମାଜତାତ୍ତ୍ୱିକ ସତ୍ୟଟିକୁ ବୃହତ୍ତମ ବୋଲି ସମର୍ଥନ ଦେଇଆସିଛି । ଧ୍ୱଂସ ଓ ସୃଜନକୁ ମାନି ମାଟି ଓ ଆକାଶ ଭିତରେ ବଞ୍ଚିବା, ନିର୍ଲୋଭ ଓ ନିର୍ବିକାର ଚିତ୍ତରେ ବିଷୟୋତ୍ତର ହୋଇ ବଞ୍ଚିବା, ମଣିଷର ଆଙ୍ଗୁଠି ଧରି ନିଜକୁ ପ୍ରତି ମୁହୂର୍ତ୍ତରେ ନମାରି ବଞ୍ଚିବା ଓ ସର୍ବୋପରି ପ୍ରିୟତମ ସତ୍ୟକୁ ନେଇ ବଞ୍ଚିବା ହେଉଛି ମଣିଷ ପାଇ ଦୁର୍ଲ୍ଲଭ ସାଧନା । ଏହି ସାଧନାର ବୀଜମନ୍ତ୍ରକୁ ବିଶ୍ୱର ସବୁ କୋଣର ମହତ୍ ଗ୍ରନ୍ଥମାନେ ଭିନ୍ନ ଧରମର ପାକରେ ପରଷି ଦେଇଛନ୍ତି । ମାନବ ସଂସ୍କୃତିର ଆଦିକାଳରୁ ସାହିତ୍ୟର ନିଷ୍ଠାପରତା ଏହି ପରିବେଷଣ ଉପରେ ପ୍ରତିଷ୍ଠିତ । ସାହିତ୍ୟ ପଙ୍ଗତରେ ବସି କେବେ କିପରି କେଉଁଠି କାହାଦ୍ୱାରା ପ୍ରାଣପ୍ରାଚୁର୍ଯ୍ୟର ସ୍ୱାଦମାନେ ପରିବେଷିତ ହୋଇଛନ୍ତି; ତାହାକୁ ସ୍ଥାନ-କାଳ-ପାତ୍ରର ସଂକୀର୍ଣ୍ଣ ପ୍ରାଚୀରକୁ ଡେଇଁ ଖୋଜି, ମିଶାଇ ତହିଁ ସବୁରୁ ଜୀବନର ଆଲୋକିତ ସମ୍ଭାବନାଗୁଡ଼ିକୁ ସଂଗ୍ରହ କରି ଆଣିବାର ଏକ ମହତ୍ତମ ପାଠକୀୟ ମାନସିକତା ଉପରେ ତୁଳନାତ୍ମକ ସାହିତ୍ୟ' ପ୍ରତିଷ୍ଠିତ ।

ଅନ୍ୟ ପକ୍ଷରେ ଜୀବୀ ସତ୍ୟାଶ୍ରିତ ସାହିତ୍ୟକୃତିଗୁଡ଼ିକୁ ଆଧାର କରି ନିଜକୁ 'ମୋ'ମାନଙ୍କଠାରୁ ମୁକ୍ତ କରି 'ତୋ' ଓ 'ଆମ୍ଭ'ମାନଙ୍କ ସହିତ ମିଶାଇ ଏକ ସାମୁଦାୟିକ ମୂଲ୍ୟବୋଧ ନିର୍ମାଣ କରିବା ଓ ସମଯୋଜନାର ବିଶ୍ୱଟିଏ ପରିକଳ୍ପନା କରିବା ତୁଳନାତ୍ମକ ସାହିତ୍ୟର ଲକ୍ଷ୍ୟ । ଏହି କ୍ରମରେ ଆମ ପାଇଁ ଆମ ସାହିତ୍ୟକୁ ଭାରତୀୟ ଓ ବିଶ୍ୱର ଅନ୍ୟଗୋତ୍ରୀୟ ସାହିତ୍ୟ ପରିଭୂମିରେ ବିଚାର କରି ମାନବୀୟ ମହାର୍ଘ ଅନୁଭୂତିଗୁଡ଼ିକର ମେଳଦେଖି ଦେଖାଇ ସେମାନଙ୍କର ମିଳନ ସାଧନ କରିବା ତୁଳନାତ୍ମକ ସାହିତ୍ୟର ଉଦ୍ଦେଶ୍ୟ । ଏହାଦ୍ୱାରା ଓଡ଼ିଆ ସ୍ୱାଭିମାନ ଓଡ଼ିଶା ଭୂଗୋଳର ହୋଇ ପୁନଶ୍ଚ ଭୂଗୋଳ ଡେଇଁ ବିଶ୍ୱଚେତନାର ଭୂଗୋଳକୁ ଅଧିକାର କରିପାରିବ ।

ଏ ଉଦ୍ଦେଶ୍ୟ ପ୍ରତି ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟରେ ନିଦ୍ରାଭଙ୍ଗର ବ୍ୟାପାରଟି ଅନେକ ଦିନରୁ ଘଟିସାରିଛି । ଅବଶ୍ୟ ଆମ ସାହିତ୍ୟ ପରମ୍ପରାରେ ପଣ୍ଡିତ

ଗୋପୀନାଥ ନନ୍ଦ ଏଥିପାଇଁ ବହୁ ଆଗରୁ ବାଟଟିଏ 'ଶ୍ରୀ ଭାରତ ଦର୍ପଣ'ରେ ଖୋଲି ଦେଇଥିଲେ। ସେ ବାଟଟି ଅନେକ ବର୍ଷ ଅଣଓଡ଼ା ହୋଇ ରହିଗଲା। କିଛିଦିନ ପରେ ମାୟାଧର ମାନସିଂହ, ଦାଶରଥୀଦାସ... ସେ ବାଟରେ ପାଦ ଥାପିଲା ପରେ ପୁଣି ନିର୍ଜନତା ବାଟଟିକୁ କୋଳେଇ ନେଇଛି। ଅନ୍ୟ ପ୍ରତିବେଶୀମାନେ ଏଥିପାଇଁ ତିଆରି କରିଥିବା ବାଟରେ ପିଚୁ ପରେ ପିଚୁ ପକାଇବାରେ ବ୍ୟସ୍ତଥିବାବେଳେ ଆମେ ମୁଷ୍ଟିମେୟ ବିଦ୍ୱାନଙ୍କ ଦ୍ୱାରା ଗୋଡ଼ି ବିଛେଇ ଚାଲିଛୁ ମାତ୍ର (ତୁଳନାତ୍ମକ ଆଲୋଚନା କରିବା କ୍ୱଚିତ ଘଟୁଛି)।

ଆଉ ଗୋଟିଏ କଥା ଏଠାରେ ଉଲ୍ଲେଖଯୋଗ୍ୟ। ବିଦ୍ୱାନ ନନ୍ଦ ମହାଶୟ ବାହାରର ବିଚାର ଓ ଇତିହରେ ନିଜକୁ ମାପିବାର ଯେଉଁ ଦୃଷ୍ଟିଭଙ୍ଗୀ ଓ କୌଶଳଟି ଦେଖାଇଥିଲେ ବୋଧହୁଏ ତାକୁ ଆମେ ବିସ୍ମରିଯାଇଛୁ। ସୁରେନ୍ଦ୍ର ମହାନ୍ତି, ଦାଶରଥି ଦାସ, ଗଗନେନ୍ଦ୍ର ନାଥ ଦାଶ, କୃଷ୍ଣ ନନ୍ଦ, ଆଦିକନ୍ଦ ସାହୁ, ନରେନ୍ଦ୍ର ନାଥ ମିଶ୍ର, ନିତ୍ୟାନନ୍ଦ ନାୟକ, ସଂଘମିତ୍ରା ମିଶ୍ର ଏ କ୍ଷେତ୍ରରେ ପ୍ରସାର-ଦୃଷ୍ଟିପାତର ଅବକାଶଟିଏ ସୃଷ୍ଟି କରିଛନ୍ତି। ତଥାପି ଆମେ ତୁଳନାତ୍ମକ ସାହିତ୍ୟକୁ ପ୍ରଭାବ, ପ୍ରତିରୂପ, ଅନୁସରଣ, ସାଦୃଶ୍ୟ-ବୈସାଦୃଶ୍ୟ ମାପନ ଭାବରେ ଏବେବି ଅର୍ଥନିଷ୍ଣ କରୁଛୁ। ଏହା ମଧ୍ୟ ଭୁଲ ନୁହେଁ। କିନ୍ତୁ ମନେ ରଖିବା ଉଚିତ ଯେ ଏହା ତୁଳନାତ୍ମକ ସାହିତ୍ୟ ପରି ଉକାଙ୍ଗ କଳାବୋଧର ଏକ ଫାଳିକିଆର ଭଗ୍ନାଂଶ ଲକ୍ଷଣ ମାତ୍ର। ସାମଗ୍ରିକ ସମ୍ବନ୍ଧଟିଏ ଦେଖି କଳାବୋଧ, କଳାବୋଧ ଭିତରେ ଅନୁରୂପତାର ସଂହତିଟିଏ କିପରି ଚମତ୍କାର ଭାବରେ ଜାତକ ମେଳକ ଘଟାଇଛି— ଏ ପ୍ରକାର ଲୋଚନ ସଂଚାଳନ ଆମମାନଙ୍କ ବିଚାରର ଅପେକ୍ଷା ରଖୁଛି।

ସୁତରାଂ ସଂପ୍ରତି ତୁଳନାତ୍ମକ ସାହିତ୍ୟ ନାମକରା— ଅନାମକରା, ପୂର୍ବ-ପର, ପ୍ରଭାବଶାଳୀ-ଦୁର୍ବଳ ଇତ୍ୟାଦି ଭେଦକଳ୍ପନା ଭିତ୍ତିରେ ଔପନିବେଶିକୀ ମାନଦଣ୍ଡରେ ଲେଖା ଓ ଲେଖକଙ୍କ ଭିତରେ ଥିବା ସମ୍ବନ୍ଧ-ପ୍ରଭାବ-ପ୍ରତିଫଳନ ଆଦିକୁ ବିଚାର ନକରି ମାନବୀୟ ଆବେଗର ମିଳନବେଦୀ ଭାବରେ ସାହିତ୍ୟ-ସୃଜନପଣକୁ ଅନୁଶୀଳନ କରିବାର ଅବକାଶଟିଏ ସୃଷ୍ଟି କରିଛି।

'ଉଭୟ ପ୍ରାଚ୍ୟ-ପାଶ୍ଚାତ୍ୟ କଳାବୋଧର ମାନଦଣ୍ଡରେ ସାହିତ୍ୟକଳ୍ପ ମାଧ୍ୟମରେ ଏକ ବିଶ୍ୱଗ୍ରାମୀୟ ଚିନ୍ତାଧାରା ଓ ଅଭିନ୍ନ ମାନବବାଦର ମୂଲ୍ୟବୋଧ ପ୍ରତିଷ୍ଠା ଦିଗରେ ସଂପ୍ରତି ତୁଳନାତ୍ମକ ସାହିତ୍ୟର ଲକ୍ଷ୍ୟ ଅଭିନିବିଷ୍ଟ ହେଉଛି— ଏହାହିଁ ଏକ ବିଂଶ ଶତାବ୍ଦୀର ବିଶ୍ୱ ନିମନ୍ତେ ଏକ ଶୁଭଙ୍କର ବିଷୟ— ଏହି ଶେଷକଥନୀ ପ୍ରତି ସଚେତନ

ରହି ଓଡ଼ିଆ ସାହିତ୍ୟର ନୂଆ ଉପଚାର ଆରମ୍ଭ ହେଉ। ଏ ଆରମ୍ଭର ସଂକଳ୍ପ ହେଉ ଏଣିକି ଆମ ଶବ୍ଦ ଖେଳ ଭିତରେ ବିଶ୍ୱ ଆପଣାକୁ ଦେଖିବ ଓ ଆମେ ବିଶ୍ୱ ବୋଧର ଦର୍ପଣଶିଳାରେ ଆମ ଆନନ୍ଦଭାବର ସ୍ୱରୂପକୁ ଦେଖିପାରିବା। ଭାରତୀୟତାର ଜଗତୀକରଣ ହେବା ଭିତରେ ତୁଳନାତ୍ମକ ସାହିତ୍ୟର ବିଭାବନ ନୂଆ ଚମକରେ ଉଦ୍‌ଭାସିତ ହୋଇଉଠିବ ଏବଂ ଆମେ ଜଗତର ସଦୃଶ୍ୟ ଅଂଶ ହୋଇଉଠିବା– ଏ ଆଶା କରିବା।

## ସାରଣୀ ନଂ-୬

### ରଚନା ସମ୍ବାଦ

| ୧. ପ୍ରତିବିମ୍ବାତ୍ମକ ସମ୍ବାଦ | ୨. ଆଲେଖ୍ୟାତ୍ମକ ସମ୍ବାଦ | ୩. ତୁଲ୍ୟଦେହୀ ତୁଲ୍ୟ ସମ୍ବାଦ |
|---|---|---|
| • ଅବିକଳ/ଅନେ୍ୟାତ୍ମ ହୋଇଥିବାରୁ ଏଥିରେ ପ୍ରଭାବ ଅଭିନ୍ନଥାଏ।<br>• ଏହା ପାଠକକୁ ନୂଆବୋଧ ଓ କାବ୍ୟାର୍ଥ ଦିଏନାହିଁ।<br>• ଏହା ପୁନରୁକ୍ତିର ରଚନା ମାତ୍ର।<br>• ଏହିପ୍ରକାର ମେଳରେ ସ୍ୱୀକରଣ ନଥିବାରୁ ବିର୍ଜନୀୟ। | • ସାମ୍ୟ ବା ସାଦୃଶ୍ୟ ସୂଚକ।<br>• ସମଭାବାତ୍ମକ ହେଲେ ମଧ୍ୟ ଏଥିରେ ପ୍ରଭାବଶାଳୀର କାବ୍ୟାବେଦଠାରୁ ମୌଳିକ ଆବେଦନ ପ୍ରଭାବିତ କବି କଳ୍ପନା କରିପାରିନଥାଏ।<br>• ତେଣୁ ଏହା ମଧ୍ୟ ସାର୍ଥକ ସମ୍ବାଦ ସାଧକ ନୁହେଁ। | • ସମ୍ବାଦ ମେଳର କାରଣ ସମଭାବାପନ୍ନ ବିଷୟ।<br>• କାବ୍ୟବୋଧରେ ମେଳ ବର୍ତ୍ତମାନ।<br>• ପୂର୍ବସ୍ୱରୀ କେବଳ ମାତ୍ର ଆଧାର।<br>• ପରସ୍ୱରୀ-ଆହୃତ କାବ୍ୟ ଉପାଦାନରେ ବିକଳ୍ପ ଓ ବଳିଷ୍ଠ ସ୍ୱାତନ୍ତ୍ୟର ସ୍ୱାକ୍ଷର ବିକଶିତ କରାଇ ପାରିଥା'ନ୍ତି।<br>• ପୁରାତନରେ ନୂତନତା ଆନୟନ ହୋଇଥାଏ।<br>• ତେଣୁ ସର୍ବାଦୌଗ୍ରହଣୀୟ। |



# ରହସ୍ୟବାଦୀ ଓଡ଼ିଆ ଗୀତିକବି ଓ ରବୀନ୍ଦ୍ରନାଥ : ଏକ ତୁଲ୍ୟଦେହୀ ଆକଳନ

(ଏକ)

ପ୍ରଥମ ବିଶ୍ୱଯୁଦ୍ଧୋତ୍ତର କାଳରେ କେବଳ ବଙ୍ଗଳା ସାହିତ୍ୟନୁହେଁ, ସମଗ୍ର ଭାରତୀୟ ସାହିତ୍ୟରେ ଗୀତିକବିତାର ପରଂପରାରେ ରହସ୍ୟବାଦୀ ରୋମାଣ୍ଟିକ୍ ଭାବଧାରାର ଏକ ଉଦ୍ଦୀପ୍ତ ଫଲ୍‌ଗୁ ସୃଷ୍ଟି କରିବାରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପ୍ରଭାବ ଓ ପ୍ରେରଣା ବଳବତ୍ତର ହୋଇଛି ଏଥିରେ ସନ୍ଦେହର ଅବକାଶ ନ ଥାଇପାରେ। ପ୍ରକୃତି ବିଳାସ, ଜୀବନନିଷ୍ଠା ଓ ବିଭୁପ୍ରେମ ସମ୍ବଳିତ ରହସ୍ୟବାଦୀ ଚେତନା ଉପରେ ପ୍ରତିଷ୍ଠିତ ରବୀନ୍ଦ୍ର ଗୀତିକବିତା ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶଂଧି ବେଳକୁ ବଙ୍ଗଳା, ଅହମୀୟା, ଓଡ଼ିଆ, ହିନ୍ଦୀ, ମୈଥିଳୀ, ତେଲୁଗୁ ଇତ୍ୟାଦି ସାହିତ୍ୟର ଗୀତିକବିତାର ଅଭିବ୍ୟକ୍ତିରେ ସତେଜ ଜାଗୃତୀର ଏକ ବିକଶିତ ପର୍ବ ସୃଷ୍ଟି କରିବାରେ ସାହାଯ୍ୟ କରିଛି, ଏକଥା ସ୍ଥିର ନିଶ୍ଚିତ। ପ୍ରକୃତି-ଜୀବନ-ଦର୍ଶନ- ଈଶ୍ୱରଙ୍କର ଏକ ଦାମ୍ପତ୍ୟମୟ ସମବାୟ ସଂପନ୍ନ ଠାକୁରଙ୍କ କାବ୍ୟାଦର୍ଶ ତାଙ୍କ ସମକାଳୀନ ଓଡ଼ିଆ ଗୀତିକବିମାନଙ୍କୁ ପ୍ରତ୍ୟକ୍ଷ ପ୍ରଭାବ ଓ ପରୋକ୍ଷ ପ୍ରେରଣା ଦ୍ୱାରା ପରିସ୍ପୃଷ୍ଟ କରିବା ଦ୍ୱାରା ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟପରି ଓଡ଼ିଆ ଗୀତିକବିତାରେ ଉପନିଷେଦୀୟ ଭାବସ୍ପନ୍ଦ ସମ୍ବଳିତ ଏକ ଉଦାତ୍ତ ଅନନୁଭୂତୀଶୀଳ ରହସ୍ୟତତ୍ତ୍ୱର ସଚିତ୍ର ରୂପାୟନ ଦେଖିବାକୁ ମିଳିଛି।

ଏହି ଦୃଷ୍ଟିକୋଣରୁ ମଧୁସୂଦନଙ୍କଠାରୁ ଲକ୍ଷ୍ମୀକାନ୍ତ, କୁନ୍ତଳାକୁମାରୀ, ବୈକୁଣ୍ଠନାଥ, ମାୟାଧର ପ୍ରମୁଖଙ୍କ ପର୍ଯ୍ୟନ୍ତ ଅଧିକାଂଶ କବିଙ୍କ କବିତାରେ ରବୀନ୍ଦ୍ର ସମଧର୍ମୀ ବିଭୁପ୍ରୀତିର ବିଳାସ ପ୍ରତିଧ୍ୱନିତ ହୋଇଉଠିଛି। କେତେକଙ୍କ କବିତାରେ ପ୍ରତ୍ୟକ୍ଷ ପ୍ରଭାବଜନିତ, କେତେକଙ୍କ କବିତାରେ ପ୍ରେରଣାଜନିତ; କେତେକଙ୍କ କବିତାରେ ଅନୁସରଣଜନିତ, କେତେକଙ୍କ କବିତାରେ ସାଦୃଶ୍ୟଜନିତ ରୀତିରେ ରହସ୍ୟଧର୍ମୀ ରବୀନ୍ଦ୍ର ଭାବଚେତନାକୁ ଅନୁଭବ କରାଯାଇପାରେ।

ଏହି ପରିପ୍ରେକ୍ଷିରେ ରହସ୍ୟତତ୍ତ୍ୱର ଏକ ସଂକ୍ଷିପ୍ତ ଅଥଚ ସାରଗର୍ଭକ ସ୍ୱରୂପ ଉପରେ ଦୃଷ୍ଟିପାତ କରିବା ଉଚିତ୍ ମନେହୁଏ। ସାଧାରଣତଃ ରହସ୍ୟବାଦ କହିଲେ–

ଆଧ୍ୟାତ୍ମିକ ଦର୍ଶନର ନିଗୂଢ଼ ପରିପ୍ରକାଶକୁ ବୁଝାଇଥାଏ। ବ୍ୟକ୍ତିକ ଅନୁଭୂତି ଭିତରେ ଦର୍ଶନର ଆରୋପଣ, ପ୍ରକୃତି ଓ ସୌନ୍ଦର୍ଯ୍ୟ ଭିତରେ ଅରୂପ ଓ ଅସୀମର ସଂଧାନ, ଜଗତ ଓ ଜୀବନପ୍ରତି ଏକ ଅତୀନ୍ଦ୍ରିୟ ଆନନ୍ଦବାଦୀ ଛାୟାପାତ ସଂପନ୍ନ ଦୃଷ୍ଟିଭଙ୍ଗୀ, ଅଲୌକିକ ଜଗତପ୍ରତି ଏକ ଅତିଭୌତିକତା ସଂପନ୍ନ ଆସକ୍ତି, ପ୍ରତିଟି ଜୀବଧର୍ମୀ ସ୍ପନ୍ଦନ ଓ ପରିଦୃଶ୍ୟମାଣ ଚିତ୍ର ଭିତରେ ଈଶ୍ୱର ସତ୍ତାଂଶକୁ ଅନୁଭବ ଏବଂ ଅପାର୍ଥିବ ଦୃଶ୍ୟ ଓ ଭାବପ୍ରତି ବେପଥୁ ଭାବଗତ ଆକର୍ଷଣ ଇତ୍ୟାଦି ରହସ୍ୟବାଦର ଏକ ଏକ ପ୍ରଧାନ ବୈଶିଷ୍ଟ୍ୟ। ସୋନାରତରୀ, ନୈବେଦ୍ୟ, ଗୀତାଂଜଳି, ଗୀତାଳି, ଗୀତାୟନ, ଗୀତିମାଲ୍ୟାଦି ରବୀନ୍ଦ୍ରଙ୍କ ବହୁଚର୍ଚ୍ଚିତ ଗୀତିକବିତା ସଂକଳନ ଗୁଡ଼ିକରେ ସନ୍ନିବିଷ୍ଟ ଶତକଡ଼ା ଅଶିଭାଗ କବିତା ପ୍ରୋକ୍ତ ବୈଶିଷ୍ଟ୍ୟ ଆଧାରିତ ରହସ୍ୟବାଦୀ ଚିନ୍ତାଧାରା ଉପରେ ପର୍ଯ୍ୟବସିତ; ଯାହା ତାଙ୍କୁ ଜଣେ ଅନନ୍ୟ ସାଧାରଣ ରହସ୍ୟବାଦୀ ଈଶ୍ୱରବିଳାସୀ ଗୀତିକାରର ମାନ୍ୟତା ଦେଇଛି। ରବୀନ୍ଦ୍ର କବିତାରେ ପରିଦୃଶ୍ୟମାଣ ଏବଂବିଧ ରହସ୍ୟତତ୍ତ୍ୱର ସାଦୃଶ୍ୟ, ପ୍ରଭାବ ଓ ପ୍ରେରଣା ପ୍ରୋକ୍ତ ଓଡ଼ିଆ ଗୀତିକବିମାନଙ୍କଠାରେ ସ୍ୱାଭାବିକ ହୋଇଉଠିଛି।

ପୁନଶ୍ଚ ଭାରତୀୟ ଭାବଦର୍ଶନ ମୁଖ୍ୟତଃ ତା'ର ଉନ୍ମେଷ କାଳରୁ ଗଭୀର ଆଶାବାଦ ଓ ଲୌକିକ ଭକ୍ତିବାଦ ଉପରେ ପ୍ରତିଷ୍ଠିତ। ଉଭୟଦିଗ ଉପନିଷଦର ସନାତନୀ ଆସ୍ତ୍ୟର୍ଥିକ ଭାବଚେତନା ଉପରେ ପରିକଳ୍ପିତ। ଏହି ଉଭୟ ଚେତନା ଭାରତୀୟ କବି ଚିତ୍ତରେ ପ୍ରାଚୀନରୁ ଏଯାବତ ବହୁସ୍ୱପ୍ନ, କଳ୍ପନା ଓ ଆବେଗର ପ୍ଲାବନ ସୃଷ୍ଟିକରି ଆସିଛି। ଫଳରେ ଅଧିକାଂଶ କବିଙ୍କ ଲେଖନୀରେ ପାର୍ଥିବତା ଅପେକ୍ଷା ସୌନ୍ଦର୍ଯ୍ୟ ଓ କଳ୍ପନା ଦେଇ ପ୍ରତିଟି ଅନୁଭବ ଭକ୍ତିବୈରାଗ୍ୟ ସଂପନ୍ନ, ଅଲୌକିକ ଜଗତ ପ୍ରତି ମୋହାବିଷ୍ଟ ଆସକ୍ତି ଓ ଅତୀନ୍ଦ୍ରିୟ ବିଳାସ ଭିତରେ ରହସ୍ୟମୟ ହୋଇଉଠିଛି। ଅପର ପକ୍ଷରେ ସମୟ ଓ ଯୁଗ ରୁଚିର ଘଟାନ୍ତର ତଥା ପରିବର୍ତ୍ତନ କଲେ ଆଧୁନିକ ଜୀବନ ସହିତ ଧର୍ମର ପୂର୍ଣ୍ଣଯୋଗ ରଖିବା ଉଦ୍ଦେଶ୍ୟରେ ଓ ଭାରତୀୟ ସଂସ୍କୃତିକୁ ବିଶ୍ୱଧାରା ସହିତ ସାମିଲ୍ କରିବା ଲକ୍ଷରେ ପୁଣ୍ୟଶ୍ଳୋକ ରାମମୋହନ ଓ ମହର୍ଷି ଦେବେନ୍ଦ୍ର ନାଥ ଉପନିଷେଦୀୟ ଚିନ୍ତାଧାରା ଭିତ୍ତିରେ ବ୍ରହ୍ମ ସଂପ୍ରଦାୟ ଗଠନକରି ଆମର ପାରମ୍ପରିକ ସହସ୍ୟତତ୍ତ୍ୱରେ ଏକେଶ୍ୱରବାଦ ଏବଂ ପ୍ରକୃତି କୈନ୍ଦ୍ରିକ ଧର୍ମବୋଧର ଉଦ୍ରେକ ଘଟାଇ ଏକ ନୂତନ ଦିଗନ୍ତର ଉନ୍ମୋଚନ କରାଇଛନ୍ତି। ଏହି ରହସ୍ୟତତ୍ତ୍ୱର ପରମ୍ପରା ଉପରେ ଗୀତିଶିଳ୍ପ ସର୍ଜନା କରିବାର ପ୍ରଧାନ ଉଦ୍‌ଗାତା ହେଉଛନ୍ତି– କବି ରବୀନ୍ଦ୍ରନାଥ ଏବଂ ତାଙ୍କର ଅନୁଗାମୀ ଛାୟାବାଦୀ ପ୍ରାନ୍ତୀୟ

ଗୀତିକବିଗଣ ପୂର୍ବବର୍ତ୍ତୀ ପ୍ରାଚୀନ ରହସ୍ୟବାଦୀ କବି ଓ ସାଧକମାନଙ୍କ ପରି ଏହି ଗୀତିକବିମାନେ ବୈରାଗ୍ୟ ସାଧନ ବ୍ରତ ପାଳନ କରିନାହାନ୍ତି, ବରଂ ସଂସାରର ଅସଂଖ୍ୟ ବନ୍ଧନ, ଆଶା, ଆକାଂକ୍ଷା, ଦୁଃଖ, ଦୁର୍ଦ୍ଦିନ, ପ୍ରେମ, ପ୍ରଣୟ, ପ୍ରକୃତି ଭିତରେ ହିଁ ଜୀବନ ଦେବତା ବା ଉପାସ୍ୟ ଈଶ୍ୱରଙ୍କ ସତ୍ତାକୁ ଅନୁଭବ କରି ସମାସୀତ ହୋଇଛନ୍ତି। ତେଣୁ ଏମାନଙ୍କ କବିତାରେ ରୂପଭିତରେ ଅରୂପ, ସୀମା ମଧ୍ୟରେ ଅସୀମ, ଶବ୍ଦ ମଧ୍ୟରେ ନିଃଶବ୍ଦ ଏବଂ ମୃତ୍ୟୁ ମଧ୍ୟରେ ଅମୂର୍ତ୍ତର ଉପଭୋଗ ସ୍ୱାଭାବିକ ହୋପାରିଛି। କହିବା ବାହୁଲ୍ୟ ଭାରତୀୟ କାବ୍ୟବୋଧର ଏବଂବିଧ ଆଦର୍ଶ ରବୀନ୍ଦ୍ର-ଦର୍ଶନର ଚରମ ଛାୟା ପାତର ଫଳ ସ୍ୱରୂପ ମାତ୍ର।

(ଦୁଇ)

ଆଧୁନିକ ଓଡ଼ିଆ କବିତାର ଆଦି ପର୍ଯ୍ୟାୟରେ ଗଙ୍ଗାଧର, ଫକୀର ମୋହନ, ନନ୍ଦକିଶୋରଙ୍କ କବିତାରେ ପରିଦୃଶ୍ୟମାଣ ବିଭୁପ୍ରେମ ସହିତ ରବୀନ୍ଦ୍ର-ରହସ୍ୟ ତତ୍ତ୍ୱର ଭାବସାମ୍ୟତାକୁ ଲକ୍ଷ୍ୟ କରାଯାଇଥାଏ। ଗଙ୍ଗାଧରଙ୍କ ଭକ୍ତି, ଅମୃତମୟ ଓ ମଧୁମୟ କବିତା ତ୍ରୟରେ ଲକ୍ଷିତ ବିଭୁପ୍ରୀତି ଓ ଐଶ୍ୱରିକ ଚିନ୍ତାର ଆସ୍ୱାଦନ ଗୀତାଞ୍ଜଳିର ଯେକୌଣସି ଉନ୍ନତମାନର ରହସ୍ୟଧର୍ମୀ କବିତା ସହିତ ତୁଳନୀୟ। ଭକ୍ତି କବିତାରେ ପରିଦୃଶ୍ୟଶୀଳ ଆଟୋପବିହୀନ, ଦମ୍ଭହୀନ, ଛଦ୍ମତାଶୂନ୍ୟ, ଛଳୋକ୍ତି ବିହୀନ ବିନୟୀଭାବସଂପନ୍ନ ଭାବଧାରା ଏବଂ ଈଶ୍ୱରଙ୍କର ବ୍ୟାପକ ଓ ବିରାଟତ୍ୱ ଦର୍ଶନର ବିମୋହିତ ଚିନ୍ତାଧାରା ରବୀନ୍ଦ୍ରଙ୍କ ଭକ୍ତିମତାଧର୍ମୀ ଗୀତି କବିତାଠାରୁ କୌଣସି ଗୁଣରେ ନ୍ୟୁନ ନୁହେଁ। ସମୀକ୍ଷକ ଶରତଚନ୍ଦ୍ର ପ୍ରଧାନ ଏହି ପରିପ୍ରେକ୍ଷୀରେ ଭକ୍ତି, ଅମୃତମୟ, ମଧୁମୟ କବିତାରେ ପରିଦୃଶ୍ୟ କବିଚିତ୍ତକୁ ରବୀନ୍ଦ୍ରଙ୍କ ଭାବଚେତନା ସହିତ ତୁଳନା କରିବାକୁ ଯାଇ କୁହନ୍ତି– 'ମେହେର କବିତା ସମ୍ଭାର ମଧ୍ୟରେ କବିଚିତ୍ତ ଜନିତ ଭାବଗତ ବୋଧ ଅଧିକ ସୁତୀବ୍ର ଓ ସ୍ୱଷ୍ଟ। ଏହାକୁ ରବି ଠାକୁରଙ୍କ 'ଆମାର ମଥାନତ କରେ ଦାଓ, ତୁମାର ଚରଣ ଧୂଳାର ତଲେ' କବିତା ସଙ୍ଗେ ତୁଳନା କରାଯାଇପାରେ।'

ରବୀନ୍ଦ୍ର ରହସ୍ୟବାଦର ଅନ୍ୟତମ ଦିଗ ହେଲା ଏହା ଧୂଳିମାଟିର ଆଦର୍ଶ ସହିତ ଜଡ଼ିତ। ତେଣୁ ତାଙ୍କ ଆଧ୍ୟାତ୍ମିକତାର ଭିତରେ ପୃଥିବୀ ମିଥ୍ୟା ମାୟାମୟ ନୁହେଁ ସତ୍ୟ ଓ ସନାତନ। ପ୍ରକୃତି ଭିତର ପ୍ରକୃତ ରହସ୍ୟର ଉପଲବ୍ଧି ଏହି ବାସ୍ତବ ଦୃଷ୍ଟିକୋଣରୁ ମିଳିଥାଏ ଯାହା କବିଙ୍କୁ ରହସ୍ୟ ବୋଧାବିଷ୍ଟ ଆନନ୍ଦବାଦୀ ଭାବରେ ପରିଚିତ କରିଛି। ଏହି ଆନନ୍ଦବାଦୀ ଭାବ ଦର୍ଶନ ଗଙ୍ଗାଧରଙ୍କ ମଧୁମୟ ଓ ଅମୃତମୟ କବିତାରେ ସମଭାବ ଭିତ୍ତିରେ ପରିଲକ୍ଷିତ। ପୁନଶ୍ଚ ଫକୀରମୋହନଙ୍କ 'ଧୂଳି' କବିତା

ସଂକଳନସ୍ଥ 'ଈଶ୍ୱର କାହାନ୍ତି', 'ପ୍ରାର୍ଥନା', 'ଦିଅଦେଖା' ଓ 'ସମ୍ବଳ' ଇତ୍ୟାଦି କବିତାରେ ଦିବ୍ୟଦୃଷ୍ଟି ଭିତରେ ଜୀବନ ଓ ଜଗତ ପ୍ରତି ଥିବା ଅମୃତମୟ ଆଶାବାଦୀ କାମନାର ଚିତ୍ର ପରିଦୃଶ୍ୟମାନ ହୋଇଥାଏ; ଯାହାକୁ ବାସ୍ତବତା ସଂପନ୍ନ ଅମୃତ ସଂଧାନୀ ରବୀନ୍ଦ୍ର ରହସ୍ୟ ଚେତନା ସହିତ ସାଦୃଶ୍ୟ ଭିତ୍ତିରେ ମୂଲ୍ୟାୟନ କରାଯାଇପାରେ। ଅପରତଃ କବି ନନ୍ଦକିଶୋରଙ୍କର ରୋମାଣ୍ଟିକ୍ ଭାବବିଳାସୀ କବିତ୍ୱ ଯେତେବେଳେ ପାର୍ଥିବ ସୁଖଦୁଃଖର ଉର୍ଦ୍ଧ୍ୱରେ ବ୍ୟକ୍ତିକ ଦୃଷ୍ଟି ଭଙ୍ଗୀରେ ଅନ୍ତଃରୀଣ ସତ୍ୟର ଅନୁପସ୍ଥିତିରେ ବିଷାଦବାଦୀ ହୋଇଉଠିଛି; ସେ ସମୟରେ ତାଙ୍କ କବିତାରେ ରହସ୍ୟତତ୍ତ୍ୱର ଛାଇଆଲୁଅର ଖେଳକୁ ପାଠକ ଲକ୍ଷ୍ୟ କରିପାରନ୍ତି, ଯାହା ଗଭୀର ଆଶାବାଦ ଉପରେ ପ୍ରତିଷ୍ଠିତ ରବୀନ୍ଦ୍ର ନିଗୂଢ଼ତତ୍ତ୍ୱ ସହିତ ତୁଳନୀୟ। ବିଷାଦବାଦ, ପ୍ରଭାତ ଅବକାଶ, ପିକ, ସଂଧ୍ୟାସଂଗୀତ, ପ୍ରଭାତସଂଗୀତ ଇତ୍ୟାଦି କବିତା ଏହାର ପ୍ରମାଣ। 'ପ୍ରଭାତ ଅବକାଶ' କବିତାରେ ପରିଲକ୍ଷିତ ଜୀବନପ୍ରତି ମହନୀୟ ଦିବ୍ୟ ଭାବସଂପନ୍ନ ଆଶାବାଦୀ ଦୃଷ୍ଟିଭଙ୍ଗୀ ରବୀନ୍ଦ୍ର ରହସ୍ୟବାଦର ଭାବଗାମ୍ଭୀର୍ଯ୍ୟ ସମଧର୍ମୀ। ଉଭୟଙ୍କ କବିତାରେ ବିଷାଦଭିତରେ ରହି ବିଷାଦକୁ ନେଇ ପୃଥିବୀକୁ ମଧୁମୟ, ଶୋଭାମୟ କରି ଗ୍ରିବାର ପ୍ରେରଣା କାବ୍ୟବୋଧର ଚୂଡାନ୍ତନିଷ୍ପତ୍ତି ଭାବରେ ଗୃହୀତ ହୋଇଛି।

ରହସ୍ୟବାଦୀ କବିତା ରଚନା କରିବା କ୍ଷେତ୍ରରେ ଓଡ଼ିଆ ଗୀତିକବିମାନଙ୍କ ମଧ୍ୟରେ ସମକାଳୀନ ଭକ୍ତିକବି ମଧୁସୂଦନ ରବୀନ୍ଦ୍ରନାଥଙ୍କର ଅଧିକ ନିକଟବର୍ତ୍ତୀ। କଳାଜଗତରେ ଅମୂର୍ତ୍ତ ଦୃଷ୍ଟିଭଙ୍ଗୀର ରୂପାୟନ ଦୃଷ୍ଟିରୁ ଉଭୟ କବିଙ୍କ କବିତ୍ୱ ସମପର୍ଯ୍ୟାୟର। ଉଭୟ କବି ବ୍ରହ୍ମବାଦୀ ଓ ଏକେଶ୍ୱର ବିଶ୍ୱାସୀ। ଉଭୟଙ୍କ ପାଇଁ ଜୀବନ ଓ ଜ୍‌ଗତ ଅମୃତମୟ ଓ ସୁଧାମୟ। ଉଭୟ ଈଶ୍ୱରଙ୍କୁ ପ୍ରକୃତିର କୋଣଅନୁକୋଣରେ ଅନୁଭବ କରି ଆତ୍ମହରା ହୋଇ ଉଠିଛନ୍ତି। ଉଭୟ ବର୍ଷା, ନିଦାଘ, ବସନ୍ତ, ପତ୍ର, ପୁଷ୍ପ, ନିର୍ଝର, ସୂର୍ଯ୍ୟ, ଚନ୍ଦ୍ର, ଆକାଶ ଓ ପ୍ରକୃତିର ରୂପ-ରସ-ଗନ୍ଧ-ଧ୍ୱନି ଭିତରେ ପରମାତ୍ମାଙ୍କ ପରିପୂର୍ଣ୍ଣ ସତ୍ୟ ଶିବ ସୁନ୍ଦରର ସତ୍ତାକୁ ଦେଖି ବେପଥୁବନ୍ତ ହୋଇଉଠିଛନ୍ତି। ଉଭୟ ପ୍ରାକୃତିକ ବିପର୍ଯ୍ୟରେ ଈଶ୍ୱରଙ୍କ ବିରହକୁ ଅନୁଭବ କରିଛନ୍ତି। ସୁତରାଂ ପ୍ରକୃତି ଭିତରେ ଈଶ୍ୱରଙ୍କୁ ଦେଖି ଦେଖାଇବା ହିଁ ଉଭୟଙ୍କ କବିତାରେ ଇତିଧର୍ମ ଭାବରେ ଲକ୍ଷଣୀୟ। ରବୀନ୍ଦ୍ର ଯେପରି ସବୁଦୃଶ୍ୟ ଭିତରେ ନିଜର ଜୀବନ ଦେବତାଙ୍କୁ ସାକାର କରି ଗୀତିକବିତାରେ ନିଜର କବିତ୍ୱକୁ ନିୟୋଜିତ କରିଛନ୍ତି ସେପରି ମଧୁସୂଦନ ପ୍ରତିଟି ଚିନ୍ତା ଓ ଚେତନା, ରୂପ ଓ ଦୃଶ୍ୟରେ 'ଭୂମା'ର ଆଶୀର୍ବାଦକୁ ବର୍ତ୍ତମାନଥିବା ଦେଖିଛନ୍ତି। ଈଶ୍ୱର ପ୍ରୀତିର ସ୍ୱର ଉପରେ ଅବଲମ୍ବିତ ସଂଗୀତମାଳାର ୧୦, ୧୧, ୧୨, ୧୩, ୧୫, ୩୨, ୮୬, ୯୩, ୧୦୦

ସଂଖ୍ୟକ କବିତାଗୁଡ଼ିକରେ ବ୍ରହ୍ମଙ୍କର ସର୍ବମୟ ସ୍ଥିତି, ପ୍ରକୃତି ଭିତରେ ଭଗବତ୍‌ବୋଧ ନିହିତ ରହିଛି। ଗୀତାଞ୍ଜଳିରେ ସନ୍ନିବିଷ୍ଟ "ତୁମ ସଙ୍ଗୀତର ସୁର, ମୁଁ ଗାଏ ତୁମପାଇଁ, ଭରିଦିଅ ଶୂନ୍ୟପାତ୍ର ମୋର, ତୁମର ଅମୃତସ୍ପର୍ଶ ସହିତ ତାଙ୍କର ବହୁ ଚର୍ଚ୍ଚିତ ଆଧ୍ୟାତ୍ମିକ ସୌନ୍ଦର୍ଯ୍ୟ ତତ୍ତ୍ୱ ସମ୍ବଳିତ କବିତା– ସୋନାରତରୀ, ନଦୀ, ସିନ୍ଧୁପ୍ରତି, ନିର୍ଝରର ସ୍ୱପ୍ନଭଙ୍ଗ, ଧୂଳି, ଇତ୍ୟାଦିରେ ଭାବଧାରା ସହିତ ମଧୁସୂଦନଙ୍କ ସଂଗୀତମାଳାର ପ୍ରୋକ୍ତ ସଂଗୀତ ଗୁଡ଼ିକର ଚେତନାଗତ ସାମ୍ୟ ପରିଲକ୍ଷିତ। ରବୀନ୍ଦ୍ରଙ୍କ 'ନଦୀ ଓ ନିର୍ଝରର ସ୍ୱପ୍ନଭଙ୍ଗ'ରେ ଥିବା ଜୀବନର ପରମ-ଅଭିମୁଖୀ ଗତିପ୍ରବାହର ରହସ୍ୟବୋଧର ଏକ ପ୍ରତିବନ୍ଧ ସାଦୃଶ୍ୟ ସୃଷ୍ଟି ହେଉଛି ମଧୁସୁଦନଙ୍କ 'ନଦୀପ୍ରତି' ସମ୍ବୋଧନଗୀତି।

ଅପରପକ୍ଷରେ 'ଭାରତୀୟ ରହସ୍ୟବାଦର ଅନ୍ୟତମ ଲକ୍ଷଣ– 'ମହାଭାବରେ ଅଭିଭୂତ ହୋଇ ଲୌକିକ ସ୍ଥିତି ବିସ୍ମୃତ ହେବା।' ପ୍ରକୃତି ଭିତରେ ବିଶ୍ୱସ୍ରଷ୍ଟାଙ୍କର ଅଙ୍ଗୁଳି ସ୍ପର୍ଶକୁ ଅବଲୋକନ କରି ବିଶ୍ୱର ଆଲୋକ ପବନରେ ଭାଗବତୀୟ ଅମୂର୍ତ୍ତ ବାଣୀକୁ ଶ୍ରବଣକରି କବିର ଚିତ୍ତ ସ୍ତମ୍ଭୀଭୂତ ଓ କବିର ମୁଖ ବାକ୍ୟ ବିହୀନ ହୋଇପଡ଼େ। ସ୍ୱୀୟ ସସୀମ ଜୀବନରେ ଅସୀମ ସ୍ୱରୂପକୁ ଉପଲବ୍ଧି କରି ସେ ମହାଭାବରେ ଅଭିଭୂତ ହୋଇଯାଏ। ସାଧାରଣ ଚିତ୍ତରେ ଯାହା ଅଲୌକିକ ପଳାୟନ ପ୍ରବଣ ମନେହୁଏ ତାହା କବି ନିକଟରେ ରହସ୍ୟବାଦୀ ଭିତ୍ତିରେ ବାସ୍ତବତା ସମ୍ପନ୍ନ ହୋଇ କାବ୍ୟିକ ସତ୍ତାରେ ଦେଖାଦିଏ। ରବୀନ୍ଦ୍ର ତାଙ୍କର ଅଧିକାଂଶ କବିତାରେ ଏହିପରି ମହାଭାବର ସାମ୍ନାସାମ୍ନି ହୋଇ ତନ୍ମୟୀ ଅବସ୍ଥା ଅନୁଭବ କରିବାପରି ମଧୁସୂଦନ ତାଙ୍କର ହିମାଚଳେ ଉଦୟ ଉତ୍ସବ, ଋଷିପ୍ରାଣେ ଦେବାବତରଣ, ଉଦ୍‌ବୋଧନ, ଜୀବନଚିନ୍ତା, ଆଶା, ଧ୍ୱନି, ନବବର୍ଷର ଭାବନା ଓ ଶଙ୍ଖଧ୍ୱନି ଇତ୍ୟାଦି କବିତାରେ ଇନ୍ଦ୍ରିୟାତୀତ ମହାଭାବରେ ନିମଜ୍ଜିତ ହୋଇ ବେପଥୁବନ୍ତ, ଅଶ୍ରୁସିକ୍ତ ରୋମାଞ୍ଚ ଅନୁଭବ କରିଛନ୍ତି। ମହାପ୍ରଣବ- ଓଙ୍କାରର ଭଗବତ୍‌ବୋଧ ସଂପନ୍ନ ଧ୍ରୁପଦର ସ୍ୱର ଉଭୟ ରବୀନ୍ଦ୍ର ଓ ମଧୁସୂଦନଙ୍କ କବିତାରେ ମୂର୍ତ୍ତିମାନ ହୋଇଉଠିଛି। ଉଭୟଙ୍କ ଦିବ୍ୟଦୃଷ୍ଟିରେ ମଣିଷ ଓ ଜୀବଜଗତ ଅମୃତ ବ୍ରହ୍ମ ତନୟା। ଉଭୟଙ୍କ କବିତାରେ ପ୍ରକୃତି, ଜୀବନ ଓ ଈଶ୍ୱର ଏକ ସରଳରେଖା ସଂସ୍ଥିତ। ଏକ୍ଷେତ୍ରରେ ମଧୁସୂଦନଙ୍କ ଭାବନା ରବୀନ୍ଦ୍ରଙ୍କଠାରୁ ଆଗୁଆ ଉତ୍ପାଦିତ ହୋଇଛି।

ବ୍ରହ୍ମବାଦ ଦୃଷ୍ଟିରୁ ମୃତ୍ୟୁ ହେଉଛି ଜୀବନ ଦେବତା ସହିତ ମିଳନ ହେବାର ସେତୁ। ଏହି ଭାବ ରହସ୍ୟବାଦର ଅନ୍ୟତମ ବିଶେଷତ୍ୱ। ତେଣୁ ଉଭୟ ରବୀନ୍ଦ୍ର ଓ ମଧୁସୂଦନଙ୍କ କବିତାରେ 'ମୃତ୍ୟୁ'କୁ ମଙ୍ଗଳମୟ ଭାବରେ ସ୍ୱୀକାର ଓ ସ୍ୱାଗତ କରାଯାଇଥିବାର ସ୍ୱାଦ ଉପଭୋଗ୍ୟ ହୋଇଉଠିଛି।

ମଧୁସୂଦନ– ''ତବ ମଙ୍ଗଳ ବିଧାନ
କରିଅଛି ମରଣକୁ ଅମୃତ ସୋପାନ।''
ରବୀନ୍ଦ୍ର– ''ହେ ସୁନ୍ଦର, ମୋର ଅବସାନ
ତୋମାର ମାଧୁରୀ ହତେ ସୁଧାସ୍ରୋତେ
ଭରେ ନିତ୍ୟେ ଚାୟତାର
ଦିନାନ୍ତେର ଗାନ।''

ମଧୁସୂଦନ କାବ୍ୟସ୍ଫୂର୍ତ୍ତିର ପ୍ରାରମ୍ଭ ପର୍ଯ୍ୟାୟରେ ସ୍ତୋତ୍ର, ନିଶୀଥଚିନ୍ତା, ଜୀବନଚିନ୍ତା କବିତାତ୍ରୟ କବିମାନସର ଭାଗବତବୋଧର ବାଙ୍‌ମୟ ପ୍ରକାଶ। ଜୀବନଚିନ୍ତା ମୃତ୍ୟୁ ସଚେତନ ହୃଦୟର ଏକ ତତ୍ତ୍ୱଧର୍ମୀ ସାହିତ୍ୟିକ ପ୍ରକାଶ। ଏହି କବିତାରେ ଜୀବନ ଓ ମୃତ୍ୟୁ ପରସ୍ପର ଭାବ ସଂଜଡ଼ିତ। ରବୀନ୍ଦ୍ରଙ୍କ ଦୃଷ୍ଟିରେ ଜୀବନ ଓ ମୃତ୍ୟୁ ଦାମ୍ପତ୍ୟ ପ୍ରେମରେ ବନ୍ଧନୀ କୃତ ହେବା ପରି ମଧୁସୂଦନଙ୍କ କବିତାରେ ଜୀବନ ଓ ମୃତ୍ୟୁ ଅଖଣ୍ଡ ବନ୍ଧନରେ ସ୍ଥିରୀକୃତ। ରବୀନ୍ଦ୍ରନାଥ ବିଷାଦ, ନୈରାଶ୍ୟ ଭିତରେ ଅବଗାହନକରି ଜୀବନରେ ଆନନ୍ଦ ଓ ଐଶୀସତ୍ତାର ସନ୍ଧାନ କରିଛନ୍ତି। 'ଆମି ଯେ ରୂପେର ପଦ୍ମେ ପେୟେଛି ଅରୂପର ମଧୁପାନ/ ଦୁଃଖେର ବକ୍ଷେର ମାଝେ ଆନନ୍ଦେର କରେଛି ସନ୍ଧାନ'– ଏହି ଉଦାତ୍ତ ଆନନ୍ଦବାଦମୂଳକ ଛାୟାବାଦୀ ଅଭିବ୍ୟକ୍ତିର ସାଦୃଶ୍ୟ ଏ ସୃଷ୍ଟି ଭାବସ୍ପନ୍ଦନକୁ ମଧୁସୂଦନଙ୍କ ଅମୃତମୟ ହେ, ଆକାଶପ୍ରତି, ଆଶା ଇତ୍ୟାଦି କବିତାର ଅନ୍ତଃରୀଣ ବାଣୀ ରୂପ ଭିତରେ ପ୍ରତିଧ୍ୱନିତ ହୋଇଥିବାର ସ୍ପଷ୍ଟ ହୃଦବୋଧ ହୋଇଥାଏ। ସାଧନା ପତ୍ରିକାରେ ନିଜେ ରବୀନ୍ଦ୍ରନାଥ ଦେବାବତରଣ ଓ ହିମାଚଳେ ଉଦୟ ଉତ୍ସବ କବିତାରେ ପରିଦୃଶ୍ୟମାଣ ଅମୂର୍ତ୍ତ ଦୃଷ୍ଟିଭଙ୍ଗୀର ଭୂୟସୀ ପ୍ରଶଂସା କରିଥିବାର ପ୍ରମାଣ ମଧ୍ୟ ସ୍ୱାଭାବିକ।

ମୋଟ ଉପରେ କବିର ଚିତ୍ତସତ୍ତା ଓ ଭଗବତ୍ ସତ୍ତାର ମିଳନ ଜନିତ ଅଭିଳାଷର ଆଶାଦୀପ୍ତ ବାଣୀର ଗାମ୍ଭୀର୍ଯ୍ୟ ଉଭୟ ମଧୁସୂଦନ ଓ ରବୀନ୍ଦ୍ରଙ୍କ ଗୀତ କବିତାରେ ଭାବସାମ୍ୟତା ଆଣି ଦେଇଛି। କେବଳ ଏତିକି ତଫାତ୍ ରବୀନ୍ଦ୍ର କବିତାରେ ନୈର୍ବ୍ୟକ୍ତିକ ସୌନ୍ଦର୍ଯ୍ୟବୋଧ ମଧୁସୂଦନଙ୍କ ଆତ୍ମନିଷ୍ଠ ବ୍ୟକ୍ତି ସର୍ବସ୍ୱତା ଭିତରେ ଦୁର୍ମିଳ ହୋଇପଡ଼ିଛି। ଫଳରେ ରବୀନ୍ଦ୍ର କବିତା ପରି ମଧୁସୂଦନଙ୍କ କବିତାରେ ରସ ମାଧୁର୍ଯ୍ୟ ନାହିଁ; ବରଂ ଦୁର୍ଜ୍ଞେୟ ଭାବଗାମ୍ଭୀର୍ଯ୍ୟ ପରିଲକ୍ଷିତ ହୋଇଛି।

(ତିନି)

ରବୀନ୍ଦ୍ର ସମକାଳୀନ ଓଡ଼ିଆ ରହସ୍ୟବାଦୀ ଗୀତିକବିତା ପରମ୍ପରାରେ କାନ୍ତକବିଙ୍କ ସାଧନା ଏକ ଗୌରବମୟ ଅଧ୍ୟାୟ। କାନ୍ତକବିଙ୍କ ସଙ୍ଗୀତ ସାଧନାରେ ରବୀନ୍ଦ୍ର

ଭାବଚେତନାର ପ୍ରତ୍ୟକ୍ଷ ସମୀକରଣ ଓ ସାଦୃଶ୍ୟ ଚେତନାଧର୍ମୀ ସ୍ପନ୍ଦନକୁ ଅନୁମାନ କରାଯାଇଥାଏ ମଧୁସୂଦନଙ୍କ କାବ୍ୟଚେତନା ପରିପ୍ରେକ୍ଷରେ ପୂର୍ବରୁ ଆଲୋଚିତ ଯେ ମୃତ୍ୟୁକୁ ଆପଣାର କରିନେବା ଭାରତୀୟ ରହସ୍ୟବାଦର ଅନ୍ୟତମ ଦିଗ। ରବୀନ୍ଦ୍ର କବିତାରେ ଏହି ବୈଶିଷ୍ଟ୍ୟ ନ୍ୟାୟରେ 'ମରଣ ଶ୍ୟାମ ସମାନ' ବୋଲି ପରିକଥିତ ହେବାପରି ଲକ୍ଷ୍ମୀକାନ୍ତ ମୃତ୍ୟୁକୁ ପ୍ରିୟତମର ଆସନଦେଇ ସ୍ୱାଗତ କରିଛନ୍ତି (ଆସ ପ୍ରିୟତମ ମରଣ ମୋହର ମୋହ ବଂଧନ ତୁଟାଇ)।

ରବୀନ୍ଦ୍ରଙ୍କ ପରି ଲକ୍ଷ୍ମୀକାନ୍ତଙ୍କ ଉପାସ୍ୟ ଈଶ୍ୱର ଜୀବନ ଦେବତା ଭାବରେ କାବ୍ୟିକ ପରିଚିତି ପାଇଛନ୍ତି। ଏ ଜୀବନ ଦେବତା ଉଭୟ ବିଭୁଭକ୍ତ କବିଙ୍କ କବିତାରେ ରୂପଧର୍ମୀ, ଦେହଧାରୀ ପାଷାଣ ଦେବତା ନୁହନ୍ତି, ବରଂ ଏହାଙ୍କ ସମ୍ବନ୍ଧ ରୂପାତୀତ, ଅସୀମ, ଅନୁଭୂତି ସମ୍ପନ୍ନ ଅନ୍ତରାତ୍ମାର ବାଙ୍‌ମୟତା ଭିତରେ। ସମୀକ୍ଷକ ଚିନ୍ତାମଣି ବେହେରାଙ୍କ ମନ୍ତବ୍ୟ- 'ଜୀବନ ସଙ୍ଗୀତର ଅଧିକାଂଶ ସଙ୍ଗୀତ ଜୀବନ ଦେବତାର ଲୀଳାବୈଚିତ୍ର୍ୟଜନିତ କବିପ୍ରାଣର ଦରଦୀ ଅନୁଭୂତି।' ଏକଥା ସ୍ଥିରତର ବୋଧହୁଏ ଯେ କାନ୍ତକବିଙ୍କ ବିଭୂପ୍ରୀତି ରବୀନ୍ଦ୍ର ଜୀବନ ଦେବତା ବାଦ ଉପରେ ଦଣ୍ଡାୟମାନ (ସେତନୁହେଁ ନୂଆଗୋ / ଜୀବନଦେବତା ରୂପେ ହୃଦୟେ ଥୁଆଗୋ)। ରବୀନ୍ଦ୍ରଙ୍କ ଭଳି ନିଜର କର୍ମ ଓ ଧର୍ମକୁ ଜୀବନ ଦେବତାର ପାଦପୀଠରେ ସମର୍ପଣ କରି କେବଳ ତାଙ୍କର ଅନୁସରଣ କରିବାରେ କବି ମାନସ ତୃପ୍ତି ଲାଭ କରିଛି। ରବୀନ୍ଦ୍ର ପ୍ରକୃତି ଭିତରେ ଜୀବନ ଦେବତାଙ୍କର ସ୍ପର୍ଶ ଅନୁଭବ କରି ବିସ୍ମୟ ଓ ବେପଥୁଶୀଳ ହେବାପରି ଲକ୍ଷ୍ମୀକାନ୍ତ ଜୀବନର ଚଲାପଥରେ ଈଶ୍ୱରଙ୍କ 'ମୃଦୁ ପଦଧ୍ୱନି ଶୁଣି ଥରେ ଥରେ/ଚମକି ଚମକି ଉଠିଚନ୍ତି ଚକିତରେ'। ପ୍ରତିଟି କର୍ମ ଓ ଭାବକୁ ଜୀବନ ଦେବତାଙ୍କ ନିର୍ଦ୍ଦେଶ ବୋଲି ଗ୍ରହଣ କରି ନିଜ ଜୀବନର ଗତି ପ୍ରବାହ ଈଶ୍ୱରଙ୍କ ଇଚ୍ଛାରେ ନିୟନ୍ତ୍ରିତ ହେବାର କାମନା ରବୀନ୍ଦ୍ର ପୋଷଣ କରିଛନ୍ତି। 'ତୋମାର ଇଚ୍ଛା କରହେ ପୂର୍ଣ୍ଣ ଆମାର୍ ଜୀବନ ମାଝେ' ଉକ୍ତି ଭିତରେ ଥିବା ଚେତନାର ସାମ୍ୟ ଲକ୍ଷ୍ମୀକାନ୍ତଙ୍କ ବିନୟ ସ୍ୱୀକାରୋକ୍ତି 'ଶିରପାତି ନେବି ନିର୍ଦ୍ଦେଶ ତୁମ୍ଭର ହେବିନାହିଁ ତିଳେ କ୍ଷୁଣ୍ଣ ହେ...' ଭିତରେ ଲକ୍ଷଣୀୟ।

ଅଚିନ୍ତ୍ୟ ଜଗତ ଓ ଜଗତକର୍ତ୍ତା ପ୍ରତି ସମ୍ମୋହନ ଆକୃଷ୍ଟ ସମ୍ବଳିତ ରହସ୍ୟବାଦୀ ଅନୁଭୂତି ପ୍ରକାଶରେ କବି ଲକ୍ଷ୍ମୀକାନ୍ତ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଦ୍ୱାରା ପ୍ରଭାବିତ। ଏହି ଅଚିନ୍ତ୍ୟ ଭାବର ଅଦେଖା, ଅଜଣା, ଜୀବନ ଦେବତାର ପଦପାତର ଧ୍ୱନି ଶୁଣିଛନ୍ତି ଏକ ସମାନୁପାତିକ ଧାରାରେ ରବୀନ୍ଦ୍ର ଓ ଲକ୍ଷ୍ମୀକାନ୍ତ। ନିର୍ଜନ ମୁହୂର୍ତ୍ତରେ ଭକ୍ତି ପ୍ରାଣବିଷ୍ଟ

କବି ରବୀନ୍ଦ୍ରଙ୍କ 'ତୋରା ଶୁନିସ୍‌ନି ଶୁନିସ୍‌ନି କି ତାର ପ୍ରାୟେର ଧ୍ୱନି ଅନୁରୂପ' ଭାବଚେତନାର ସାଦୃଶ୍ୟ ଓ ପ୍ରଭାବ ଲକ୍ଷ୍ମୀକାନ୍ତଙ୍କ 'ଆସିଛ କି ସତେ ଏ ଘୋର ନିଶୀଥେ ଆଜି ମୋ ପରାଣ ସାଥୀ' ସ୍ୱୀକାରୋକ୍ତି ଭିତରେ ଲକ୍ଷ୍ୟ କରାଯାଇପାରେ। ଗୀତାଞ୍ଜଳିର ଅଧିକାଂଶ କବିତାର ସୃଷ୍ଟି ଉତ୍ସକୁ ଲକ୍ଷ୍ୟକଲେ ଦେଖାଯାଏ ଅସୀମର ରହସ୍ୟ-ମଧୁର ଅନୁଭବ କବିବିଭବକୁ ବାରମ୍ବାର ପ୍ରତିକ୍ରିୟାଶୀଳ କରିବା ପରେ ସଂଜାତ ଭାବୋପଲବ୍ଧିର ଚିତ୍ରରୁ ଗୀତାଞ୍ଜଳିର ବିଭୂପ୍ରୀତି ସମ୍ବଳିତ କବିତାଗୁଡ଼ିକର ପରିକଳ୍ପନା ସମ୍ଭବ ହୋଇଛି। ଗୀତାଞ୍ଜଳିର ଏପ୍ରକାର ଭାବୋଲବ୍ଧି କବି ଲକ୍ଷ୍ମୀକାନ୍ତଙ୍କ ଜୀବନ ସଙ୍ଗୀତର ଭାବସଂପଦ ପ୍ରତି ପ୍ରଯୁର୍ଜ୍ୟ। ସଦୃଷ୍ଟାନ୍ତ ସ୍ୱରୂପ–

ଲକ୍ଷ୍ମୀକାନ୍ତ– 'ଶବ୍‌ଦ ପରଶେ ଆସୁ
ରୂପ ରସ ଗଂଧେ,
ନିତି ନିତି ନବ ନବ ଛନ୍ଦେ।'

ରବୀନ୍ଦ୍ର– 'ତୁମି ନବ ନବ ରୂପେ ଏସୋ ପ୍ରାନେ
ଏସୋ ଗନ୍ଧେ ବରନେ,
ଏସୋ ଗାନେ।'

ଉଭୟ କବିଙ୍କର ପ୍ରୋପ୍ତ ପଙ୍‌କ୍ତି ଦୁଇଟି ଭିତରେ ପ୍ରଚ୍ଛନ୍ନ ଥିବା ଚିନ୍ତାଧାରା, ଭାବମୂର୍ତ୍ତି, ରସବୋଧ, ଦର୍ଶନ ଓ ଆକାଂକ୍ଷାକୁ ତୁଳନା କରି ଦେଖିଲେ ଏହା ସ୍ଥିର ନିଶ୍ଚିତ ବୋଧହୁଏ ଉଭୟ କବିଙ୍କର ଚିନ୍ତାଧାରା ସଖ୍ୟସୂତ୍ରରେ ସମଭାବାପନ୍ନ।

ଉଭୟ୍ କାନ୍ତକବି ଓ ବିଶ୍ୱକବିଙ୍କ ଗୀତିକବିତାରେ ରହସ୍ୟ ତତ୍ତ୍ୱର ଚେତନାଗତ ସାଦୃଶ୍ୟ ଲକ୍ଷ୍ୟ କରାଯାଇପାରେ। ଉଭୟଙ୍କ କବିତାର ରହସ୍ୟଧର୍ମୀ କାବ୍ୟ ସନ୍ଦେଶ ହେଉଛି– ଦୁଃଖ, ଶୋକ, ମୃତ୍ୟୁ ଓ ଗ୍ଲାନି ପ୍ରତି ଉଦାସୀନ ରହି ଜୀବନ ଦେବତାର ଅମୃତ ଓ ନିତ୍ୟ ଆଶୀଷମୟ ସ୍ପର୍ଶକୁ ବଂଚିବାର ପ୍ରତିପଦରେ ଅନୁଭବ କରିବା। ରବୀନ୍ଦ୍ର କାବ୍ୟପୁରୁଷ ସମାସକ୍ତ ଅବସ୍ଥାରେ ଯେପରି ନିଜର ମଥାକୁ ଈଶ୍ୱରଙ୍କ ଚରଣ ଧୂଳିରେ ନତ କରିଛି ସେହିପରି ଜୀବନର ସ୍ୱେଦ ଅଶ୍ରୁକୁ ଲକ୍ଷ୍ମୀକାନ୍ତ 'ଚରଣେ ତଳେ ତୋର ଅର୍ଘ୍ୟ ରୂପେ ପଡ଼ି ଲୋଟଇ' ବୋଲି ଦର୍ଶାଇଛନ୍ତି। ଦୁଃଖ, ସୁଖ, ଭୟ, ବିପଦ, ବ୍ୟଥା ଅନ୍ଧାର, ମୃତ୍ୟୁ ପ୍ରତିଟିକୁ ଈଶ୍ୱର ଦତ୍ତ ବୋଲି ରବୀନ୍ଦ୍ର ଗ୍ରହଣ କରି ସେସବୁକୁ ଆପଣାର କରି ନେଇଛନ୍ତି ଯାହା ତାଙ୍କ ରହସ୍ୟବାଦୀ ବିଭୁପ୍ରୀତିର ଅନ୍ୟତମ ବିଶେଷତ୍ୱ। ଅନୁରୂପ ଭାବରେ ନିଜର ସୁଖ, ଦୁଃଖ, ଅଶ୍ରୁ ଆନନ୍ଦ ସକଳ ଈଶ୍ୱର ଭାବଜଡ଼ିତ ବୋଲି କବି ଲକ୍ଷ୍ମୀକାନ୍ତ ନିଜର ବିଷାଦମୟ ଜୀବନରେ ଧରି ନେଇଛନ୍ତି ଯାହା ତାଙ୍କ କବିତାରେ ରସୋତ୍ତୀର୍ଣ୍ଣ ହୋଇଉଠିଛି।

ଯଥା– ସକଳ ଅଶ୍ରୁ ମୋର ଧରେ ତବ ସୌରଭ/ସକଳ ହାସ୍ୟେ ମୋର ଝରେ ତବ ଗୌରବ/ସକଳ କର୍ମେ ପୂରି/ସକଳ ଚିନ୍ତା ଭରି/ରହିଛି ସକଳ ଦୁଖେ, ସକଳ ଆନନ୍ଦେ' ଏପ୍ରକାର ଗାଇବାବେଳେ ଲକ୍ଷ୍ମୀକାନ୍ତଙ୍କ ଅନୁଭବରେ ରବୀନ୍ଦ୍ର ଚେତନାଠାରୁ ଆହୁରି ଆନ୍ତରିକତା ଓ ସମ୍ବେଦ୍ୟଭାବ ଜଡ଼ିତହୋଇରହିଛି। ଛାତ୍ର ଜୀବନରେ କବି ରବୀନ୍ଦ୍ର କବିତାର ଜଣେ ଗୁଣଗ୍ରାହୀ ପାଠକ ଥିଲେ ବୋଲି ତାଙ୍କ ଜୀବନରୁ ଜଣାଯାଇଥାଏ। ତେଣୁ ଏହି ଗୁଣଗ୍ରାହୀ ପାଠକ ଚିତ୍ତରେ ଗଭୀର ରେଖାପାତ କରିଥିବା ରବୀନ୍ଦ୍ରୀୟ ରହସ୍ୟତତ୍ତ୍ୱ ଅଧିକନିଷ୍ଠା ସହିତ ପରବର୍ତ୍ତୀ କାଳରେ ନିଜର କବିତାରେ ଆତ୍ମପ୍ରକାଶ କରିବାରେ କିଛି ଅସ୍ୱାଭାବିକତା ନାହିଁ।

## (ଚାରି)

ଓଡ଼ିଆ ରହସ୍ୟବାଦୀ କବିତାର ଧାରାରେ ମଧୁସୂଦନଙ୍କ ପରେ ଗଭୀର ଆଶାବାଦ ଓ ଏକେଶ୍ୱର ବାଦର ସମନ୍ୱିତ କରି କବିତା ରଚନା କରିବାରେ କୁନ୍ତଳା କୁମାରୀଙ୍କ ସାଧନା ଓଡ଼ିଶାର ଭାବବାଦୀ ଈଶ୍ୱରନିଷ୍ଠ ଜମିଦାର କବିଗୁରୁ ରବୀନ୍ଦ୍ରଙ୍କୁ ସ୍ମରଣ କରାଇଦିଏ। ତାଙ୍କ ରଚିତ ଶେଫାଳି ପ୍ରତି, ଅର୍ଚ୍ଚନା ଓ ଅଞ୍ଜଳି ଇତ୍ୟାଦି ଗୀତି ସୃଷ୍ଟିରେ ତାଙ୍କର ରହସ୍ୟତତ୍ତ୍ୱର ପରିଚୟ ମିଳିଥାଏ। ମଧୁସୂଦନ, ରବୀନ୍ଦ୍ରଙ୍କ ସହିତ କଣ୍ଠମିଳାଇ କୁନ୍ତଳା ତାଙ୍କ କବିତାରେ ଜୀବନ ଓ ଜଗତକୁ ଗଭୀର ଆଶା ଓ ଆନନ୍ଦର ଅମୃତମୟ ପରିଣତି ବୋଲି ଘୋଷଣା କରିଛନ୍ତି– 'ଜୀବନ ନୁହେଁ ଗୋ ସପନ-ଛଳନା ଜୀବନ ଆନନ୍ଦମୟ ହେ।' ଅଞ୍ଜଳି ଓ ଅର୍ଚ୍ଚନାର ଅଧିକାଂଶ କବିତାରେ ବିଭୁପ୍ରୀତି ଓ ଅତିଭୌତିକ ଚେତନା ପ୍ରତି ଆସକ୍ତି ରବୀନ୍ଦ୍ରଙ୍କ ପରି ପାର୍ଥିବତା ଦେଇ ଅପାର୍ଥିବ ଆବେଦନର ହୋଇଛି।

ଭାବଚେତନା ଦିଗରୁ କୁନ୍ତଳାଙ୍କ କବିତାରେ ରବୀନ୍ଦ୍ରୀୟ ଅମୂର୍ତ୍ତ ଦୃଷ୍ଟିଭଙ୍ଗୀ, ମଧୁସୂଦନୀୟ ଆନନ୍ଦବାଦୀ ଅନୁଭବ ଏବଂ କାନ୍ତକବିଙ୍କ ଆତ୍ମନିଷ୍ଠାର କୋମଳ ସ୍ୱାଭିମାନଭରା ଭକ୍ତିଭାବନାର ଆନ୍ତରିକ ସମବାୟକୁ ଲକ୍ଷ୍ୟ କରାଯାଇଥାଏ। ରବୀନ୍ଦ୍ରଙ୍କ ପରି କୁନ୍ତଳା 'ପ୍ରକୃତି ଭିତରେ ଈଶ୍ୱର ଓ ଆନନ୍ଦର ବାର୍ତ୍ତା ଶୁଣିଛନ୍ତି। ପ୍ରକୃତିର 'ବିଭିନ୍ନ ବିଭାବରୁ ରବୀନ୍ଦ୍ର ଗଭୀର ଆଶା, ଆନନ୍ଦ ଓ ପବିତ୍ରତା ସଂଧାନ ପାଇଲାପରି କୁନ୍ତଳା ବିରାଟ ପ୍ରକୃତି ଭିତରେ ଈଶ୍ୱରଙ୍କ ପରିପୂର୍ଣ୍ଣ ସତ୍ତାକୁ ସନ୍ଦର୍ଶନ କରିଛନ୍ତି। ଈଶ୍ୱରଙ୍କ ପ୍ରଣବନାଦ ଝଂକୃତ ପାଦଧ୍ୱନିକୁ ପ୍ରକୃତିର ପ୍ରତ୍ୟେକ ସ୍ପନ୍ଦନରେ ପ୍ରତ୍ୟେକ ଦିଗବିଦିଗନ୍ତରେ ରବୀନ୍ଦ୍ର ଅନୁଭବ କରି ଗାଇଥିଲେ–

'ତୋରା ଶୁନିସ୍ ନିକି ଶୁନିତାର ପାୟେର ଧ୍ୱନି

× × ×

କତ କାଲେର ଫାଗୁନ ଦିନେ, ବନେରପଥେ

× × ×

କତ ଶ୍ରାବଣ ଅନ୍ଧକାରେ

ମେଘର ଗଲେ ସେ ଯେ ଆସେ ଆସେ।'

ଭାବାବିଷ୍ଟ ହୃଦୟର ଏପ୍ରକାର ଗଭୀର ନିଷ୍ଠାପର ଅନୁଭୂତି କୁନ୍ତଳାଙ୍କ କବିତାରେ ବେଶ ବିଦ୍ୟମାନ। ପ୍ରକୃତି ଭିତରେ କୁନ୍ତଳା ମଧ୍ୟ ଈଶ୍ୱରଙ୍କୁ ମଧୁର-ସୌନ୍ଦର୍ଯ୍ୟ-ମଙ୍ଗଳ-ପବିତ୍ର ରୂପରେ ଅନୁଭବ କରି ରବୀନ୍ଦ୍ରଙ୍କ ପରି ଗାଇଛନ୍ତି–

'ସେତ ଆକାଶେ ପବନେ ରାଜେ ବନେ ବନେ/ରାଜେ ସେ ସରିତ ସଲିଳେ/ସେତ ଉଷାର ଉରସେ ନୀଶୀଥ ଆକାଶେ ବିରାଜେ ସାଗର ଶଇଳେ/'

ବ୍ୟକ୍ତି ଜୀବନରେ ପ୍ରେମ ଓ ପ୍ରଣୟରେ ହତାଶ ହେବା ପରେ କବି କୁନ୍ତଳା ବ୍ରାହ୍ମଧର୍ମ ଗ୍ରହଣକରି ଗଭୀର ଈଶ୍ୱର ବିଶ୍ୱାସୀ ହୋଇ ଉଠିଛନ୍ତି। ତାଙ୍କର ପ୍ରାକ୍‌କାଳୀନ ଗୀତି ସଂକଳନ ଅଞ୍ଜଳି (୧୯୨୨) ଉଚ୍ଛ୍ୱାସ (୧୯୨୪) ଅର୍ଚ୍ଚନା (୧୯୨୭) ତ୍ରୟରେ ଗଭୀର ଈଶ୍ୱରପ୍ରୀତି ଓ ପ୍ରକୃତି ଭିତରେ ଅରୂପ ଓ ଅସୀମର ସଂଧାନ ଜନିତ ଅନୁଭୂତି ଉତ୍କୀର୍ଣ୍ଣ। ନନ୍ଦକିଶୋର ତାଙ୍କୁ ଜଣେ ଉଚ୍ଚ ରହସ୍ୟବାଦୀ କବିର ସମ୍ମାନ ଦେବାକୁ କହିଛନ୍ତି– ରବୀନ୍ଦ୍ରଙ୍କ ଭକ୍ତିଭାବର କୋମଳ ଦିଗଟିର ଭିନ୍ନରୂପ କୁନ୍ତଳା। ମୋଟ ଉପରେ ତାଙ୍କର ରହସ୍ୟବାଦୀ କବିସତ୍ତା ମୁଖ୍ୟତଃ ପ୍ରକୃତି ଭିତରେ ଈଶ୍ୱରଙ୍କ ସତ୍ତାନୁଭବ କରି ବିସ୍ମୟ ଓ ବେପଥୁଭାବ ପ୍ରକାଶକରିଛି। ଜୀବନଧାରାରେ ଈଶ୍ୱରଙ୍କ ଆଶୀଷ ଅନୁଭବ କରି ଅତିନ୍ଦ୍ରିୟ ଆଶାବାଦୀ ଚେତନା ଭିତରେ ନିମଜ୍ଜମାନ ହୋଇଉଠିଛି; ଯାହା ତାଙ୍କୁ ରବୀନ୍ଦ୍ର ଚେତନାର ସନ୍ନିକଟ କରିପାରିଛି।

## (ପାଞ୍ଚ)

ସବୁଜ ସମସାମୟିକ ଅଥଚ ସବୁଜ ଚେତନାର ବୈତାଳିକ କବିଭାବରେ ସ୍ୱୀକୃତ କବି ମାୟାଧର ମାନସିଂହ ପରଧର୍ମ ପ୍ରବନ୍ଧରେ ସବୁଜମାନଙ୍କୁ ବଙ୍ଗବିଳାସୀ ଭାବରେ ସମାଲୋଚନା କରିଥିଲେ ମଧ୍ୟ ରବୀନ୍ଦ୍ର ରହସ୍ୟ ତତ୍ତ୍ୱର ଅନ୍ୟତମ ଦିଗ ମାନବାତ୍ମା ଭିତରେ ଦେବତ୍ୱର ଆରୋପଣଜନିତ ଭାବଚେତନା ଦ୍ୱାରା ବହୁ ସ୍ଥଳରେ ପ୍ରଭାବିତ। ରବୀନ୍ଦ୍ର କାବ୍ୟ ଜୀବନରେ ସର୍ବୋତ୍ତମ ସତ୍ୟୋପଲବ୍ଧି ହେଉଛି ମର୍ତ୍ତ୍ୟପ୍ରୀତି ଓ ବିଭୂପ୍ରୀତିର ବିଚିତ୍ର ସମନ୍ୱୟ। ମର୍ତ୍ତ୍ୟ ଓ ମର୍ତ୍ତ୍ୟ ଜୀବନ ପ୍ରତି ଗଭୀର ଆସ୍ତ୍ୟର୍ଥକ ଅନୁରାଗ ଓ ଜୀବନ ଜଗତକୁ ପ୍ରତିମାୟିତ ଈଶ୍ୱରାଭିମୁଖୀ କରି ଚିତ୍ରଣ ନକରିବାର ଦୁର୍ବାର ଲାଳସା ତାଙ୍କ କାବ୍ୟ ମାନସର ସର୍ବୋଚ୍ଚ ଦିଗ। ଏହି ଦିଗପ୍ରତି ଅନୁରକ୍ତି

ପ୍ରକାଶ କରିଥିବା 'ମାନସିଂହ କାବ୍ୟରେ ରବୀନ୍ଦ୍ର କାବ୍ୟବୋଧର ପ୍ରତିଫଳନ ରସଗ୍ରାହିତା ସଂଜାତ ପ୍ରବଳ ଆକର୍ଷଣର ଫଳରୂପେ ସଂଭବ ହୋଇଛି।' ମାନସିଂହଙ୍କ ଧରଣୀବାସ ଓ ଦେବପୂଜା କବିତା ଦ୍ୱୟରେ ରବୀନ୍ଦ୍ର ମର୍ତ୍ତ୍ୟପ୍ରୀତିର ଛାୟାପାତ ସୁସ୍ପଷ୍ଟ। ମନ୍ଦିର ଭିତରେ ଥିବା ରୂପସଂପନ୍ନ ଦେହଧାରୀ ଦେବତାର ବନ୍ଦନା ଓ କୀର୍ତ୍ତନ ପରିବର୍ତ୍ତେ ଈଶ୍ୱର ବା ବ୍ରହ୍ମ ତନୟ ମଣିଷଠାରେ ଦେବତ୍ୱ ଆରୋପଣ କରି ସେହି ଧୂଳିର ମଣିଷର ଜୟଗାନ ସେ କରିଛନ୍ତି। ଗୀତାଞ୍ଜଳିର 'ଧୂଳାମନ୍ଦିର' କବିତାରେ 'ନୟନ ମେଲେ ଦେଖ୍ ଦେବତା ନାଇ ଘରେ × × ×" ଉକ୍ତି ଦ୍ୱାରା ପ୍ରଭାବିତ ହୋଇ ମାନସିଂହ ମାନବାତ୍ମାରେ ଦେବାବତରଣ କରାଇଛନ୍ତି।

'ପୁରୋହିତ ଶୁଦ୍ଧପୂତ ହୋଇ × × ×
କରୁଅଛ ଏ କାହାର ପୂଜା × × ×
ଆଉ କାଠ ପାଷାଣ ନପୂଜି
ପୂଜ ଆସି ମାନବ ଦେବତା'
(ଦେବପୂଜା, ମାନସିଂହ ଗ୍ରନ୍ଥାବଳୀ-ପୃ-୪୦୨)

ମର୍ତ୍ତ୍ୟପ୍ରୀତି ସମ୍ବଳିତ ରହସ୍ୟାଚ୍ଛନ୍ନ ରବୀନ୍ଦ୍ର କବିତା 'ସ୍ୱର୍ଗ ହଇତେ ବିଦାୟ'ର ମର୍ମ ମାନସିଂହଙ୍କ 'ଧରଣୀ ବାସ' କବିତାକୁ ପ୍ରଭାବିତ କରିଛି। ଉଭୟଙ୍କ କବିପଣ ମର୍ତ୍ତ୍ୟ ଜୀବନର ଅମୃତ ସ୍ରୋତରେ ଭାସିବା ପାଇଁ ମର୍ତ୍ତ୍ୟପ୍ରୀତି ମୋହରେ ସ୍ୱର୍ଗଚ୍ୟୁତିକୁ ସମଭାବାପନ୍ନ ହୋଇ ସ୍ୱୀକାର କରିନେଇଛି।

(ଛଅ)

ସାଧାରଣତଃ ଓଡ଼ିଆ କବିତାର ଇତିହାସରେ ସବୁଜ ସାହିତ୍ୟ ରବୀନ୍ଦ୍ର ପ୍ରତ୍ୟକ୍ଷ ପ୍ରଭାବର ପରିଣତିସୂଚକ ଫଳ। ରବୀନ୍ଦ୍ର ଗୀତି କାବ୍ୟାଦର୍ଶନର ପରିପୂର୍ଣ୍ଣ ପ୍ରଭାବ ଅନ୍ନଦା, କାଳିନ୍ଦୀ ଓ ବୈକୁଣ୍ଠନାଥଙ୍କ କବିତାରେ ପ୍ରତିଫଳିତ ହୋଇଥିଲେ ମଧ୍ୟ ରହସ୍ୟବାଦ ଦୃଷ୍ଟିରୁ ରବୀନ୍ଦ୍ର ପ୍ରଭାବ ବୈକୁଣ୍ଠ ନାଥ ଓ କ୍ରିୟତ୍ ପରିମାଣରେ କାଳିନ୍ଦୀ ଚରଣଙ୍କ ଉପରେ ଛାୟାପାତ କରିଛି। ଅନ୍ନଦା ଶଙ୍କରଙ୍କ ମତରେ 'ଏମାନେ (କାଳିନ୍ଦୀ, ବୈକୁଣ୍ଠ) ପୁରା ରବୀନ୍ଦ୍ରଙ୍କ ଭକ୍ତ।' କାବ୍ୟକୌଶଳ ଓ ରୂପବୃତ୍ତି ଉପରେ ଏ ମନ୍ତବ୍ୟ ମୁଖ୍ୟତଃ ଅନ୍ନଦା ଦେଇଥିଲେ ମଧ୍ୟ ଏହା ସୁନିଶ୍ଚିତ ଯେ କାବ୍ୟରୂପ ଦ୍ୱାରା ପ୍ରଭାବିତ କବି କାବ୍ୟ ଚେତନା ଦ୍ୱାରା ପ୍ରଭାବିତ ହେବା ନିହାତି ସ୍ୱାଭାବିକ। ଏ ଦୃଷ୍ଟିରୁ ରହସ୍ୟ ତତ୍ତ୍ୱକୁ ମୁଖ୍ୟ କରି ରବୀନ୍ଦ୍ର ସମଧର୍ମୀ ଗୀତି କବିତାର କଳାଜଗତ ସୃଷ୍ଟି କରିବାରେ ଲକ୍ଷ୍ମୀକାନ୍ତଙ୍କ ପରେ ବୈକୁଣ୍ଠନାଥଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ। ଅନେକ ସମୀକ୍ଷକ ବୈକୁଣ୍ଠ– ରହସ୍ୟବାଦରେ ରବୀନ୍ଦ୍ରୀୟ ପରିପକ୍ୱତାର ଅଭାବକୁ ଦେଖାଇଥିଲେ ମଧ୍ୟ ବୈକୁଣ୍ଠଙ୍କ କାବ୍ୟାଦର୍ଶ ଯେ ରାବୀନ୍ଦ୍ରିକ ବର୍ଣ୍ଣବିଭାର

ରହସ୍ୟବାଦ ଉପରେ ମୁଖ୍ୟତଃ ପ୍ରତିଷ୍ଠିତ– ଏ କଥାକୁ ସ୍ୱୀକାର ନକରିବାର ଚାରାନାହିଁ। କିନ୍ତୁ ଏହି ପ୍ରଭାବକୁ ସ୍ୱାଭାବିକ ରୂପରେ ଗ୍ରହଣ କରି ନେବାରେ କୌଣସି ଦ୍ୱନ୍ଦ୍ୱନାହିଁ। ସବୁଜ କବି ଶରତ୍‌ଚନ୍ଦ୍ର ଓ ଅନ୍ନଦା ରବୀନ୍ଦ୍ରଙ୍କ ରୋମାଣ୍ଟିକ୍ ଭାବବିଳାସ ଓ ସ୍ୱପ୍ନବାଦୀତାକୁ ଗ୍ରହଣ କରିଥିବା ବେଳେ କାଳିନ୍ଦୀଚରଣ ମାନବବାଦୀତା ଓ ବୈକୁଣ୍ଠନାଥ ରହସ୍ୟବାଦୀ ଜୀବନ ଦେବତାବାଦକୁ ନିଜର କାବ୍ୟାଦର୍ଶ ରୂପେ ଗ୍ରହଣ କରି ନେଇଛନ୍ତି। ବୈକୁଣ୍ଠଙ୍କ କାବ୍ୟାଦର୍ଶରେ ରବୀନ୍ଦ୍ର ନାଥଙ୍କ ଅରୂପ ପ୍ରୀତି, ପ୍ରକୃତି ପ୍ରଣୟ ଓ ରହସ୍ୟାଚ୍ଛନ୍ନ ଅତିନ୍ଦ୍ରିୟ ଚେତନାର ଧାରା ସଂରକ୍ଷିତ ଥିବାର ଲକ୍ଷ୍ୟକରୁ। ଆଶାବାଦ, ରହସ୍ୟବାଦ ଓ ଭାଗ୍ୟବାଦର ଏକ ବିଚିତ୍ର ସମବାୟ ସହିତ ପ୍ରତିପଦପାତରେ ଜୀବନ ଦେବତାର ଇଙ୍ଗୀତକୁ ଅନୁଭବ କରିବାର ସମାସିକ୍ତ ଚେତନା ଭିତ୍ତିରେ ବୈକୁଣ୍ଠ ରବୀନ୍ଦ୍ରାନୁସାରୀ ହୋଇ ପଡ଼ିଛନ୍ତି। ଜୀବ ଓ ପରମ ମଧ୍ୟରେ ଇନ୍ଦ୍ରିୟୋତ୍ତର ସଂପର୍କ ଏବଂ ସସୀମ ଓ ଅସୀମର ଆବେଶିତ ମିଳନ ଭିତରେ ପୃଥିବୀକୁ ପ୍ରବାସ ମନେକରି ନିତ୍ୟ ଗୋଲକର କଳ୍ପନା ଅଥଚ ଲୋକୋତର ଜଗତକୁ ସୁବାସ ଭାବରେ ଗ୍ରହଣ କରିନେବା ଏହି ରହସ୍ୟବାଦର ମୁଖ୍ୟ ଆଦର୍ଶ; ଯାହା ବୈକୁଣ୍ଠନାଥ ଅନୁକରଣ ଭିତ୍ତିରେ ରବୀନ୍ଦ୍ରଙ୍କଠାରୁ ଗ୍ରହଣ କରିଛନ୍ତି। ଶେଷଗୀତି, କାରାବାସୀ କବିର ସ୍ୱପ୍ନ, ପଥ ଛାୟା, ପାନ୍ଥଶାଳା, ଦେବଦୂତ, ବାସର ଗୃହ, ପ୍ରଥମ ଆସର, ଶିଶୁସୃଷ୍ଟି, ବାଉଳ, ଚିଲିକାରେ ରାତ୍ରି, ବର୍ଷାବରଣ, ମାଟି, ପ୍ରୀତି ଅନୁଭୂତି ନବ ବର୍ଷ। ସଙ୍ଗୀତ ଇତ୍ୟାଦି ବୈକୁଣ୍ଠଙ୍କ ରହସ୍ୟ ବାଦୀ କବିତା ଭାବରେ ଉଲ୍ଲେଖଯୋଗ୍ୟ। ଏହିସବୁ କବିତାରେ ଅଚିନ୍ତ୍ୟବାଦୀ କବି ସର୍ବତ୍ର ଈଶ୍ୱରଙ୍କ ଆନନ୍ଦ ଓ ଅମୃତର ସ୍ପର୍ଶପାଇଁ ପ୍ରତୀକ୍ଷାମାଣ। ପ୍ରୀୟାର ପ୍ରୀତିମୟ ପ୍ରାଣ, ଶିଶୁର ଆସ୍ତ୍ୟର୍ଥକ କ୍ରନ୍ଦନ, ପ୍ରଭାତର ସୌନ୍ଦର୍ଯ୍ୟରେ ଆନନ୍ଦର ଉତ୍ସ ସନ୍ଦର୍ଶନ, ସବୁଥିରେ ଈଶ୍ୱରଙ୍କର ଆଶିଷକୁ ବୈକୁଣ୍ଠନାଥ ଅନୁଭବ କରିଛନ୍ତି। ଆତ୍ମ ସଚେତନତା ସହିତ କବି ବୈକୁଣ୍ଠ ରବୀନ୍ଦ୍ରଙ୍କ ପରି ଜୀବନ ଦେବତାର ସ୍ପର୍ଶାଶିଷକୁ ନିଜର ବିଷାଦମୟ ଅବସ୍ଥାରେ ହୃଦୟ ଭିତରେ ଅନୁଭବ କରି ଆଶାବାଦୀ ହୋଇଛନ୍ତି–

''ପଉଷ ତରୁ ମୁଁ ଗୋ ପାଳିତ ମୋ ପତର
ନିରାଶା ପରଶରେ ଝରିଛି ଆଲୋକର
ନାହିଁତ ତେବେ ତିଳେ ଶୋଚନା ଖେଦ ମୋର
ପରାଣମଣି ମୋର ହୃଦୟ ଅତଳରେ।''

ରବୀନ୍ଦ୍ର ଗୀତାଞ୍ଜଳି ଓ ଗୀତିମାଲ୍ୟ ସଂଗୀତଗୁଡ଼ିକ ଅନ୍ତରାଳରେ ଭାରତୀୟ ଦିବ୍ୟାନୁଦର୍ଶନର ଚିନ୍ତାଧାରା ସଦା କାର୍ଯ୍ୟକ୍ଷମ ହୋଇଉଠିଛି। ମର୍ତ୍ତବାସକୁ ପ୍ରବାସ ମନେକରି ଜୀବନକୁ ସୃଷ୍ଟି କର୍ତ୍ତାଙ୍କ ଅଂଶବିଶେଷ ଜ୍ଞାନ କରିବାର ଦ୍ୱୈତାଦ୍ୱୈତବାଦୀ

ଦାର୍ଶନିକ ରହସ୍ୟ, ଈଶ୍ୱରଙ୍କ ସହିତ ମିଳିତ ହେବାର ପ୍ରବଳ ବାସନା ପୋଷଣ କରି କଳ୍ପନାରେ ଇନ୍ଦ୍ରିୟ ଗ୍ରାହ୍ୟ ପରିଦୃଶ୍ୟମାନ ଜଗତର ଊର୍ଦ୍ଧ୍ୱରେ ଏକ ଅସୀମ ରହସ୍ୟମୟ ଅଲୌକିକ ଜଗତକୁ ପଳାୟନ ଓ ଅଚିନ୍ତ୍ୟକୁ ଚିନ୍ତା କରିବାର ପ୍ରୟାସ ଭାରତୀୟ ଆଧ୍ୟାତ୍ମିକ ଦର୍ଶନର ଏକ ଛାୟାବାଦ ସଂପନ୍ନ ବୈଶିଷ୍ଟ୍ୟ; ଯାହାକୁ ଭିତ୍ତିକରି ରବୀନ୍ଦ୍ର କବିତା ପ୍ରତିଷ୍ଠିତ। ଏହି କଳ୍ପନାତୀତ ଅଜ୍ଞେୟ ଓ ଅଚିନ୍ତ୍ୟ ଭାବବିଳାସ ବୈକୁଣ୍ଠ କବିତାରେ ବେଶ୍ ରସୋତୀର୍ଣ୍ଣ ଭାବେ ପ୍ରକାଶିତ ହୋଇଛି। ବସ୍ତୁତଃ "ରହସ୍ୟବାଦୀ କବିମାନଙ୍କର ଶକ୍ତିଶାଳୀ କଳ୍ପନା ଓ ସ୍ୱପ୍ନ ପ୍ରୟାସ ଅଜ୍ଞେୟ, ଅଚିନ୍ତ୍ୟପ୍ରତି ସେମାନଙ୍କୁ ଆକୃଷ୍ଟ କରିଥାଏ। ଏତାଦୃଶ୍ୟ ରହସ୍ୟବାଦୀ ଅନୁଭୂତି ପ୍ରକାଶରେ କବି ବୈକୁଣ୍ଠନାଥ ବିଶ୍ୱକବି ରବୀନ୍ଦ୍ର ନାଥଙ୍କ ଦ୍ୱାରା ପ୍ରଭାବିତ। କେବଳ କବି ବୈକୁଣ୍ଠ ଅଚିନ୍ତ୍ୟ ପ୍ରୀତିରେ ନିତ୍ୟ ବୃନ୍ଦାବନର ସ୍ୱପ୍ନ ଦେଖିନାହାନ୍ତିକି ଜୀବନ ଦେବତାର ପଦଧ୍ୱନିକୁ ପ୍ରତିପଦପାତରେ ଶୁଣିନାହାନ୍ତି ଅଥବା ପ୍ରକୃତ ଭିତରେ ତାଙ୍କର ରୂପୋତ୍ତର ସତ୍ତାଦେଖି ଆତ୍ମବିସ୍ମୃତ ହୋଇନାହାନ୍ତି ବରଂ ରବୀନ୍ଦ୍ରଙ୍କ ପରି ବିଶ୍ୱକଲ୍ୟାଣ ନିମନ୍ତେ, ମାନବାତ୍ମାର ଊର୍ଦ୍ଧ୍ୱଗତି ଉଦ୍ଦେଶ୍ୟରେ ଜୀବନରେ ଓ ଜଗତରେ ଅମୃତର ସ୍ରୋତ ପ୍ରବାହ ନିମନ୍ତେ ଈଶ୍ୱରଙ୍କୁ ନିବେଦନ କରିଛନ୍ତି, ମୃତ୍ୟୁକୁ ଅମୃତମୟ ଭାବରେ ଗ୍ରହଣ କରିଛନ୍ତି ଓ ମର୍ତ୍ତ୍ୟ ଜୀବନ ପ୍ରତି ଅତ୍ୟଧିକ ଆନ୍ତରିକତା ଓ ମମତା ପ୍ରକାଶ କରିଛନ୍ତି; ଯାହା ତାଙ୍କ କବିତାକୁ ଅଧିକ ମର୍ମସ୍ପର୍ଶୀ କରି ତୋଳିଛି। ପାର୍ଥିବ ସୁଖ ଶାନ୍ତି, ଐଶ୍ୱର୍ଯ୍ୟ ଊର୍ଦ୍ଧ୍ୱରେ ଈଶ୍ୱରଙ୍କ ସ୍ପର୍ଶକୁ ଯେଉଁ ମୁହୂର୍ତ୍ତରେ କବି ରବୀନ୍ଦ୍ର ଅନୁଭବ କରି ପାରୁନଥିଲେ ସେହି ସମୟରେ ତାଙ୍କର ବହୁ ଚର୍ଚ୍ଚିତ ଭାବଗମ୍ଭୀର, ବିଷାଦବାଦୀ କବିତା ସୃଷ୍ଟି ହୋଇଛି। ବୈକୁଣ୍ଠନାଥ ତାଙ୍କର ଅଧିକାଂଶ କବିତାରେ ଯୌବନ, ସମ୍ଭୋଗ, ପାର୍ଥିବ ସୁଖଶାନ୍ତି ଊର୍ଦ୍ଧ୍ୱରେ 'ସକଳ ପ୍ରିୟର ମୋର ସେଯେ ପ୍ରିୟତମ' ଜୀବନ ଦେବତାଙ୍କର ଅବର୍ତ୍ତମାନକୁ ଅନୁଭବ କରି ବିଷାଦବାଦୀ ହୋଇ ଉଠିଛନ୍ତି। ଆମ୍ରପାଲ୍ଲୀର ଉତ୍କଣ୍ଠା, ପଥଛାୟା, ପ୍ରଥମ ଆସାର, କାରାବାସର ସ୍ୱପ୍ନାଦି କବିତାରେ ବୈଷ୍ଣବୀୟ ଅନୁରାଗରେ ପ୍ରିୟତମର ବିଚ୍ଛେଦରେ ଗଭୀର ବିଷାଦବାଦର ଚିତ୍ର ପ୍ରତିଫଳିତ ହୋଇଛି। ଆମ୍ରପାଲୀର ଉତ୍କଣ୍ଠା କବିତାରେ ଗଣିକା ଆମ୍ରପାଳୀ ଦେହ ଓ ସମ୍ଭୋଗ ଊର୍ଦ୍ଧ୍ୱରେ ଜୀବନ, ଆସାରତାକୁ ଅନୁଭବ କରି ଏକ ଊର୍ଦ୍ଧ୍ୱମୁଖୀ ସ୍ପର୍ଶ ଓ ଅତୀନ୍ଦ୍ରିୟ ଜଗତ ପ୍ରତି ଆକାଂକ୍ଷିତ ଅଭିଳାଷ ଏବଂ ବୁଦ୍ଧଙ୍କର ଆଗମନକୁ ଅଭିସାରିକା ବୈଷ୍ଣବୀପରି କାମନା କରିଛି।

ଅନେକ ସମାଲୋଚକ ବୈକୁଣ୍ଠ ନାଥଙ୍କ କବିତାରେ ରହସ୍ୟବାଦୀ ଚେତନାର ପରିପକ୍ୱତା ଓ ଉତ୍ତରଣ ରୂପାୟନକୁ ଅସ୍ୱୀକାର କରନ୍ତି। କିନ୍ତୁ ରବୀନ୍ଦ୍ର ଛାୟାପାତର

ପ୍ରଭାବ ଓ ଅନୁସରଣରେ ବୈକୁଣ୍ଠନାଥଙ୍କ ଗୀତିକାଗୁଡ଼ିକରେ ଅତୀନ୍ଦ୍ରିୟ ଲୋକୋତ୍ତର ଜଗତପ୍ରତି ଥିବା ଆକାଂକ୍ଷା ଓ କାମନା ସହିତ ରୂପୋତ୍ତର ଈଶ୍ୱରସତ୍ତାନୁଭବ ସମ୍ବଳିତ ଚିତ୍ର ବେଶ୍ ଚେତନା ଦୃଷ୍ଟିରୁ ଉର୍ଦ୍ଧ୍ୱଗ ହୋଇପାରିଛି, ଏକଥାକୁ ମାନିନେବାକୁ ପଡିବ।

ଏତଦ୍‌ବ୍ୟତୀତ ରହସ୍ୟତତ୍ତ୍ୱ ଦୃଷ୍ଟିରୁ ଗୋପବନ୍ଧୁ, କାଳିନ୍ଦୀଚରଣ, ରାଧାମୋହନ ଓ କୃଷ୍ଣମୋହନ ଇତ୍ୟାଦିଙ୍କ କବିତାରେ ପରିଦୃଶ୍ୟମାନ ବିଭୁପ୍ରୀତି ଓ ମାନବାତ୍ମାପ୍ରତି ସମ୍ମାନବୋଧ ଭିତରେ ଆମେ ରବୀନ୍ଦ୍ର-ଭାବ-ଅନୁରୂପ-ସାଦୃଶ୍ୟ ଅନୁଭବ କରିଥାଉ। ଅନ୍ନଦା ଶଙ୍କରଙ୍କର 'ସାଗରପ୍ରତି' ଓ 'ଏ ଜୀବନ ଦେଲା ମୋତେ କିଏ' କବିତାରେ ପରିଦୃଶ୍ୟମାଣ ଅସୀମ ପ୍ରତି ମମତ୍ୱବୋଧ ଓ ଅତୀନ୍ଦ୍ରିୟଭାବ ବିଳାସ ଭିତରେ ରବୀନ୍ଦ୍ର କାବ୍ୟାଦର୍ଶର ଛାୟାକୁ ଲକ୍ଷ୍ୟ କରାଯାଇପାରେ। ମୋଟ ଉପରେ ଓଡ଼ିଆ ଗୀତିକବିତାର ଉତ୍ତରଣ ପର୍ଯ୍ୟାୟ (୧୯୦୦-୧୯୩୫)ର ସାର୍ଥକ ଗୀତିକବିତାଗୁଡ଼ିକ ରହସ୍ୟତତ୍ତ୍ୱ ଉପରେ ଆଧାରିତ ହୋଇ ଆତ୍ମପ୍ରକାଶ କରିଛି ଏବଂ ଏହି ରହସ୍ୟତତ୍ତ୍ୱ ଓଡ଼ିଆ ଗୀତିକବିମାନଙ୍କୁ ରବୀନ୍ଦ୍ର ଚେତନାର ନିକଟବର୍ତ୍ତୀ କରିପାରିଛି।

(ବି.ଦ୍ର:- 'ତୁଳନାତ୍ମକ ସାହିତ୍ୟ ସଂପର୍କରେ' ଶୀର୍ଷକ ଅଧ୍ୟାୟର ଏକ ପରପର୍ଯ୍ୟାୟ ବା ନମୁନା ପ୍ରଦର୍ଶନଶୀଳ ଅଧ୍ୟାୟ ଭାବରେ ଏହି ଆଲୋଚନାଟିକୁ ସୁଧୀବର୍ଗ ଗ୍ରହଣ କରିପାରନ୍ତି।)



# ଅନୁବାଦ କଳା : ଅନୁଭାବ ଓ ଅନୁବିଧି...

(ଏକ)

ଅନୁବାଦ କଳା ଓ ତା'ର ପ୍ରାୟୋଗିକ ପ୍ରୟୋଜନ ପ୍ରତି ଅନୁରକ୍ତ ସହୃଦୟ ବର୍ଗ ! ଆମ ସମୟର ଅନ୍ୟତମ ବିଶିଷ୍ଟ ଅନୁବାଦକ 'ପଣ୍ଡିତ ଶ୍ରୀଧର ଦାସଙ୍କ ସ୍ମରକୀ ବକ୍ତୃତାମାଳା-୨୦୦୬' ଉପଲକ୍ଷେ ଆୟୋଜିତ ଆଜିର ପ୍ରସଙ୍ଗକୁ ଆଧାର କରି ଆପଣମାନଙ୍କ ପାଖରେ ଏହା ମୋର ଏକ ବିନମ୍ର ସଫେଇ ଅଥବା କଥନର ଭେଳିକି ନୁହେଁ। ବରଂ ଏହା ମୋର ଅଭିଜ୍ଞତାର ନୀରସ ସ୍ୱୀକାରୋକ୍ତି। ସ୍ୱୀକାରୋକ୍ତିଟି ହେଉଛି– ୧୯୮୫-୮୭ ମସିହା ମଧ୍ୟରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ବହୁ ଆଦୃତ ଗୀତାଞ୍ଜଳି କବିତା ଗ୍ରନ୍ଥର ହୃଦୟ-ସମ୍ବାଦ-ଭାଜନ ସୌନ୍ଦର୍ଯ୍ୟୋପାଦାନରେ ଆକର୍ଷଣରେ ଆକୃଷ୍ଟ ହୋଇ ମୁଁ ଏହାର ଅନୁବାଦ ପାଇଁ ପ୍ରଯତ୍ନମନା ଓ ଆଗ୍ରହମନା ହୋଇଥିଲି। ଗୀତାଞ୍ଜଳିର ବିଶ୍ୱସ୍ତ, ଅନୁପମ, ନିଷ୍ପାପର ଓ ଶ୍ରଦ୍ଧାସକ୍ତ ଅନୁବାଦ କରିବାକୁ ଯାଇ ଅଧାବାଟରୁ ଫେରିଆସିବାର ଏକ ଅଭାବିତ ବିକଳ ଅନୁଭୂତି ଏ ଅବଦ୍ୟର ରହିଛି। ଅନୁବାଦ କରିବାର ଏକ ସର୍ତ୍ତହୀନ-ସାଂସ୍କୃତିକ ଘଟାନ୍ତରୀକରଣ-ସୁନ୍ଦର ପୁନଃସର୍ଜନଶୀଳତାର ଅଭାବ ମୋର ଥିଲା। ମୂଳଲେଖାର ରୂପଗତ, ଭାବଗତ ଓ ଆବେଦନଗତ ରୂପାନ୍ତରୀକରଣର ବିକଳ୍ପ କ୍ଷମତାଟି ମୋର ଅନୁରୂପ ମାର୍ଗୀ ହୋଇ ନ ପାରି ବାରମ୍ବାର ବିଫଳ ହେଉଥିଲା। ଫଳତଃ– ଏକ ପକ୍ଷରେ ଅନୁସୃଷ୍ଟିଟିଏ ନିର୍ମାଣ କରିବାର ବିଫଳତାକୁ ନିଜସ୍ୱ ଅନୁଭୂତି ଭଣ୍ଡାରରେ ସାଇତି ରଖିଥିବା ମୋ ପରି ଅଧାଟିଆଟିଏ 'ଅନୁବାଦ କଳାର ଅନୁଭାବ ଓ ଅନୁବିଧି' ସମ୍ପର୍କରେ ବିଚାର ବ୍ୟକ୍ତ କରିବାକୁ ଆପଣମାନଙ୍କ ଆଗରେ ନିଜକୁ ଉପଯୁକ୍ତ ସୁମାରି କରିପାରୁନାହିଁ। ଆତ୍ମଲଜ୍ଜାର ସାର ଲଟାଟିଏ ମୋତେ ଗୁଡ଼େଇ ଧରୁଛି।

ଅପର ପକ୍ଷରେ ଆମ ସାମ୍ନାରେ ସାତ ହଜାରରୁ ଊର୍ଦ୍ଧ୍ୱ କଥିତ ଓ ଆଠଶହରୁ ଊର୍ଦ୍ଧ୍ୱ ଲିଖିତ ଭାଷାବଳରେ ବିସ୍ତାରିତ ପୃଥିବୀଟି ମାନବୀୟ ଅନୁଭୂତିର ଅଖଣ୍ଡତାକୁ ଏକ ବିଶ୍ୱ ଗ୍ରାମୀୟ ନକ୍ସାରେ ଦେଖିବା ପାଇଁ ନବାଭିରୁଚିର ପ୍ରୋତ୍ସାହନରେ ହାତ ହଲାଇ ଏକବିଂଶ ଶତାବ୍ଦୀର ସହଲଗ୍ନର ବଳୟ ଭିତରକୁ ଆମକୁ ସ୍ୱାଗତ କରିଛୁ। ଭାଷା ଭାଷା ମଧ୍ୟରେ ଥିବା ହୈମାଳୟିକ ସୀମାରେଖା ଓ ଭାଷିକ ଉପାଦାନରେ ନିର୍ମିତ ମେଘନାଦ-ପାଚେରୀଗୁଡ଼ିକ ଭାଙ୍ଗିଯାଇ ସମଗ୍ର ବିଶ୍ୱ ଏକ ଗ୍ରାମ୍ୟବୋଧରେ ପରିଣତ ହୋଇଉଠୁଛି। ସାରା ଜଗତର

କୋଣାନୁକୋଣର ମାନବୀୟ ପ୍ରକୃତି, ଆବେଦନ, ଅବବୋଧ, ସୃଷ୍ଟି, ସଂଘର୍ଷ, ମୈତ୍ରୀ, ସୌହାର୍ଦ୍ଦ୍ୟ, ପ୍ରୟୋଜନ,ପ୍ରବିଧି ଓ ଜୀବନ ସଂରଚନାଗୁଡ଼ିକ ସମରୂପରେ ସେହି ଏକକ ଗ୍ରାମ୍ୟବୋଧର ବୃତ୍ତରେ ପ୍ରତିଭାତ ହୋଇଉଠୁଛି। ମାନବୀୟ ଏକତାର ଲଟାଙ୍କ ଦାୟବଦ୍ଧତାଟିଏ ସଂପ୍ରତି ବିଶ୍ୱ ସାହିତ୍ୟ ଚେତନାକୁ ମାଡ଼ିଯାଇ ଆଚ୍ଛାଦିତ କରୁଛି। ମଣିଷ-ମଣିଷ, ଭୂଖଣ୍ଡ-ଭୂଖଣ୍ଡ- ସମୟ-ସମୟ, ଧର୍ମ-ଧର୍ମ, ସଂସ୍କୃତି-ସଂସ୍କୃତି, ଭାଷା-ଭାଷା ଓ ଭାବ-ଭାବ ମଧ୍ୟରେ ଅଭିନ୍ନ ସମ୍ବନ୍ଧ ପ୍ରତିଷ୍ଠା ପାଇଁ ସାହିତ୍ୟର ଅନ୍ୟ ପ୍ରଜାତି ମଧ୍ୟରୁ ଅନୁବାଦ କଳାଟିକୁ ଏ କ୍ଷେତ୍ରରେ ମହତ୍ତମ ଘଟସୂତ୍ରୀୟ ଭୂମିକା ସଂପାଦନ କରିବାକୁ ପଡୁଛି। ଅନୁବାଦକଟିଏ ନିଃସ୍ୱାର୍ଥପର ସ୍ୱେଚ୍ଛାସେବକ ଭଳି ଭାଷାର କଣ୍ଟାବାଡ଼ଗୁଡ଼ିକୁ ସଫାକରି ଓ ଶବ୍ଦନିନାଦର ସ୍ରୋତାୟିତ ନଦୀଗୁଡ଼ିକୁ ଅତିକ୍ରମ କରି ସମଗ୍ର ବିଶ୍ୱବୋଧକୁ ଏକ ପାତ୍ରିକ ଅବଧାରଣାରେ ଠୁଳ କରାଇବାର ଗୁରୁଦାୟିତ୍ୱକୁ ସଶ୍ରଦ୍ଧ ବରଣ କରିନେଉଛି। ଅଜାଣାକୁ, ଅଦେଖାକୁ, ଅଶୁଣାକୁ ଓ ଅଲଭ୍ୟକୁ ଅନୁବାଦକର ସ୍ୱଚ୍ଛ ହୃଦୟସମ୍ପନ୍ନ ଅନୁପମ ନିର୍ଲୋଭ ସତ୍ତାଟି ଜଣେଇ ଦେଉଛି, ଦେଖେଇ ଦେଉଛି, ଶୁଣେଇ ଦେଉଛି ଓ ମିଳେଇ ଦେଉଛି। ଭୂମି ସହିତ ଭୂମି, ମନ ସହିତ ମନ, ଚିନ୍ତା ସହିତ ଚିନ୍ତା, ଜ୍ଞାନ ସହିତ ଜ୍ଞାନ, ପୁନଶ୍ଚ ବିକଶିତ ସହିତ ଅବିକଶିତ, ଉନ୍ନତ ସହିତ ଅନୁନ୍ନତ, ଅସ୍ତି ସହିତ ନାସ୍ତି, ସଂଘର୍ଷ ସହିତ ସନ୍ଧି, ସୃଜନ ସହିତ ଧ୍ୱଂସ, ଥିଲା ସହିତ ନଥିଲାର ବିଚିତ୍ର-ଭାବବାଦୀ- ମିଳନ ସୁସ୍ଥ ଓ ସୁନ୍ଦର ଭାବରେ ଅନୁବାଦର ରଙ୍ଗମଞ୍ଚରେ ନିର୍ଦ୍ଦେଶକ-ଲେଖକ-ଅଭିନେତା-ପ୍ରେକ୍ଷକ-ପରିଚାଳକ ରୂପେ ଅନୁବାଦକଟିଏ ଦୃଶ୍ୟାୟିତ କରିଦେଉଛି। ଏହି ଅପୂର୍ବ ମିଳନାନ୍ତକ ଦୃଶ୍ୟ ଦେଖିଲା ପରେ ନିଜକୁ ସେଥିରେ ବ୍ୟାଖ୍ୟାକାର ରୂପେ ସାମିଲ୍ କରି ଅହୋଭାଗ୍ୟ ବୋଧ କରିବାର ଆତ୍ମରତିକର ସୁଯୋଗଟିଏ ମୋ ପରି ବିଚରାଟି ନେବାକୁ ବିହ୍ୱଳପଣରେ ଆଗଭର ହେଉଛି। ନୂଆକଥା କହିବି– ଏ ପ୍ରତିଶ୍ରୁତି ଦେବାର ଆସ୍ପର୍ଦ୍ଧା ପୋଷଣ ଅପେକ୍ଷା ପୁରୁଣା କଥା ଓ ବାର୍ତ୍ତମାନିକ ପ୍ରାସଙ୍ଗିକତାର କଥାକୁ ସୁମିତିବୋଧ କ୍ରମେ ମିଶାଇ ନୂଆ ବାଗରେ ନୂଆ ପ୍ରକାରେ କିଛି ମାତ୍ରାରେ ବାଢ଼ିଦେବି, ଏ ପ୍ରକାର କଥାଟେ ଦେଉଛି।

(ଦୁଇ)

କଳା, ବିଜ୍ଞାନ, ଦର୍ଶନ, ଭାସ୍କର୍ଯ୍ୟ, ନ୍ୟାୟ, ମୀମାଂସା– ପ୍ରତ୍ୟେକ ଜ୍ଞାନର ଏକ ପ୍ରାସଙ୍ଗିକ ମହିମା ଓ ପ୍ରଭାବ ଥାଏ। ଏହି ପ୍ରଭାବ ଓ ମହିମାର ଅନୁଧାବନକରି ତଦନୁରୂପ ଭାବନିର୍ମାଣର ଅପର ସମାଖ୍ୟା ହେଉଛି 'ଅନୁବାଦ'। ପ୍ରତ୍ୟେକ ଜ୍ଞାନ ଓ ଧାରଣାର ତାତ୍କାଳିକ ଓ କାଳୋତ୍ତୀର୍ଣ୍ଣ ପ୍ରଭାବ ଥାଏ। ଏହି ପ୍ରଭାବ ସୂତ୍ରରେ ତାହାର ମହିମାର

ପରିଭାଷା, ପ୍ରତ୍ୟୟ, ପରିସର, ଯୁଗରୁଚିର ପ୍ରୟୋଜନ ଅନୁସାରେ ନୂଆ ନୂଆ ରୂପେ ନିର୍ଣ୍ଣିତ ହୋଇ ଆସିଥାଏ। ଏହି କ୍ରମରେ ବାଙ୍‌ମୟ ଇତିହାସର ଅନ୍ୟତମ ସାର୍ବତ୍ରିକ ଆଦୃତ ସଂଯୋଗସୂତ୍ରୀୟ ପ୍ରଜାତି 'ଅନୁବାଦ'ର ପରିଭାଷା ଉପରେ ପ୍ରଥମେ ଆଲୋକପାତ କରାଯାଉଛି।

ଏକ ଭିନ୍ନ ଅଥଚ ପରିଚିତ ଭାଷାର ମହତ୍ତମ ଓ ପ୍ରିୟତମ ଲେଖାକୁ ନିଜ ମାତୃଭାଷା ବା ପରିଚିତ ଅନ୍ୟ ଏକ ଭାଷାରେ ଅବିକଳ ରୂପାନ୍ତରିତ କରିବାର ବାଙ୍‌ମୟ ସାଧନଟିକୁ ଅନ୍ୟାନ୍ୟ ଭାରତୀୟ ଭାଷା ପରି ସଂସ୍କୃତାନୁସାରେ ଆମ ଭାଷାରେ 'ଅନୁବାଦ ' ଭାବରେ ଗ୍ରହଣ କରାଯାଇଛି। ଏହାର ଇଂରାଜୀ ସମାର୍ଥବାଚକ ପ୍ରତିଶବ୍ଦଟି ହେଉଛି 'ଟ୍ରାନ୍‌ସଲେସନ'। 'ଅନୁବାଦ'ର ବ୍ୟୁତ୍ପତ୍ତିଗତ ପ୍ରତିପାଦନ ହେଉଛି– 'ଅନୁ - ବଦ୍ + ଘଞ୍ (ଅ) ଅର୍ଥାତ୍– ଅନୁ > ପଛରେ, ବଦ୍ > କହିବା, ଘଞ୍ (ଅ) > କୃତ୍ (କର୍ମଭାବ) ଅର୍ଥରେ ପ୍ରତ୍ୟୟ ସଂଯୋଗ। ଅନ୍ୱୟାର୍ଥଟି ହେଉଛି– ଯାହା ପଛରେ କୁହାଯାଏ ତାହା 'ଅନୁବାଦ'। ଶବ୍ଦାର୍ଥ ଚିନ୍ତାମଣି କୋଷ ଗ୍ରନ୍ଥରେ ଅନୁବାଦର ପରିଭାଷା ଏହିପରି– 'ପ୍ରାପ୍ତସ୍ୟ ପୁନଃ କଥନେ / ଜ୍ଞାତାର୍ଥସ୍ୟ ପ୍ରତିପାଦନେ'। ଏହାର ଅର୍ଥ ଯାହା ପୂର୍ବରୁ ଶ୍ରୋତା ପାଇସାରିଥାଏ ତାହାକୁ ପୁନର୍ବାର କହିବା / ଜାଣିଥିବା ବା ପୂର୍ବରୁ କୁହାଯାଇ ସାରିଥିବା ଅର୍ଥକୁ ପୁନଶ୍ଚ କହିବା। ଯାସ୍କଙ୍କ ନିରୁକ୍ତ ଅନୁସାରେ 'ଅନୁବାଦ' ହେଉଛି 'ଅନୁବଚନ/ଅନୁକଥନ/ଅନୁବର୍ଣ୍ଣନ'। ଯାସ୍କ 'ପ୍ରବଚନ' ବା ପ୍ରସିଦ୍ଧ ବାଣୀକୁ ପଛରେ ପୁଣି ଥରେ ଜ୍ଞାତକରଣ କରିବା ବିଷୟକୁ 'ଅନୁବଚନ' ଭାବରେ ବିବେଚନା କରିଛନ୍ତି। 'ଏକାଦଶୀ ତତ୍ତ୍ୱ'ରେ ଜ୍ଞାତ ବିଷୟକୁ ପୁନର୍ବାର ପରିଜ୍ଞାତ ବା ପ୍ରତିଜ୍ଞାତ କରାଇବା ବିଧାନକୁ 'ଅନୁବାଦ' ରୂପେ ଅର୍ଥନିଷ୍ପ କରାଯାଇଛି। 'କାଦମ୍ବରୀ'ରେ ବାଣଭଟ୍ଟ ସାହିତ୍ୟିକ ଅନୁବାଦକୁ ସାମାନ୍ୟ ଭାଷାନ୍ତର ଭାବରେ ଗ୍ରହଣ ନ କରି 'ଗୁଣାନୁବାଦ' ଭାବରେ ପରିଭାଷିତ କରିଛନ୍ତି। ଶ୍ରୀମଦ୍ ଭାଗବତରେ ଉତ୍ତମ ଶ୍ଳୋକଗୁଡ଼ିକର ବାର ବାର ଉଲ୍ଲେଖ ବା ଅନୁକୀର୍ତ୍ତନ ଘଟିଥାଏ ବୋଲି ପ୍ରସିଦ୍ଧି କଥିତ ହୋଇଛି। ଗୁଣାଶ୍ରିତ ମହତ୍ତମ କଥନୀର ପୁନରୁକ୍ତି ବା ପୁନରୁଲେଖକୁ ଗୁଣାନୁବାଦ ଭାବରେ ବିଚାର କରାଯାଇ ଅନୁବାଦର ଯୋଗ୍ୟତା ନିର୍ଦ୍ଧାରିତ ହୋଇଛି। ସବୁ କଥନୀ ପୁନର୍କଥନ ନିମନ୍ତେ ଯୋଗ୍ୟ ନୁହନ୍ତି। ଯେଉଁ କଥନୀ ବା ବିଷୟ ମହତ୍ତମ ଦୃଷ୍ଟାନ୍ତଯୋଗ୍ୟ ଓ ଉତ୍କର୍ଷ ଗୁଣର ପ୍ରବୋଧକ, ସେହି ସବୁର ଅନୁବାଦ ହେବାର ଯୋଗ୍ୟତା ରହିଛି। ଭାରତୀୟ କାବ୍ୟଶାସ୍ତ୍ରୀୟ ବିଚାରରେ ଗୁଣାନୁବାଦକ ସର୍ବଦା ମହତ୍ତମ ବାଣୀକୁ ପସନ୍ଦ କରି ପୁନର୍କଥନ କରିଥାଏ।

ଭାରତୀୟ କାବ୍ୟ ସିଦ୍ଧାନ୍ତରେ ଗୁଣାନୁବାଦର ଅନ୍ୟତମ ପ୍ରତିଶବ୍ଦ ହେଉଛି, ବିରଚନ ଓ ପ୍ରତିଜ୍ଞାତ କଥନ। ମନୋରମା କୋଷ ଗ୍ରନ୍ଥ ପ୍ରଣେତା ବାସୁଦେବ ଦୀକ୍ଷିତଙ୍କ

ମତରେ ଆଗରୁ ଜ୍ଞାତ ବସ୍ତୁକୁ ପୁନର୍ବାର ନୂଆ ପ୍ରକାରେ ପ୍ରତିପାଦନ କରିବାର ବିଧାନ ହେଉଛି, ବିରଚନ ବା ପ୍ରତିଜ୍ଞାତ କଥନ (ଅବଗପର୍ଥସ୍ୟ ପ୍ରତିପାଦନେ ଇତି ଅର୍ଥଃ ବିରଚନଂ)। ଭର୍ତ୍ତୃହରି ମଧ୍ୟ ମହତ୍ ବାଣୀର ପୁନଃ କଥନ / ପୁନରାବୃତ୍ତି / ପ୍ରତିଜ୍ଞାତକରଣ ହୋଇଥାଏ ବୋଲି ଅଭିମତ ଦେଇଛନ୍ତି। ଅନୁବାଦ ପ୍ରସଙ୍ଗକୁ ମହତ୍ କାବ୍ୟ ଓ କାବ୍ୟ ଉଦ୍ଧୃତିଗୁଡ଼ିକର ଏକ ପ୍ରକାର 'ବିରଚନ' ବା ପ୍ରତିରଚନା ଭାବରେ ଗ୍ରହଣ କରାଯାଇଛି। ପୂର୍ବରୁ ରଚିତ କୃତିକୁ ପୁନର୍ବାର ଅନ୍ୟ ଭାଷାରେ ସଟୀକା / ସବ୍ୟାଖ୍ୟା ରଚନା କରିବାର ପଦ୍ଧତି ହିଁ 'ବିରଚନ'। ଏହି କାରଣରୁ ବାଲ୍ମିକୀଙ୍କ ରଚିତ ସଂସ୍କୃତ ରାମାୟଣ କୃପାସିନ୍ଧଙ୍କ ଦ୍ୱାରା ଦାଣ୍ଡିବୃତ୍ତରେ ଓଡ଼ିଆ ଭାଷାରେ ବିରଚନ ହେବାପରେ ଉଭୟ ସଂସ୍କୃତ ଓ ଓଡ଼ିଆ ରାମାୟଣର ବସ୍ତୁକଳ୍ପକୁ ଛନ୍ଦାଳଙ୍କାରଧର୍ମୀ ପାଟବତାରେ ବିରଚନା କରିବାକୁ ଯାଇ ଉପେନ୍ଦ୍ର ଭଞ୍ଜ 'ବିରଚିଲି ରାମାୟଣ ଏ ମୋ ବଡ଼ ସିଦ୍ଧି' ବୋଲି ଦୃଢ଼ୋକ୍ତି ପୋଷଣ କରିଛନ୍ତି। ଉପେନ୍ଦ୍ରଙ୍କ କବିତ୍ୱ ଦୃଷ୍ଟିରେ 'ବୈଦେହୀଶ ବିଳାସ' ଏକ ବିରଚନ ବା ଅନୁସୃଷ୍ଟି ହୋଇ ବା ରାମଚରିତର ନୂତନ ଆବେଦନ ନୂତନ ପ୍ରକାରେ ଦେଉଥିବାରୁ ଏହା ତାଙ୍କ କବିସିଦ୍ଧିର ଶ୍ରେଷ୍ଠ ପରିଚାୟକ ଅଟେ। ପୂର୍ବ ମୀମାଂସା ମତରେ ଗୋଟିଏ ରଚନା ତା'ର ପ୍ରସିଦ୍ଧି ହେତୁ ଦ୍ୱିତୀୟଜ ହୋଇପାରେ। ଏହି ଦ୍ୱିତୀୟ ପ୍ରକାର ଜାତ ବା ନିର୍ମାଣ ହେବା ହିଁ ଅନୁବାଦ। ଏହି ଅନୁବାଦର ତିନୋଟି ଭେଦ ନିରୂପିତ ହୋଇଛି– ରୂପାର୍ଥ / ସ୍ତୁତ୍ୟାର୍ଥ / ଗୁଣାନୁବାଦ। ଗୁଣାନୁବାଦ ଶ୍ରେଷ୍ଠତାକୁ ମୀମାଂସାରେ ଗ୍ରହଣ କରାଯାଇ ବିହିତ ବସ୍ତୁଧର୍ମା ସୃଷ୍ଟିଗୁଡ଼ିକ ପୁନଃକଥିତ ହୋଇଥା'ନ୍ତି ବୋଲି ସିଦ୍ଧାନ୍ତନିଷ୍ଠ କରାଯାଇଛି। ଗୁଣାନୁବାଦ ସମର୍ଥ ସୃଷ୍ଟିଗୁଡ଼ିକ ଲୋକ ସମ୍ବାଦ-ପ୍ରାପ୍ତ ହୋଇଥା'ନ୍ତି। ଆନନ୍ଦବର୍ଦ୍ଧନ କାବ୍ୟ ରଚନାରେ ତିନୋଟି ସମ୍ବାଦ ଉପରେ ଗୁରୁତ୍ୱ ଦେଇଛନ୍ତି। ସମ୍ବାଦ ଅର୍ଥ ରଚନା ବିଧିର ମେଳ। ପୂର୍ବସ୍ୱରୀୟ ସୃଷ୍ଟିର ପ୍ରଭାବ ଓ ଛାୟାନୁରୂପତାକୁ ପରସ୍ୱରୀର ରଚନାରେ ସମେଳ ଥିବାର ଦେଖିବା ଏକ ସହଜ ବ୍ୟାପାର। ପରସୃଷ୍ଟି ବା ଅନୁସୃଷ୍ଟିଗୁଡ଼ିକରେ ପୂର୍ବ ରଚନାର ଭାବ ଓ ଶୈଳୀ ପ୍ରତିବିମ୍ବତୁଲ୍ୟ, ଚିତ୍ରାଲେଖ୍ୟ ସମ ଓ ବସ୍ତ୍ୱନ୍ତର ଭିତ୍ତିରେ ସହଜଲବ୍ଧ ହୋଇଥାଏ। ପ୍ରତିବିମ୍ବତୁଲ୍ୟ ସମ୍ବାଦରେ ପୂର୍ବ ରଚନାର ପ୍ରତ୍ୟକ୍ଷ ଉପସ୍ଥିତି ଅନୁଭୂତ ହେଉଥିବାରୁ ତାହାକୁ ଅନନ୍ୟାତ୍ମକ ଭାବରେ ନିନ୍ଦା କରି ଆନନ୍ଦବର୍ଦ୍ଧନ ତ୍ୟାଗ କରିଛନ୍ତି। ସେହିପରି ଆଲେଖ୍ୟସାମ୍ୟ ସମ୍ବାଦରେ ଅନୁକାର୍ଯ୍ୟେରଂ ବୁଦ୍ଧି ଜନ୍ମୁଥିବାରୁ ତାହାକୁ ତୁଚ୍ଛାତ୍ମ ରୂପେ ବର୍ଜନ କରିବାକୁ ଧ୍ୱନ୍ୟାଲୋକକାର ପରାମର୍ଶ ଦେଇଛନ୍ତି। ବସ୍ତ୍ୱନ୍ତର ସାଦୃଶ୍ୟ ସମ୍ବାଦରେ ପୂର୍ବ ରଚନାର ଘଟାନ୍ତର ଘଟିଥାଏ। ମୂଳ ଶରୀରର ଭାବବସ୍ତୁ ଅନ୍ୟ ରଚନାର ଶରୀରରେ ଅନୁସୃଜକ ବା ପରସୂରୀ ଦ୍ୱାରା ସଂସ୍କାରୋଚିତ ହୋଇ ଚିତ୍ରବିତ୍ ନୂଆ ଢଙ୍ଗରେ ମନୋହର ହୋଇ ରୂପ ପାଇଥାଏ। ତୁଳନାତ୍ମକ ପ୍ରଭାବ ସୂତ୍ରର ନିର୍ଯ୍ୟାସ ଆନନ୍ଦବର୍ଦ୍ଧନଙ୍କ ଏହି ବିଚାରରୁ ମିଳିଥାଏ।

ଏଥିସହିତ ତୁଳନା ଓ ପ୍ରଭାବ ନିରୂପଣର ଉତ୍ସ ସୂତ୍ର ଭାବରେ ଧ୍ୱନ୍ୟାଲୋକକାର ପଶ୍ଚାତ କଥନ ବା ପୂର୍ବ ରଚନାର ସଂସ୍କାରୋଚିତ ଅନୁସରଣାତ୍ମକ ପୁନର୍ଲେଖର ବିଷୟକୁ ବାଙ୍‌ମୟ-ସର୍ଜନ ବିଧାନରେ ଗ୍ରହଣ କରିଥିବାର ଲକ୍ଷ୍ୟ କରାଯାଏ। ପ୍ରତ୍ୟେକ ପରବର୍ତ୍ତୀ ସୃଷ୍ଟିରେ ପୂର୍ବ ସୃଷ୍ଟିର ଅନୁକଥନ-ସମ୍ବାଦ ଏକ ଅନିବାର୍ଯ୍ୟ ପ୍ରତିପାଦନ। ରାଜଶେଖର ଓ କୁନ୍ତଳଙ୍କ ପୁନର୍ଭାଷ / ବିଭାବନ ସିଦ୍ଧାନ୍ତ ମଧ୍ୟରେ ପୂର୍ବ କଥାକୁ ବିଶେଷ ଭାବରେ ପୁନର୍ବାର ଭାବନା ପରିଧିସ୍ଥ କରିବାର ବିଚାରଟି ପ୍ରଚ୍ଛନ୍ନ ହୋଇ ରହିଛି। ଗୋଟିଏ ଭାଷାରୁ ମୂଳ ଲେଖାକୁ ଅନ୍ୟ ଭାଷାରେ ରୂପାନ୍ତର କରିବାର ଆନୁବାଦିକ ସିଦ୍ଧାନ୍ତ ସଂସ୍କୃତ କାବ୍ୟ-ଶାସ୍ତ୍ରରେ ପ୍ରତ୍ୟକ୍ଷ ଓ ସ୍ୱଷ୍ଟ ରୂପରେ ନଥିଲେ ମଧ୍ୟ ମହତ୍ତମ ସୃଷ୍ଟିର ମହତ ଭାବ ଓ ବକ୍ତବ୍ୟଗୁଡ଼ିକ ଅନୁକଥିତ ହୁଏ – ଏ ଧରଣର ବିଚାରନିଷ୍ଠ ଚାହାଁଣୀ ବାଙ୍‌ମୟ ଭାବନାର ମେଳଣ ଓ ରୂପାନ୍ତରୀକରଣ ସମ୍ପର୍କରେ ପ୍ରାଚୀନ ମୀମାଂସା ନିରୂପଣ କାଳରେ କମ୍ ତାତ୍ପର୍ଯ୍ୟମୂଳକ ହୋଇନାହିଁ। ପ୍ରତିରଚନ କରିବା / ଗୁଣାନୁବାଦ କରିବା / ତୁଲ୍ୟମୂର୍ତ୍ତି ନିର୍ମାଣ କରିବାର ଆଲେଖ୍ୟ ସାମ୍ୟ ଭାରତୀୟ ସିଦ୍ଧାନ୍ତ ମଧ୍ୟରେ ପାଶ୍ଚାତ୍ୟ ଜଗତୀୟ ଅନୁବାଦ ତତ୍ତ୍ୱର କଳାତ୍ମକ ବୀଜଟିର ସମରୂପତାକୁ ଅନୁଭବ କରାଯାଇପାରେ। ମୂଳ କାବ୍ୟ ବନ୍ଧର ଅନୁସୃଷ୍ଟି ବା ଅନୁବନ୍ଧ ଭାରୀତୀୟ କାବ୍ୟ ପରମ୍ପରାରେ ନିରବଚ୍ଛିନ୍ନତା ରକ୍ଷାକରି ଆସିଛି। ସଂସ୍କୃତ ସାହିତ୍ୟର ମହତ୍ତମ କୃତିଗୁଡ଼ିକ ପ୍ରାକୃତ ଭାଷାରେ ଅନୁସୃତ ଓ ଅନୂଦିତ ହୋଇଆସିଛି। ଏହି ମର୍ମରେ ରାମାୟଣ ମୂଳ ଲେଖାର ଅନୁବନ୍ଧାତ୍ମକ ସର୍ଜନ ରୂପାନ୍ତରୀକରଣ କଳା ବୈଚିତ୍ର୍ୟକୁ ଭାସଙ୍କ ରାମାଭିଷେକରେ, କାଳିଦାସଙ୍କ ରଘୁବଂଶରେ, ହନୁମନ୍ତଙ୍କ ମହାନାଟକରେ, ମୁରାରୀଙ୍କ ଅନର୍ଘ ରାଘବରେ, କମ୍ବନଙ୍କ ତାମିଲ ରାମାୟଣରେ, କୌଶିକଙ୍କ ସନ୍ନତ ରାମାୟଣରେ, ଗିରିଧରଙ୍କ ଗୁଜୁରାଟୀ ରାମାୟଣରେ, ବଳରାମଙ୍କ ଜଗମୋହନ ରାମାୟଣରେ, କୃତ୍ତିବାସଙ୍କ ବଙ୍ଗଳା ରାମାୟଣରେ , ତୁଳସୀ ଦାସଙ୍କ ରାମଚରିତ ମାନସରେ, ଉପେନ୍ଦ୍ରଙ୍କ ବୈଦେହୀଶ ବିଳାସରେ ଓ ବିଶ୍ୱନାଥଙ୍କ ବିଚିତ୍ର ରାମାୟଣରେ ଦେଖିହୁଏ ନାହିଁ କି ? ଏହି ଦୃଷ୍ଟାନ୍ତ ପ୍ରମାଣ କରେ ପ୍ରାଚ୍ୟ ବାଙ୍‌ମୟ ଭୂଗୋଳରେ ଅନୁସୃଜନାତ୍ମକ ଅନୁକଳ୍ପନାର କାବ୍ୟତା ପ୍ରତି ଅନୁକୂଳ ଓ ସଚେତନଶୀଳ ମାନସିକତା ବହୁ କାଳରୁ ରହିଆସିଛି।

ଇଂରେଜୀ ସାହିତ୍ୟ ସଂସର୍ଗହେତୁକ ହେବାପରେ ଭାରତୀୟ କାବ୍ୟାନୁଶାସନରେ ଅନୁବାଦ ଟ୍ରାନ୍‌ସଲେସନର ପ୍ରତିଶବ୍ଦ ଭାବରେ ପ୍ରସାର ଲାଭ କରିଛି। କ୍ରମଶଃ ଏହାର ଅନେକ ଭାରତୀୟ ସମାର୍ଥସୂଚକ ପ୍ରତିଶବ୍ଦ ନିରୂପିତ ହୋଇଛି। ଭାଷାନ୍ତର, ରୂପାନ୍ତର, ଅନୁସୃଜନ, ଅନୁସୃଷ୍ଟି, ପୁନର୍ଲିଖନ, ପ୍ରତିଲେଖନ, ତର୍ଜମା, ପ୍ରତିଲିପିକରଣ ଇତ୍ୟାଦି ହେଉଛି ଅନୁବାଦର କେତୋଟି ପ୍ରତିଶବ୍ଦ। ପ୍ରାଚୀନ ସଂସ୍କୃତ ସମୀକ୍ଷା ଶାସ୍ତ୍ରରେ ବ୍ୟାଖ୍ୟାକରଣ ଓ ଟୀକାକରଣ ମୂଳ ଲେଖାକୁ ପୁନର୍ବାର ନବାର୍ଥଦ୍ୟୋତକ କରି ପ୍ରକାଶ କରିବାର ଉପାୟ

ଭାବରେ ପ୍ରସିଦ୍ଧି ଲାଭ କରିଛି। ଟ୍ରାନ୍ସଲେସନକୁ ଏକ ପ୍ରକାର ଉଦ୍ୟମ ଓ କୌଶଳ ଭାବରେ ବିବେଚନା କରିବା ପରେ ତୁଳନାତ୍ମକ ସାହିତ୍ୟ ସମ୍ବନ୍ଧୀ ବିଚାର ବିମର୍ଶର ଆନ୍ଦୋଳନ ଅନୁବାଦକୁ ନିର୍ଭରଶୀଳ ବିଶ୍ୱାୟିତ ସାହିତ୍ୟ ମେଳନର ମାଧ୍ୟମ ରୂପେ ଗ୍ରହଣ କରି ଏକ ସ୍ୱତନ୍ତ୍ର ସର୍ଜନଶୀଳ କଳା ରୂପେ ମାନ୍ୟତା ଦେଇପାରିଛି। ଅନୁବାଦ ବିଶ୍ୱଭାବନାକୁ ଏକୀଭୂତୀକରଣ କରିବାର ଉପେୟ ଭାବରେ ଅବଲମ୍ବିତ ହୋଇଛି ଓ ଉଭୟ ବିଜ୍ଞାନ ଓ କଳା ଗୁଣର ସମନ୍ୱୟରେ 'ଅନୁସୃଜନ'ର ପରିଭାଷା ଗ୍ରହଣ କରିଛି।

(ତିନି)

ଇଂରାଜୀ ସାହିତ୍ୟରେ ଅନୁବାଦ ଓ ପୁନରାନୁବାଦ ଭାବରେ ଦୁଇଟି ଶବ୍ଦ (Translation/Retranslation) ବ୍ୟବହୃତ ହୋଇଥାଏ। ଅନୁବାଦ (ଟ୍ରାନ୍ସଲେସନ) ଗୋଟିଏ ଭାଷାର ମୂଳ ଲେଖା ଅନ୍ୟ ଭାଷାରେ ରୂପାନ୍ତରୀକରଣ ହେବାର ପ୍ରକ୍ରିୟା ଭାବରେ ପରିଭାଷିତ ହୋଇଥିବା ବେଳେ ପୁନରାନୁବାଦ (ରିଟ୍ରାନ୍ସଲେସନ) ନିର୍ଦ୍ଦିଷ୍ଟ ଭାଷାର ଏକ ମୂଳ ଲେଖା, ସେହି ଭାଷାରେ ପୁନର୍ବାର ନୂଆ ପ୍ରକାରେ ଲେଖା ହେବାର ବା ଅନୂଦିତ ହେବାର ନୂତନ ଉଦୟନ ପ୍ରକ୍ରିୟାକୁ ବୁଝାଇଥାଏ। ଟ୍ରାନ୍ସଲେସନ ଶବ୍ଦଟି ମୂଳ ଲାଟିନ୍ ଭାଷାର ଟ୍ରାନ୍ଜ୍ ଓ ଲେଟ୍/ଲେସିଓ (Tranz-Late/Latio) ଶବ୍ଦର ମିଳନରୁ ଉତ୍ପତ୍ତି ଲାଭ କରିଛି। ଏହାର ଅର୍ଥ ସ୍ଥାନାନ୍ତର କରିବା/ଏକସ୍ଥାନରୁ ଅନ୍ୟ ସ୍ଥାନକୁ ସଂଚାରଣ କରାଇ ନେବା/ଅନ୍ୟତ୍ର ବସ୍ତୁ-ପ୍ରସଙ୍ଗ-ଭାବକୁ ବହନ କରିନେବା। ଭିନ୍ନ ପ୍ରକାର ଅର୍ଥ ହେତୁକ ହୋଇ ସୌନ୍ଦର୍ଯ୍ୟକୁ ହୃଦୟରେ ଟ୍ରାନ୍ସଲେଟ୍/ସଂଚାରିତ କରିନେବା ଓ ପ୍ରାକୃତିକ ବସ୍ତୁସତ୍ତାକୁ ମନର ବିଚାରରେ, ସଂଗୀତରେ, ବାଦ୍ୟରେ, ଶିଳ୍ପକଳାରେ ଟ୍ରାନ୍ସଲେଟ କରିବାର ଅର୍ଥକରଣ ମଧ୍ୟ ପ୍ରସିଦ୍ଧି ଲାଭ କରିଛି।

ଟ୍ରାନ୍ସଲେଟ ଓ ଟ୍ରାନ୍ସଲେସନ ପୂର୍ବରୁ ଏହାର ପ୍ରତିଶବ୍ଦ ଇଣ୍ଟରପ୍ରିଟ୍/ଇଣ୍ଟରପ୍ରିଟେସନ୍/ଏକ୍ସପାଉଣ୍ଡ୍ ଇତ୍ୟାଦି ପ୍ରଥମେ ଭାବ ବିନିମୟର ଅନୁଭାବ ରୂପେ ଭୂମିକା ସମ୍ପାଦନ କରିଛି। ଅନ୍ୟ ଭୂଗୋଳ, ସଂସ୍କୃତି, ଜନାଚାର ଓ ଜ୍ଞାନବୋଧକୁ ଜାଣିବା ପାଇଁ ଭାଷାର ବିଭିନ୍ନତା ଯେତେବେଳେ ପ୍ରତିବନ୍ଧକ ସୃଷ୍ଟି କରିଛି, ସେତେବେଳେ ଇଣ୍ଟରପ୍ରିଟେସନ ବା ବ୍ୟାଖ୍ୟାକରଣର ଗୁରୁତ୍ୱ ଅନୁଭବ କରାଯାଇଛି। ଗୋଷ୍ଠୀ ଜୀବନରେ, ଶାସନ କ୍ଷେତ୍ରରେ, ବାଣିଜ୍ୟକ୍ଷେତ୍ରରେ, ଯୁଦ୍ଧ ପରିଚାଳନାରେ, ସାଂସ୍କୃତିକ ସମ୍ବନ୍ଧ ବିନିମୟ ପ୍ରସଙ୍ଗରେ ବହୁଭାଷୀ ବ୍ୟାଖ୍ୟାକାରମାନଙ୍କ ଆବଶ୍ୟକ ପଡ଼ିଛି। ଗୋଟିଏ ଭାଷାରେ ବ୍ୟକ୍ତ ଭାବ ବ୍ୟାଖ୍ୟାକର ଦ୍ୱାରା ଅନ୍ୟଭାଷୀମାନେ ବୁଝିବାରେ ସମର୍ଥ ହୋଇଛନ୍ତି। ଅର୍ଥକାରକମାନଙ୍କ ଦ୍ୱାରା ଭାଷାର ଭାଷାନ୍ତରୀକରଣ କ୍ରମଶଃ ଅନୁବାଦର ପରିଭାଷା ଗ୍ରହଣ କରିଛି। ଏପରିକି ଲାଟିନ୍ ଭାଷାଭାଷୀ

ଭୂଖଣ୍ଡରେ ବ୍ୟାଖ୍ୟାକାରମାନଙ୍କୁ ଯୋର ଜବରଦସ୍ତି ଶାସକବର୍ଗ ଓ ବଣିକବର୍ଗ କ୍ରୀତଦାସ ରଖିବାର ନଜିର ଇତିହାସରେ ଉପଲବ୍ଧ । ଏହି ବ୍ୟାଖ୍ୟାକାରମାନେ ଭୂଖଣ୍ଡ ଭୂଖଣ୍ଡ ମଧ୍ୟରେ ସାଂସ୍କୃତିକ ଭାବ ସଞ୍ଚାର ନିମନ୍ତେ ଗୋଟିଏ ଭାଷାର ମହତ୍ତମ ଗ୍ରନ୍ଥ, ନ୍ୟାୟସୂତ୍ର, ଶାସନସୂତ୍ରଗୁଡ଼ିକୁ କ୍ରମଶଃ ଆବଶ୍ୟକବୋଧ କରୁଥିବା ଭାଷାରେ ଅନୁବାଦ ବା ଭାଷାନ୍ତର କରିଛନ୍ତି । ଭାଷାନ୍ତରଜ ଆନନ୍ଦ ପ୍ରଦାନ ଓ ସାଂସ୍କୃତିକ ସହଭାବ ସଞ୍ଚାଳନ ନିମନ୍ତେ ବିଶିଷ୍ଟ ସାହିତ୍ୟ କୃତିର ଅନୁବାଦ ଉପରେ ପ୍ରାଧାନ୍ୟ ଦେଇଛି । ଏହି ପ୍ରାଧାନ୍ୟର ଅର୍ନୁଗାମୀ ହୋଇ ଲାଟିନ୍ ଭାଷାଭିଜ୍ଞ ଗ୍ରୀକ୍‌ରେ କ୍ରୀତଦାସ ରୂପରେ ଜୀବନ ନିର୍ବାହ କରୁଥିବା ବ୍ୟାଖ୍ୟାକାର ଲିଭିୟସ ଆନ୍ଦ୍ରୋନିକସ୍ (Livious Andronicus) ଖ୍ରୀ.ପୂ. ୨୪୦ରେ ହୋମରଙ୍କ ପ୍ରସିଦ୍ଧ ମହାକାବ୍ୟ 'ଓଡ଼େସୀ'କୁ ଲାଟିନ୍ ଭାଷାରେ ଅନୁବାଦ କରିଛନ୍ତି । ୟୁରିପିଡ୍‌ସ (Uripides)ଙ୍କ ନାଟକଗୁଡ଼ିକୁ ଲାଟିନ୍ ଭାଷାରେ ଅନୁବାଦ କରିଥିବା (ଖ୍ରୀ.ପୂ. ୧୯୦-୧୫୦) ନେଭଅସ୍ ଓ ଇନିୟସ୍ ମଧ୍ୟ ଲାଟିନ୍ ଭାଷୀ ଥିଲେ ଓ ଗ୍ରୀକ୍ ଦରବାରୀ ପ୍ରଭାବରେ କ୍ରୀତଦାସବତ୍ ବ୍ୟାଖ୍ୟାକାର ଜୀବନ ଯାପନ କରୁଥିଲେ ।

ବ୍ୟାଖ୍ୟାକାରମାନଙ୍କର ଅନ୍ୟ ଗୋଟିଏ ପ୍ରଜାତି ଖ୍ରୀ.ପୂ. ୨ୟରୁ ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ ଭାରତରୁ ମଧ୍ୟପ୍ରାଚ୍ୟ ଦେଇ ସ୍ୱେଡନ୍ ପର୍ଯ୍ୟନ୍ତ ଯାଯାବରୀୟ ଜୀବନ ଯାପନ କରିଥିବାର ତଥ୍ୟ ଇତିହାସ ଯୋଗାଇଦିଏ। ଏମାନଙ୍କ ପରିଚୟ ଗଳ୍ପସାଗର କଥାବାଚକ ଏବଂ ଗୋଟିଏ ଭୂଖଣ୍ଡର ଭାଷା ସଂରଚନା ଭିତରେ ଥିବା ଗଳ୍ପକୁ ଅନ୍ୟ ଭୂଖଣ୍ଡରେ ସେଠିକାର ଭାଷାରେ ବ୍ୟାଖ୍ୟା କରି ଏମାନେ କଥକ ବୃତ୍ତି ସମ୍ପାଦନ କରିଥା'ନ୍ତି । ଅନେକ ଧର୍ମାଶ୍ରୟୀ ପରିବ୍ରାଜକ ଧର୍ମକଥକ ଭାବରେ ଉଭାହୋଇ ନୀତିକଥନୀ ଓ ବାଣୀକୁ ବିଭିନ୍ନ ଭାଷାରେ ଭାଷାନ୍ତର ମଧ କରିଛନ୍ତି । ସଂସ୍କୃତ 'ପଞ୍ଚତନ୍ତ୍ର' ଗ୍ରନ୍ଥକୁ ନମୁନା ରୂପେ ନିଆଯାଉ । ସପ୍ତମ ଶତାବ୍ଦୀରେ ପାରସ୍ୟ ଦରବାରର ହକିମ ବରଯୋଇ ଓ ଆରବର ଧର୍ମଯାଜକ ରଜ୍‌ବିହି ସଂସ୍କୃତ ଭାଷାରୁ ପଲ୍ଲବୀ ଓ ଆରବିକ୍ ଭାଷାରେ ପଞ୍ଚତନ୍ତ୍ରର ଅନୁବାଦ କରିଛନ୍ତି । ପାରସ୍ୟ ଦେଶରୁ ବରଶପ୍ ନାମ କ୍ରୀତଦାସ– (ବଣିକ ପରମ୍ପରାର କାହାଣୀ ବ୍ୟାଖ୍ୟାକାର) ପଞ୍ଚତନ୍ତ୍ରର କାହାଣୀକୁ ସ୍ପେନ୍‌ରେ ପ୍ରଚାର କରିଛନ୍ତି । ସ୍ପେନ୍ ଦେଶରେ କ୍ରମଶଃ ପ୍ରତିଷ୍ଠା ପାଇବା ପରେ ଏହାର ମୂଳ ଲେଖା ଖୋଜି ୧୨୫୧ ମସିହାରେ ଦରବାରୀ ବ୍ୟାଖ୍ୟାକାର ରାବ୍‌ବୀ ଗୋଏଲ୍‌ଙ୍କ ଦ୍ୱାରା ଏହି ଗ୍ରନ୍ଥ ସ୍ପେନୀୟ ଭାଷା ସ୍ଲୋଭୋନିକ୍‌ରେ ଅନୁଦିତ ହୋଇଛି ଏବଂ ୧୨୭୦ ଖ୍ରୀଷ୍ଟାବ୍ଦରେ ଗୋହନ୍ ଏହାକୁ ଲାଟିନ୍ ଭାଷାରେ, ଦୋନୀ ୧୫୫୨ରେ ଇଟାଲୀୟ ଭାଷାରେ, ସାର୍ ଥୋମାସ୍ ନର୍ଥ ୧୫୭୦ରେ ଇଂରାଜୀ ଭାଷାରେ ଅନୁବାଦ କରିଛନ୍ତି । ଭାରତ ତତ୍ତ୍ୱବିତ୍ ଏଡ୍‌ଗର୍ଟନ (Edgerton)ଙ୍କ ମତରେ ପଞ୍ଚତନ୍ତ୍ରର ୟୁରୋପାଭିମୁଖୀ ଅନୁବାଦ ପ୍ରତ୍ୟକ୍ଷ ଓ ପ୍ରାମଣିକ ବିଧାନରେ ମୂଳ ଭାଷାର ଅନୁବାଦ ନୁହେଁ । ବରଂ ଏଗୁଡ଼ିକ

ଭାଷାରୁ ଭାଷା– ବିବିଧ ଭାଷା ସୋପାନ ଅତିକ୍ରମ କରି ଅନୁବାଦରୁ ଅନୁବାଦ ହୋଇ ପ୍ରତିଅନୁବାଦିତ ଛଳରେ ବିଶ୍ୱବ୍ୟାପୀ ହୋଇଛି । ମାତ୍ର ବିଚିତ୍ର ଭାବରେ ପ୍ରାଚ୍ୟ ପାଶ୍ଚାତ୍ୟ ମଧ୍ୟରେ ଏକ ନୀତିବାଦୀୟ ସମଭାବାପନ୍ନ ବିଚାରବୋଧ ଏହାଦ୍ୱାରା ଘନବଦ୍ଧ ହୋଇଉଠିଛି ଏବଂ ମାନବେତର ପ୍ରାଣୀମାନେ ମାନବ ଆଚରଣର ସଂଯମ ଓ ଶୃଙ୍ଖଳା ପାଇଁ ଉଦାହରଣ ହୋଇଉଠିଛନ୍ତି ।

ଏଥିରୁ ଗୋଟିଏ ସ୍ୱଷ୍ଟ ହୋଇଉଠିଛି– ଭାଷା-ବ୍ୟାଖ୍ୟା ହିଁ ଅନୁବାଦର ଭିତ୍ତି । ଅନ୍ୟ ଭାଷାଭାଷୀଙ୍କୁ ଜାଣିବା ଓ ସେମାନଙ୍କ ମହତ ରଚନା ଭିତରେ ନିଜକୁ ଖୋଜିବାର ଆକାଂକ୍ଷା ନିଜର ଭାଷା ବୃତ୍ତରେ ବ୍ୟାଖ୍ୟାତ୍ମକ ପ୍ରକ୍ରିୟାର ଉଦ୍ଭାବନ କରିଛି । କ୍ରମଶଃ ବ୍ୟାଖ୍ୟାଜ୍ଞାନକୁ ନେଇ ବୃତ୍ତିଗତ ଜୀବନ ସାଧନ ହୋଇଛି । ଭାଷାନ୍ତର ଭିତ୍ତିରେ ଅନ୍ୟଭାଷୀ ଭାବର ଭିନ୍ନଗୋତ୍ରୀକରଣ କରୁଥିବା ବ୍ୟାଖ୍ୟାକାରମାନେ କ୍ରମଶଃ ସମୂହ ମୂଲ୍ୟବୋଧ ପ୍ରତି ସେମାନଙ୍କର ଅବଦାନକୁ ଉପଲବ୍ଧି କରିଛନ୍ତି । ଫଳସ୍ୱରୂପ ସମୂହ ଆନନ୍ଦ, ସାଂସ୍କୃତିକ ଯୋଗସୂତ୍ର ଓ ମାନବୀୟ ଅଭିଳାଷର ଚରିତାର୍ଥ ନିମନ୍ତେ ଭାଷାନ୍ତରୀକରଣ ବ୍ୟାଖ୍ୟା 'ଅନୁବାଦକଳା'ରେ ପରିଣତି ଲାଭ କରିଛି । ଅନୁବାଦର ବିକାଶ ଓ ପ୍ରସାର ଦେଇ ପ୍ରାଚ୍ୟ-ମଧ୍ୟପ୍ରାଚ୍ୟ-ପାଶ୍ଚାତ୍ୟର ମହତ ଭାବଗୁଡ଼ିକ ମଧ୍ୟରେ ସମନ୍ୱୟ ସାଧିତ ହୋଇଛି । ପାଶ୍ଚାତ୍ୟ ରେନେସାଁର ଉନ୍ମେଷ ପର୍ଯ୍ୟାୟରେ ଅନୁବାଦ ମାଧ୍ୟମରେ ବିଶ୍ୱର ମହତ୍ତମ ଜ୍ଞାନ, ଦର୍ଶନ, ଚେତନା, କାବ୍ୟିକ କଳ୍ପନା ଓ ତର୍କଣା ଅଭିନବ ଜାଗୃତି ନିମନ୍ତେ ସହଜଲବ୍ଧ ହୋଇଛି । ପୁରାଣଭାବ ଅନୁଭାବରୂପେ ନୂଆ ବିଧାନକୁ ସତେଜ କରିଦେଇଛି ।

ଏଠାରେ ଉଲ୍ଲେଖଯୋଗ୍ୟ ରେନେସାଁର ଆଗମନ ପର୍ଯ୍ୟନ୍ତ ପ୍ରାଚ୍ୟ ଜଗତ ପରି ପାଶ୍ଚାତ୍ୟ ଜଗତ ମଧ୍ୟଯୁଗୀୟ ଧର୍ମବଳୟ ଭିତରେ ପ୍ରଥାସିଦ୍ଧ ରହିଛି । ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀରେ ୟୁରୋପୀୟ ସଂସ୍କୃତିରେ ଯେଉଁ ନବସୃଜନଶୀଳତା ଓ ନବ ଅଭ୍ୟୁଦୟର ଆଲୋଡ଼ନ ଘଟିଛି, ତାହାର ପଶ୍ଚାତପଟରେ ଅନୁବାଦର ଅବଦାନ କମ୍ ଗଠନମୂଳକ ନୁହେଁ । ଅନୁବାଦ ମାଧ୍ୟମରେ ୟୁରୋପୀୟ ଭାଷାସାହିତ୍ୟ ପରସ୍ପର ଭିତରେ ଥିବା ସମଭାବାପନ୍ନ ଚେତନାଗୁଡ଼ିକୁ ବିତରଣ କରାଇ ପାରିଛି । ପାରସ୍ପରିକ ବୁଝାମଣାର ପର୍ଯ୍ୟାୟଟିଏ ଉନ୍ମୋଚିତ ହୋଇଛି । ବିଶେଷକରି ୟୁରୋପୀୟ ଜ୍ଞାନଧାରା ଏହାକୁ ଆଧାର କରି ବିଶ୍ୱର ଅନ୍ୟାନ୍ୟ ଭାଷା ବୃତ୍ତରେ ଥିବା ଚିରନ୍ତନ ଭାବ ଓ ଅବବୋଧର ଐଶ୍ୱର୍ଯ୍ୟ ବିଷୟରେ ଅବଗତ ହୋଇଛି ଏବଂ ଅବଶିଷ୍ଟ ବିଶ୍ୱର ଇତିହାସ, ସଂସ୍କୃତି, ଧର୍ମ, ଦର୍ଶନ, ସାହିତ୍ୟ, ଶିଳ୍ପ, କଳା, ରାଜନୀତି, ଅର୍ଥନୀତି, ଲୋକାଚାର, ବାଣିଜ୍ୟ, ଜୀବନ୍‌ଚର୍ଯ୍ୟା, ମାନସିକ ଇଚ୍ଛାଶକ୍ତି, ଜନଧାରା ଓ ଜନବିଶ୍ୱାସ ଇତ୍ୟାଦି ସମ୍ପର୍କରେ ସଚେତନ ହୋଇଉଠିଛି ।

ୟୁରୋପୀୟ ମାନବସମ୍ବଳ ଓ ଜ୍ଞାନକଳ୍ପ ଧର୍ମବଳୟଠାରୁ ଜୀବନର ଯାବତୀୟ ମୂଲ୍ୟବୋଧକୁ ମୁକ୍ତ କରି ତର୍କ, ଅନ୍ୱେଷା, କାରଣ ଓ ସମାଧାନ ଭିତରେ ଏହାକୁ କଳନା କରିଛି। ଅନୁବାଦର ବିପୁଳ ଅନୁଗ୍ରହରେ ଅନୁସନ୍ଧିତ୍ସୁ ୟୁରୋପୀୟ ଚିନ୍ତାମାନସ ବିଶ୍ୱ-ନିୟନ୍ତ୍ରକର ସୂତ୍ରଟିକୁ ଉପଲବ୍ଧି କରିପାରିଛି। ବର୍ତ୍ତମାନ ପର୍ଯ୍ୟନ୍ତ ଇଂରେଜୀ ସାହିତ୍ୟ ଜ୍ଞାନରାଜ୍ୟରେ ଯେଉଁ ଉପନିବେଶୀ ପ୍ରାଧାନ୍ୟକୁ ଅଦୃଶ୍ୟ ଭାବେ ବଳବତ୍ତର କରି ରଖିପାରିଛି, ତାହାର ଭିତ୍ତିଭୂମିରେ ଅନୁବାଦ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି।

ସମ୍ପ୍ରତି ଅନୁବାଦର ଏହି ରଚନାତ୍ମକ ଭୂମିକା ତୁଳନାତ୍ମକ ଅଧ୍ୟୟନ ବିଶ୍ୱ-ଗ୍ରାମୀୟ ସମ୍ଭାବନା, ସାର୍ବିକ ଅବବୋଧର ସାଦୃଶ୍ୟକରଣ, ବିଶ୍ୱୈକ କଲ୍ୟାଣବୋଧ ଓ ସାଂସ୍କୃତିକ ସହବନ୍ଧନ ନିମନ୍ତେ ଅପରିହାର୍ଯ୍ୟ ହୋଇପଡ଼ିଛି। ଏହା ପ୍ରମାଣସିଦ୍ଧ କରିଦେଇଛି ଯେ ସାହିତ୍ୟ ସୃଷ୍ଟିର ବର୍ଣ୍ଣାଢ୍ୟ କଳେବର ମଧ୍ୟରେ ବିପୁଳାଚ ପୃଥିବୀ ଓ ମାନବୀୟ ଚିନ୍ତାଧାରା ସମଭାବରେ ଲୀଳାୟିତ ହେଉଛି। ବିଶ୍ୱ-ସାହିତ୍ୟଟିଏ ପରିକଳ୍ପନା କରୁ କରୁ ଏହାର ସାଧନା ମାଧ୍ୟମ ରୂପେ ବିଶ୍ୱବନ୍ଦିତ ଚିନ୍ତାବିତ୍ ଗେଟେ ଅନୁବାଦକୁ ଗ୍ରହଣ କରି ଏହି ମର୍ମରେ ବନ୍ଧୁ କାର୍‌ଲାଇଲ୍‌ଙ୍କୁ ଲେଖିଥିଲେ– ''ଉତ୍ତମ ଅନୁବାଦଟିଏ ଆମମାନଙ୍କୁ ଦିଗନ୍ତ ବିସ୍ତାରୀ ମାର୍ଗରେ ପରିଚାଳିତ କରାଇ ନିଏ।'' ସୁତରାଂ ଅନୁବାଦର ହାତଧରି ମହତ୍ତମ ସୃଷ୍ଟିର ଶାଶ୍ୱତ ବିଭବ ଦେଶରୁ ଦେଶାନ୍ତର ସଞ୍ଚାରିତ ହୁଏ। ପାଠକଟିଏ ବିଶ୍ୱର ଅଖଣ୍ଡ ସୌନ୍ଦର୍ଯ୍ୟକୁ ନିଜ ହାତପାହାନ୍ତାରେ ତୋଳି ଧରିପାରେ। ସୁତରାଂ ଅନୁବାଦର ଅନୁଭବକୁ ବୁଝିବାହିଁ ଅନୁପ୍ରାଣନଯୋଗ୍ୟ ହେବାର ଉପାୟ।

(ଚାରି)

ଦୁର୍ଲ୍ଲଭ-କ୍ରାନ୍ତଦର୍ଶନ-ପ୍ରତିଭା ବଳରେ ଚିରାୟତ ସୌନ୍ଦର୍ଯ୍ୟର ଖେଳ ଖେଳି ଆସିଥିବା ଓ ସମ୍ବେଦନଶୀଳ ସୌହାର୍ଦ୍ଦ୍ୟପୂର୍ଣ୍ଣ ଜୀବନ ବଞ୍ଚିବା ପାଇଁ ପ୍ରବୋଧିତ କରିଆସୁଥିବା କୃତିଗୁଡ଼ିକୁ ଶ୍ରେୟ ଓ ଧ୍ୟେୟଗୁଣର ପରିକଳ୍ପନା ଭାବରେ ବିବେଚନା କରାଯାଏ। ନିରବଧି କାଳର କଷଟିରେ ଚିରନ୍ତନୀ ଦୀପ୍ତିର ଶୁଦ୍ଧତାକୁ ପ୍ରମାଣିତ କରିଥିବା ଏକ ପ୍ରକାର ମହାନ୍ ବାଙ୍ମୟ କୃତିଗୁଡ଼ିକର ମିଳନ ମଂଚ ନିର୍ମାଣ କରୁଥିବା ଓ କରିଆସିଥିବା ଅନୁବାଦକଳାର ସ୍ୱଧର୍ମ ଓ ସ୍ୱରୂପ ଉପରେ ଏବେ ଅନୁଶୀଳନ କରାଯାଇପାରେ।

ଅନ୍ୟକୁ ଜାଣିବାର କୌତୂହଳ, ଜିଜ୍ଞାସା, ଆଗ୍ରହ, ତରିକା/ଅନ୍ୟ ସହିତ ନିଜକୁ ତୁଳନା କରିବା ଇଚ୍ଛାଶକ୍ତି/ଅନ୍ୟର ସଂସ୍କୃତି, ଜୀବନଚିତ୍ର, କଳାବୋଧ ଓ ଲୋକାଚାର ସହିତ ସମଗୋତ୍ରୀ ହେବାର ଓ ମିଶିବାର ପ୍ରବଣତାରୁ ଜନ୍ମନିଏ ଅନୁବାଦ ସାହିତ୍ୟ। ଅନୁବାଦସାହିତ୍ୟ ମୁକ୍ତ ସୃଜନ ପ୍ରକ୍ରିୟାର ଫଳପ୍ରସୂ ନୁହେଁ। ଏହାର ସାଧନ ନିମନ୍ତେ ତିନୋଟି

ପକ୍ଷ ରହିଛି । ଯେଉଁ ଭିନ୍ନ ଭାଷାରୁ ଯେଉଁ ସୁଖ୍ୟାତ ଓ ମହତ୍ତ୍ୱପୂର୍ଣ୍ଣ ଅନୁବାଦଯୋଗ୍ୟ ବାଙ୍‌ମୟ କୃତି ନିର୍ବାଚନ କରାଯାଏ, ତାହାକୁ ଉତ୍ସଭାଷା ଓ ମୂଳଲେଖା କୁହାଯାଏ, (Sources language and original-creation) ଏହା ହେଉଛି ପ୍ରଥମ ପକ୍ଷ । ଯେଉଁ ଭାଷାରେ ମୂଳ ଲେଖାଟି ଅନୂଦିତ (ନୂଆ ଭାବର ଉଦୟ-ରୂପାନ୍ତର) ହୁଏ, ତାହାକୁ ଲକ୍ଷ୍ୟଭାଷା (Target language) ଓ ଅନୁବାଦିତ ଅନୁସୃଷ୍ଟି (Trans-creation) କୁହାଯାଏ । ଏହା ହେଉଛି ଅନୁବାଦ କଳାର ଦ୍ୱିତୀୟ ପକ୍ଷ । ତୃତୀୟ ପକ୍ଷଟି ହେଉଛି– ଉଭୟ ଲକ୍ଷ୍ୟଭାଷା ଓ ଉତ୍ସଭାଷା ସମ୍ପର୍କରେ ଅଭିଜ୍ଞ ଏବଂ ମୂଳଲେଖାକୁ ଲକ୍ଷ୍ୟଭାଷାରେ ଅନ୍ୟ ଗୋତ୍ରୀକରଣ କରିପାରୁଥିବା ସମର୍ଥ ଅନୁବାଦକ ।

ଅନୁବାଦରେ ମୂଳ ଭାଷାର ଶୈଳୀ, ଭାବ ଓ ବକ୍ତବ୍ୟର ଘଟାନ୍ତରୀକରଣ ବା ଅନ୍ୟ ଗୋତ୍ରାନ୍ତରୀକରଣ ଘଟିଥାଏ । ସୁତରାଂ ଅନୁବାଦର ମୂଳ ଲକ୍ଷର ହେଉଛି– ଭାଷିକ ରୂପାନ୍ତର । ଅନୁବାଦ୍‌ର ଏହି ରୂପାନ୍ତରୀକରଣ ପ୍ରକ୍ରିୟାଟି ମୂଳ ଲେଖାର ସଂସ୍କୃତିପ୍ରସ୍ଥ, ଦର୍ଶନପ୍ରସ୍ଥ, ଭୂମିପ୍ରସ୍ଥ, ସମୟପ୍ରସ୍ଥ, ମନନପ୍ରସ୍ଥ, ଚିତ୍ର-ଚରିତ୍ରର ଆଲେଖ୍ୟପ୍ରସ୍ଥ, ଶୈଳୀପ୍ରସ୍ଥ ଓ ଆବେଦନପ୍ରସ୍ଥ ପ୍ରତି ବିଶ୍ୱସ୍ତ ହେବାର ନିଷ୍ଠା ଓ ଗଭୀରତା ଉପରେ ସଫଳତା ଲାଭ କରିଥାଏ । ଏକଥା ମଧ୍ୟ ସାଧାରଣ ଯେ ସମଗ୍ର ବାଙ୍‌ମୟ କଳା ନିର୍ମାଣଟି (ସାହିତ୍ୟ ବିଦ୍ୟାଟି) ରୂପାନ୍ତରୀକରଣ ମହନୀୟ ସୃଷ୍ଟିର ଧର୍ମ ଉପରେ ପ୍ରତିଷ୍ଠିତ ।

- ସାହିତ୍ୟ କୃତି ଭିତରେ ଲେଖକର ଅନ୍ତଃରୀଣ ଅନୁଭୂତି ପାଠକୀୟ/ବାହ୍ୟ ଜଗତୀୟ ବିଶ୍ୱାସ, ଆଗ୍ରହ, ଅଭିଜ୍ଞତା ଓ ତର୍କଣା ଭିତ୍ତିରେ ରୂପାନ୍ତରିତ ହୋଇଥାଏ । ଭଲ ଲେଖାରେ ଲେଖକୀୟ ଅଭିଜ୍ଞତା > ପାଠକୀୟ ଅଭିଜ୍ଞତାରେ ରୂପାନ୍ତରିତ ହୋଇଥାଏ ।
- ଲେଖକୀୟ ସର୍ଜନଶୀଳ କଳ୍ପନା ଆଶ୍ରୟରେ ଭାବମୟ ବିଷୟଟି ଭାଷାଚିତ୍ରର ବସ୍ତୁ ପ୍ରତିମାରେ ଓ ବସ୍ତୁରୂପକଗୁଡ଼ିକ ଭାବପ୍ରତିମାରେ ରୂପାନ୍ତରିତ ହୋଇଥାଏ ।
- ଲେଖକୀୟ ସାମାନ୍ୟ ବ୍ୟକ୍ତିବୋଧଟି ଅସାଧାରଣ ଭଙ୍ଗୀରେ ବିଶ୍ୱମାନବୀୟ ଅବବୋଧରେ ରୂପାନ୍ତରିତ ହୋଇଥାଏ ।
- ତାତ୍କାଳିକ ଓ ମୁହୂର୍ତ୍ତସର୍ବସ୍ୱ ପ୍ରସଙ୍ଗ-ଚିନ୍ତା-ଧାରଣା ଚିରକାଳର ମହତ୍ତମ ସତ୍ୟ ଓ ସୌନ୍ଦର୍ଯ୍ୟରେ ରୂପାନ୍ତରିତ ହୋଇଥାଏ ।

ଏହି ପ୍ରକାର ମହତ ରୂପାନ୍ତରିତ ଧର୍ମ ଅଙ୍ଗୀକାର କରିଥିବା ଶାଶ୍ୱତ ବାଙ୍‌ମୟ ମନୀଷାର ଫସଲମାନେ ଏକରୁ ଅନେକ ଭାଷାଭୂମିରେ ଫଳିବା ପାଇଁ ଅନୁବାଦକୁ ଲୋଡ଼ିଥା'ନ୍ତି– ପୁନଶ୍ଚ ଆନୁବାଦିକ ଲୋଡ଼ିବା ପଣଟି ତ୍ରିକୋଣୀୟ ହୋଇଥାଏ–

(କ) ପ୍ରତ୍ୟେକ ବ୍ୟାବହାରିକ ଲୋକଭାଷା ମାନକ (ଷ୍ଟାଣ୍ଡାର୍ଡାଇଜ୍) ଓ ସାହିତ୍ୟିକ ମର୍ଯ୍ୟାଦାର ଭାଷାରେ ପ୍ରତିଷ୍ଠା ପାଇବାପାଇଁ ଶୈଶବ ଅବସ୍ଥାରେ ପ୍ରତିଷ୍ଠିତ ଉଚ୍ଚ ସୋପାନୀୟ ଭାଷାର ମହାନ୍ କଳାକୃତିଗୁଡ଼ିକର ଅନୁବାଦକରଣକୁ ନିଜ ଭାଷାର ମାଧ୍ୟମରେ ଲୋଡ଼ିଥାଏ ।

(ଖ) ବିକଶିତ ସଂସ୍କୃତିଟି ବିକାଶମୁଖୀ ଓ ଅବିକଶିତ ସଂସ୍କୃତିର ସଂରଚନା ବଳୟ, ଜୀବନର ଚକ୍ରାୟିତ ବିଧାନ ଓ ଲୋକାଚାରୀୟ ପ୍ରତ୍ୟୟକୁ ଜାଣିବା ପାଇଁ ସେହିସବୁର ଦାର୍ଶଣିକ ବିମ୍ବପକ୍ଷରୂପୀ ସାହିତ୍ୟ କୃତିଗୁଡ଼ିକର ଅନୁବାଦ କରିଥାଏ । ତହିଁରୁ ଅବିକଶିତ ସଂସ୍କୃତିର ଜୀବନାଦର୍ଶକୁ ବୁଝିଥାଏ ।

(ଗ) ବିକାଶମୁଖୀ ସଂସ୍କୃତିର କୃତିଗୁଡ଼ିକୁ ଜାଣିବା, ତଦନୁରୂପ ହେବା ଓ ତତ୍ସଂଲଗ୍ନୀକୃତ ହେବା ନିମନ୍ତେ ଅବିକଶିତ ସଂସ୍କୃତି ସେସବୁର ଅନୁବାଦ ନିଜ ଭାଷା ପରିଧିରେ ଲୋଡ଼ିଥାଏ ।

ସୁତରାଂ ମାନବୀୟ ବିଶ୍ୱାସ, ଜୀବନଚର୍ଯ୍ୟା ଓ ସର୍ବୋତ୍ତମ ଅନୁଭୂତିଗୁଡ଼ିକୁ ସର୍ବୋତ୍କୃଷ୍ଟ ଭାବେ ଗର୍ଭସ୍ଥ କରିଥିବା ମହିମମୟ ବାଙ୍ମୟ କୃତିକୁ ସାଂସ୍କୃତିକ ଅଭିଳାଷର ବିନିମୟ ସାଧନ ଲକ୍ଷ୍ୟ ନେଇ ମୂଳ ଭାଷାରୁ ଶ୍ରଦ୍ଧାଶୀଳ ହୃଦୟରେ ଅନ୍ୟ ଭାଷାକୁ ରୂପାନ୍ତର କରିବାର ଗୁଣାତ୍ମକ ବିଧାନକୁ ଆମେ 'ଯଥାର୍ଥ ଅନୁବାଦ' କହିପାରିବା ।

ଏହି ଯଥାର୍ଥ ଅନୁବାଦ ପ୍ରତ୍ୟେକ ଭାଷାରେ ମୌଳିକ ସାରସ୍ୱତ ସନ୍ତାନମାନଙ୍କରପୋଷ୍ୟ ଅଗ୍ରଜ । ଅନୁବାଦ, ପ୍ରତ୍ୟେକ ଭାଷାର ଗବେଷଣାଗାରରେ ମୌଳିକ ସାହିତ୍ୟର ବିହନ ସୃଷ୍ଟି ପାଇଁ ଭିତ୍ତି ଉପାଦାନ ଭାବରେ ପରୀକ୍ଷିତ ହୋଇଥାଏ । ନିଜ କଥିତ ଭାଷା ସାହିତ୍ୟ-କଳ୍ପନାରେ ବିସ୍ତାରିତ ହେବାର କ୍ଷମତା ରଖିଛି କି ନାହିଁ, ଅର୍ଥ ଦ୍ୟୋତନାର ବଳଶାଳିତା ଏହାର ରହିଛି କି ନାହିଁ, ଭାବର ଶବଳିତ ଓ ସାବଲୀଳ ରୂପାୟଣ କରିବାରେ ଏହାର ଚମତ୍କାରୀ ଗୁଣବତ୍ତା କେତେ ସର୍ଜନକ୍ଷମ– ଏ ପ୍ରକାର ପ୍ରଶ୍ନ ଓ ତା'ର ସମାଧାନ ଅନୁବାଦକର ନିଷ୍ଠାପର ପ୍ରଯତ୍ନ ଓ ସଫଳ ଆବିଷ୍କାର ଦ୍ୱାରା ପ୍ରମାଣିତ ହୋଇଥାଏ । ଏହି ମହତ୍ ପ୍ରଶ୍ନ ଓ ତା'ର ସମାଧାନର କାରଣଦର୍ଶୀ ହୋଇ ବ୍ୟାସ ଓ ହୋମରମାନଙ୍କୁ ସାରୋଳ ଚଣ୍ଡୀଦାସ ଓ ଲିଭିୟସ୍‌ଙ୍କ ଭଳି ଅନୁବାଦକମାନେ ପାଛୋଟି ଆଣି ସେମାନଙ୍କ କଳ୍ପନା-ସଂରଚନା ସହିତ ନିଜର ବିରଚନ କ୍ଷମତା ବଳରେ ନିଜ ଭାଷାରେ ଐନ୍ଦ୍ରଜାଲିକତାର ରୂପାନ୍ତରୀକରଣ ଖେଳ (Play of trans-mogrification) ଖେଳନ୍ତି । ପୃଥିବୀର ଅଧିକାଂଶ ବ୍ୟୁତ୍ପତ୍ତି-ମୂଳକ ଭାଷାମାନଙ୍କର ଉନ୍ମେଷ କାଳରେ ଏ ପ୍ରକାର ଅନୁବାଦର ଖେଳ ଖେଳାଯାଇଥାଏ । ଅନୁବାଦ ପ୍ରାବୃତ୍ତିକ ଖେଳର ନିଷ୍ଠାପର ଖେଳାଳୀ ଓ ସେମାନଙ୍କ

ରଚନା ଫଳଶ୍ରୁତିଗୁଡ଼ିକ ଆମ ପାଖରେ ଚାହିଁବା, ଖୋଜିବା ମାତ୍ରେ ଆସି ଧାଡ଼ିବାନ୍ଧି ଛିଡ଼ା ହୋଇଯିବେ । ପ୍ରଥମ ଶତାବ୍ଦୀ ବେଳକୁ ସିସେରୋଙ୍କ ଦୃଷ୍ଟିଭଙ୍ଗୀ ଅନୁବାଦର ବିଶେଷତ୍ୱକୁ ଶବ୍ଦରୁ ଭାବାଭିମୁଖୀ କରିଛି । 'ମୂଳ ଲେଖାର ଶବ୍ଦମେଳିକୁ ଅନୁଦିତ ଭାଷାର ଶବ୍ଦମେଳିରେ ଅବିକଳ ଅର୍ଥରେ ରୂପାନ୍ତରିତ କରିବା ଅନୁବାଦ ନୁହେଁ । 'ଅନୁବାଦ ଭାବରୁ ଭାବକୁ ଭାଷାନ୍ତରୀକରଣ'– ସିସେରୋଙ୍କ ଏହି ଅର୍ଥକରଣ ଅନୁସାରେ ଅନୁବାଦ କଳାର ଖେଳ କେବଳ ଲିପ୍ୟନ୍ତରକରଣ ଓ ଶବ୍ଦର ସ୍ଥାନଗତ ରୂପାତ୍ମକ ପରିବର୍ତ୍ତନ ମଧ୍ୟରେ ସୀମାବଦ୍ଧ (Enclosed with only tansliterate/transpose) ନ ରହି ଭାବାନ୍ତରୀକରଣତାର ବିଶ୍ୱସ୍ତତା, ନିଷ୍ଠାପରତା ଓ ଅର୍ଥାତ୍ମକ ସୌନ୍ଦର୍ଯ୍ୟର ଭିନ୍ନଗୋତ୍ରୀକରଣ ଉପରେ ପର୍ଯ୍ୟବସିତ ହୋଇଉଠିଛି । ଶବ୍ଦରୁ ଶବ୍ଦ ଅଭିଧାନ ସୁନ୍ଦରୀର ଆଶ୍ରୟରେ ଅନ୍ୟଭାଷୀ କରିବା ଅନୁବାଦ ନୁହେ; ବରଂ ଶ୍ରଦ୍ଧାଶ୍ରିତ ହୋଇ ଭାବରମଣୀକୁ ଅନ୍ୟ ଭାଷାକୁ ସାଂସ୍କୃତିକ ପ୍ରସିଦ୍ଧି ଅନୁରୂପ କରି ସଂଚାଳି ନେବାର ସରମ୍ୟ ସାରସ୍ୱତୀୟ ବ୍ୟାପାର ହିଁ ଅନୁବାଦର ସ୍ୱଧର୍ମ ହୋଇଛି ।

ନବଜାଗରଣ ପର୍ଯ୍ୟାୟରେ ଯୁକ୍ତିବାଦ ଓ ତର୍କଣାର ଚାହାଁଣି ଅନୁବାଦକୁ ଏକ କଳାତ୍ମକ ଦାୟବଦ୍ଧତାର ସାହିତ୍ୟିକ ପ୍ରଜାତିରେ ସ୍ୱତନ୍ତ୍ର ପ୍ରସିଦ୍ଧି ଦେଇଛି । ଅନ୍ୟକ୍ଷେତ୍ରରୁ ଅନୁବାଦକ ଅନୁବାଦନୀୟ ବିଷୟ ଓ କଳାକୃତିଟିଏ ନିଜ ପସନ୍ଦରେ ନିର୍ବାଚନ କରିବା, ନିଜର ସାଂସ୍କୃତିକ ପରିସ୍ପନ୍ଦ (Cultural-discourse) ସହିତ ତାହାକୁ ମିଶାଇ ସ୍ୱୀକରଣ କରିବା ଦ୍ୱାରା ଭାବର ସାଂସ୍କୃତିକ ବିନିମୟ ସଂଘଟିତ ହୁଏ– ଏ ଧାରଣା ବଳିଷ୍ଠ ହୋଇଛି । ଅନୁବାଦ ମାଧ୍ୟମରେ ଲକ୍ଷ୍ୟ ଭାଷାରେ ଅନୁବାଦକର ଶ୍ରଦ୍ଧାଶୀଳ ଉଦ୍ୟମରେ ଉତ୍ସଭାଷୀ ଲେଖକୀୟ କଳ୍ପନା ଓ ଲେଖାର ଭାବାତ୍ମାର ସହଜରେ ଅନୁପ୍ରବେଶ (ଥେମାଟିକ୍ ଟ୍ରାନ୍ସମାଇଗ୍ରେସନ୍) ଘଟିଥାଏ । ଭାବର ଘଟାନ୍ତରୀକରଣ ଘଟିବା ଫଳରେ ଗୋଟିଏ ଭୂଖଣ୍ଡର ଲେଖକ ଭାବନାରେ ବିଶ୍ୱସ୍ତ ଚିତ୍ରରୂପ ପାଇଥିବା ସାଂସ୍କୃତିକ ବିଶ୍ୱାସ, ଅଭିଳାଷ, ଆବେଗ, ସ୍ପନ୍ଦନ, କୃତାଙ୍ଗ ଓ ପରିସ୍ପଦ ଅନ୍ୟ ଭୂଖଣ୍ଡର ପାଠକ ପାଖରେ ବିନିର୍ମାଣ-ମୂଳା ଚିତ୍ରରୂପବତ୍ ପ୍ରତିଭାସିତ ହୋଇଉଠେ । ଏକ ପକ୍ଷରେ ସୌନ୍ଦର୍ଯ୍ୟର ନିର୍ବାଚନ, ଅନୁଭବ ଓ ଗୋଟିଏ ସ୍ତରରୁ ଅନ୍ୟ ସ୍ତରକୁ ସଂଚାର କରାଇ ନେବାର ଅନୁରାଗ ମାନସିକତା ସହିତ ଅନୁବାଦ ପ୍ରତ୍ୟକ୍ଷ ସମ୍ପର୍କ ରଖୁଥିବାରୁ ଏହା ଏକ ସ୍ୱତନ୍ତ୍ର ବାଙ୍ମୟ କଳା । ଅନ୍ୟ ପକ୍ଷରେ ସାରସ୍ୱତ କର୍ମର ଆବେଦନ ଚାରାଟିକୁ ଗୋଟିଏ ଭାଷାଭୂମିର ବଗିଚାରୁ ଆଣି ଅନ୍ୟ ଭାଷା ପରିଧିରେ ପାଠକୀୟ ରୁଚି ଓ ପ୍ରୟୋଜନ ମାନସିକତାର ଅନୁକୂଳ କରି ପ୍ରତିରୋପଣ କରିବାର କୌଶଳ ଏହାକୁ ପ୍ରାୟୋଗିକ ବିଜ୍ଞାନ ବ୍ୟାପାର ଭାବରେ ଯୁକ୍ତିସାପେକ୍ଷ ଭିତ୍ତି ଉପରେ ପ୍ରତିଷ୍ଠା ଦେଇଛି । ସୁତରାଂ ସୃଜନରୁ ଅନୁସୃଜନ କରିବା ଏବଂ ଭିନ୍ନଭାଷୀ ଭୂଖଣ୍ଡରେ ମୂଳ ଲେଖାର ଆରୋପଣ କରିବା ଦିଗରୁ ଅନୁବାଦ ଏକାଧାରରେ କଳା ବିଜ୍ଞାନର ସମିଶ୍ରିତ

ସ୍ୱଧର୍ମରେ ପରିଭାଷିତ ହୋଇଆସିଛି । ଅନୁବାଦକୁ ଏହି ମର୍ମରେ ରେନେସାଁସ୍‌ର ହେତୁବାଦୀ ଚିନ୍ତାନାୟକ ଲିରୋଞ୍ଜୋ ଅଭିନବତ୍ୱର ଓ ପ୍ରେରଣା ପ୍ରବୋଧିତ ନବଜାଗୃତିର ଅନ୍ୟତମ ଚାବିକାଠି ଓ ଉପକାରକ ରୂପେ ଗ୍ରହଣ କରିଛନ୍ତି । ତାଙ୍କ ମତରେ– ଅନୁବାଦ ନବଜାଗରଣ ନୂଆ ମଣିଷ ନିର୍ମାଣରେ ଗୁଣନୀୟକ ଭୂମିକା ନିର୍ବାହ କରିଛି । ଅନୁବାଦ ଦ୍ୱାରା ଭିନ୍ନଭାଷାର ଜ୍ଞାନ, କଳ୍ପନା ଓ ଚିନ୍ତାଧାରାଗୁଡ଼ିକୁ ଜାଣି ତଦନୁସାରୀ ହେବା ଏବଂ ତଦାପେକ୍ଷା ଅଭିନବ ଓ ସମୃଦ୍ଧଶାଳୀ ହେବାର ସଚେତନତା ଲକ୍ଷଣୀୟ ଭୂଖଣ୍ଡର ପାଠକମାନଙ୍କଠାରେ ବୃଦ୍ଧିପାଇଛି ।

ଏଠାରେ ଅନ୍ୟ ଗୋଟିଏ ବିଷୟ ବିତର୍କକୁ ଅନୁବାଦକଳା ଅନୁରାଗୀମାନଙ୍କ ପାଖରେ ଉପସ୍ଥାପନନ କରାଯାଉଛି । ଇଂରେଜୀ ଭାଷା-ସାହିତ୍ୟ (ୟୁରୋ ଭୂଖଣ୍ଡର ଶିଳ୍ପ ସଭ୍ୟତା ଓ ଗାଣତାନ୍ତ୍ରିକ ମୂଲ୍ୟବୋଧର ବିକାଶ ଇତିହାସର ପଟ୍ଟଭୂମିରେ) ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀ ବେଳକୁ ଲାଟିନ୍, ଇଟାଲୀୟ, ଫରାସୀ, ସ୍ପେନ୍, ଜର୍ମାନ୍ ଇତ୍ୟାଦି ଅନ୍ୟାନ୍ୟ ଭାଷାଭାଷୀମାନଙ୍କୁ ଅନୁସରଣ କରି, ଏପରିକି ସେମାନଙ୍କ ମହାନ୍ ଗ୍ରନ୍ଥର ଅନୁବାଦ କରି ନବଜାଗୃତ ହୋଇଛି । ଏହି ଅନୁବାଦ ଦ୍ୱାରା ଇଂରେଜୀ ଭଦ୍ର ସମାଜର ତିନୋଟି ସାମ୍ରାଜ୍ୟବାଦୀ ଆଭିମୁଖ୍ୟ ଫଳପ୍ରଦ ଓ ଲକ୍ଷ୍ୟନିଷ୍ଠ ହୋଇଉଠୁଛି । ପ୍ରଥମତଃ ସେମାନେ ବିଶ୍ୱର ବାଣିଜ୍ୟ କୋଠି ଓ ଉପନିବେଶ ସୃଷ୍ଟି କରିବା ପାଇଁ ନିର୍ବାଚନ କରିଥିବା ଭୂଖଣ୍ଡ ଗୁଡ଼ିକର ଭାଷା, ସଂସ୍କୃତି ଓ ଲୋକାଚାରୀୟ ମାନସିକତାକୁ ଅନୁଦିତ ଗ୍ରନ୍ଥର ଚିତ୍ର-ଚରିତ୍ର-ଭାଷାର ପ୍ରାୟୋଗିକ ପରିସ୍ପନ୍ଦ ଭିତ୍ତିରେ ଅବଗତ ହୋଇଛନ୍ତି । ଦ୍ୱିତୀୟତଃ ଅନୁବାଦ ଗ୍ରନ୍ଥର ଅଧ୍ୟୟନ ଦ୍ୱାରା ଭିନ୍ନଭାଷୀ ଅଞ୍ଚଳର ମହତ୍ ଓ ସମୃଦ୍ଧ ତଥ୍ୟଗୁଡ଼ିକୁ ଆପଣା ସହିତ ମିଶାଇ ପାରିଛନ୍ତି । ତୃତୀୟତଃ ଅନ୍ୟକୁ ଜାଣି ସେମାନଙ୍କ ଦୁର୍ବଳତା, ସାଂସ୍କୃତିକ ଶବଳତା ଓ ଶାସନଗତ ସବଳତା ଇତ୍ୟାଦିକୁ ବୁଝି ସେମାନଙ୍କଠାରୁ ନିଜକୁ ବଳିଷ୍ଠ କରି ଅତିକ୍ରମ କରିବାର ଉପାୟଟିକୁ ଅନୁବାଦ ମାଧ୍ୟମରେ ଶିଖି ନେଇଛନ୍ତି । ଭାରତରେ ଉପନିବେଶବାଦୀ ସାମ୍ରାଜ୍ୟବାଦର କ୍ରମବିସ୍ତାର ସାଧନ କରିବା ବେଳକୁ ଭାରତକୁ ଚିହ୍ନିବା, ଜାଣିବା ଓ ଭାରତୀୟ ରୁଚି ଅନୁରୂପ ଶାସନ ବିଧାନଟିଏ ନିର୍ମାଣ କରିବା ପାଇଁ ଇଂରେଜ ଜାତି ବିଶେଷ କରି ଭାରତୀୟ ବିଶିଷ୍ଟ ଗ୍ରନ୍ଥଗୁଡ଼ିକୁ ଅନୁବାଦ ମାଧ୍ୟମରେ ଅଧ୍ୟୟନ କରିଛନ୍ତି । ଅନ୍ୟାନ୍ୟ ଉପନିବେଶବାଦୀ ବଳୟରେ ସମ୍ପୃକ୍ତ ଥିବା ଭୂଖଣ୍ଡଗୁଡ଼ିକ ପ୍ରତି ଅନୁରୂପ ଆନୁବାଦିକ-ତଥ୍ୟ-ଆହରଣ କୌଶଳକୁ ସାମ୍ରଜ୍ୟବାଦୀ ସଂସ୍କୃତିଗ୍ରହଣ କରି ଆସିଛି । ଏକଥା ସତ୍ୟ ଅନୁବାଦକଳା ଉପନିବେଶବାଦର ପ୍ରସାର ପାଇଁ ଭିତ୍ତି ତଥ୍ୟ ଅବଗତିର ମାର୍ଗ ସରଳ କରି ଦେଇଥିଲେ ବି ଏହା ଦ୍ୱାରା ସମଗ୍ର ମାନବ ଜାତି ପାଇଁ ଗୋଟିଏ ଅନୁପମ କଲ୍ୟାଣ ସମ୍ଭବ ହୋଇଛି, ତାହା ହେଉଛି ସାହିତ୍ୟକୁ ମାଧ୍ୟମ କରି ଅନୁବାଦ ମାଧ୍ୟମରେ ସମଗ୍ର ବିଶ୍ୱସ୍ତରରେ ଜାତି-ଜାତି, ଧର୍ମ-ଧର୍ମ, ଗୋଷ୍ଠୀ-ଗୋଷ୍ଠୀ, ରାଷ୍ଟ୍ର-ରାଷ୍ଟ୍ର, ସଂସ୍କୃତି-

ସଂସ୍କୃତି ଓ ମାନବ-ମାନବ ମଧ୍ୟରେ ଭାବଗତ, ଜ୍ଞାନଗତ, ଚିନ୍ତାଗତ, କୌଶଳଗତ, ବୃତ୍ତିଗତ ଓ ଶାସନଗତ ବିଚାର-ବିଶ୍ୱାସର ବିନିମୟ ସାଧିତ ହୋଇପାରିଛି। ମହାନ୍ ଗ୍ରନ୍ଥମାନଙ୍କରେ ଥିବା (କେବଳ ଉପନ୍ୟାସ, ଗଳ୍ପ, କବିତା, ନାଟକ, ମହାକାବ୍ୟ, କାବ୍ୟ, ଖଣ୍ଡକାବ୍ୟ, ପ୍ରବନ୍ଧ ଇତ୍ୟାଦି ସାହିତ୍ୟିକ ପ୍ରଜାତିର ଗ୍ରନ୍ଥ ନୁହେଁ; ଏଥିସହିତ ବିଜ୍ଞାନ, ବାଣିଜ୍ୟ, ଭୂଗୋଳ, ଦର୍ଶନ, ଗଣିତ, ତର୍କଶାସ୍ତ୍ର ଇତ୍ୟାଦି ବିବିଧ ବିଷୟକ ଗ୍ରନ୍ଥ ମଧ୍ୟ) ମହତ୍ ବିଚାର ଓ ବିଶିଷ୍ଟ ଚିନ୍ତାଧାରାର ଗୋଟିଏ ଭାଷାରୁ ଅନ୍ୟ ଭାଷାକୁ, ଗୋଟିଏ ଭୂପୃଷ୍ଠରୁ ଅନ୍ୟ ଭୂକୋଣକୁ ପୁନରାୟ ବହିର୍ଗମନ ଓ ଅନ୍ତର୍ଗମନ [illegible] ଏବଂ ସାଂସ୍କୃତିକ ସମ୍ପର୍କର ସଂଯୋଗୀକରଣ ଘଟିଛି। ଶାସ୍ତ୍ରୀୟତା ଓ ମହିମମୟ ଜ୍ଞାନଗୁଡ଼ିକ ନିର୍ଦ୍ଦିଷ୍ଟ ଭୂଖଣ୍ଡର ପଟାପ୍ରାପ୍ତ ସମ୍ପତ୍ତି ହୋଇ ରହିନାହିଁ। ଏହା ସାର୍ବିକ ମଣିଷର ଚିନ୍ତାଧାରା ରୂପେ ସନ୍ନଦ୍ଧ ଓ ସମବାୟିତ ହୋଇଯାଇଛି। ରେନେସାଁସ୍‌ର ବିକାଶ ବେଳକୁ ଇଂରାଜୀଭାଷୀ ଭୂଖଣ୍ଡରେ ବେଦ, ଉପନିଷଦ, ପଞ୍ଚତନ୍ତ୍ର, ଅର୍ଥଶାସ୍ତ୍ର, କାମସୂତ୍ର, ହର୍ଷଚରିତ, ମେଘଦୂତ, ଗୀତା, ଅଭିଜ୍ଞାନଶାକୁନ୍ତଳଂ, ରାମାୟଣ, ମନୁସଂହିତା, ବୌଦ୍ଧନିକାୟ ଓ ବୌଦ୍ଧଜାତକ ଇତ୍ୟାଦି ଉଚ୍ଚାଙ୍ଗ ସାହିତ୍ୟ ଭାବରେ ଅନୁବାଦିତ ହୋଇ ଭାରତୀୟ ଶାସ୍ତ୍ରୀୟ କଳ୍ପନା ଓ ଭାବବୃତ୍ତ ପ୍ରତି ସେଠାରେ ସଚେତନତା ଆସିସାରିଛି। ସମୁନ୍ନତ ରଚନା ଭିତରେ ମାନବୀୟ ଉଚ୍ଚାଙ୍ଗ ଦର୍ଶନର ସମରୂପତାକୁ ଅନୁସଂଧାନ କରିବା ସଭ୍ୟ ଜାତିର 'ପରିପକ୍ୱତା'ର ପ୍ରମାଣ– ଏ ପ୍ରକାର ଏକ ବିଚାର ପଶ୍ଚିମ ଭୂଖଣ୍ଡରେ ବିଶ୍ୱର ଯାବତୀୟ ଭାଷାର ସାହିତ୍ୟଭଙ୍ଗୀ ଓ ମୌଖିକ ବଚନ ଭଙ୍ଗୀରେ ସହସାଦୃଶ୍ୟ ସଂଧାନ ପାଇଁ ଉଚ୍ଚ ମସ୍ତିଷ୍କମାନଙ୍କୁ ଉର୍ବର କରିଛି। ଏହି ଉର୍ବରତାର ମୂଳ ନିଦାନ ହୋଇଛି ଅନୁବାଦ କଳା। ଅନୁବାଦକର ମସ୍ତିଷ୍କ କ୍ରୀଡ଼ାରେ ଅନୁବାଦ ଏକ କଳା ରୂପରେ ସର୍ଜନରୂପ ପାଇଛି ଏବଂ ପାଠକ ମସ୍ତିଷ୍କରେ ଏହାର ଆବେଦନ ବିଜ୍ଞାନବତ୍ ପ୍ରାୟୋଗିକ ଚିନ୍ତାବୃଦ୍ଧିର ଖେଳ ଖେଳିଛି।

ଭାରତକୁ ଏକ ସାଧାରଣ ବାଣିଜ୍ୟିକ ଉପନିବେଶ ଭାବରେ ଗ୍ରହଣ କରିଥିଲେ ମଧ୍ୟ ରେନେସାଁସ୍‌ର ବୈପ୍ଳବିକ ସମୃଦ୍ଧି ଓ ଜ୍ଞାନ-ପ୍ରଦୀପ୍ତ ପର୍ଯ୍ୟାୟରେ ଫ୍ରାନ୍‌ସ ଓ ଇଂଲଣ୍ଡର ଉଦାରମନା ବିକଶିତ ମସ୍ତିଷ୍କମାନେ ଯେଉଁ କେତୋଟି ଭାରତୀୟ ଗ୍ରନ୍ଥକୁ ଅନୁବାଦ କରି ନିଜ ନିଜର ଭୂଖଣ୍ଡରେ ଓ ସମଗ୍ର ୟୁରୋପୀୟ ଭାବମାନସରେ ଭାରତୀୟ ସାଂସ୍କୃତିକ ବିଶ୍ୱାସ ଓ ସ୍ପନ୍ଦନର ସୁନ୍ଦରତମ ଚିନ୍ତାଧାରାଗୁଡ଼ିକୁ ସଂପ୍ରେଷିତ ଓ ସୁପ୍ରଚାରିତ କରିଛନ୍ତି, ସେସବୁ ମଧ୍ୟରେ ଗୋହ୍ଲଫ କାପୁଆଙ୍କ ଲାଟିନ୍ ଭାଷାରେ ୧୨୭୦ରେ ଏବଂ ଏ.ଏଫ୍.ଡୋନୀଙ୍କ ଲାଟିନ୍‌ରୁ ଇତାଲୀୟ ଭାଷାରେ ୧୫୫୨ରେ ଅନୂଦିତ ପଞ୍ଚତନ୍ତ୍ର, ଲାଟିନ୍-ଇତାଲୀୟ ସୃଷ୍ଟିର ଅନୁସରଣତାରେ ୧୫୭୦ରେ ଏଲିଜାବେଥ୍‌ଯୁଗର ବିଶିଷ୍ଟ ଲେଖକ ସାର୍ ଥୋମାସ୍ ନର୍ଥଙ୍କ ଇଂରାଜୀ ଅନୂଦିତ ପଞ୍ଚତନ୍ତ୍ର, ୧୭୮୭ରେ ଚାର୍ଲସ

ଉଇଲିକିନ୍‌ସଙ୍କ ଇଂରାଜୀ ଅନୂଦିତ ହିତୋପଦେଶ, ୧୭୮୯ରେ ଉଇଲିୟମ ଜୋନ୍‌ସଙ୍କ ଦ୍ୱାରା ଅନୂଦିତ ଶକୁନ୍ତଳା, ୧୭୯୧ରେ ଗେଟେଙ୍କ ଦ୍ୱାରା ଜର୍ମାନୀ-ଛାୟାନୂଦିତ 'ଶକୁନ୍ତଳା', ୧୮୫୯ରେ ଥିଓଡୋର୍ ବେନ୍‌ଫିଙ୍କ ସିଧାସଳଖ ସଂସ୍କୃତରୁ ଇଂରାଜୀରେ ଅନୂଦିତ ପଞ୍ଚତନ୍ତ୍ର ଓ ୧୮୪୮ରେ ସାମବେଦର ସ୍ତୋତ୍ରାବଳୀ, ୧୮୬୦ରେ ଏଡ୍‌ଉଇନ୍ ଆର୍‌ନୋଲ୍‌ଡଙ୍କ ଇଂରାଜୀ ଅନୂଦିତ ଗୀତଗୋବିନ୍ଦ, ୧୮୫୧ରେ ରୋର୍‌ଙ୍କ ଦ୍ୱାରା ଇଂରାଜୀ ଅନୂଦିତ 'ସାହିତ୍ୟଦର୍ପଣ' ୧୮୫୭ରେ କାପ୍‌ଲରଙ୍କ (Cappeller) ଦ୍ୱାରା ଅନୂଦିତ କାବ୍ୟାଳଙ୍କାର ବୃତ୍ତି (ବାମନାଚାର୍ଯ୍ୟଙ୍କ ଲିଖିତ), ଫିଜିଡ୍‌ୱାର୍ଡ ହଲ୍‌ଙ୍କ ଦ୍ୱାରା ୧୮୬୪ରେ ଅନୂଦିତ ବିଷ୍ଣୁପୁରାଣ, ବୌଦ୍ଧଗ୍ରନ୍ଥ 'ମହାବଂଶ', ୧୮୩୫ରେ ଜି. ଟର୍ଣ୍ଣରଙ୍କ (G. Turnour) ଦ୍ୱାରା ଇଂରାଜୀ ଅନୂଦିତ ଓ ୧୮୪୮ରେ ଲଞ୍ଜଲିସ୍‌ଙ୍କ ଦ୍ୱାରା ଫରାସୀ ଭାଷାରେ ଅନୂଦିତ ଋଗ୍‌ବେଦ ସଂହିତା, ୧୮୬୩ରେ ହିପୋଲାଇଟଙ୍କ ଦ୍ୱାରା ଅନୂଦିତ ଫରାସୀଭାଷୀ ମହାଭାରତ ଓ ମାକ୍‌ସମୁଲାର୍‌ଙ୍କ 'ବେଦ' ଇତ୍ୟାଦି ହେଉଛି ଉଲ୍ଲେଖଯୋଗ୍ୟ। ଏସବୁ ଅନୁବାଦ ଗ୍ରନ୍ଥ ଭାରତୀୟ ମହାନ୍ ଗ୍ରନ୍ଥ ଓ ଗ୍ରନ୍ଥ-ରଚକମାନଙ୍କ ଶାଶ୍ୱତ ସତ୍ୟାନୁଭୂତିର ମାନସିକ ସ୍ପନ୍ଦନଗୁଡ଼ିକୁ ୟୁରୋ ମାନସିକ ଅବସ୍ଥାରେ ପୁନର୍ନିର୍ମିତ କରିଛି। ଏସବୁ ଅନୁବାଦର ବିଶେଷତ୍ୱ ହେଉଛି– ଏ ସବୁରେ ଭାରତୀୟ ଲେଖକମାନଙ୍କର ମୌଳଭାବର ଆସ୍ୱାଦମୟତା ବିଶ୍ୱସ୍ତ ରୂପେ ରହିଛି ଏବଂ ୟୁରୋ ସଂସ୍କୃତିବୋଧ, ରୁଚି ଓ ମାନସିକ ଧାରଣା ସହିତ ସମମୂଲ୍ୟ ରକ୍ଷା କରିଛି। ସଂସ୍କୃତ ଭାଷାର ମୂଳ ଲେଖା ୟୁରୋପ ଭାଷାରେ ସମମୂଲ୍ୟ ବା ଆନୁରୂପିକ ସୌନ୍ଦର୍ଯ୍ୟରେ ରୂପାନ୍ତରିତ ହୋଇଉଠିଛି। ଏଗୁଡ଼ିକ ଯେତିକି ମୂଳାନୁଗ ସେତିକି ଅନୁବାଦ ଭାଷାଭାଷୀ ପାଠକର ଚାହିଦା, ରୁଚି, ସଂସ୍କୃତି ଅନୁସାରେ ସ୍ୱଚ୍ଛନ୍ଦ ହେବା ସଙ୍ଗେ ସଙ୍ଗେ ଭାରତୀୟ ଶାସ୍ତ୍ରୀୟବୋଧଗୁଡ଼ିକର ଏକ 'ସମ୍ବାଦବେଦୀ' ପଶ୍ଚିମ ଭୂଖଣ୍ଡରେ ସୃଷ୍ଟି କରିପାରିଛି। ଫଳତଃ ଅନୁବାଦ ପୂର୍ବ ପଶ୍ଚିମ ସଂଯୋଗ ତତ୍ତ୍ୱର ବା ଭାବବିନିମୟତାର ତାତ୍ତ୍ୱିକ ପ୍ରେରଣାକର୍ମ ଭାବରେ ପ୍ରତିବିମ୍ବିତ ହୋଇଉଠିଛି।

ସ୍ଥାନୀୟତାର ବିଶ୍ୱାସ, ଧର୍ମ, ଭୂଗୋଳ ବିଶେଷତା, ସାଂସ୍କୃତିକ ଅଭିଳାଷ ଓ ଜୀବନର ଯାବତୀୟ ମୂଲ୍ୟବୋଧକୁ ଜାଣିବା ପାଇଁ ୟୁରୋପୀୟ ସାମ୍ରାଜ୍ୟବାଦୀ ମାନସିକତା ପ୍ରଥମେ ଉପନିବେଶଗୁଡ଼ିକର ଉଚ୍ଚାଙ୍ଗ କୃତିକୁ ଅନୁବାଦ କରି ପଢ଼ି ଓ ଶାସନ ସହଜୀକରଣ ସୂତ୍ରଗୁଡ଼ିକୁ ଖୋଜି ପାଇଛନ୍ତି। ଉପନିବେଶଗୁଡ଼ିକର ଆଗୁଆ ହେବା ଆକାଂକ୍ଷିତ ମଧ୍ୟବିତ୍ତ ମନମାନେ ସାମ୍ରାଜ୍ୟବାଦୀ ପ୍ରଭୁସତ୍ତାର ରଚନାଗୁଡ଼ିକର ଅନୁବାଦରୁ ସେମାନଙ୍କର ପ୍ରଭୁତ୍ୱ ବିସ୍ତାରର ଗୁଣଗୁଡ଼ିକୁ ଖୋଜି ଗ୍ରହଣ କରିଛନ୍ତି। କ୍ରମଶଃ ଅନୁବାଦ ଦ୍ୱାରା ଶାସକ ସଂସ୍କୃତି ଓ ଶାସିତ ସଂସ୍କୃତି ପରସ୍ପର ଭିତରେ ଆଚରଣ ଜ୍ଞାନ ଓ ଆସ୍ଥାବୋଧର ଆଦାନ ପ୍ରଦାନ କରିପାରିଛନ୍ତି। ପ୍ରଥମ ବିଶ୍ୱଯୁଦ୍ଧ ପୂର୍ବରୁ ଶିଳ୍ପ-ସଭ୍ୟତାର ପ୍ରସାର ଭିତ୍ତିରେ ପ୍ରତ୍ୟେକ ଭୂଖଣ୍ଡର

ଉନ୍ନତ ଚିନ୍ତାଧାରା ଓ ଅଭିନବ ଜ୍ଞାନଗୁଡ଼ିକ ବିଶ୍ୱଜନୀନ ହେବାକୁ ଲାଗିଛନ୍ତି। ଅନ୍ୟକୁ ଜାଣିବା, ଅନ୍ୟର ଅନୁରୂପ ହେବା ଓ ଅନ୍ୟକୁ ଟପିଯିବାର ବୈଷୟିକ ବସ୍ତୁତାନ୍ତିକ ପ୍ରତିଯୋଗିତା ଅନୁବାଦ କଳାର ଗବାକ୍ଷକୁ ଉନ୍ମୁକ୍ତ କରିଦେଇଛି। ପଶ୍ଚିମରୁ ପୂର୍ବକୁ ଓ ପୂର୍ବରୁ ପଶ୍ଚିମକୁ ବିଶିଷ୍ଟ ଗ୍ରନ୍ଥମାନଙ୍କର ଚଳପ୍ରଚଳ ଘଟିଛି। ଦ୍ୱିତୀୟ ବିଶ୍ୱଯୁଦ୍ଧପରେ ଜ୍ଞାନଧାରାର, ଦର୍ଶନ ବିଚାରର, ମନନଶୀଳ ଚେତନାର ଓ ରାଜନୀତିକ ସମ୍ମାନବୋଧର ପ୍ରତିଯୋଗିତା ଅପେକ୍ଷା ମାନବୀୟ ଭାବଗୁଡ଼ିକର ସର୍ବତ୍ର ସର୍ବତୁଲ୍ୟ ଭାବରେ ଆଦରଣୀୟ ପ୍ରତିଷ୍ଠା ପାଇବା ଉପରେ ଗୁରୁତ୍ୱ ଆରୋପ କରାଯାଇଛି। ସାହିତ୍ୟର ଗୁଣାତ୍ମକ ଆନୁବାଦିକ ପ୍ରରୋଚନାରେ ବିଶ୍ୱାୟିତ ସମଦର୍ଶୀତାର ଭାବ ପ୍ରତ୍ୟେକ ଭୂଖଣ୍ଡର ସର୍ଜନଶୀଳ ମାନସିକତାକୁ ଆବୋରି ବସିଛି। ଅନୁବାଦ କଳା ମାଧ୍ୟମରେ ଆଂଚଳିକତା ବିଶ୍ୱମୁଖୀ ହୋଇଛି। ତୁଳନାତ୍ମକ ବିଶ୍ୱସାହିତ୍ୟର ଅନୁବିଧିରେ ସବୁ ଭାଷାର ଉନ୍ନତ ସାହିତ୍ୟିକ ଭାବନାରେ ଓ ମାନବୀୟ ସର୍ଜନଶୀଳ ସଂରଚନାରେ ସମତୁଲ୍ୟତା ଓ ନବପ୍ରସିଦ୍ଧିରେ ଏକମୁଖୀନତା ଆଣିବା ନିମନ୍ତେ ଅନୁବାଦର ଉପଯୋଗିତାକୁ ସମର୍ଥନ କରାଯାଇଛି। ୧୯୬୦ ମସିହା ପରେ ପରେ ତୁଳନାତ୍ମକ ସାହିତ୍ୟ ପରିଚର୍ଯ୍ୟାରେ ଅନୁବାଦ ଦ୍ୱାରା ଭାଷା-ଭାଷା, ସାହିତ୍ୟ-ସାହିତ୍ୟ, ଅବବୋଧ-ଅବବୋଧ ମଧ୍ୟରେ ସମତୁଲ୍ୟତାର ମିଳନବେଦୀ ନିର୍ମିତ ହୋଇଉଠିଛି। ଉତ୍ତର-ଉପନିବେଶବାଦୀ ବିକାଶଶୀଳ ଇଚ୍ଛାବୃତ୍ତିର ରାଷ୍ଟ୍ରଗୁଡ଼ିକ ସ୍ୱାଧୀନ ଦୃଷ୍ଟିଭଙ୍ଗୀ ନେଇ ମାନବିକ ମୂଲ୍ୟବୋଦର ପ୍ରତିଷ୍ଠା ପାଇଁ ଅନୁବାଦ କଳାକୁ ଭାବର ଆଦାନପ୍ରଦାନ ଓ ବିନିମୟାତ୍ମକ ପ୍ରଚାରର ଉତ୍ସଶକ୍ତି ଭାବରେ ଗ୍ରହଣ କରିଛନ୍ତି। ପୁନଶ୍ଚ ବିଶ୍ୱର ଶିଳ୍ପୋନ୍ନତ ଓ ଗାଣତାନ୍ତିକ ବ୍ୟବସ୍ଥାର ମଧ୍ୟବିତ୍ତ ଭଦ୍ର ସମାଜ ନିକଟରେ ପାରସ୍ପରିକ ବୁଝାମଣା ସହିତ ଅପରର ସାଂସ୍କୃତିକ ପରିମଳକୁ ଅବଧାରଣାକୁ ଆଣିବା ନିମନ୍ତେ ଅନୁବାଦକୁ ଆଧାରଶିଳା ଭାବରେ ଗ୍ରହଣ କରାଯାଇଛି। ୧୯୯୦ ମସିହା ପରେ ପରେ ମାନବୀୟ ଭାବମେଳକର ବିଶ୍ୱଗ୍ରାମୀୟ କଳାବୃତ୍ତଟିଏ ନିର୍ମାଣ କରି ସମଗ୍ର ମାନବସମ୍ବଳକୁ ଏକସୂତ୍ରରେ ଗୁନ୍ଥିବାର ମହତାଭିଳାଷ ଚରିତାର୍ଥ ନିମନ୍ତେ ଜ୍ଞାନ-ବିଜ୍ଞାନର ମହତ କୃତିଗୁଡ଼ିକର ଅନୁବାଦକୁ ବିଶ୍ୱମୈତ୍ରୀର ସଂଯୋଗ ସେତୁ/ପ୍ରାୟୋଗିକ ସର୍ଜନଶୀଳ କଳାମାଧ୍ୟମର ଚାରମାଳ ରୂପେ ମାନ୍ୟତା ଦିଆଯାଉଛି।

ଭାରତ ଭଳି ବହୁଭାଷୀ ଓ ବହୁ ଲୋକାଚାରୀୟ ସଂରଚନାରେ ବ୍ୟବସ୍ଥିତ ଭୂଖଣ୍ଡରେ ଅନୁବାଦ ହିଁ ସାଂସ୍କୃତିକ ସଂହତିର ସୁରକ୍ଷା କବଚ। ପ୍ରତିବେଶୀ ସମ୍ବନ୍ଧ ସୂତ୍ରରେ ଜଡ଼ିତ ପ୍ରାଦେଶିକ ଭୂଖଣ୍ଡ ଭିତରେ ଶ୍ରେୟବୋଧର ଓ ସାଂସ୍କୃତିକ ଅଭିଳାଷଗୁଡ଼ିକର ସଂଶ୍ଳେଷଣ ନିମନ୍ତେ ଭାଷାନ୍ତରୀକରଣ ଅନ୍ୟତମ ଶୁଭଗ ଉପାୟ ଓ ଆଶ୍ରୟ ଅଟେ। ଆଂଚଳିକତାର ଭିନ୍ନ ଭିନ୍ନ ଉପାଦାନରେ ଗଠିତ ପାଚେରୀଗୁଡ଼ିକୁ ଭାଙ୍ଗି-ଟପି-ମିଶାଇ

ଏକ ସମୂହ ଦୃଷ୍ଟିର ଶୁଭଙ୍କର ମଣ୍ଡଳଟିଏ ସୃଷ୍ଟି ପାଇଁ ପରସ୍ପରର ଭାଷା ଶିକ୍ଷା ସହିତ ପରସ୍ପରର ଜୀବନ ବିମ୍ବାୟିତ ଦର୍ପଣରୂପୀ-ଉଜ୍ଜ୍ୱଳ ଗ୍ରନ୍ଥଗୁଡ଼ିକର ଅନୁବାଦ କରି ଅଧ୍ୟୟନ କରିବା ଏକାନ୍ତ ଅପରିହାର୍ଯ୍ୟ ହୋଇପଡ଼ିଛି। ଭାରତୀୟ ଅନୁବାଦ ସାହିତ୍ୟର ମୂଳଲକ୍ଷ୍ୟ ହେଉଛି ଅଖଣ୍ଡ ଭାରତୀୟ ସାହିତ୍ୟ ବଳୟଟିଏ ଗଢ଼ିବା ଓ ସାହିତ୍ୟ-ସାହିତ୍ୟ ଭିତରେ ଭାବବିନିମୟ କରି ଅଭିନ୍ନତ୍ୱ ପ୍ରମାଣ କରିବା। ଅନୁବାଦକ ବହୁଭାଷୀ ହେବା ସୌଭାଗ୍ୟର ବିଷୟ। ମାତ୍ର ପ୍ରତ୍ୟେକ ଅନୁବାଦକ ଦ୍ୱିଭାଷୀ ଓ ଭାରତୀୟ ଅନୁବାଦକମାନେ ଇଂରାଜୀ ଜ୍ଞାନ ଭିତ୍ତିରେ ପ୍ରାୟତଃ ତ୍ରିଭାଷୀ ହେବାକୁ ପଡ଼ିଥାଏ। ଇଂରାଜୀକୁ ଆଧାରଶିଳା ଭାବରେ ରଖି ଆମ ଦେଶର ଅନୁବାଦ ଚକ ଗଡ଼ିଥାଏ। ଏ ଚକଟି ଭାରତକୁ ଟପି ଭାରତୀୟ ଗ୍ରନ୍ଥର ସୌନ୍ଦର୍ଯ୍ୟ ଓ ଉପାଦାନକୁ ବିଦେଶରେ ପହଞ୍ଚାଇବା ପାଇଁ ଯେତିକି ଦାୟବଦ୍ଧ ନୁହେଁ ତାହାର ୧୦ ଗୁଣରୁ ୮ ଗୁଣ ବିଦେଶୀ ଓ ଅନ୍ୟ ଗୋତ୍ରୀ ଭାବ ଐଶ୍ୱର୍ଯ୍ୟକୁ ନିଜ ଅଗଣାକୁ ଆଣିବାରେ ବିନିଯୋଗ ହୁଏ। ଏହାକୁ ଦୁର୍ଭାଗ୍ୟ କୁହାଯାଇ ନପାରେ, ମାତ୍ର ସୌଭାଗ୍ୟ ବି କହିବାର ଅବକାଶ ଲୋଡ଼ାଯାଏ।

ଅନ୍ୟ ଏକ ସମଧରଣର କ୍ଷୋଭକାରକ ବିଷୟ ହେଉଛି ମାତୃଭାଷାର ଗ୍ରନ୍ଥ ଦ୍ୱିତୀୟ ଜ୍ଞାନର ଭାଷା ଦ୍ୱାରା ଅଧିକ ପରିମାଣରେ ଅନୁବାଦ ହୋଇଥାଏ। ଉଦାହରଣ ସ୍ୱରୂପ ଓଡ଼ିଶାରେ ସ୍ଥାୟୀ ବାସିନ୍ଦା ବା ବୃତ୍ତିଗତ ପ୍ରୟୋଜନୀୟ ବାସିନ୍ଦା ହୋଇଥିବା ଅନ୍ୟ ପ୍ରାନ୍ତୀୟ ଭାଷାଭାଷୀ ବ୍ୟକ୍ତି ପାଇଁ ମାତୃଭାଷା ବା ପ୍ରଥମ ଉପଭାଷା ହେଉଛି ବଙ୍ଗଳା, ପଂଜାବୀ, ହିନ୍ଦୀ, ତେଲୁଗୁ, ତାମିଲ ଇତ୍ୟାଦି। ଓଡ଼ିଆ ଏ କ୍ଷେତ୍ରରେ ଭାଷାଧୂରୀଣଙ୍କ ପାଇଁ ଦ୍ୱିତୀୟ ଜ୍ଞାନର ଭାଷା। ଦେଖାଯାଉଛି ସାହିତ୍ୟ ଅନୁରାଗବଶତଃ ଭାଷାଧୂରୀଣ ଭଦ୍ରବ୍ୟକ୍ତି ଅନୁବାଦ-କର୍ମ ସାଧନରେ ଇପ୍‌ସିତ ହେବାମାତ୍ରେ ନିଜ ମାତୃଭାଷାର ଗ୍ରନ୍ଥ (ବଙ୍ଗଳା/ହିନ୍ଦୀ/ତାମିଲ୍/ତେଲୁଗୁଭାଷୀ ମୂଳଗ୍ରନ୍ଥ) ଦ୍ୱିତୀୟଜ ଭାଷା ଓଡ଼ିଆରେ ସେମାନଙ୍କ ଦ୍ୱାରା ଅନୂଦିତ ହୋଇ ଓଡ଼ିଆ ପ୍ରକାଶକଙ୍କ ବିକ୍ରୟାଳୟରେ (ପୁସ୍ତକମେଳାରେ) ଥାକପୂର୍ଣ୍ଣ ଶୋଭା ବଢ଼ାଉଛନ୍ତି। ମାତ୍ର ଓଡ଼ିଆ ରୂପକ ଦ୍ୱିତୀୟ ଭାଷାର ମହତ୍ ଗ୍ରନ୍ଥମାନେ ଅନୁବାଦକଙ୍କ ଶୁଭଦୃଷ୍ଟିରେ ପଡ଼ି ସୀମା ଡେଇଁ ଅନ୍ୟ ଭାଷାରେ ବିସ୍ତାର ଲାଭ କରିପାରୁନାହାନ୍ତି। ସର୍ବଭାରତୀୟ ସ୍ତରରେ ମଧ୍ୟ ଅନୁରୂପ ସମସ୍ୟା। ବିଦେଶୀ ଗ୍ରନ୍ଥମାନେ ଇଂରାଜୀ ମାଧ୍ୟମ ଉପରେ ଲାଉ ହୋଇ ଆମ ଭୂଗୋଳର ଏକୋଣ ସେକୋଣ ପରିକ୍ରମା କରୁଛନ୍ତି। ଆମ ଗ୍ରନ୍ଥମାନେ ସୀମାଟପି ବିଶେଷ ପରିମାଣରେ ପଶ୍ଚିମଜ୍ଞାନବେଦୀକୁ ଯାଇପାରୁନାହାନ୍ତି।

ତେଣୁ ଦ୍ୱିତୀୟ ଶ୍ରେଣୀର ଭାଷାଗ୍ରନ୍ଥଗୁଡ଼ିକ ନାନ୍ଦନିକ ବୈଶିଷ୍ଟ୍ୟ ମାତୃଭାଷାର କଳେବର ମଧ୍ୟରେ ଅନୁବାଦକଙ୍କ ଦ୍ୱାରା ଘଟାନ୍ତରିତ ଆସନ ଅଧିମାତ୍ରାରେ ଗ୍ରହଣ କରିବା

ବର୍ତ୍ତମାନ ଭାରତୀୟ ଅନୁବାଦ ସାହିତ୍ୟର ମୌଳିକ ଉଦ୍ଦେଶ୍ୟ ହେବା ଉଚିତ। ଏହାଦ୍ୱାରା ଓଡ଼ିଶାର ପୁସ୍ତକମେଳାରେ ପୁସ୍ତକାନୁରାଗୀଙ୍କ ତୋଳାକୁ ଚହଟାଇ ଯେପରି ଓଡ଼ିଆ ବର୍ଣ୍ଣରେ ବଙ୍ଗଳା-ହିନ୍ଦୀ-କନ୍ନଡ଼-ତେଲୁଗୁ-ଇଂରାଜୀ ଭାଷାର ମହାନ୍ ଗ୍ରନ୍ଥମାନେ ଶବଳିତ ହୋଇଉଠିବେ; ସେହିପରି ଦିଲ୍ଲୀ, କୋଲ୍‌କତା, ବମ୍ବେ, ଚେନ୍ନାଇ, ବାଙ୍ଗାଲୋର, ପ୍ୟାରିସ୍, ଚିକାଗୋ ଓ ହାଇଦ୍ରାବାଦର ପୁସ୍ତକମେଳାରେ ସ୍ଥାନୀୟ ଲିପିର ବର୍ଣ୍ଣାଢ୍ୟ କଳେବର ଧରି ଓଡ଼ିଆ ଗ୍ରନ୍ଥମାନେ ଥାକରୁ ଥାକ ସୁନ୍ଦର ଓ ମନୋରମ ହୋଇ ଦେଖାଯାଉଥିବେ। ଜାତୀୟ ସଂହତିକୁ ରାଷ୍ଟ୍ରୀୟ ସାହିତ୍ୟ ଓ ରାଷ୍ଟ୍ରୀୟ ସାହିତ୍ୟକୁ ପ୍ରାଦେଶିକ ଅନୁବାଦ କୃତିଗୁଡ଼ିକ ବାନ୍ଧି ରଖିବାରେ ସଫଳ ହୋଇପାରିବେ। ମୌଳ-କଥିତ-ମାତୃଭାଷାରେ ଅନୁବାଦ କରିବା ଗୁରୁତ୍ୱପୂର୍ଣ୍ଣ। କାରଣ ଏ କ୍ଷେତ୍ରରେ ଲକ୍ଷ୍ୟ ଭାଷାରେ ଅନୁବାଦକ ପ୍ରବୀଣ ଓ ଉତ୍ସଭାଷାରେ ତାଙ୍କର ଅନୁରାଗ ବୃତ୍ତିଟି ବେଶ୍ ପ୍ରାୟୋଗିକ। ପରିଣାମ ସ୍ୱରୂପ ଅନୁବାଦରେ ବିଶ୍ୱସ୍ତତା ଓ ସୌନ୍ଦର୍ଯ୍ୟମୟତା ରମଣୀୟ ଭଙ୍ଗୀରେ ସଂପାଦନ ହୋଇପାରିଥାଏ। ମାତ୍ର ଆମ ଭୂଖଣ୍ଡ ଅଥବା ପ୍ରତିବେଶୀ ଭୂଖଣ୍ଡର ପୁସ୍ତକମେଳାର ଥାକମାନେ ଆମ ଓଡ଼ିଆ ଭାଷାର ମହାନ୍ ଗ୍ରନ୍ଥମାନଙ୍କୁ ଏଯାବତ୍ ଖୋଜୁଛନ୍ତି, ଲୋଡୁଛନ୍ତି; କିନ୍ତୁ ଥାକଗୁଡ଼ିକ ଅନ୍ୟଭାଷୀ ଗ୍ରନ୍ଥମାନଙ୍କର ଓଡ଼ିଆଭାଷୀ ଅନୁବାଦ କୃତିରେ ବେଶ ରମଣୀୟ ପ୍ରତିପାକ ଥାକ- 'ଓଡ଼ିଆ ଅନୁବାଦ ସାହିତ୍ୟ'ର ପ୍ରତୀକ ରୂପେ ଉଭା ହେଉଛନ୍ତି। ଏ ପ୍ରକାର ଅନ୍ୟ ପୁସ୍ତକମାନଙ୍କ ଉଭା କ୍ଷତିକାରକ ନୁହନ୍ତି ଶୋଭାଦାୟକ; ମାତ୍ର ଓଡ଼ିଆତ୍ୱର ପ୍ରସାରଣକୁ ଚାପି ଦେଉଥିବାରୁ କମ୍ କ୍ଷୋଭାଦାୟକ ମଧ୍ୟ ନୁହନ୍ତି। କପାଳରେ ହାତ ଡାଡ଼ି ଅପେକ୍ଷା କରିବା ବ୍ୟତୀତ ଅନ୍ୟ ଉପାୟ ନାହିଁ।

## (ପାଞ୍ଚ)

ସହୃଦୟବର୍ଗ ! ଆମେମାନେ ଜାଣୁ ଯେ ଶବ୍ଦ$_1$>ଶବ୍ଦ$_2$/ଭାବ$_1$>ଭାବ$_2$ କେବଳ ଅନୁବାଦ ନୁହେଁ। ଅନୁବାଦ କଳାବୋଧରୁ ବିଜ୍ଞାନସମ୍ମତ ଗଠନଧର୍ମକୁ ଆଦରି ନେଇ ପୂର୍ଣ୍ଣାଙ୍ଗ ଓ ଫଳପ୍ରଦ ହୋଇଥାଏ। ଏହା ମନୋବିଜ୍ଞାନ, ସମାଜବିଜ୍ଞାନ, ଭାଷାବିଜ୍ଞାନ ଓ ବସ୍ତୁବିଜ୍ଞାନ ସହିତ ସଂପୃକ୍ତ। ଅନୁବାଦ କର୍ମ ସମ୍ପାଦନ କାଳରେ ଲକ୍ଷ୍ୟ-ଅଲକ୍ଷ୍ୟରେ ଅନୁବାଦକଟିଏ ନିଜ ଭିତରେ ଏସବୁ ବିଜ୍ଞାନର ସୂତ୍ର ଓ ପ୍ରତିପାଦ୍ୟ ସିଦ୍ଧାନ୍ତଗୁଡ଼ିକ ସହିତ ଖେଳ ଖେଳୁଥାଏ। ପ୍ରଥମେ ଅନୁବାଦକ ଖେଳୁଥିବା ମନୋବିଜ୍ଞାନ କ୍ରୀଡ଼ାଟିକୁ ଲକ୍ଷ୍ୟ କରାଯାଉ।

ଭଲ ଅନୁବାଦକ ବରାଦ ଗ୍ରହଣ କରି ବା ବରାଦ ଯୋଗାଡ଼କରି ଅନୁବାଦ କର୍ମରେ ନିଜକୁ ବିନିଯୋଗ୍ କରେନି। ଭଲ ଅନୁବାଦ ଗ୍ରନ୍ଥଟିଏ ଏକାଥରକେ ପଢ଼ାଇଯାଇ

ଅନୂଦିତ ହୋଇପାରିନଥାଏ। ମୂଳଲେଖାର ନକ୍ସା (ନିର୍ମାଣ କୌଶଳ) ଏବଂ ତାହାର ବାହ୍ୟ ରୂପସଜ୍ଜା ଭିତରେ ଥିବା ଭାବ ସୌନ୍ଦର୍ଯ୍ୟକୁ ଅନୁବାଦକ ଯେତେଥର ପାଠକ ଭାବରେ ପଢ଼ି, ଗ୍ରାହକଭାବରେ ତା'ର ଆବେଦନର ସ୍ୱାଦମୟତାକୁ ଗ୍ରହଣ କରି, ଭାବୁକ ରୂପେ ଅନୁସରଣ କରି ଓ ଶେଷରେ ଅନୁକଳ୍ପକ ଭାବରେ ନିଜ ଭାଷାରେ ସମତୁଲ୍ୟରେ ରୂପାନ୍ତରିତ କରିବାକୁ ପ୍ରୟାସ କରେ ସେତେଥର ଅନୂଦିତକୃତିର ସ୍ୱରୂପ ଓ ସ୍ୱଧର୍ମ ନୂଆ ନୂଆ ପ୍ରକାର ହୋଇଥାଏ। ସେଥିପାଇଁ ୧୮୪୦ରୁ ୧୮୫୯ ମସିହା ମଧ୍ୟରେ ସାତଥର ଓମରଖାୟାମ୍‌ଙ୍କ 'ରୁବାୟତ୍'କୁ ଇଂରେଜୀରେ 'ରୁବାଇୟାତ୍ ଅଫ୍ ଓମର ଖାୟାମ'ଶୀର୍ଷକରେ ଅନୁବାଦ କରି ପ୍ରତିଥର ଗୀତିଗୁଚ୍ଛର ରୂପ ଓ ଭାବଧର୍ମରେ ଅଭିନବ ପରିମାର୍ଜନ କରିଥିବା ବିଶିଷ୍ଟ ଅନୁବାଦକ କବି ଏଡ଼ୱାର୍ଡ ଫିଜ୍‌ଜରାଲ୍‌ଡ୍ ଅନୁବାଦକର ମାନସିକତା ଓ ଅନୁଦିତ କୃତି ସମ୍ବନ୍ଧରେ ନିଜର ଅନୁଭୂତିକୁ ଆଶ୍ରୟ କରି ଦର୍ଶାଇଥିଲେ– ''ମୂଳ ସୃଷ୍ଟିଟି ଅନୁବାଦର ଯୋଗ୍ୟତା ପାଇଥିବା ଏକ ମୃତସିଂହ। ତାକୁ ଅନୁବାଦକ ଅବିକଳ ଅଙ୍କନ ଓ ପୁନଃରୂପାୟଣ କରିବା ଅପେକ୍ଷା ନିଜ ଭାଷାରେ ତାହାର ପ୍ରାମାଣିକ ରୂପ, ଭାବରୂପ ଓ ଅନୁସୃତ୍ୟମାନ ଛାୟାରୂପର ମିଶ୍ରଣରେ ଜୀବନ୍ତ କୁକୁରଟିଏ ସୃଷ୍ଟିକରି ପ୍ରତ୍ୟକ୍ଷ ରୂପେ ପାଠକ ସାମ୍ନାରେ ତାହାକୁ ବୁଲାଚଲା କରିପାରୁ ଥିବାର ବିଷୟହିଁ ଶ୍ରେୟ ଅଟେ।'' ଏଠାରେ ଗୋଟିଏ ସତ୍ୟ ପ୍ରଚ୍ଛନ୍ନ – ତାହା ହେଉଛି ଅନୁବାଦକର ଗୋଟିଏ ଭାବଗ୍ରହଣକାରୀ ମନ ଥାଏ ଏବଂ ଭାବ ପରିବେଷଣକାରୀ ଇଚ୍ଛାବୃତ୍ତି ଥାଏ। ସେ ମୂଳ ସୃଷ୍ଟିର ସିଂହତ୍ୱ ଅପେକ୍ଷା ନିଜ ରୁଚିର କୁକୁରତ୍ୱକୁ ଆକର୍ଷଣୀୟ କରି ଦେଖାଇଦିଏ। ଅନୁବାଦକର ଭାବଗ୍ରହଣକାରୀ ମନୋବସ୍ଥାଟି ହେଉଛି ଏହିପରି–

- ପ୍ରଥମେ ନିଜ ରୁଚି, ବିଶ୍ୱାସ, ଇଚ୍ଛା ଓ ପସନ୍ଦ ଅନୁସାରେ ମୂଳ ଲେଖାଟିଏ ପାଠକରିବା ପାଇଁ ନିର୍ବାଚନ କରେ।
- ବାରମ୍ବାର ପାଠ କରିବା ପରେ ମୂଳଲେଖାର ଶବ୍ଦ ପରିସ୍ପନ୍ଦ, ଶବ୍ଦର ପ୍ରୟୋଗ-ସ୍ୱାତନ୍ତ୍ର୍ୟ, ଅର୍ଥସ୍ପନ୍ଦନ ଓ ସାଂସ୍କୃତିକ ଭାବସିଦ୍ଧି ସହିତ ନିଜକୁ ମିଶାଏ, ତହିଁରେ ଗାଢ଼ତର ଥିବା ଅର୍ଥ ସୌନ୍ଦର୍ଯ୍ୟକୁ ନିଜ ବିଶ୍ୱାସ, ପରିଚିତ ବ୍ୟବସ୍ଥା ଓ ସ୍ଥାନୀୟତାର ଅନୁଭୂତି ମଧ୍ୟରେ ଖୋଜି ଯୋଡ଼ିଥାଏ।
- ଏହାପରେ ମୂଳଲେଖକଙ୍କର ବକ୍ତବ୍ୟ ଓ ଭାଷାବିନ୍ୟାସର ଅନ୍ତରାଳରେ ଲୁଚି ରହିଥିବା ଭାବର ଇଙ୍ଗିତକୁ ଅନୁସନ୍ଧାନ କରେ ଏବଂ ଏଥିସହିତ ନିଜକୁ ଆତ୍ମୀଭୂତ କରେ।
- ଲେଖାଟିର ରୂପାତ୍ମକ ଛାଞ୍ଚ ଓ ଭାବାତ୍ମକ ସୌନ୍ଦର୍ଯ୍ୟର ଅନୁରୂପତାକୁ ନିଜ ଭାଷାଭାଷୀ ପରିବ୍ରେଷ୍ଟନୀ ଭିତରେ ଖୋଜି ପାଇଲେ ଓ ତହିଁରେ ଯୋଡ଼ିବାର

ସମଧର୍ମକୁ ଦେଖିପାରିଲେ ଭାବୁକ ରସଗ୍ରାହୀ ପାଠକଟି ମୂଳଭାଷାର ପାରଦର୍ଶିତା ଓ ଲକ୍ଷ୍ୟଭାଷାର ପ୍ରଜ୍ଞାତ୍ୱ ବଳରେ ମୂଳଲେଖାଟିକୁ ନିଜର ପ୍ରିୟତମ ଲକ୍ଷ୍ୟଭାଷାରେ ଅନୁଦିତ କରିବାକୁ ଚାହେଁ ଓ ସମର୍ଥ ହୁଏ। ଭଲ ପାଠକଟିଏ ଭଲ ଅନୁବାଦକର ଦାୟିତ୍ୱ ତୁଲାଏ।

ଏହି ମର୍ମରେ ଅନୁବାଦର ମନୋବିଜ୍ଞାନ ସୂତ୍ରଟି ହେଉଛି– ପ୍ରଥମେ ଅନୁବାଦକ ମୂଳଲେଖାର ବିଶ୍ୱସ୍ତ ଓ ଅନୁରାଗୀ ପାଠକଟିଏ। ମୂଳଲେଖାର ସୌନ୍ଦର୍ଯ୍ୟ ଦ୍ୱାରା ସେ ପ୍ରବୋଧିତ ହେଉଛି (Emoting)। ନିଜର ପ୍ରବୋଧିତ ଉଦ୍ଦୀପନାକୁ ସେ ମୂଳଲେଖାପରି ଅବିକଳ ନିଜ ଭାଷାରେ କହିବାକୁ ଏବଂ ମୂଳଭାବର ନିର୍ବିକଳ୍ପ ଚିତ୍ରଟିଏ ନିଜ ଭାଷାଭାଷୀ ଅନୁରାଗୀବର୍ଗଙ୍କ ସାମ୍ନାରେ ଦେଖାଇ ଦେବାକୁ (telling and showing) ବ୍ୟଗ୍ର ହୋଇଉଠୁଛି। ଏହି ବ୍ୟଗ୍ରତା ଶବ୍ଦରୁ ଶବ୍ଦକୁ ଅର୍ଥ ରୂପାନ୍ତର ଦ୍ୱାରା କେବଳ ଚମତ୍କାର ହୁଏ ନାହିଁ। ତେଣୁ ଭଲ ଅନୁବାଦରେ ଅନୁବାଦକ ମୂଳଲେଖାର ବିଷୟକୁ ପ୍ରେରଣାତ୍ମକ ପରିବେଷଣ ଦ୍ୱାରା ଚମତ୍କାର କରି ରୂପାୟଣ କରିବାକୁ (proper thematizing) ପ୍ରଯତ୍ନମନା ହୁଏ। ଏହି ପ୍ରଯତ୍ନରେ ଖିଲାପ ଘଟିଲେ ଅନୁବାଦକ ଓ ଅନୁବାଦ ମୂଳଲେଖା ଓ ଲେଖକ ପ୍ରତି ପ୍ରବଞ୍ଚକବତ୍ ପ୍ରବଞ୍ଚନା କାର୍ଯ୍ୟ କରିଥାଏ। ଇଟାଲୀୟ ପ୍ରବାଦ– ''ତ୍ରେଡୁତୋରି-ତ୍ରେଦିତୋରେ'' (Traduttore-traditore) ବା 'ଅନୁବାଦ ହିଁ ପ୍ରବଞ୍ଚନା' ପ୍ରସଙ୍ଗଟି ଯଥାର୍ଥ ପ୍ରତିପାଦିତ ହୋଇଉଠେ। ମୂଳଲେଖା ପ୍ରତି ଅନୁବାଦକର ମନ ପ୍ରବୋଧିତ ଓ ଆକୃଷ୍ଟ ନଥାଇ ବରାଦ ଦିଆ ହୋଇଥିଲେ ଅନୁବାଦର ଭାଗ୍ୟରେ ଅବିଶ୍ୱାସ୍ୟ, ଅଶ୍ୱସ୍ତିକରତା, ଅନୁର୍ବରତା, ଅବାଞ୍ଛନୀୟତା, ନିରର୍ଥକତା ଓ ଅସାରତାର ଦୁର୍ଗୁଣ ଯୋଡ଼ି ହୋଇଯାଏ। ମୂଳଲେଖକଟି ଲକ୍ଷ୍ୟ ଭାଷାରେ ବିଶିଷ୍ଟ ନିର୍ମାଣକ ନ ହୋଇ ପଙ୍ଗୁ, ଅଥର୍ବ, କୌତୁକମୟ ହୋଇ ପ୍ରଚାରିତ ହୁଏ। ଟ୍ରାନ୍ସଲେସନ ବା ଅନୁବାଦ transgress ବା ଅପରାଧ ଭାବରେ ଦେଖାଦିଏ। ଅପରାଧୀ ଅନୁବାଦକମାନେ ଏଥିପ୍ରତି ସଚେତନ ହେଲେ ମହାନ୍ ଗ୍ରନ୍ଥମାନଙ୍କ ସ୍ଥାନରେ ସାଧାରଣ ଗ୍ରନ୍ଥ ଅନୁଦିତ ହେବେ ନାହିଁ ଏବଂ ଟ୍ରାନ୍ସଲେସନ (translation) ବରାଦଦିଆ ସଂଚାରସାମଗ୍ରୀ (trans-order) ହେବନାହିଁ। ବରଂ ଅନୁବାଦକ/ଟ୍ରାନ୍ସଲେଟର ଅନୁସୃଜକ/ଟ୍ରାନ୍ସକ୍ରିଏଟର ରୂପେ ବିଶ୍ୱଭାବନାକୁ ଶୁଭଙ୍କର କରିପାରୁଥିବା ସାହିତ୍ୟ ଭାବଶକ୍ତିକୁ ଟ୍ରାନ୍ସମିଟର ପରି ସ୍ଥାନରୁ ସ୍ଥାନକୁ ଭାଷାମଣ୍ଡଳରୁ ଭାଷାମଣ୍ଡଳକୁ ପ୍ରେରଣ କରିପାରିବେ।

ଅନୁବାଦକର ଭାବ ଗ୍ରହଣକାରୀ ମନ ଅନ୍ୟ ଭାଷାର ମହତ୍ ଭାବକୁ ସଂଚୟ କରି ତାହାକୁ ନିଜ ଭାଷାରେ ପରିବେଷଣ କରିବା ସମୟରେ ବ୍ୟକ୍ତିବାଦୀ ରୁଚି ଅପେକ୍ଷା

ସମୂହ ବିଶ୍ୱାସର ଅଭିରୁଚି ପ୍ରତି ଗୁରୁତ୍ୱ ଦେଇଥାଏ। ଏଇଠି ଅନୁବାଦ କଳା ସମାଜ ବିଜ୍ଞାନ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ। ଅନୁବାଦର ସମାଜ ବିଜ୍ଞାନ ଦିଗଟି ନିମ୍ନମତେ ବିଚାରଯୋଗ୍ୟ–

- ଅନୁବାଦକ ନିଜ ଇଚ୍ଛାରେ ମୂଳଲେଖାକୁ ବାଛେ, ପଢ଼େ, ବୁଝେ ଓ ନିଜ ଭାଷାରେ ବା ନିଜର ଅଭିଜ୍ଞତା ଥିବା ଭାଷାରେ ଅନୁସୃଜନ କରେ। ଏହା ହେଉଛି ମନୋବିଜ୍ଞାନ ଭିତ୍ତିକ ପ୍ରସଙ୍ଗ। ମାତ୍ର ସଫଳ ଅନୁବାଦ ଏହି ସୀମା ମଧ୍ୟରେ ଆବଦ୍ଧ ରହେ ନାହିଁ। ସେ ବ୍ୟକ୍ତିବାଦୀ ମନୋବିଜ୍ଞାନରୁ ଉତ୍ତରିତ ହୋଇ ସମାଜବିଜ୍ଞାନାନୁସାରୀ ସମଷ୍ଟିଗତ ମନକୁ ଅଧିମାତ୍ରାରେ ସମର୍ଥନ କରେ। ଅନୁବାଦ ସମୂହ ବିଶ୍ୱାସ ଓ ଅବଚେତନର ସଂଯୋଗ ସୂତ୍ର ହୋଇଉଠେ।

ଅନ୍ୟଭାଷୀ ଲେଖାଟି– ''ପଢ଼ିବାକୁ ଭଲ ଲାଗିଲା, ମୋ ବିଚାରରେ ତାହା ଉତ୍ତମ, ମୋତେ ମୁଁ ତହିଁରୁ ଖୋଜି ପାଇଲି, ତେଣୁ ମୁଁ ଅନୁବାଦ କଲି। ଅନ୍ୟମାନେ ମୋ ଅନୁବାଦକୁ ପଢ଼ି ମୂଳ ଲେଖାର ବୈଚିତ୍ର୍ୟକୁ ଜାଣ''–ଅନୁବାଦ କରିବାର ପୃଷ୍ଠଭୂମିରେ ଅନୁବାଦକର ଏ ଯୁକ୍ତି ଯେତିକି ସତ୍ୟ ଓ ଅନୁବାଦର ସଫଳତା ପାଇଁ ଆବଶ୍ୟକ ତାହାଠାରୁ ଅଧିକ ସତ୍ୟ ଓ ପ୍ରୟୋଜନ ହେଉଛି– ''ମୋ ଦ୍ୱାରା ନିର୍ବାଚିତ ଭିନ୍ନଭାଷାସ୍ରୋତୀ ଲେଖାଟି ଅନ୍ୟମାନଙ୍କ ଦ୍ୱାରା ବିଶେଷ କରି ଅନୁଦିତ ଭାଷାଭାଷୀ ପାଠକ – ଉପଭୋକ୍ତାଙ୍କ ଦ୍ୱାରା ପସନ୍ଦଯୋଗ୍ୟ କି ନାହିଁ, ସେମାନେ ତାହା ପ୍ରତି ଆଗ୍ରହୀ କି ନାହିଁ, ସେ ସେମାନଙ୍କ ସାଂସ୍କୃତିକ ରୁଚି ଓ ଜୀବନଚର୍ଯ୍ୟାକୁ ପ୍ରବୋଧିତ କରିବା ଭଳି ଭାବ ଐଶ୍ୱର୍ଯ୍ୟର ଅଧିକାର ମୂଳଲେଖାଟି କି ନୁହେଁ''– ଏକଥା ଅନୁବାଦକ ବିଚାର କରିବା ଉଚିତ। 'ଅନ୍ୟମାନଙ୍କୁ ଭଲ ଲାଗିଲା ଭଳି ଢଙ୍ଗରେ ଅନୁବାଦ କରିବି, ମୂଳଲେଖାକୁ ବିଶ୍ୱସ୍ତ ଭାବରେ ଅନ୍ୟମାନଙ୍କ ରୁଚି ଅନୁକୂଳ କରି ଅନୁଦିତ କରିବି, ଅନୂଦିତ ଲେଖାଟି ଲକ୍ଷ୍ୟଭାଷୀ ପରିମଣ୍ଡଳର ସାଂସ୍କୃତିକ ବିଶ୍ୱାସ ସହିତ ସଂଯୁକ୍ତ ହେବା ଭଳି ଢଙ୍ଗରେ ଅନୁବାଦ କରିବି'– ଏ ପ୍ରକାର ସମଷ୍ଟିଗତ ରୁଚି ପ୍ରତି ସଚେତନଶୀଳ ହୋଇ ଅନୁବାଦକ ଅନୁସୃଜନ କର୍ମରେ ହାତ ଦେବା ବିଧେୟ। ପୁନଶ୍ଚ ସମାଜବିଜ୍ଞାନର ସିଦ୍ଧାନ୍ତ ଦିଗରୁ ଅନୁବାଦକର ଦାୟବଦ୍ଧତା ନିଜ ଭାଷାଭାଷୀ ପାଠକ ଓ ସଂସ୍କୃତି ପ୍ରତି ଯେତିକି; ସେତିକି ପରିମାଣରେ ମୂଳଲେଖା-ଲେଖକ ଓ ତଦ୍‌ସଂପୃକ୍ତ ସଂସ୍କୃତି ପ୍ରତି ରହିବା ଉଚିତ। ଏ ଦିଗରୁ ଅନୁବାଦକର ସ୍ୱଚ୍ଛନ୍ଦ କଳ୍ପନା ଅତ୍ୟଧିକ ତନ୍ମୟତା ଓ ଭାବପ୍ରବଣତାର ବଶବର୍ତ୍ତୀ ହେବାର ସଂଭାବନା ନାହିଁ। ମୂଳଲେଖକର ସାଂସ୍କୃତିକ ଭାବସ୍ପନ୍ଦନ ଓ ତା'ର ସର୍ଜନଶୀଳ କଳ୍ପନାର ପରିସରକୁ ଅତିକ୍ରମ କରିବାର ଅଧିକାର ଓ ସ୍ୱାଧୀନତା ଅନୁବାଦକକୁ ଦିଆଯାଇ ନାହିଁ। ସେ ମୂଳ ଲେଖକର କଳ୍ପନା ପ୍ରତି, ବିଚାର

ପ୍ରତି ଓ ଅନନ୍ୟ ଅନୁଭବ ପ୍ରତି ବିଶ୍ୱସ୍ତ ହେବ ଏବଂ ମୂଳଲେଖାର ବିଷୟବୃତ୍ତରେ ସଂଯୁକ୍ତ ସାଂସ୍କୃତିକ ଭାବନା ପ୍ରତି ଓ ଭାଷାର ଗଠନ ସ୍ୱାତନ୍ତ୍ର୍ୟ ପ୍ରତି ଦାୟବଦ୍ଧ ରହିବାକୁ ପଡ଼ିବ। ସୁତରାଂ ଅନୁବାଦ ମୂଳାନୁଗ ହେବା ବିଧିସମ୍ମତ। ମାତ୍ର ମୂଳାନୁଗ ଅନୁବାଦରେ ଅନୁବାଦକର ସ୍ୱଚ୍ଛନ୍ଦ ଅଙ୍ଗୀକାରବଦ୍ଧତା ଯେ ନାହିଁ ଏକଥା କୁହାଯାଇ ନପାରେ। ଏ କ୍ଷେତ୍ରରେ ସମାଜତାତ୍ତ୍ୱିକ ସିଦ୍ଧାନ୍ତଟି ଭିନ୍ନ ପ୍ରକାରେ ଅନୁବାଦକଙ୍କୁ ନିୟନ୍ତ୍ରଣ କରେ। ସ୍ୱଚ୍ଛନ୍ଦୀୟ ଅନୁସୃଷ୍ଟି କ୍ଷେତ୍ରରେ ଅନୁବାଦକ ମୂଳଭାବକୁ ଅନୁବାଦ-ଯୋଗ୍ୟ ଭାଷାଭାଷୀ ପାଠକର ରୁଚି-ବିଶ୍ୱାସ-ଆଗ୍ରହ-ସାଂସ୍କୃତିକ ବୈଶିଷ୍ଟ୍ୟ ଅନୁରୂପ କରି ଗଢ଼ିଥାଏ। ଏଠାରେ ମୂଳାନୁଗ ଅନୁବାଦର ଉର୍ଦ୍ଧ୍ୱକୁ ଉଠି ମୂଳଲେଖାଟିର ରୂପଗତ ନକ୍ସା ଓ ଭାଗବତ ଆବେଦନଟିର ଅନ୍ୟ ଭାଷାନୁକୂଳ ଘଟାନ୍ତରୀକରଣ ଘଟିଥାଏ। ଫଳରେ ଗୋଟିଏ ଲେଖାର ସମାଜ ଓ ସଂସ୍କୃତି ଅନ୍ୟଭାଷାର ଉପଭୋକ୍ତାଙ୍କ ପାଇଁ ଜାଣିବାର ଯୋଗ୍ୟ ହୋଇଯାଏ।

ଏ ରୂପେ ମୂଳ ଭାବ ଓ ଭାଷାର ଅନୁରୂପତାକୁ ଅନୁବାଦକ ନିଜ ଲକ୍ଷ୍ୟ ଭାଷାର ସଂସ୍କୃତି ଓ ସଂରଚନା ଭିତରେ ପରିଶ୍ରମ କରି ଖୋଜିବ, ତାହାକୁ ସେବକଟିଏ ପରି ମୂଳ ଲେଖା ସହିତ ବିଶ୍ୱସ୍ତ କରି ଯୋଡ଼ିବ, ଶବ୍ଦାଳୁ ବିତରକଟିଏ ପରି ମୂଳ ଲେଖାର ମହିମା ଓ ଅନୁଭାବକୁ ଅନୁଦିତ-ଭାଷାଭାଷୀଙ୍କ ପାଖରେ ବିତରଣ କରିବ ଏବଂ ଅନୁସୃଜକ ହେଉ ହେଉ ମହତ ଭାବର ପ୍ରଚାରକଟିଏ ହୋଇଯିବ। ଏହାଦ୍ୱାରା ଆଞ୍ଚଳିକ ଆକାଶକୁ ଟପି ବିଶ୍ୱଗ୍ରାମର ମହତ୍ ଜ୍ଞାନବୃତ୍ତରେ ଶ୍ରେଷ୍ଠ ଲେଖକମାନଙ୍କ ପାଇଁ ନିଃସ୍ୱାର୍ଥପର ସେବକ-ଅନୁବାଦକ ଉତ୍ତମ ଆସନର ପିଣ୍ଡିଟିଏ ନିର୍ମାଣ କରିପାରିବ।

(ଛଅ)

ଅନୁବାଦ କଳାକୁ ଆଧୁନିକ ତୁଳନାତ୍ମକ ଓ ସମାଜତାତ୍ତ୍ୱିକ ଭାଷା-ବିଜ୍ଞାନ ବହୁପାକ୍ଷିକ କରିଦେଇଛି। ଡ୍ରାଇଡ୍ରେନଙ୍କ ଦ୍ୱାରା ବିଧିବଦ୍ଧ ଭାବରେ ବିଭାଗୀକୃତ ହୋଇଥିବା ତ୍ରିବିଧ ଅନୁବାଦ କଳା (Metaphrase– ଶବ୍ଦାନୁବାଦ ବା ଆକ୍ଷରିକ ଭାଷାନୁବାଦ/ paraphrase–ଆକାରାନୁବାଦ ବା ଭାବାନୁବାଦ/Imitation–ପ୍ରତିରୂପକରଣ ଛାୟାନୁବାଦ) ପରବର୍ତ୍ତୀ ଚାରି ଶତାବ୍ଦୀ ଧରି ଅନୁବାଦକର ସାମର୍ଥ୍ୟ, ବ୍ୟୁତ୍ପତ୍ତି, ସମାଜତାତ୍ତ୍ୱିକ ବିଚାର, ମନନଶୀଳତା, ଦର୍ଶନ,ରୂପାନ୍ତରୀକରଣ କୌଶଳ, ସାଂସ୍କୃତିକ ଜ୍ଞାନ ଓ ପାଣ୍ଡିତ୍ୟ ଅନୁସାରେ ବିବିଧ ରୂପ ହୋଇଉଠିଛି। ଗଦ୍ୟକୃତିକୁ ଗଦ୍ୟରେ, ପଦ୍ୟକୃତିକୁ ପଦ୍ୟରେ, ଗଦ୍ୟକୁ ପଦ୍ୟରେ, ପଦ୍ୟକୁ ଗଦ୍ୟରେ କବିତାକୁ ନାଟକରେ, ଉପନ୍ୟାସକୁ ନାଟକରେ ରୂପାନ୍ତରିତ କରିବା ଏବଂ ଗୋଟିଏ ଉତ୍ସଭାଷାରୁ ନିର୍ବାଚନ କରି ଅନ୍ୟ ଲକ୍ଷ୍ୟ ଭାଷାରେ ଅନୁବାଦ କରିବାର ବାଙ୍ମୟ ଧାରାକୁ 'ରୂପାନୁସାରୀ' ଅନୁବାଦ ଭାବରେ ଗ୍ରହଣ

କରାଯାଇଛି । ରୂପାନୁସାରୀ ଅନୁବାଦ ସର୍ବଦା ମୂଳ ଲେଖାର ବାହ୍ୟ ପ୍ରକରଣ ଧର୍ମର ଘଟାନ୍ତରକୁ ପ୍ରାଧାନ୍ୟ ଦିଏ । ଅପର ପକ୍ଷରେ ମହାଭାବର ଗ୍ରନ୍ଥଗୁଡ଼ିକ ମାନବ-ବିଜ୍ଞାନର ବିକାଶ କ୍ରମରେ ସର୍ବଦା ଭାଷାରୁ ଭାଷା ଦେଇ ସ୍ଥାନାନ୍ତରିତ ଓ ରୂପାନ୍ତରିତ ହେଉଥିବା ବେଳେ '**ଅନ୍ତରୀଣ ବିଷୟାନୁଗତ**' ଅନୁବାଦରେ ମୂଳ ପାଠର ପ୍ରକୃତିକୁ ଭାଷାନ୍ତରୀକରଣ କରାଯାଇଥାଏ । ମୂଳ ପାଠର ବିଷୟ ଅନ୍ୟ ଭାଷାକୁ ଅନ୍ୱୟାନ୍ତର ସୂଚନାତ୍ମକ, ପ୍ରତୀକାନ୍ତର ଓ ବକ୍ତବ୍ୟଧର୍ମୀ ଭାଷାନ୍ତର ଭିତ୍ତିରେ ସଂପ୍ରେରିତ ହୋଇଥାଏ । ଏ କ୍ଷେତ୍ରରେ ଅନୁବାଦକ ମୂଳ ପାଠର ଆଦର୍ଶକୁ, ଭାବନାକୁ, ବକ୍ତବ୍ୟକୁ ଓ ଦେଶ-କାଳ-ପାତ୍ରକୁ, ବସ୍ତୁ ଛବିବତ୍ ଅନୁବାଦ କରିଥା'ନ୍ତି । ଅନେକ କ୍ଷେତ୍ରରେ ମୂଳ ଗ୍ରନ୍ଥର ଛାୟାରେ ଅନୂଦିତ ଗ୍ରନ୍ଥର ପରିକଳ୍ପନା '**ଛାୟାନୁବାଦ**' ଭାବରେ ହୋଇଥାଏ । କେତେକ ସ୍ଥଳରେ ପଦ୍ୟାତ୍ମକ ଅଥବା ଦର୍ଶନୋଚିତ କୃତିରେ '**ବ୍ୟାଖ୍ୟାନୁବାଦ**' ଓ ଦୀର୍ଘ ବର୍ଣ୍ଣନାଧର୍ମୀ, ଅତି କଳ୍ପନାଧର୍ମୀ, ପୁରାଣ ଓ ବିବରଣୀଧର୍ମୀ ରଚନାର '**ସାରାଂଶାନୁବାଦ**' ହୋଇଥାଏ ।

ଏବଂବିଧ ପ୍ରଭେଦୀକରଣ ମଧ୍ୟରେ ଭାଷା ପ୍ରଭାବଶାଳୀ ଓ ଜ୍ଞାନସମ୍ମତ ଅନୁବାଦ ଭାବରେ ଶବ୍ଦାନୁବାଦ + ଭାବନୁବାଦ + ସ୍ୱଚ୍ଛନ୍ଦାନୁବାଦର ମିଶ୍ରଣରେ ସଂଘଟିତ '**ଅନୁସୃଷ୍ଟି ବିଧାନ**' ବା ଅନୁସୃଜନକୁ ସଗୁରୁତ୍ୱ ଗ୍ରହଣ କରାଯାଉଛି । ଶବ୍ଦାନୁବାଦ ବା ଭାବାନୁବାଦକୁ ପ୍ରାଥମିକ ଅବସ୍ଥାରେ ଶବ୍ଦକୁ ଶବ୍ଦ, ଧାଡ଼ିକୁ ଧାଡ଼ି ଓ ଅନୁଚ୍ଛେଦକୁ ଅନୁଚ୍ଛେଦ ପତ୍ୟକ୍ଷ ଅର୍ଥଗତ ପ୍ରତିରୂପକରଣ ଭାବେ ବିବେଚନା କରାଯାଉଥିଲା । ତୁଳନାତ୍ମକ ଭାଷା-ବିଜ୍ଞାନର ବିକାଶ ପରେ (୧୯୫୦ ମସିହା ପରେ ପରେ) ଅନୁବାଦ ଅନୁବିଧିରେ ଭାଷାନୁବାଦ ବା ଆକ୍ଷରିକ ଅନୁବାଦକୁ ସଫଳ ଅନୁବାଦର ପ୍ରାଥମିକ ପଦ୍ଧତି ଭାବରେ ଗ୍ରହଣ କରାଯାଇଛି । ଅଭିଧାନଟିଏ ଥୋଇ ଶବ୍ଦକୁ ନାମବାଚକ ଅର୍ଥ ପ୍ରତୀକ ଅନୁସାରେ ଅନୁବାଦ କରିବାର ଅଭିଧା ପାଣ୍ଡିତ୍ୟ ସମ୍ପ୍ରତି ହୀନାନୁବାଦ ଭାବରେ ପରିତ୍ୟଜ ହୋଇଛି । ଭାଷାନୁବାଦ ବିଶ୍ଳେଷଣାତ୍ମକ ପାଣ୍ଡିତ୍ୟ ଉପରେ ଆଧାରିତ ଏକ କଠିନ କର୍ମ । ଏଥିପାଇଁ ଉତ୍ସ ଭାଷା ଓ ଲକ୍ଷ୍ୟ ଭାଷାର ଭାଷାଗତ ରୂପ ବିଜ୍ଞାନ/ଅର୍ଥ ବିଜ୍ଞାନ/ବାକ୍ୟ ସଂରଚନା ବିଜ୍ଞାନ/ପ୍ରାୟୋଗିକ ସମାଜତାତ୍ତ୍ୱିକ ଇଙ୍ଗିତାର୍ଥକ ସଂରଚନା ସହିତ ଅନୁବାଦକର ଗଭୀର ଜ୍ଞାନ ଆବଶ୍ୟକ । ମୂଳ ପାଠର ଶବ୍ଦଗୁଡ଼ିକ ପ୍ରତିପାଦନ କରୁଥିବା ଅର୍ଥ ପ୍ରତୀତି ଯେପରି ଅନୂଦିତ ପାଠରେ ଅର୍ଥଗତ ସଂକୋଚ, ବିସ୍ତାର, ଅସଂଗତି, ଅତିମାତ୍ରିକ ଭିନ୍ନାର୍ଥ ସୃଷ୍ଟି କରୁନାହିଁ, ଏଥିପ୍ରତି ଅନୁବାଦକ (ଅନୁବାଦ ପରେ ମୂଳ ପାଠ ସହିତ ତୁଳନା କରି) ଧ୍ୟାନ ଦେବା ଉଚିତ । ମୂଳ ପାଠର ଅନୁସୃତ ଭାଷା ବ୍ୟବହାରର ଚାତୁରୀ, ଧ୍ୱନି-ଶବ୍ଦ-ପ୍ରତ୍ୟୟ-ଉଦ୍ଦେଶ୍ୟ-ବିଧେୟ-ଇଙ୍ଗିତ-ଲୋକୋକ୍ତିମୂଳା ଲକ୍ଷଣା-ଗ୍ରାମ୍ୟତା-ବକ୍ରୋକ୍ତି-ବିରୋଧାଭାସ-

ଅନୁରଣାତ୍ମକ ବୈଚିତ୍ର୍ୟ-କ୍ରିୟାର ପ୍ରାୟୋଗିକ ଇଙ୍ଗିତାତ୍ମକତା-ବିଦୂପଧର୍ମିତା-ଲାଳିକାତ୍ମକ ବ୍ୟଞ୍ଜନା-ପ୍ରବୋଧନଧର୍ମୀ ଗୁଣବତ୍ତା ଇତ୍ୟାଦିକୁ ଅବଲୋକନ କରି ନିଜ ଭାଷା ବୃତ୍ତରେ ଏ ସବୁର ସମରୂପତା ଅନୁସଂଧାନ କରି ଅନୁବାଦର ଫଳଦର୍ଶୀ ପ୍ରକ୍ରିୟାଟିଏ ଅନୁବାଦକକୁ ନିର୍ଦ୍ଦିଷ୍ଟ କରିବାକୁ ପଡ଼ିଥାଏ। ସମାନ୍ତରାଳ, ସାଦୃଶ୍ୟମୂଳକ ଓ ସମତାବୋଧକ ଭାଷା ପ୍ରକ୍ରିୟା ନିର୍ଦ୍ଦିଷ୍ଟ କରିପାରିଥିବା ଅନୁବାଦକ ପକ୍ଷରେ ସର୍ବାପେକ୍ଷା ଆୟାସସାଧ୍ୟ ଓ ଅସମ୍ଭବ କୁହାଯାଉଥିବା ପଦ୍ୟାନୁବାଦ ମଧ୍ଯ ସୁନ୍ଦର ଓ ବିଶ୍ୱସ୍ତ ହୋଇଉଠେ। ଅପର ପକ୍ଷରେ ନିର୍ଦ୍ଦିଷ୍ଟ କରି ନପାରିଥିବା ବରାଦୀ ଅନୁବାଦକ ଦ୍ୱାରା ବାସ୍ତବତାର ପ୍ରତ୍ୟକ୍ଷ ପ୍ରତୀତିରେ ଭରପୁର ଗଦ୍ୟାନୁବାଦ ମଧ୍ୟ ବିଫଳ ଓ ଅବସନ୍ନକାରକ ହୋଇଯାଏ। ଏଥିରେ ମୂଳ ପାଠର ଶବ୍ଦରୁ ଶବ୍ଦରେ ଥିବା ଅର୍ଥଗୁଡ଼ିକ ଅନୂଦିତ ହୋଇଯା'ନ୍ତି। ମାତ୍ର ଶବ୍ଦମେଳି ଭିତରେ ଥିବା ଭାବ-ସୌନ୍ଦର୍ଯ୍ୟ ଅନୁପଲବ୍ଧ ହୋଇ ରହିଯା'ନ୍ତି। ଅନୁବାଦ ପାପକର୍ମ ଭାବରେ ସମାଲୋଚିତ ହୁଏ।

ଏହି ଦୃଷ୍ଟିରୁ ତୁଳନାତ୍ମକ ଭାଷାବିଜ୍ଞାନ + ସମାଜତାତ୍ତ୍ୱିକ ଭାଷାବିଜ୍ଞାନର ମିଶ୍ର-ସିଦ୍ଧାନ୍ତ ଓ ସୂତ୍ରାନୁସାରେ ଅନୁବାଦକଙ୍କୁ ସଚେତନ ହୋଇ ଅନୁବାଦର ସଫଳତା ପାଇବାକୁ ହେବ। ଭାଷା-ବିଜ୍ଞାନ ଶବ୍ଦର ବିନ୍ୟାସ ଓ ଚାତୁରୀ ସହିତ ସମ୍ପୃକ୍ତ ହୋଇଥିଲାବେଳେ ସମାଜତାତ୍ତ୍ୱିକ ଭାଷା-ବିଜ୍ଞାନ ଶବ୍ଦର ସାଂସ୍କୃତିକ ଓ ସାମାଜିକ ଚଳଣିଭିତ୍ତିକ ଅର୍ଥ ପରିମଣ୍ଡଳ ସହିତ ଜଡ଼ିତ। ତୁଳନାତ୍ମକ ଭାଷାବିଜ୍ଞାନ ମାନବୀୟ ସହଜାତ ଅନୁଭୂତି କ୍ରମେ ଭାଷାର ଶବ୍ଦ ବିଧାନର ରୂପଗତ ଓ ଅର୍ଥଗତ ସାଦୃଶ୍ୟ ସହିତ ସଂଯୁକ୍ତ। ସଫଳ ଅନୁବାଦରେ ଆକ୍ଷରିକ ଛନ୍ଦ, ଅଳଙ୍କାର, ଶବ୍ଦ ବସାଣ ଚାତୁରୀ ସହିତ ସାମାଜିକ ଅର୍ଥ ପ୍ରତୀତି ଓ ଭାବଗତ ସାଦୃଶ୍ୟକୁ ଆଶ୍ରୟ କରି ଉଭୟ ମୂଳ ପାଠ ଓ ଅନୁପାଠ ମଧ୍ୟରେ ମେଳକ ନିରୂପିତ ହୋଇଥାଏ। ଅନୁବାଦକ ନିମ୍ନମତେ ଅନୁବାଦକ କର୍ମରେ ବ୍ୟାପୃତ ହୋଇଥା'ନ୍ତି–

- ପ୍ରଥମେ ଉତ୍ସଭାଷାର ପ୍ରାୟୋଗିକ ସ୍ତର//ଲକ୍ଷ୍ୟଭାଷାର ବିଭିନ୍ନ ବ୍ୟାବହାରିକ ସ୍ତରର ସମାନ୍ତରାଳ ନିର୍ଦ୍ଦିଷ୍ଟ କରିବାକୁ ହୁଏ।
- ଦ୍ୱିତୀୟରେ ମୂଳ ପାଠରେ ବ୍ୟବହୃତ ଶବ୍ଦ, ତା'ର ଅର୍ଥବିଧାନ ଓ ଗଠନଚାତୁରୀ ଅନୁରୂପ ଶବ୍ଦଗତ ଉପାଦାନ ଅନୁପାଠ ନିର୍ମାଣର ଭାଷା ସଂରଚନାରୁ ଅନୁସଂଧାନ କରି ସାଦୃଶ୍ୟ ବିଧାନ ଭଙ୍ଗୀର ପ୍ରୟୋଗ କରିବାକୁ ପଡ଼େ।
- ତୃତୀୟ ବା ଅନ୍ତିମ ସ୍ତରରେ ମୂଳ ପାଠରେ ବିକସିତ ଭାବର ଅବିକଳ ଭାବ ଲକ୍ଷ୍ୟଭାଷାର ଅନୁପାଠରେ ପ୍ରତିପାଦନ/ନିର୍ମାଣ କରିବାପାଇଁ ସମରୂପତାର ଶବ୍ଦ-ଉପାଦାନଗୁଡ଼ିକୁ ଖୋଜିବାକୁ ପଡ଼େ।

- ମୂଳଲେଖାର ଛନ୍ଦ ସମଥିଲେ ଅନୁବାଦକ ଅନୁରୂପ ସମଛନ୍ଦଟିଏ ନେବା ଉଚିତ। ମୂଳଲେଖାର ଶବ୍ଦ ଲଳିତ ଥିଲେ ଅନୁବାଦକ ଆଳିତ ପଦ ଯୋଜନା କରିବା ଉଚିତ।

ସମାନ୍ତରାଳ ଶବ୍ଦକ୍ରମ ଭିତ୍ତିରେ ସମାନ୍ତରାଳ ଭାବକ୍ରମ ନିର୍ମାଣ ହିଁ ଅନୁବାଦର ଶ୍ରେୟାନୁବିଧି। ଶବ୍ଦକ୍ରମ ମୁଖ୍ୟତଃ ଅର୍ଥବିଧାନ କ୍ଷେତ୍ରରେ ଆଦେଶ, ଅନୁମତି, ଅନୁମାନ, ଅନୁରୋଧ, ଆସ୍ତିବାଚକତା, ନାସ୍ତିବାଚକତା, ପ୍ରଶ୍ନସୂଚକତା, ଆଶ୍ଚର୍ଯ୍ୟ, ସମ୍ବୋଧନ, ବିଦ୍ରୂପ, ଅଭ୍ୟାସ, ବୃତ୍ତି, ଗୁଣ, ଆଦେଶ, ନିଶ୍ଚିତ, ସୁନିର୍ଦ୍ଦିଷ୍ଟ, ସଂଭାବ୍ୟ, ବୃଦ୍ଧି, ଉତ୍କର୍ଷ, ଅପକର୍ଷ, ତୁଳନା, କର୍ତ୍ତବ୍ୟ, ଉପଦେଶ, ବ୍ୟାପ୍ତି, ସମ୍ବନ୍ଧ,ପରିଣାମ, ପରିମାଣ, ସଂଖ୍ୟା, ରହସ୍ୟ, ଅନିଶ୍ଚିତ, ଅତିରିକ୍ତ, ଗତି, ବିସ୍ମୃତି, ତର୍କଣା, ସ୍ଥାନ, ଶ୍ରଦ୍ଧା, ପରାମାର୍ଥ, ବିରୋଧ, ବୈଶିଷ୍ଟ୍ୟ, ମୂଲ୍ୟ, ବ୍ୟଞ୍ଜନା, ଲକ୍ଷଣା, ସନ୍ଧି, ଅନୁଜ୍ଞା, ଦକ୍ଷତା, ବିଲୋମ, ବୈପରୀତ୍ୟ, ପ୍ରତିବୋଧ, ସମତା ଓ ପର୍ଯ୍ୟାୟ ଇତ୍ୟାଦି ଅବସ୍ଥା ଓ ଭାବର ସୂଚକ ହୋଇ ପ୍ରତ୍ୟେକ ଭାଷାରେ (ଶବ୍ଦମେଳିରେ ରୂପାନ୍ତରିତ ହୋଇ) ବ୍ୟବହୃତ ଅନୁରୂପ ଭଙ୍ଗୀର ହୋଇଥା'ନ୍ତି। ଫଳତଃ ଭାବାନୁବାଦ ସ୍ତରରେ ପହଞ୍ଚିବା ପୂର୍ବରୁ ଅନୁବାଦକକୁ ଉଭୟ ପାଠର ଓ ଉଭୟ ଭାଷାର ଭାବାନୁସାରେ ବିବିଧ ଶବ୍ଦକ୍ରମ ଓ ତାହାର ଅର୍ଥଗତ ବିବିଧ ଗଠନଧର୍ମରେ ସମାନ୍ତରାଳୀୟ ଅର୍ଥଗତ ସହବୋଧତା ସମ୍ପାଦନ କରିବାକୁ ପଡ଼ିଥାଏ। ଏହାଦ୍ୱାରା ମୂଳ ଲେଖାର ବିଶ୍ଳେଷଣାତ୍ମକ ନିର୍ଯ୍ୟାସଟି ସହଜରେ ଅନୁପାଠରେ ଅନ୍ତଃର୍ନିହିତ ହୋଇପାରିଥାଏ। ଶବ୍ଦାର୍ଥର ଯଥାର୍ଥ ଆତ୍ତୀକରଣ ବା ଅଙ୍ଗୀକରଣ ଅନୁବାଦର ବିଶେଷତ୍ୱ।

ଏ କ୍ଷେତ୍ରରେ ଭାଷିକ ସ୍ୱରୂପର (Linguistic form) ଅନୁବାଦ କ୍ରମଶଃ ସାଂସ୍କୃତିକ ଓ ସମାଜତାତ୍ତ୍ୱିକ ଭାବଗତ ସ୍ୱରୂପର (Socio-cultural-themastic form) ଅନୁବାଦ ନିମନ୍ତେ ପଥ ପରିଷ୍କାର କରିଦେଇଥାଏ। ଖ୍ୟାତନାମା ସାହିତ୍ୟ ସାଧକ ଓ ଅନୁବାଦକ ନବୋକୋଭ ଏଥିପାଇଁ ଭାବାନୁବାଦ ଅପେକ୍ଷା ଆକ୍ଷରିକ ଭାଷାନୁବାଦକୁ ଉପକାରକ ସାରସ୍ୱତକର୍ମ ଭାବରେ ପସନ୍ଦ କରିଛନ୍ତି। ସଫଳ ଆକ୍ଷରିକ/ଶବ୍ଦାନୁବାଦର ଗ୍ରନ୍ଥଟିଏ ଦୁର୍ଲ୍ଲଭ ଅବଦାନଟିଏ ହୋଇଥାଏ। ଅବଦାନଟି ହେଉଛି– ଶବ୍ଦାନୁବାଦ ଦ୍ୱାରା ମୂଳ ଭାଷାର ଅନେକ ଗଠନ ସୌକର୍ଯ୍ୟ ଅନୁବାଦିତ ଭାଷାକୁ ପ୍ରୋତ୍ସାହନ ଯୋଗାଇ ଦିଏ। ଏହାଦ୍ୱାରା ଦୁଇ ଭାଷାର ସଂଘାତ, ସନ୍ଧି ଓ ପାରସ୍ପରିକ ସହବନ୍ଧନ ଦେଇ ଏକ ତୃତୀୟ ପ୍ରକାର ନୂଆ ଭାଷାବନ୍ଧନର ବୋଧଟିଏ ଓ ସ୍ୱାଦଟିଏ ମିଳିଥାଏ।

ଅନୁସୃଷ୍ଟିର ଦ୍ୱିତୀୟ ମାଧ୍ୟମଟି ହେଉଛି– ଭାବାନୁବାଦର ଅନୁବିଧି ଦ୍ୱାରା ଅନୁବାଦକ ପରିଚାଳିତ ହେବାର ପ୍ରକ୍ରିୟା। ଭାବାନୁବାଦ ହେଉଛି– ମୂଳ ଲେଖାର ଭାଷାଗତ

ଅର୍ଥ ବ୍ୟାଖ୍ୟା ଓ ବିଶ୍ଳେଷଣରୁ ନିର୍ଯ୍ୟାସିତ ବକ୍ତବ୍ୟର ମର୍ମ ଓ ବିଷୟାବେଦନର ସୌନ୍ଦର୍ଯ୍ୟକୁ ସାଦୃଶ୍ୟଧର୍ମୀ କରି ଲକ୍ଷ୍ୟ ଭାଷାରେ ସ୍ୱଦେଶୀୟ ସାଂସ୍କୃତି ଢାଞ୍ଚାରେ ରୂପାନ୍ତରୀକରଣ। ଏଠାରେ ଅନୁବାଦକ ନିଜର ବୋଧଶକ୍ତି ସହିତ ମୂଳ ପାଠକୁ ଗ୍ରହଣ କରେ। ନିଜର ସମୟ ସଂସ୍କୃତି ଓ ପରମ୍ପରା ସହିତ ତାହାକୁ ସଂଶ୍ଳେଷଣ କରି ବିଶ୍ଳେଷଣ କରେ। ମୂଳ ଲେଖାର ଭାବବିନ୍ଦୁ ସହିତ ନିଜ ବ୍ୟବସ୍ଥାର ଭାବମାନଙ୍କୁ ଯୋଡ଼େ। ଯଦି ମୂଳ ଲେଖାରୁ ଯୋଡ଼ାଯାଇ ପାରୁଥିବା ଭାବସମ୍ପଦ ପ୍ରଚୁର ଭାବେ ନିର୍ବାଚନ କରିପାରେ,ତେବେ ଅନୁବାଦକ ନିଜ ଲକ୍ଷ ଭାଷାରେ ତାହାକୁ ଅନ୍ତରୀଣ-ସଂଯୋଜନ କରି ସର୍ଜନଶକ୍ତି ବଳରେ ଆନୁରୂପ୍ୟରେ ପୁନର୍ଗଠିତ କରେ। ଅନୁବାଦକ ମୂଳ ଲେଖା ପ୍ରତି ନିଷ୍ଠାବନ୍ତ, ନିରପେକ୍ଷ ଓ ବିଶ୍ୱସ୍ତ ରୁହେ ଏବଂ ସୃଜନଶୀଳ ପ୍ରତିବଦ୍ଧତାରେ ନିଜ ସମୟ, ସଂସ୍କାର ଓ ସମାଜସ୍ପନ୍ଦନ ଅନୁସାରେ ଭିନ୍ନ ଭୂଖଣ୍ଡର ଭାବକଳ୍ପକୁ ନିଜ ଭୂଖଣ୍ଡର ପାଠକୀୟ ଭାବ ପ୍ରାଙ୍ଗଣରେ ଆରୋପଣ କରେ। ସାରୋଳ ଦାସ, ଜଗନ୍ନାଥ ଦାସ, ବଳରାମ ଦାସମାନେ ବ୍ୟାସ-ବାଲ୍ମୀକିଙ୍କ ଭାବଭୂମି ଓ ସର୍ଜନାଧାରାଠାରୁ ଦୂରେଇ ଯାଆନ୍ତିନି କିମ୍ବା ନିଜକୁ ବାଧ୍ୟଶିଷ୍ୟ ପରି ସେମାନଙ୍କ ପଛରେ ସିଧା ସିଧା, ସାଧା ସାଧା ଧାଉଡ଼ି କରାନ୍ତିନି। ମୂଳ ଲେଖାକୁ ସମୟ, ଭୂଗୋଳ, ସଂସ୍କୃତିର ପରିଧିକୁ ଡିଆଇଁ ସ୍ୱଦେଶୀ ଓ ସମକାଳର ଅନୁସୃଷ୍ଟିରେ ରୂପାନ୍ତରିତ ମାତ୍ର କରିଥା'ନ୍ତି।

ଅନୁସୃଜନର କଥାଟି ଏଠାରେ ଏତେ ସହଜ ନୁହେଁ। ଅନୁବାଦକଟିଏ ଅନୁସୃଜକ ହେବା ପରୋକ୍ଷରେ 'ସାଧୁ ସାବଧାନ' ପ୍ରସଙ୍ଗ ଭଳି। ଯିଏ ଚାହିଁବ ସେ ସାରୋଳା-ଜଗନ୍ନାଥଙ୍କ ପରି ଅନୁସୃଷ୍ଟି କରିପାରିବ ନାହିଁ। ଅତୀତ ଓ ବର୍ତ୍ତମାନକୁ ମିଶାଇ ଭବିଷ୍ୟତ ପାଇଁ ସ୍ୱଚ୍ଛନ୍ଦ ନୂଆ ଆବେଦନଟିଏ ସନ୍ତର୍ପଣରେ ନିରପେକ୍ଷ ବିନ୍ଦୁରେ ରହି ଦେଇପାରୁଥିବା ଭାବଗ୍ରହଣକାରୀ ହିଁ ଅନୁସୃଜକ ହୋଇପାରିବେ। ଅର୍ଥାତ୍ ଯିଏ ଭିନ୍ନଭାଷୀ ମୂଳ ଲେଖାର ବାଙ୍ମୟ ପାତ୍ରରେ ଥିବା ରସକୁ କେବଳ ଶବ୍ଦାର୍ଥ କରି ବୁଝିନଥିବ, ବରଂ ପଶ୍ଚାତ୍‌ଗତି କରି ମୂଳ ଲେଖା ରଚିତହେବାର ସମୟ-ସଂସ୍କୃତି-ପରମ୍ପରା ଓ ମୂଳ ଲେଖକର ମନୋଭୂମିକୁ ବିଶ୍ଳେଷଣ କରି ତା'ର ଇଙ୍ଗିତକୁ ଧରିପାରୁଥିବ ଏବଂ ନିଜର ଭାଷାବୃତ୍ତ-ସମୟବୃତ୍ତ-ସଂସ୍କୃତିବୃତ୍ତର ପାତ୍ରରେ ତାହାକୁ ଅଜାଡ଼ି ପାରୁଥିବ, ସିଏ ହିଁ ଅନୁସୃଜକ ହୋଇପାରିବେ। ଏ ପ୍ରକାର ଅନୁସୃଜନ ପ୍ରକ୍ରିୟାରେ ଅନୂଦିତ ଭାଷା ପାତ୍ରରେ ଅଜାଡ଼ି ହୋଇ ରହିଥିବା ରସରେ ମୂଳ ଲେଖାର ରମଣୀୟ ରୂପ ଯେମିତି ଟହ ଟହ ଚହଟି ଦିଶୁଥିବ; ସେମିତି ତଳେଇ ଦେଖିଲେ, ଅନୁବାଦକର ନିଜସ୍ୱ ସଂସ୍କୃତି-ସମୟ-ଭାଷାରମଣୀର ସୂକ୍ଷ୍ମ ସୌନ୍ଦର୍ଯ୍ୟ ତହିଁରେ ସ୍ୱଚ୍ଛନ୍ଦରେ ସନ୍ତର୍ପଣରେ ଚମକି ଉଠୁଥିବ। ଅତଏବ ଅନୁସୃଷ୍ଟି ଯଥାର୍ଥରେ ଅନୁବାଦକର ସଂଯତ କଳ୍ପନାର ସ୍ୱଚ୍ଛନ୍ଦ ସର୍ଜନକଳା। ଏ ଦିଗରୁ ଗୋଟିଏ ଭାଷା ପାତ୍ରରୁ/ ମାଧ୍ୟମରୁ ଅନ୍ୟଗୋଟିଏ ଭାଷା ପାତ୍ରକୁ/ଭିନ୍ନ ମାଧ୍ୟମକୁ ଭାବମାନଙ୍କୁ ବସ୍ତୁବତ୍

ସ୍ଥାନାନ୍ତରୀକରଣ ନିୟମରେ (Law of transfusion) ସତର୍କରେ, ସଂଯତରେ, ଶୃଙ୍ଖଳା ଭିତରେ ସଦାୟିତ୍ୱ ନେଇପାରୁଥିବା ମୁକ୍ତ ସର୍ଜନଶୀଳ କର୍ମ ହିଁ (Free-transcreation) ଅନୁବାଦ।

ଅନୁସୃଷ୍ଟିର ଏ ପ୍ରକାର ବିଜ୍ଞାନସମ୍ମତ ସଫଳତା ପାଇଁ ଅନୁବାଦକଙ୍କୁ ତିନିପ୍ରକାର ବୁଝାମଣା କରିବାକୁ ପଡ଼ିଥାଏ। ଯଥା– ଆବେଗିକ, ସାଂସ୍କୃତିକ ଓ ସମନ୍ୱୟାତ୍ମକ ବୁଝାମଣା। ଆବେଗିକ ବୁଝାମଣାଟି ଅନୁବାଦକର ବ୍ୟକ୍ତିଗତ ମନଜଗତର ବ୍ୟାପାର। ନିଜର ଆବେଗପ୍ରବଣ ଇଚ୍ଛାଶକ୍ତି ବଳରେ ଏ ଅବସ୍ଥାରେ ଅନୁବାଦକ ବିଶ୍ୱର ଯେ କୌଣସି ଭାଷା ଖେତରୁ ମହତ-ଫଳ-ଅମଳକ୍ଷମ ସୃଜନରଫସଲ ନିର୍ବାଚନ କରିପାରେ। ଜଣେ ଭାବନୁଗ ପସନ୍ଦବାଦୀ ଭାବରେ ସେ ଏହି ଫସଲର ପକ୍ୱ ରସକୁ ଆସ୍ୱାଦନ କରିପାରେ। ମୂଳ ଫସଲ ଉତ୍ପାଦକଙ୍କ ସହିତ ସେ ପ୍ରତିବାଦ-ବତର୍କ-ସନ୍ଧି-ସୌହାର୍ଦ୍ଦ୍ୟ ଭିତ୍ତିରେ ବୁଝାମଣା କରେ। ଅନୁବାଦକର ଏହି ପାଠକୀୟ ଆବେଗିକ ବୁଝାମଣା ତାକୁ ଆକ୍ଷରିକ ଓ ପ୍ରାମାଣିକ ଅନୁବାଦର ସାମର୍ଥ୍ୟ ଦେଇଥାଏ। ଯିଏ ଯେତିକି ପରିମାଣରେ ମୂଳ ଲେଖା ଓ ଲେଖକର ଅନୁଭବ ସହିତ ବିଶ୍ୱସ୍ତ ବୁଝାମଣା କରିଥାଏ, ସେ ସେତିକି ପରିମାଣରେ ଅନ୍ୟ ଜଳବାୟୁର ଫସଲକୁ ନିଜ ଜଳବାୟୁରେ ସଯତ୍ନରେ ବୁଣି, ବଢ଼ାଇ, ପଚେଇ ଅମଳ କରିପାରେ।

ନିଜ ଜଳବାୟୁରେ ଅପରର ବିହନକୁ ବୁଣି-ପାଳି-ପଚେଇବା ପ୍ରକ୍ରିୟାଟି ଅନୁବାଦକର ସାଂସ୍କୃତିକ ବୁଝାମଣା ସହିତ ସମ୍ପୃକ୍ତ। ସେ ମୂଳ ଲେଖାର ଭାବ ବିହନକୁ ଯେପରି ସଂଗ୍ରହ କରିଛି, ସେପରି ତା'ର ନିଜସ୍ୱ ଭାଷାଭାଷୀ ଅନ୍ୟ ସଂଗ୍ରହକାରୀ ପାଠକମାନେ ବୁଝିଛନ୍ତି କି ନାହିଁ– ଏପ୍ରକାର ଭାବଗତ ଓ ସମଷ୍ଟିଗତ ବୁଝାମଣା 'ସାଂସ୍କୃତିକ ବୁଝାମଣା'ର ମୁଖ୍ୟ ଦିଗ। ପୁନଶ୍ଚ ଭିନ୍ନ ସ୍ରୋତଭାଷୀ ଭାବନାର ବିହନ ନିଜର ଲକ୍ଷ୍ୟ-ଭାଷାର ସାଂସ୍କୃତିକ ପାଠକୀୟ ବାତାବରଣରେ ଅଙ୍କୁରୋଦ୍‌ଗମ ହୋଇପାରିବ କି ନାହିଁ, ଏହାର ଆବଶ୍ୟକତା ଗୁଣାତ୍ମକ ଭାବରେ ଆଦର ଭାଜନ ହେବ କି ନାହିଁ– ଏପ୍ରକାର ସିଦ୍ଧାନ୍ତ ମଧ୍ୟ ସାଂସ୍କୃତିକ ବୁଝାମଣାର ଅନ୍ୟତମ ଦିଗ। ଯଦି ଅନୁବାଦକ ସାଂସ୍କୃତିକ ବୁଝାମଣା ଭିତ୍ତିରେ ଅନ୍ୟ ଲେଖାର ଅନୁବାଦ ଯୋଗ୍ୟତାକୁ ଅନୁଭବ କରିବେ, ତେବେ ତାହା ଅନୁଦିତ ହେବା ଉଚିତ। ଅନୁବାଦ କ୍ରିୟାରେ ନିୟୋଜିତ ହେବା ମାତ୍ରେ ଅନୁବାଦକକୁ ସମନ୍ୱୟାତ୍ମକ ବୁଝାମଣାକୁ ମାନିନେବାକୁ ପଡ଼ିଥାଏ। ସମନ୍ୱୟାତ୍ମକ ବୁଝାମଣା ଅନୁସାରେ– ମୂଳ ଲେଖାର ସୌନ୍ଦର୍ଯ୍ୟ ଅନୁପାଠରେ ସମତୁଲ୍ୟ ଓ ନିଖୁଣ ଅଭିବ୍ୟକ୍ତି ପାଇବ। ଅନୁବାଦକ ମୂଳ ଲେଖକର ଶୈଳୀ ଓ କଳ୍ପନାର ପକ୍ଷକୁ ଅନୁସରଣ କରିବା ମୂଳ ଲେଖାର ପାଠକ ବା ଶ୍ରୋତା ଉପରେ ଯେଉଁ ପ୍ରକାର ଆବେଦନ ରହିଛି, ତାହା ଅବିକଳ ସୁରକ୍ଷିତ ରହିବ। କେବଳ ଅନୁବାଦକ ଅନୁସୃଜନ କ୍ଷେତ୍ରରେ ସ୍ୱଚ୍ଛନ୍ଦକଳ୍ପକ ହୋଇ ମୂଳ ଗ୍ରନ୍ଥର ସାମଗ୍ରିକ

ଭାବ ଓ ଅର୍ଥକୁ ନିଜର ଲକ୍ଷ୍ୟ ଭାଷାରେ ଆଞ୍ଚଳିକ ବାତାବରଣ, ସାମାଜିକ ପଟ୍ଟଭୂମି, ସାଂସ୍କୃତିକ ବିଶ୍ୱାସ ଓ ଅଭିଳାଷ ଏବଂ ଲୋକାନୁବୃତ୍ତିକ ବିଧାନ ଅନୁସାରେ ସମଯୋଜିତ ସୂକ୍ଷ୍ମାତିସୂକ୍ଷ୍ମ କୌଶଳରେ କରିପାରେ। ଏ ଦିଗରୁ ଅନୁସୃଷ୍ଟି ବିଧାନ ହେଉଛି, ବସ୍ତୁସୁଲଭ ରୂପାନ୍ତରୀକରଣ ପ୍ରକ୍ରିୟା। ଏହି ଅନୁସୃଜନାତ୍ମକ ପ୍ରକ୍ରିୟାରେ ଅନୁବାଦକ ମୂଳ ପାଠ ଅଥବା ସହ ପାଠରୁ (ଯେଉଁ ପାଠଟି ମୂଳ ଲେଖାରୁ ଅନୁବାଦକ ଜାଣିଥିବା ଅନ୍ୟ ଏକ ସହଭାଷାରେ ପୂର୍ବରୁ ଅନୁବାଦିତ ହୋଇଥାଏ, ତାହାକୁ ମଧ୍ୟ ଅନୁବାଦକ ମୂଳ ଲେଖାବତ୍ ସହପାଠ ଭାବରେ ଗ୍ରହଣ କରିପାରେ– ମାତ୍ର ଏହା ନିରାପଦ ଅନୁବାଦର ମାଧ୍ୟମ ନୁହେଁ) ବସ୍ତୁରୂପକର ଅର୍ଥ ଗ୍ରହଣ କରେ ® ଅର୍ଥକୁ ବିଶ୍ଳେଷଣ କରେ ® ତାହାକୁ ଲକ୍ଷ୍ୟ ଭାଷାର ଶବ୍ଦକ୍ରମ ଓ ସାଂସ୍କୃତିକ ସ୍ପନ୍ଦନ ସହିତ ଅନ୍ତଃକରଣ ବା ସମୀକରଣ କରେ ® ଉଭୟ ଉତ୍ସ ଭାବ ଓ ଲକ୍ଷ୍ୟଭାବ ମଧ୍ୟରେ ସମରୂପତା ନିର୍ଦ୍ଧାରଣ କରେ ® ମୂଳଭାବର ଗୋତ୍ରାନ୍ତରୀକରଣପୂର୍ବକ ଆରୋପଣଘଟାଏ ® ମୂଳ ପାଠର ପୁନର୍ଗଠନ ବା ଅନୁସୃଷ୍ଟି ନିର୍ମାଣ ସଫଳ ହୋଇଥାଏ।

(ସାତ)

ପ୍ରତ୍ୟେକ ଭାଷାର ପ୍ରତ୍ୟେକ ମହତ୍ ଗ୍ରନ୍ଥ ସଭ୍ୟତାର କ୍ରମୋନ୍ନତି ଧାରାରେ ମୂଳ ଭାଷାପିଣ୍ଡରୁ ସଞ୍ଚରି ଯାଇ ବିଶ୍ୱାୟିତ ହେବାକୁ ଅହୋଭାଗ୍ୟ ମଣିଥା'ନ୍ତି। ଅନେକ ଭାଷାବିଜ୍ଞ ଅନୁବାଦ କରନ୍ତି। ମାତ୍ର କିଛି ଭାଷାବିଦ୍ୱାନ ବିଶ୍ୱର ମହତ ସାରସ୍ୱତୀୟ ଫସଲର ବିହନ ଓ ଚାରାକୁ ଅନ୍ୟ ଭାଷା ଭୂଖଣ୍ଡରେ ରୋପଣ କରି ମାନବୀୟ ଭାବନାର ଅଖଣ୍ଡତା ନିର୍ମାଣ କରନ୍ତି– ଯାହାର ଅପର ସମାଖ୍ୟା ହେଉଛି– 'ଅନୁବାଦ କଳାକର୍ମ।' ମାତ୍ର ବିଶ୍ୱ ଜ୍ଞାନଧାରାର ଗ୍ରନ୍ଥ ବିନିମୟାତ୍ମକ ପରମ୍ପରାରେ ଏହାହିଁ ବିଚିତ୍ର ରୂପେ ଦୃଶ୍ୟମାନ ପ୍ରସଙ୍ଗ ଯେ ମୁଷ୍ଟିମେୟ ଉଦ୍ଦେଶ୍ୟବାଦୀମାନଙ୍କ ସାଂସ୍କୃତିକ ରାଜନୀତିକରଣ ଓ ସ୍ୱାର୍ଥପ୍ଲୁତ ଅଭିଳାଷ ପୂରଣ ଭିତ୍ତିରେ ବରାଦ ଦିଆ ଗ୍ରନ୍ଥଗୁଡ଼ିକ ଅନୁଦିତ ହୋଇ ଅନୁବାଦର ହରରଙ୍ଗୀ ପୋଷାକ ପିନ୍ଧି ମହତ ଗ୍ରନ୍ଥଗୁଡ଼ିକର ଇତିହାସକୁ ବିକୃତ କରି ତଥାପି ନିଜ ନିଜକୁ ଡଉଲଡାଉଲ କରି ମୁଣ୍ଡଟେକି ଏ ନଗରରୁ ସେ ନଗର ବିଶ୍ୱାୟନ ଯାତ୍ରା ପାଇଁ ଆଗଭର ହୋଇ ଚାଲିଛନ୍ତି। ଏ ପ୍ରକାର କୌତୁକ ଓ ଅପାର୍ଥର ଭେଳିକି ପଛରେ ଏକଥା ସତ୍ୟ ଯେ ଯେଉଁ ଭାଷାର ଅନୁସୃଜକମାନେ ନିଜର ବୟକ୍ତିକ ଆବେଗ, ପାଠକୀୟ ବିଚାର ଓ ମହତ୍ତମ ଅନୁଭୂତିକୁ ଚିହ୍ନି ଚିହ୍ନେଇବାର ରୁଚିଗତ ପ୍ରେରଣାକୁ ସମଷ୍ଟିଗତ ଇଚ୍ଛାଶକ୍ତି ଓ ଆବଶ୍ୟକତା ସହିତ ଯୋଡ଼ିଦେଇ ଅନୁବାଦ କଳା କର୍ମରେ ନିଶାଗ୍ରସ୍ତ ହୋଇଯା'ନ୍ତି, ସେହି ଭାଷାର ସାରସ୍ୱତୀୟ ମହତ୍ ଭାବନା ଅନ୍ୟ ସାରସ୍ୱତୀୟ ଆକାଶକୁ ସଞ୍ଚରି ଯାଏ, ଘୋଟିଯାଏ ଏବଂ ଅନ୍ୟ ଆକାଶର ବାଙ୍ମୟ ନବମେଘମାନଙ୍କୁ ନିଜ ଆକାଶକୁ ଆମନ୍ତ୍ରଣ କରିଆଣେ। ଏ ଧରଣର ସଞ୍ଚାର ଓ ଆମନ୍ତ୍ରଣ

ଭିତରେ ଜ୍ଞାନ ଓ ଭାବମଣ୍ଡଳର ଦୁର୍ଲ୍ଲଭ ନୀଳିମା ବିଶ୍ୱତୋମୁଖୀ ହୋଇଉଠେ ଏବଂ ସାହିତ୍ୟ କୃତିର ଆବେଦନ ବିଶ୍ୱ-ବିଶ୍ୱସିତ ହୋଇଯାଏ ।

ଯୁଗେ ଯୁଗେ ମୌଳିକ ସାହିତ୍ୟକୁ ଅନୁବାଦ ସାହିତ୍ୟ ବିଶ୍ୱସଂଚାରୀ କରିଆସିଛି । ପରସ୍ପରକୁ ଜାଣିବା ଓ ସାଂସ୍କୃତିକ-ରାଜନୀତିକ-ଭୌଗୋଳିକ ସଂଯୋଗ ପ୍ରତିଷ୍ଠା କରିବା ନିମନ୍ତେ ଅନୁବାଦର ଅପରିହାର୍ଯ୍ୟତା ସାର୍ବକାଳିକ ସ୍ୱୀକୃତି ପାଇଆସିଛି । ଅନୁବାଦ ସାହିତ୍ୟ ଗୋଷ୍ଠୀବଦ୍ଧ ସଦ୍‌ଭାବନାର ମାଧ୍ୟମ ହୋଇ ସାର୍ବିକ କଲ୍ୟାଣ ନିମନ୍ତେ ଗଠନାତ୍ମକ ଭୂମିକା ସମ୍ପାଦନ କରିଆସିଛି ।

ଦୂର ଅତୀତକୁ ଗଲେ ଦେଖିବା ପ୍ରତିବାଦ ଓ ସମକକ୍ଷ ତଥା ଉତ୍ତରିତ ହେବାର ସଂଘବଦ୍ଧ ମାନସିକତାରୁ ଅନୁବାଦ କଳାର ପ୍ରୟୋଗ ଓ ପ୍ରସାର ଘଟିଛି । ଆରବିକ୍ ଭାଷାକୁ ଗ୍ରୀକ୍ ଭାଷା ପରି ସମୃଦ୍ଧ ଏବଂ ଆରବୀୟ ଜ୍ଞାନମଣ୍ଡଳକୁ ଗ୍ରୀକ୍‌ପରି ସୁସମୃଦ୍ଧ, ଆଭିଜାତ୍ୟ ଦ୍ୟୋତକ ଓ ଗୁଣଗର୍ଭକ କରିବା ନିମନ୍ତେ ସିରିଆ ଓ ମେସୋପୋଟାମିୟା ସଭ୍ୟତାର ବିଜ୍ଞ ନାଗରିକମାନେ ବାଗ୍‌ଦାଦ୍ ନଗରୀରେ ଅନୁବାଦ ସାହିତ୍ୟ ସଂଘଟିଏ ଗଠନ କରି ୮-୯ମ ଶତାବ୍ଦୀ ବେଳକୁ ପ୍ଲାଟୋ, ଆରିଷ୍ଟୋଟଲ, ଗାଲେନ୍, ହିପୋକ୍ରେଟସ, ହୋମରଙ୍କ ମୂଲ୍ୟବାନ ଗ୍ରନ୍ଥଗୁଡ଼ିକୁ ଅନୁବାଦ କରିଛନ୍ତି । ୧୧-୧୨ ଶତାବ୍ଦୀରେ ସ୍ପେନ୍‌ର 'ତେଲେଡୋ ଅନୁବାଦ ସଂଘ' ଗ୍ରୀକ୍, ଆରବିକ ଓ ସଂସ୍କୃତ ଭାଷାର ମହାନ୍ ଗ୍ରନ୍ଥଗୁଡ଼ିକୁ ଲାଟିନ୍‌ରେ ଅନୁବାଦ କରିଛନ୍ତି । ଫଳରେ ମଧ୍ୟପ୍ରାଚ୍ୟକୁ ମଝିରେ ରଖି ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ମହାମିଳନ ଗ୍ରନ୍ଥାନୁବାଦ ଦ୍ୱାରା ସମ୍ଭବ ହୋଇଛି । ଏସବୁ ଭୂଖଣ୍ଡରେ ଅନୁବାଦକଳା ରାଜ ପୃଷ୍ଠପୋଷକତାକୁ ଗଣ୍ଠିଧନ କରିବେଶ୍ ଉଧେଇଛି ଓ ଲାଭବାନ ବି ହୋଇଛି ।

ରେନେସାଁସ୍ ଯୁଗରେ ମୂଲ୍ୟବୋଧ ଓ ଜ୍ଞାନାତ୍ମକବୋଧ ଶକ୍ତିକୁ ସମ୍ମୁନ୍ନତ କରିବା ପାଇଁ ଅନୁବାଦ କଳାକୁ ଅନ୍ୟତମ ମୁଖ୍ୟ ଅବଲମ୍ବନ ରୂପେ 'ଇଂରାଜୀ ଅନୁବାଦ ସଂସ୍ଥା' ଗ୍ରହଣ କରିଛି । ୧୬ଶ ଶତାବ୍ଦୀରେ ଏଲିଜାବେଥଙ୍କ ନିର୍ଦ୍ଦେଶରେ ବିଶ୍ୱର ପରିପାର୍ଶ୍ୱକୁ ଓ ଭିନ୍ନ ସମୃଦ୍ଧ ଭୂଖଣ୍ଡର ପରିଚିତିକୁ ଜାଣି ସାମ୍ରାଜ୍ୟବାଦୀ ସୂତ୍ର ନିରୂପଣ କରିବା ନିମନ୍ତେ ଅନୁବାଦର ସୁବର୍ଣ୍ଣ ଅଧ୍ୟାୟ ନିର୍ମାଣ ଉପରେ ଇଂଲଣ୍ଡ ଜ୍ଞାନମସ୍ତିଷ୍କ ଗୁରୁତ୍ୱାରୋପ କରିଛନ୍ତି । ଫଳରେ ମାନବିକ ଚିନ୍ତାଧାରାର ବିଜ୍ଞାନସମ୍ମତ ଦିଗଗୁଡ଼ିକ ସମ୍ବନ୍ଧରେ ଅବଧାରଣା କରିବାକୁ ଯାଇ ବିଶ୍ୱର ଶ୍ରେଷ୍ଠ ଗ୍ରନ୍ଥଗୁଡ଼ିକ ଇଂରାଜୀରେ ଭାଷାନ୍ତରିତ ହୋଇଛି । ଏଥିପାଇଁ ସମସ୍ତ ବ୍ୟୟ ଇଂରେଜ ବଣିକ ସଂଘ ବହନ କରିଛି ।

ଏଥିପୂର୍ବରୁ ଓ ଏହାର ସମକାଳରେ ଓଡ଼ିଆ ଭାଷାରେ ଏକ ପ୍ରତିବାଦ ମାନସିକତା ଓ ନିଜ ଭାଷାକୁ ଆଭିଜାତ୍ୟ-ସଂସ୍କୃତ ଭାଷାର ସମକକ୍ଷ କରିବାର ଆସ୍ପର୍ଦ୍ଧା ଭିତରେ ସାରୋଳ,

ବଳରାମ, ଜଗନ୍ନାଥ, ଧରଣୀଧର, ପିତାମ୍ବର ଓ ଅଚ୍ୟୁତାନନ୍ଦ ପ୍ରମୁଖ ବାଲ୍ମିକୀ-ବ୍ୟାସ-ଜୟଦେବଙ୍କ କୃତିର ଅନୁସୃଜନ କରି ଓଡ଼ିଆ କଥିତ ଭାଷାକୁ ସାହିତ୍ୟାନୁସାରୀ କଳା ସାମର୍ଥ୍ୟରେ ପ୍ରତିଷ୍ଠା ଦେଇଛନ୍ତି। ଅନ୍ୟାନ୍ୟ ପ୍ରାନ୍ତୀୟ ଭାରତୀୟ ଭାଷା ତୁଳନାରେ ପ୍ରଥମ କରି ନିଷ୍ଠାପର ସଂକଳ୍ପ ଭିତରେ ଓଡ଼ିଆ-ଭାଷୀ ଅନୁସ୍ରଷ୍ଟାମାନେ ମହାଭାରତ, ରାମାୟଣ, ଭାଗବତ ଓ ଗୀତଗୋବିନ୍ଦ ଆଦିର ଅନୁସୃଜନ କରି ପ୍ରମାଣିତ କରିଛନ୍ତି ଯେ ଯାହା, ଯେପରି, ଯେଉଁ ଶୃଙ୍ଖଳାର ଯେ ପ୍ରକାର ନାନ୍ଦନିକ ରସାବେଦନରେ ସଂସ୍କୃତ ଭାଷା ଦ୍ୱାରା ସମ୍ଭବ, ତାହା ଅନୁରୂପ ଭାବରେ ଉତ୍କଳୀୟ-ଲୋକକଥିତ ଭାଷାରେ ମଧ୍ୟ ସମ୍ଭବ।

ପ୍ରଥମ ବିଶ୍ୱଯୁଦ୍ଧ ପରେ ପରେ ଦୀର୍ଘ ଛ' ଦଶନ୍ଧି ଧରି ଋଷୀୟ ପ୍ରଗତିଶୀଳ ଅନୁବାଦ ସଂଘ ମାର୍କସବାଦୀୟ ମହାନ୍ ଗ୍ରନ୍ଥଗୁଡ଼ିକୁ ବିଶ୍ୱର ବହୁ ପରିଚିତ ଭାଷାରେ ଅନୁବାଦ କରାଇବା ଦ୍ୱାରା ଅନୁବାଦ ସାହିତ୍ୟ ନିର୍ଦ୍ଦିଷ୍ଟ ଚେତନା, ସଂପ୍ରଦାୟ, ଅନୁବିଧିର ବିଜ୍ଞାପିତ ପ୍ରଚାରଶୀଳ ମାଧ୍ୟମ ରୂପେ ପରିଗୃହୀତ ହୋଇଛି। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ମାର୍କିନ ଅନୁବାଦ ସାହିତ୍ୟ ଯେଉଁ ବୈଶିଷ୍ଟ୍ୟ ଓ ଉଦ୍ଦେଶ୍ୟଟିକୁ ଅନୁବାଦକଳା ସହିତ ଯୋଖିଦେଇଛି, ତାହା ହେଉଛି– ବିଶ୍ୱର ବିବିଧ ଜ୍ଞାନରାଶି ଓ ବିଭିନ୍ନ ଭୂମିଖଣ୍ଡର ଭାବପ୍ରତ୍ୟୟକୁ ଆତ୍ମସାତ କରି ନିଜସ୍ୱ ଜ୍ଞାନର ବଳିଷ୍ଠତାକୁ ଦେଶ-ଦେଶାନ୍ତର କରି ପ୍ରସାରିତ କରାଇବା ନିମନ୍ତେ ଅନୁବାଦ ହିଁ ଏକମାତ୍ର ନିର୍ଭରଶୀଳ ପ୍ରଜ୍ଞାଶୀଳ ମାଧ୍ୟମ। ୧୯୪୮ ମସିହାରୁ ୟୁନେସ୍କୋ (UNESCO) ବିଶ୍ୱଚରାଚରରେ ଶାନ୍ତି-ମୈତ୍ରୀ-ସଦ୍‌ଭାବନାର ଭାବ ବିନିମୟ ନିମନ୍ତେ ସାର୍ବଜନୀନ ଅନୁବାଦ କାର୍ଯ୍ୟକ୍ରମ ନିମନ୍ତେ ପ୍ରୋତ୍ସାହିତ ଯୋଜନାମାନ ଏଯାବତ୍ ଗ୍ରହଣ କରି ଆସୁଛି। ଏତଦ୍‌ବ୍ୟତୀତ 'ଆନ୍ତର୍ଜାତୀୟ ଅନୁବାଦକ ମୈତ୍ରୀ ସଂସ୍ଥା' (IFT) ମାନବୀୟ କଳ୍ପନାର ସଂହତି ନିମନ୍ତେ ଅନୁବାଦ-କ୍ଷେତ୍ରୀୟ ସମସ୍ୟାର ସମାଧାନ କରିଆସୁଛି। ୧୬୫୮ଟି ଭାଷା ପ୍ରଚଳିତ ହେଉଥିବା ଭାରତବର୍ଷର ବିବିଧତାକୁ ଏକ ସଂହତି ସୂତ୍ରରେ ଅନୂଦିତ କରି ରଖିବା ପାଇଁ ସ୍ୱାଧୀନତୋତ୍ତର କାଳରେ କେନ୍ଦ୍ର ସାହିତ୍ୟ ଏକାଡେମୀ (୧୯୫୪)ଓ ଜାତୀୟ ପୁସ୍ତକ ନ୍ୟାସ (NBT–୧୯୫୭) ଗଠିତ ହୋଇ ଏହା ମାଧ୍ୟମରେ ବିଭିନ୍ନ ପ୍ରାଦେଶିକ ଭାଷାର ପାଠକାଦୃତ ମହତ୍ତମ ଗ୍ରନ୍ଥଗୁଡ଼ିକ ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାରେ ଅନୁବାଦ ହେଉଛି। ସଂପ୍ରତି ଅନୁବା ଏକ ଉପବୃତ୍ତି ହୋଇରହି ନାହିଁ। ବରଂ ବିଶ୍ୱର ଏକକୀକରଣ ନିମିତ୍ତ, ରାଷ୍ଟ୍ରୀୟ ଭାବନାର ସଂହତିସୂଚକ ସମୃଦ୍ଧି ପାଇଁ ଏବଂ ସମଗ୍ର ମାନବଜାତି ଭିତରେ ଜ୍ଞାନଚେତନା-କଳ୍ପନାର ରଚନାତ୍ମକ ବିନିମୟ ଉଦ୍ଦେଶ୍ୟରେ ଏହା ଏକ ପ୍ରାୟୋଗିକ କଳା ଭାବରେ ମାନ୍ୟତା ପାଇଛି।

ଅନୁବାଦର ଏହି ମହାପ୍ରବାହ ଧାରାରେ ଓଡ଼ିଆ ସାହିତ୍ୟ ଏବେ ଏକତରଫା ପ୍ରଶସ୍ତ ହୋଇଛି। ଏହି ପ୍ରଶସ୍ତ ଦିଗଟି ହେଉଛି, ଅନ୍ୟ ପ୍ରାନ୍ତୀୟ ଭାଷାର ଗ୍ରନ୍ଥମାନେ

ଥାକପୂର୍ଣ୍ଣ ହୋଇ ଓଡ଼ିଆତ୍ୱ ପାଇଛନ୍ତି । ମାତ୍ର ଓଡ଼ିଆ ସ୍ୱାଭିମାନର ନିଦର୍ଶନରୂପୀ ମହାନ୍ ରଚନାଗୁଡ଼ିକ ଅନ୍ୟ ଭାରତୀୟ ଭାଷାରେ ଏକ-ତୃତୀୟାଂଶ ହୋଇ ଥାକଶୋଭାବୃିରେ ମିଶିପାରି ନାହାନ୍ତି । ଏପରିକି ପର୍ଯ୍ୟାପ୍ତ ନହେଲେ ବି ବିଶ୍ୱର ଅନ୍ୟ ବୈଦେଶିକୀ ଭାଷାର ଜ୍ଞାନ, କଳ୍ପନା, ପ୍ରତିଭାମାନଙ୍କୁ ଆମେ ସାଦର ପ୍ରେରଣା ଉତ୍ସ ଭାବରେ ଅନୁବାଦ କରି ଗ୍ରହଣ ଯେତିକି ପରିମାଣରେ କରିଛୁ, ତାହାର ଏକଦଶମାଂଶ ମଧ୍ୟ ବିଦେଶୀ ଭାବନାବୃତ୍ତରେ ଆମ ରଚନାମାନେ ଲୋଡ଼ାଯାଇନାହାନ୍ତି କି ଆମେ ପହଞ୍ଚାଇ ପାରିନାହୁଁ । ଆମ ଲାଭଖୋର ପ୍ରକାଶନ ସଂସ୍ଥାର ଇଚ୍ଛାବୃତ୍ତି ଆମକୁ ଅନୁବାଦ କରିବା ଅପେକ୍ଷା ଆମଦ୍ୱାରା ଅନ୍ୟମାନଙ୍କୁ ଅନୁଦିତ କରାଇବା ଉପରେ ଗୁରୁତ୍ୱ ଦେଇ ଚାଲିଛନ୍ତି । ତେଣୁ ଓଡ଼ିଆ ଭାଷାରେ ଯେ ବଳିଷ୍ଠ ଲେଖାର ଅନୁଭବମାନେ ଚମତ୍କାର ବିଶ୍ୱବୋଧର ହୋଇପାରନ୍ତି– ଏ ସ୍ୱାଭିମାନର ପ୍ରମାଣ ପାଇଁ ଓଡ଼ିଶାରେ କିଶୋରୀଚରଣ, ବ୍ରଜମୋହନ, ଜଗନ୍ନାଥ ପ୍ରସାଦ, ଚିତ୍ତରଞ୍ଜନ, ମାୟାଧର, ମନୋଜ, ସୀତାକାନ୍ତ, ରମାକାନ୍ତଙ୍କ ପରି ନିଜକୁ ଅନ୍ୟତ୍ର ପହଞ୍ଚାଇ ପାରୁଥିବା ଓ ନିଜର ଅନୁବାଦ ଦକ୍ଷତା ଖଟେଇ ନିଜ ରୁଚିକୁ ବିତରି ପାରୁଥିବା ପ୍ରତିଭାର ଆବଶ୍ୟକତା ପଡୁଛି । ଏହା ମଧ୍ୟ ସତ୍ୟ, ଏପ୍ରକାର କ୍ଷଣଜନ୍ମା ପ୍ରତିଭା (Author translator) ଓଡ଼ିଶା ଭାଗ୍ୟରେ ଖୁବ୍ କମ୍ ମିଳନ୍ତି ।

ଏହି ମର୍ମରେ ଗୋଟିଏ ସାରାଂଶ କଥିତବ୍ୟ ହେଉଛି– ଏବେ ବି ଅନୁବାଦ କ୍ଷେତ୍ରଟି ଓଡ଼ିଆ ସାହିତ୍ୟରେ ଅନେକ ଶୂନ୍ୟ ସିଂହାସନ ସହିତ ଯଥେଷ୍ଟ ପରିମାଣରେ ଅପ୍ରଶସ୍ତ ହୋଇ ରହିଛି ଏବଂ ସଶ୍ରଦ୍ଧ, ନିଷ୍ଠାପର, ଭାଷାଧୁରୀଣ ସ୍ୱାଭିମାନୀ ଅନୁବାଦକଙ୍କୁ ବରଣମାଳା ଧରି ଅନୁବାଦଯୋଗ୍ୟା ସ୍ୱୟମ୍ବରା ରଚନା-ସୁନ୍ଦରୀଗଣ ଅପେକ୍ଷା କରି ରହିଛନ୍ତି ।

## (ଆଠ)

ଏହି ପରିପ୍ରେକ୍ଷାରେ ଅନୁବାଦ କଳା, ଅନୁବାଦର ଅନୁବିଧି, ଭଲ ଅନୁବାଦର ପ୍ରବିଧି, ଅନୁବାଦକର ସ୍ୱଧର୍ମ ଓ ଦାୟବଦ୍ଧତା ସମ୍ପର୍କରେ କେତେକ ବୈଶିଷ୍ଟ୍ୟଗର୍ଭକ ଦିଗ ଉପରେ ସୂଚନା ଦିଆଯାଉଛି । ଭଲ ଅନୁବାଦରେ–

- ମୂଳ ଲେଖାର ଭାବଧାରା ଓ ଲିଖନଭଙ୍ଗୀ ବିଶ୍ୱସ୍ତ ଓ ସମରୂପକ ହୋଇଥାଏ ।
- ମୂଳ ଶବ୍ଦକ୍ରମର ଆଭିଧାନିକ ଅନୁବାଦ କରା ନଯାଇ ଇଙ୍ଗିତାତ୍ମକ ଅର୍ଥ ଦ୍ୟୋତନା ଅନୁରୂପ ଭାଷାନ୍ତର କରାଯାଇଥାଏ ।
- ଶବ୍ଦର ରୂପାନ୍ତରଣ ଅପେକ୍ଷା ଭାବର ଘଟାନ୍ତରୀକରଣ କରାଯାଇଥାଏ ।
- ଅନୁବାଦଯୋଗ୍ୟ ଲେଖାଟି ଭାବୋତ୍ତୀର୍ଣ୍ଣ, ଅତ୍ୟୁତ୍ତମ ଓ ଶୁଭଗ ଆଦୃତଯୋଗ୍ୟ ହେବା ଦରକାର ପଡ଼େ ।

- ଅନୁବାଦ ପ୍ରକ୍ରିୟାକୁ ଭାଷାରୁ ଭାଷାକୁ ଦେଣନେଣ କଳା (Art of translation) ଭାବରେ ନିର୍ବହଣ କରାଯାଇଥାଏ।
- ମୂଳ ଲେଖାରେ ଲେଖକ କ'ଣ କିପରି, କାହିଁକି କହିଛନ୍ତି,ତାହାକୁ ବୁଝି ଲକ୍ଷ୍ୟ ଭାଷାର ଲେଖାରେ ଅନୁରୂପ ସୌନ୍ଦର୍ଯ୍ୟ ସମ୍ବେଦ୍ୟ ହୋଇ ରୂପାୟଣ କରାଯାଇଥାଏ।
- ଅନୂଦିତ କୃତି ମୂଳବତ୍ ପାଠକୀୟ ଆବେଦନ ସୃଷ୍ଟି କରିଥାଏ। ମୂଳ କୃତିର ସମୟ-ସଂସ୍କୃତିର ପରିସ୍ପନ୍ଦନ ମିଳିବା ସଙ୍ଗେ ସଙ୍ଗେ ଅନୁବାଦିତ ଭାଷାଭାଷୀ ସଂସ୍କୃତିର ପରିସ୍ପନ୍ଦନ ମିଳିବା ସଙ୍ଗେ ସଙ୍ଗେ ଅନୁବାଦିତ ଭାଷାଭାଷୀ ସଂସ୍କୃତିର ଛାୟାବିମ୍ବ ମଧ୍ୟ ସହଜଲବ୍ଧ ଲକ୍ଷ୍ୟ ଭାଷାର ପାଠକ ପାଇଁ ହୋଇଥାଏ।
- ଶବ୍ଦର ପ୍ରତିଲିପିକରଣ ହୋଇନଥାଏ; ବରଂ ଶବ୍ଦର ଅର୍ଥ-ସୌନ୍ଦର୍ଯ୍ୟକୁ ଗୋଟିଏ ଭାଷାର ଲେଖପିଣ୍ଡରୁ ଅନ୍ୟ ଭାଷାର ଲେଖ ଶରୀରକୁ ସ୍ଥାନାନ୍ତର କରାଯାଇଥାଏ।
- ମୂଳ ଲେଖାର ସାମଗ୍ରିକ ଶରୀରରେ ଭାବରସର ଯେଉଁ ରକ୍ତକୋଷୀୟ ପ୍ରବାହ ସଂଚାଳିତ ହୋଇଥାଏ ଅନୂଦିତ ଲେଖାର ଶିରାରେ ଶିରାରେ ଅନୁରୂପ ରକ୍ତ ସଞ୍ଚାଳନ କରାଯାଇଥାଏ।
- ମୂଳ କୃତିର ବର୍ଣ୍ଣ ବା ଲିପିର ସ୍ଥାନ ବଦଳ (ଟ୍ରାନ୍ସପୋଜ) ଘଟେ, ମାତ୍ର ଗୋଟିଏ ଜାହାଜରୁ ଅନ୍ୟ ଜାହାଜରୁ ଦ୍ରବ୍ୟ ବୋହିନେବା ପରି ଗୋଟିଏ ଭାଷାରୁ ଶବ୍ଦାର୍ଥର ଚାଲାଣ ଅନ୍ୟ ଭାଷାର ଜାହାଜକୁ ହୋଇଥାଏ।
- ଅନୁସୃଜନ ଏକ ପ୍ରତିରୋପଣ ପ୍ରକ୍ରିୟା (Process of transplatation); ଯେଉଁଥିରେ ଅନ୍ୟ ଭାଷା ଭୂଖଣ୍ଡରେ ରୋପିତ ବୃକ୍ଷକୁ ଅନୁବାଦକ, ନିଜ ପାଠକୀୟ ଶ୍ରଦ୍ଧାପଣରେ ବୋହିଆଣି ନିଜ ଭାଷାର ପରିସ୍ପନ୍ଦରୁ ସାରଖତ ସଂଗ୍ରହ କରି ତା' ମୂଳରେ ଦେଇ ନିଜ ଭାଷାଭାଷୀ ପାଠକଙ୍କ ହୃଦୟତୋଟାରେ ପ୍ରତିରୋପଣ କରିଥାଏ।
- କେବଳ ଭାବ୍ ନୁହେଁ, ଶୈଳୀ ନୁହେଁ, ମୂଳ ଲେଖକର ବକ୍ତବ୍ୟ, ଯୁକ୍ତି, ତର୍କଣା, ମନନ, ଦର୍ଶନ, ବିଶ୍ୱାସ, ବକ୍ତବ୍ୟ ଓ ଆବେଦନର ଅକ୍ଷୁଣ୍ଣ ରୂପାନ୍ତର (ଟ୍ରାନ୍ସମ୍ୟୁଟ୍) ହୋଇଥାଏ।

ଅନୁବାଦ କଳାର ପ୍ରସିଦ୍ଧ ବିମର୍ଶକମାନଙ୍କ (A.F. Tytler, Lord Wood Houselee, Drydren, Mathew Arnold, F.W.Neoman, T.H. Savory, G. Showerman, C.D. Lewis, A.C.Bradley, Postgate, George Steiner,

Eticnne Doilet...) ବିଚାରରେ କୌଣସି ଭାଷାର ସାଂସ୍କୃତିକ ମୌଳତାଞ୍ଚା ଓ ଲେଖାର ମୌଳିକ ଭାବାନୁଭୂତିର ଅନୁବାଦ ଶତପ୍ରତିଶତ ହୋଇପାରି ନଥାଏ। ପୁନଶ୍ଚ ଗଦ୍ୟ ଲେଖାର ମୂଳ ଭାଷାଗତ ସମାଜ-ତାତ୍ତ୍ୱିକ ଅର୍ଥର ବାସ୍ତବ ପ୍ରାୟୋଗିକ ସୌନ୍ଦର୍ଯ୍ୟ ବିଶ୍ୱସ୍ତ ଓ ସୁନ୍ଦର ଭାବେ ସପ୍ରାମାଣିକ ଅନୂଦିତ ହେବା ସହଜ ନୁହେଁ। ପଦ୍ୟାନୁବାଦ କ୍ଷେତ୍ରରେ ଏହି ସନ୍ଦିହାନର ମାତ୍ରା ଅଧିକ। ଯେ କୌଣସି ବହୁଭାବ ବର୍ଣ୍ଣିଳ କବିତାର ଶ୍ରୀ. ସୌରଭ, ସୌକାର୍ଯ୍ୟ, ଭାବଐଶ୍ୱର୍ଯ୍ୟ, କଳ୍ପନାର ରସମୟତାକୁ ଅନୁବାଦରେ କ୍ରିୟତ ପରିମାଣରେ ଲୋଡ଼ିବା ମଧ୍ୟ ବିଡ଼ମ୍ବନାର ପ୍ରସଙ୍ଗ। ମହତ ଜ୍ଞାନ, ବିଚିତ୍ର ପ୍ରସିଦ୍ଧି, ଅପୂର୍ବ ଚିତ୍ରଧର୍ମିତା, ବିରଳ ଅନୁଭବ, ବଳିଷ୍ଠ ଦର୍ଶନ-ମନନର ସ୍ୱର ଓ ତ୍ରିକାଳିକ ସତ୍ୟଦ୍ୱାରା ଆବିଷ୍ଟ ଅଭିପ୍ରାୟ ଇତ୍ୟାଦି ଦ୍ୱାରା ପ୍ରଯୁକ୍ତ କାବ୍ୟଶବ୍ଦର ଶୈଳୀକରଣ, ସାଙ୍ଗୀତିକ ମାଧୁର୍ଯ୍ୟ, ଇଙ୍ଗିତାତ୍ମକ ସଂପ୍ରସାରଣଧର୍ମୀ ଭାବବିଳାସ ସଫଳତାର ସହିତ (ମୂଳ ପଦ୍ୟ ଲେଖାର) ସମତଙ୍ଗରେ ସମାବେଦନରେ ଭାଷାନ୍ତର କରିବା ଦୁଃସାଧ୍ୟ। ଏପରିକି ମୂଳ ଲେଖକର ବିତଳକୁ ଯଥାର୍ଥଭାବେ ଧରି ନ ପାରି ଅଥବା ମୂଳ ଲେଖାର ଯୁକ୍ତି, ତର୍କଣା, ପ୍ରତୀକ, ଅର୍ଥ ଲକ୍ଷଣା ସହିତ ଏକମତ ନ ହୋଇ ଅନୁବାଦକ ନିଜ ଇଚ୍ଛାରେ ମୁକ୍ତ ମନା ଅନୁବାଦ (Polemical translation) କରିବାକୁ ଯାଇ ମୂଳ କବିତାର ଭାବବଳୟଠାରୁ ବିଚ୍ଛିଡ଼ି ଯାଇ ଲକ୍ଷ୍ୟ ଭାଷାରେ ଏକ ଅଲଗା ରକମର କବିତାଟିଏ ଉତ୍ପାଦନ କରିବାର ସମ୍ଭାବନା ମଧ୍ୟ ବାସ୍ତବ ହୋଇଉଠେ। ଏ ପ୍ରକାର କୌତୁକକୁ ଅନୁମାନ କରି ଶେଲୀ ଯଥାର୍ଥରେ କବିତା ଅନୁବାଦରେ ପରିଣତିକୁ ଲକ୍ଷ୍ୟ କରି ଉଲ୍ଲେଖ କରିଛନ୍ତି– "ଗଛଟିଏ (ଭିନ୍ନ ଅନୁବାଦଟିଏ) ମଂଜିରୁ (ମୂଳ ଲେଖାର ଭାବକୁ ଆଧାର କରି) ପୁଣି ଉତ୍ପନ୍ନ ହୋଇପାରେ। ମାତ୍ର ପ୍ରଥମ ଗଛଟି ଯିଏ ଫୁଲଫୁଟି ମଂଜି କରିଥିଲା, ତଦନୁରୂପ ଫୁଟିବାର ସାମର୍ଥ୍ୟ ହୁଏତ ପରବର୍ତ୍ତୀ ମଂଜିରୁ ହୋଇଥିବା ଗଛର ନଥାଇପାରେ।" ଏପରିକି ମୂଳ ପାଠର ଅନେକ ସୂକ୍ଷ୍ମଭାବ ଓ ଶବ୍ଦର ଅନନୁକରଣୀୟ ମୌଳ ଉପ୍ପାଦାନ ଲକ୍ଷ୍ୟ ଭାଷାରେ ଅନୁବାଦ ହେବାବେଳେ ଅନୁବାଦକ ହାତରେ ଧରା ନଦେଇ ପିଚ୍ଛିଳ ଗଡ଼ିଶା ମାଛ ପରି ଖସିଯାଇଥାଏ। ତେଣୁ ଉଣାଅଧିକେ ଏଯାବତ୍ ମୂଳ ଲେଖାର ଛାୟାନୁବାଦ, ମର୍ମାନୁବାଦ ଓ ଭାବାନୁବାଦ ସମ୍ଭବ ହୋଇଆସିଛି। ଏହି କ୍ରମରେ ନିମ୍ନମତେ ଭଲ ଅନୁବାଦକଙ୍କର ସ୍ୱଧର୍ମ ଓ ଯୋଗ୍ୟତା ବିଷୟରେ ସମ୍ୟକ ଧାରଣା ଦିଆଯାଇପାରେ–

- ଅନୁବାଦକ ନିଜ ରୁଚି ଓ ନିଜ ଭାଷାବଳୟର ଅନୁରାଗୀ ପାଠକଙ୍କ ରୁଚି ଅନୁସାରେ ଅନୁବାଦଯୋଗ୍ୟ ଗ୍ରନ୍ଥ ନିର୍ବାଚନ କରିବେ।
- ଅନୁବାଦକଙ୍କର ମୂଳ ଲେଖାର ଭାବଐଶ୍ୱର୍ଯ୍ୟ, ମୂଳ ଲେଖକଙ୍କ ମନୋଦଶା, ଅଭିପ୍ରାୟ ଓ ପ୍ରୟୋଜନ ଉପରେ ବିଶେଷ ବୁଝାମଣା ଜ୍ଞାନ ଥିବା ଉଚିତ।

- ଉଭୟ ଉତ୍ସ ଭାଷା ଓ ଲକ୍ଷ୍ୟ ଭାଷାର ଶବ୍ଦକ୍ରମ ଓ ଅର୍ଥବିନ୍ୟାସ ଉପରେ ଅନୁବାଦକର ପାଣ୍ଡିତ୍ୟ ଓ ବ୍ୟାବହାରିକ ଦକ୍ଷତା ଥିବ।
- ମୂଳ ରଚନାର ଭାବାଭିବ୍ୟଂଜନାକୁ ଅକ୍ଷୁଣ୍ଣ ରଖିବେ।
- ଉତ୍ସ ଭାଷାର ମୌଳିକ କୃତି, କୃତିର କଥନ, କଥ୍ୟ ଉଦ୍ଦେଶ୍ୟ ଓ ଭାଷା ଶୈଳୀର ଗାଠନିକ ବୈଶିଷ୍ଟ୍ୟ ଅନୁରୂପ ଅଭିବ୍ୟକ୍ତି ଲକ୍ଷ୍ୟ ଭାଷା ମାଧ୍ୟମରେ କରିବାର ସାମର୍ଥ୍ୟ ଥିବ।
- ଅନୁବାଦକ ନିଜେ ମୌଳିକ ଲେଖା ଲେଖିପାରୁଥିବେ, ଶାସ୍ତ୍ରଦର୍ଶୀ ହୋଇଥିବେ ଓ ଅନ୍ୟ ସହିତ ସହଜରେ ସମାନୁରାଗୀ ହୋଇପାରୁଥିବେ।
- ଅନୁବାଦକ ମୂଳ ଭାଷାର ସାମାଜିକ, ସାଂସ୍କୃତିକ, ଧାର୍ମିକ, ଦାର୍ଶନିକ, ଲୋକାଚାରୀୟ ଓ ପାରିପାର୍ଶ୍ୱିକ ଶୃଙ୍ଖଳା ସହିତ ସୁପରିଚିତ ଥିବେ।
- ଅନୁବାଦକ ନିଜ ଭାବପ୍ରବଣତା ଓ ସର୍ଜନଶୀଳ କଳ୍ପନାକୁ ସଂଯୁକ୍ତ କରିବାକୁ ଯାଇ ମୂଳ ଲେଖାର ଭାବବଳୟକୁ ସଂକୁଚିତ କରିବା ଅଥବା ଟପିଯିବାର ସମ୍ଭାବନା ମନକୁ ଆଣୁନଥିବେ। ଅନୁବାଦକର ଅନୁବାଦ ମୂଳ କୃତିର ସୌନ୍ଦର୍ଯ୍ୟ ବଳୟକୁ ଅତିକ୍ରମ କରିବାର (Transcend) ଅଧିକାର କୁତ୍ରାପି କେଉଁ ସଂବିଧାନରେ ପାଇନାହିଁ।
- ମୂଳ ଲେଖାର ଭାବଗତ ରସାତ୍ମାର ସରସ-ସୁନ୍ଦର ପଣରେ ବିଭ୍ରାନ୍ତି ଓ ଭିନ୍ନତା ଘଟିବା ଅର୍ଥ ଟ୍ରାନ୍‌ସଲେସନ/ଅନୁବାଦ ସ୍ୱାଦ ପ୍ରଦାନ କରିବା ପରିବର୍ତ୍ତେ ସ୍ୱୟଂ ଅପରାଧରେ (Transgression/sin) ପରିଣତ ହୋଇଥାଏ– ଏଥିପ୍ରତି ଅନୁବାଦକ ସଚେତନ ହେବେ।
- ଅନୁବାଦକ ମୂଳ ଲେଖାର ଶ୍ରଦ୍ଧାଳୁ ପାଠକଟିଏ ହେବେ ଓ ତାହାର ରସସ୍ରୋତରେ ଅବଗାହନ କରି ସ୍ରୋତର ତୀବ୍ରତାକୁ ବୁଝି ସମତୁଲ୍ୟ ତରଙ୍ଗଟିଏ ନିଜ ଭାଷାର ଅନୁବାଦରେ ସୃଷ୍ଟି କରାଇବାରେ ପ୍ରଯତ୍ନମନା ହେବେ।
- ମୂଳ ସ୍ରଷ୍ଟାର ସମସ୍ତରୀୟ ହୋଇପାରିବ ଓ ପାରୁଛି – ଏ ପ୍ରକାର ଆତ୍ମବିଶ୍ୱାସ ରଖି ଅନୁବାଦକ ଅନୁବାଦରେ ହାତଦେବା ଉଚିତ।.
- ଅନୁବାଦକ ନିଜ ଭାଷାର ମହାନ୍ ଲେଖକଙ୍କୁ ସୀମା ଡିଆଇଁପାରେ ଓ ଅନ୍ୟ ଭାଷାର ଚର୍ଚ୍ଚିତ ସ୍ରଷ୍ଟାଙ୍କୁ ନିଜ ଭାଷା ପରିଧିକୁ ଆଣିପାରେ। ଏ କ୍ଷେତ୍ରରେ କମ୍ ପ୍ରସିଦ୍ଧିର ଲେଖକଙ୍କୁ ସୀମା ଡିଆଇଁ ବିରାଟ କରିବା ଅର୍ଥ ଅନୁବାଦକ ସାରସ୍ୱତ ବିଭ୍ରାନ୍ତି ସୃଷ୍ଟିକାରୀ ରୂପେ ନିଜକୁ ପରିଣତ କରୁଛନ୍ତି– ଏକଥା ସଚେତନତାକୁ ଆଣିବା ଉଚିତ।

(ନଅ)

ଅନୁରାଗୀବର୍ଗ ! ପ୍ରଥମ ଭାଗରେ ଯେଉଁ ସମସ୍ୟା ଉତ୍‌ଥାପନ କରିଥିଲି, ଏବେ ସେଇଠିକି ଆପଣମାନଙ୍କୁ ଫେରାଇନେଉଛି । ମୁଁ ଗୀତାଞ୍ଜଳିର ମୂଳଲେଖାକୁ ବାରମ୍ବାର ପଢ଼ିଛି ଓ ତା'ର ଇନ୍ଦ୍ରିୟ-ଅତୀନ୍ଦ୍ରିୟବୋଧର ନାନ୍ଦନିକ ଭାବ ଆବେଦନକୁ ଅଳ୍ପବହୁତେ ଆସ୍ୱାଦନ କରିଛି । ତା'ର ସ୍ୱର ମୋର ହୃଦୟକୁ ସ୍ପନ୍ଦିତ କରିଛି । ମାତ୍ର ଗୀତାଞ୍ଜଳିର ସଂଗୀତାତ୍ମକ ପଦ୍ୟବନ୍ଧର ଆକର୍ଷଣୀୟ ସର୍ଜନଶୃଙ୍ଖଳା, ଦୁର୍ଲ୍ଲଭ ଶାବ୍ଦିକ ସୌନ୍ଦର୍ଯ୍ୟ, ରବମାଧୁର୍ଯ୍ୟ, ଶବ୍ଦକଳାର ଗୁରୁ ଲଘୁ – ଆରୋହ ଅବରୋହ କ୍ରୀଡ଼ାଧର୍ମର ଚାତୁରୀ, ଶବ୍ଦର ଅନ୍ତର୍ଗର୍ଭରେ ଲୀଳାୟିତ ସୂକ୍ଷ୍ମ ରହସ୍ୟାର୍ଥକୁ ଧରି-ବୁଝି ସମତୁଲ୍ୟ କରି; ଏପରିକି ଛାୟାଧର୍ମୀ କରି ଓଡ଼ିଆରେ ଅନୁବାଦ କରିପାରିବି – ଏ ଧରଣର ଆବେଗିକ ବୁଝାମଣା ନିଜ ଭିତରେ ମୁଁ କରିବାରେ ଅସମର୍ଥ ହେଲି । ଗୀତାଞ୍ଜଳି ପରି ସାମାନ୍ୟ-ଅସାମାନ୍ୟ, ଶୁଦ୍ଧ-ଗ୍ରାମ୍ୟ, ଗଦ୍ୟମୟ-ସଂଗୀତମୟ ଭାବ ଓ ଶବ୍ଦର ବୈଚିତ୍ର୍ୟ ଉତ୍ପାଦନକ୍ଷମ ଚିତ୍ରଖେଳ ଖେଳିଥିବା ପଦ୍ୟଗୁଡ଼ିକୁ ଓଡ଼ିଆ ଭାଷାପିଣ୍ଡ ଉପରେ ବିଦ୍ୟମାନ କରାଇବା ମୋ ପକ୍ଷରେ ଦୁଃସାଧ୍ୟ ହୋଇଉଠିଲା । ମଧୁସୂଦନଙ୍କ ନିର୍ବାସିତ ବିଳାପ, ରାଧାମୋହନଙ୍କ ମେଘଦୂତ ଓ ବିନୋଦ କାନୁନ୍‌ଗୋଙ୍କ ଓମର ଖାୟାମ୍‌ଙ୍କ ରୁବାୟତ ପରି ସୁନ୍ଦର-ବିଶ୍ୱସ୍ତ-ସ୍ୱଚ୍ଛନ୍ଦୀୟ ଅନୁସୃଷ୍ଟି କଳ୍ପନାର ସିଢ଼ିରେ ପାଦଦେବାକୁ ମୁଁ ଥରିଲି । ରାବୀନ୍ଦ୍ରିକ ମନୋଭୂମିକୁ ଉଠିବାର ଆତ୍ମବିଶ୍ୱାସ ନଥିଲା । ଗୀତାଞ୍ଜଳି ପରି ବିଶ୍ୱବିଶ୍ରୁତ ଭାବମୟୀ କବିତା ସୁନ୍ଦରୀଙ୍କୁ ଓଡ଼ିଆ ଭାଷାରେ ବିଖଣ୍ଡିତା କରି ଅବିଶ୍ୱସ୍ତା ଭାବରେ ପରିଚିତ କରାଇବାର ଅର୍ଥ ଅନୁବାଦ କଳାକୁ ଅପରାଧବୋଧରେ ପରିଣତ କରିବା– ଏହା ଭାବି ଭାଷାନ୍ତରୀକରଣ କର୍ମରୁ ନିଷ୍କ୍ରାନ୍ତ ହେଲି । ମୁଁ ହେଲି ବୋଲି ଆପଣମାନଙ୍କ ପରି ଭାବାନୁବାଦୀ ଅନୁବାଦକ ଯେ ଅନୁସୃଜନର ରମଣୀୟ ମାର୍ଗରେ ଚାଲିବେ ନାହିଁ, ଏକଥା କହୁନାହିଁ । ମୋର କହିବା ଓ ଚାହିଁବା ବିଷୟଟି ହେଉଛି–

''ଆମ ଆଞ୍ଚଳିକ ସାହିତ୍ୟର ସୁନ୍ଦର ଭାବରାଜି ଅନୁବାଦକୁ ବାହାନ କରି ଓଡ଼ିଶା ଟପି, ଭାରତ ଟପି ଆନ୍ତର୍ଜାତୀୟ ଭାବରାଜ୍ୟରେ ପରିଭ୍ରମଣ କରୁ । ଏଣୁ ଏଣିକି ଯାଦୃଚ୍ଛିକ ଯାହିତାହି କୃତିର ହଜବରଳଧର୍ମୀ ଅନୁବାଦ ଆମ ଭାଷାରେ ନ ହୋଇ ଭାଷାର ଅମର୍ଯ୍ୟାଦା ବୃଦ୍ଧି ନପାଉ । ବାହାରର ମହତ୍ ଗ୍ରନ୍ଥମାନଙ୍କୁ ଓଡ଼ିଆ ଭାଷାର ପୋଷାକ ପିନ୍ଧାଇ ଆମ ସର୍ଜନଶୀଳ ପରିମଣ୍ଡଳରେ ଯେମିତି ଭଙ୍ଗୀରେ ଯେତେ ସଂଖ୍ୟାରେ ବୁଲିବାର ଆମେ ଦେଖିବା ତଦୁପରି ଆମ ଭାବସୁନ୍ଦର ଗ୍ରନ୍ଥମାନେ ଅନ୍ୟ ଭାଷାର ପରିଚ୍ଛଦ ପିନ୍ଧି ସଚରାଚର ବିଚରଣ କରିବାର ଦେଖିଲେ ଖୁସି ଲାଗିବନି କି ? ଅନୁବାଦର ଏ ପ୍ରକାର ପର୍ଯ୍ୟଟନୀୟ

ଯିବାଆସିବା ସୁନ୍ଦର ମାନିବନି କି ? ? ? ଅନେକ ଅନୁବାଦକ ଓଡ଼ିଶାର ଭାବନାରାଜ୍ୟରେ ରହି ଓଡ଼ିଆ ପାଣିପବନରେ ଥାଇ ମଧ୍ୟ ଜନ୍ମସୂତ୍ରରେ ହିନ୍ଦୀ, ବଙ୍ଗଳା, ତାମିଲ, କନ୍ନଡ, ପଂଜାବୀ, ଉର୍ଦ୍ଦୁ ଇତ୍ୟାଦିକୁ ମାତୃଭାଷା ମାନ୍ୟତା ଦେଇ ନିଜର ମାତୃଭାଷୀ ଗ୍ରନ୍ଥକୁ ଓଡ଼ିଆରେ ନିଜ ଉଛତାର ଥାକକରି ଅନୁବାଦ କଲେଣି । 'ଯାହାର ଲୁଣଖାଇ ତାହାର ଗୁଣ ଗାଇ'– ନ୍ୟାୟରେ ଜୀବଦଶାରେ ବେଶି ନହେଲେ ବି ଖଣ୍ଡେଦ୍ୱିଖଣ୍ଡ ମହାନ୍ ଓଡ଼ିଆ କୃତିକୁ ସେମାନେ ବାଛି ସେମାନଙ୍କ ମାତୃଭାଷାରେ ଅନୁବାଦକଲେ ସାରସ୍ୱତୀୟ ଦେଣନେଣ ଆହୁରିଟିକେ ଅନୁପମ ହୋଇଉଠନ୍ତାନି ? ? ?



# ଓଡ଼ିଆ ଅନୁବାଦ ସାହିତ୍ୟର ସୀମା ଓ ସଂଭାବନା

(ଏକ)

ସାହିତ୍ୟ ଦେଶ, କାଳ, ପାତ୍ର ଓ ଭାଷାଗତ ପ୍ରଭେଦ ଊର୍ଦ୍ଧ୍ୱରେ ଉଚ୍ଚାଙ୍ଗ ଭାବଧର୍ମ ଦିଗରୁ ମାନବୀୟ ଭାବାବେଗ ଭିତ୍ତିକ ହୋଇଥାଏ। ଯେକୌଣସି ଭାଷାର, ସାହିତ୍ୟର, ସଂସ୍କୃତିର ଓ ପରମ୍ପରାର ଲୋକବୃତ୍ତକୁ ଆଧାର କରି ସୃଷ୍ଟି ହୋଇଥିଲେ ମଧ୍ୟ ଏହି ମାନବିକ ଆବେଦନ ଓ ନୃତାତ୍ତ୍ୱିକ ପ୍ରବୃତ୍ତିର ରୂପାୟନ ଭିତ୍ତିରେ ସାହିତ୍ୟ କୃତିର କାଳଜୟୀମୂଲ୍ୟ ନିରୂପଣ ହୋଇଥାଏ । ବର୍ଣ୍ଣାଡଶ, ଟଲଷ୍ଟୟ, ଦସ୍ତୋୟଭସ୍କି, ଭୀମଭୋଇ, ହୋମିଙ୍ଗୱେ, କାମ୍ୟୁ, କାଫ୍‌କା, ଜୟେସ୍, ୟେଟ୍‌ସ୍, ଇଲୟଟ, କାଳିଦାସ, ନେରୁଦା, ରବୀନ୍ଦ୍ରନାଥ, ଗେଟେ, ହୋମର, ୱାଡସ୍‌ୱାର୍ଥ, ସେକ୍‌ସପିୟର, ଖାଣ୍ଡେକର, ପାମୁକ୍, ଶିବଶଙ୍କର, ନବକୋଭ୍ ପ୍ରଭୃତି ଜାତୀୟ ଆନ୍ତର୍ଜାତୀୟ ଖ୍ୟାତିସଂମ୍ପନ୍ନ ଲେଖକମାନଙ୍କ କଳାକୃତିରେ ରହିଥିବା ଶାଶ୍ୱତ ଭାବସ୍ପନ୍ଦନକୁ ଯେକୌଣସି ଭାଷାଭାଷୀ ଅଂଚଳର ପାଠକ ପଠନ କରି ତହିଁରୁ ଜୀବନ ଚର୍ଯ୍ୟାର ଯଥାର୍ଥ ଆବେଦନ ଲାଭ କରିପାରେ, ଏହାହିଁ ସଂପ୍ରତି ପାଠକୀୟ ଅଧିକାର ଓ ଅଭିପ୍ରାୟ।

ବିଶ୍ୱବିଶ୍ରୁତ ଅମର ଲେଖକମାନଙ୍କ ଅମର କୃତି ଅଧ୍ୟୟନ ନିମନ୍ତେ ଭାଷା ଏକ ପ୍ରତିବନ୍ଧକ ଭାବରେ ପରିଦୃଷ୍ଟ ହୁଏ। କାରଣ ଜଣେ ପାଠକ ଭିନ୍ନାଞ୍ଚଳର ଓ ଭିନ୍ନ ରାଷ୍ଟ୍ରର ଭାଷାକୁ ଆୟତ୍ତ କରିବା ଏକ ଅସମ୍ଭବ ବ୍ୟାପାର। ଏହି କ୍ଷେତ୍ରରେ ଭିନ୍ନଭାଷାର ଶାଶ୍ୱତ ଭାବସ୍ପନ୍ଦନ ଉଦ୍ରେକଧର୍ମୀ ଲେଖାଗୁଡ଼ିକୁ ନିଜ ଭାଷାଭାଷୀ ପାଠକଙ୍କ ପଠନ ପ୍ରବୃତ୍ତି ଚରିତାର୍ଥ ନିମନ୍ତେ ଅନୁବାଦକମାନେ ଭାଷାଗତ ପ୍ରଭେଦ ଓ ପ୍ରତିବନ୍ଧକ ଅତିକ୍ରମ କରି ଅନୁବାଦ ଛଳରେ ପୁନର୍ନବା ରୂପ ପ୍ରଦାନ କରି ଯଶସ୍ୱୀ ହୋଇଥାନ୍ତି। ସେଥିପାଇଁ ଅନୁବାଦକୁ ଜାତୀୟ ଚେତନାଉଦ୍ରେକାୟିତ କଳାକର୍ମ ଭାବରେ ଗ୍ରହଣ କରି ଏହାକୁ ଏକ ମହିମାନ୍ୱିତ ସ୍ୱତନ୍ତ୍ର କଳାଭାବରେ ସମ୍ପ୍ରତି ମାନ୍ୟତା ଦିଆଯାଇଛି। ଅନୁବାଦ ସାହିତ୍ୟ ଲିଖନ, ପଠନ ଓ ପ୍ରସାର ଦ୍ୱାରା ଯୁଗ-ଯୁଗ ମଧ୍ୟରେ, ଜାତି-ଜାତି ମଧ୍ୟରେ, ସଂସ୍କୃତି-ସଂସ୍କୃତି ମଧ୍ୟରେ ଓ ଭାଷା-ଭାଷା ମଧ୍ୟରେ ଥିବା ପ୍ରଭେଦ ଦୂରୀଭୂତ ହୋଇ ଆତ୍ମନିବିଡ଼ ଯୋଗସୂତ୍ର ସ୍ଥାପିତ ହୋଇଛି। ଅନ୍ୟାଞ୍ଚଳର ସାହିତ୍ୟ

ଭିତରେ ଥିବା ଜୀବନଦର୍ଶନ ଓ ଜୈବିକ ପ୍ରାଣସତ୍ତାର ଆଦର୍ଶ ବିଷୟରେ ପାଠକ ଅବଗତ ହୋଇ ତହିଁରେ ନିଜକୁ ଓ ନିଜର ପାରମ୍ପରିକ ମୂଲ୍ୟବୋଧକୁ ଅନୁସନ୍ଧାନ କରି ତହିଁରେ ସ୍ୱକୀୟ ସତ୍ତା ସଂଯୁକ୍ତ କରିବାରେ ସମର୍ଥ ହୋଇଛି। ସୁତରାଂ ଅନୁବାଦ ମୌଳିକ ସୃଜନଶୀଳ କଳାକର୍ମ ନହୋଇ ବି ସାହିତ୍ୟର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପୂରଣରେ ଏହାର ଭୂମିକା ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ଓ ମୌଳିକବୋଧ ହୋଇଛି।

'ଅନୁବାଦ'ର ଆକ୍ଷରିକ ଅର୍ଥ ହେଉଛି– ପୂର୍ବରୁ କୁହାଯାଇଥିବା କଥାକୁ ଅବିକଳ ଭାବରେ ପରେ କହିବା। ଏହାର ଆରୋପଣଗତ ଅର୍ଥ ହେଉଛି– ଗୋଟିଏ ଭାଷାରେ କୁହାଯାଇଥିବା ଗୋଟିଏ ବିଷୟକୁ ପରବର୍ତ୍ତୀ ଅବସ୍ଥାରେ ଅନ୍ୟ ଏକ ଭାଷାରେ ଅବିକଳ ଭାବଧର୍ମ ରକ୍ଷା କରି କହିବା। ଅନୁବାଦ ମୁଖ୍ୟତଃ ଭାଷିକ ରୂପାନ୍ତରକୁ ଅର୍ଥବୋଧ କରିଥାଏ। ମୂଳଭାଷାର ପୁସ୍ତକରେ ପ୍ରଦତ୍ତ ସମର୍ଥ ଭାବଧର୍ମ ଅତୁଟ ରହି ଭାଷାର ରୂପାନ୍ତରୀକରଣ ହିଁ ଏଥିରେ ସଙ୍ଘଟିତ ହୋଇଥାଏ। ସୁତରାଂ ମୂଳ ରଚନାର ଯଥାଯଥ ଭାଷାନ୍ତରୀକରଣ ଅନୁବାଦର ହେତୁଗତ ପ୍ରକାର୍ଯ୍ୟ। ଏହି ଯଥାଯଥ ଆଙ୍ଗିକରୂପ, ଆତ୍ମିକ ସ୍ୱର ଏବଂ ବାଣୀଭଙ୍ଗୀର ବିଷୟନିଷ୍ଠ ଅଭିରଚନା– ଏପରି ତ୍ରିବିଧ କୋଟିରେ ପରିନିଷ୍ଠିତ ହେଲେ ଅନୁବାଦରେ ଆସେ ସାର୍ଥକତା।

ଅନୁବାଦ ସାହିତ୍ୟକଳାକୁ ଆଞ୍ଚଳିକତାରୁ ମୁକ୍ତି କରି ବିଶ୍ୱମୁଖୀ କରିଥାଏ। ଦେଶ ବିଦେଶର ସାହିତ୍ୟ ଧାରା ସଚେତନ ହୋଇ ନିଜସ୍ୱ ଭୂମିର ସାହିତ୍ୟଧାରାକୁ ଅନ୍ୟ ସାହିତ୍ୟର ବଳିଷ୍ଠ ସ୍ୱର ସହିତ ସାମିଲ କରିବାପାଇଁ ଏଥିରୁ କଳାବିତ୍‌ମାନଙ୍କୁ ପ୍ରେରଣା ମିଳିଥାଏ ଏବଂ ପାଠକ ଅନ୍ୟ ସଂସ୍କୃତି, ସଭ୍ୟତା ଓ ମୂଲ୍ୟବୋଧ ସମ୍ପର୍କରେ ଅନୁବାଦ ସାହିତ୍ୟ ପଠନ ଦ୍ୱାରା ଅବଗତ ହୋଇଥାଏ। ସାଧାରଣତଃ ଅପରାପର ଭାଷାଭାଷୀ ଜନ ସମ୍ପ୍ରଦାୟ ବିଶେଷର ଜୀବନ ଚିତ୍ର ଓ କଳାବୋଧ ଜାଣିବାର ଆକାଂକ୍ଷା ହେତୁ ଫଳତଃ ଭିନ୍ନ ଭିନ୍ନ ସାହିତ୍ୟ ପ୍ରତି ଆମେ ଉନ୍ମୁଖ ହେଉ। ଏହି ପ୍ରବଣତାର ପରିସାଧନା ହିଁ ସୃଷ୍ଟି କରେ ଅନୁବାଦ ସାହିତ୍ୟ। ସୁତରାଂ ସାହିତ୍ୟ, ସାହିତ୍ୟ ମଧ୍ୟରେ ଉତ୍ତରୋତ୍ତର ଉନ୍ନତି ସାଧନ କ୍ରମେ ଅନୁବାଦ କଳା ଆଜି ସମଗ୍ର ବିଶ୍ୱ ସାହିତ୍ୟଧାରା ଓ ଚେତନାକୁ ଏକମୁଖୀ କରିପାରିଛି। ଦୃଷ୍ଟାନ୍ତ ସ୍ୱରୂପ ଗେଟେ, କୀଟ୍‌ସ୍ ଓ ଆରନୋଲଡ୍‌ଙ୍କ ପରି ବିଶ୍ୱବିଖ୍ୟାତ ସାହିତ୍ୟିକମାନଙ୍କ କୃତିରେ ଭାରତୀୟ କବି କାଳିଦାସଙ୍କ କାବ୍ୟବୋଧର ପ୍ରବାହକୁ ଏହି ଅନୁବାଦ ସାହିତ୍ୟ ସାହିତ୍ୟାଧ୍ୟୟନର ପରିଣତ ଭିତ୍ତିରେ ଲକ୍ଷ୍ୟ କରାଯାଇପାରେ। କୀଟ୍‌ସଙ୍କ 'ଏଣ୍ଡିମିଆନ୍' ଓ ଆରନୋଲ୍‌ଡ୍‌ଙ୍କ 'ଦି ବ୍ୟୁରିଡ୍ ଲାଇଫ' ଗ୍ରନ୍ଥଦ୍ୱୟରେ କାଳିଦାସଙ୍କ 'ଅଭିଜ୍ଞାନ ଶାକୁନ୍ତଳଂ'ର ଭାବବୋଧର ସମତାକୁ ଅନୁଭବ କରାଯାଇଥାଏ। ଅନୁବାଦକଳାର ଭୂମି ଓ ଭୂମିକା ସମ୍ପର୍କରେ ଗେଟେ (Goethe) ଯଥାର୍ଥରେ କହିଛନ୍ତି– "Say what one will of its inadequacy, translation remains

at the most important, worthwhile concern in the totality of world affairs." ଅନୁବାଦ ତୁଳନା ଦେଇ ନିଜକୁ ଅନ୍ୟ ଭିତରେ ଖୋଜି ପାଇବାର ଅଭିଳାଷକୁ ଚରିତାର୍ଥ କରାଏ ଓ ଏହା ମାଧ୍ୟମରେ ସ୍ଥାନୀୟତା > ରାଷ୍ଟ୍ରୀୟତା > ବିଶ୍ୱମୟତା ହୋଇଉଠେ।

ଦେଶ, କାଳ ଓ ରୁଚି ବିଧିମତେ ଅନୁବାଦର ରୂପରେଖ ନିୟନ୍ତ୍ରିତ ହୋଇଥାଏ। ଯଥା– ହଜାର୍ ହଜାର ବର୍ଷ ବ୍ୟବଧାନରେ ଲେଖା ହୋଇଥିବା ମହାଭାରତକୁ ସାରୋଳଦାସ ଅନୁବାଦ କରିବା ସମୟରେ ସମକାଳୀନ ଦେଶ, କାଳ ଓ ରୁଚିକୁ ନେଇ ମୂଳଲେଖାର ସଂକ୍ଷିପ୍ତୀକରଣ, ବିକାଶୀକରଣ ଓ ମୌଳିକ କଳ୍ପନା ସଂଯୋଜନା ବଳରେ ପ୍ରକ୍ଷିପ୍ତୀକରଣ କରିଥିବା ବେଳେ ରାମାୟଣର ଅନୁସରଣରେ ଲିଖିତ ଓଡ଼ିଆ ଅନୁବାଦରେ ବଳରାମ ଦାସ ନିଜ ସମାଜ ଓ ସମକାଳୀନ ସଂସ୍କୃତିକୁ ପ୍ରଚ୍ଛବିତ କରି ମୌଳିକତାର ପରିଚୟ ଦେଇଛନ୍ତି। ପୁନଶ୍ଚ ପ୍ରତିଭାଶାଳୀ ଲେଖକର ଅଭିରୁଚି କ୍ରମେ ମୂଳଲେଖାର ଅନୁବାଦ ଅଧିକ ଆବେଦନଶୀଳ ମଧ୍ୟ ହୋଇଥାଏ। ଦୃଷ୍ଟାନ୍ତ ସ୍ୱରୂପ କାଳିଦାସଙ୍କ 'ମେଘଦୂତ' ଅନୁବାଦ କ୍ଷେତ୍ରରେ ରାଧାମୋହନ ଗଡ଼ନାୟକଙ୍କ କବିତ୍ୱ ଓ କଳ୍ପନା ଶୈଳୀ ମୂଳସୃଷ୍ଟିଠାରୁ ଓଡ଼ିଆ ପାଠକଙ୍କ ପାଇଁ ଅଧିକ ରସନିଷ୍ଠ କହିଲେ ଅତ୍ୟୁକ୍ତି ହେବ ନାହିଁ। ରାଧାନାଥଙ୍କ ତୁଳସୀସ୍ତବକ (ରାମଚରିତମାନସର ଅନୁବାଦ) ଏହାର ଅନ୍ୟତମ ଦୃଷ୍ଟାନ୍ତ।

(ଦୁଇ)

ଅନୁବାଦ ମୌଳିକ ଲେଖାଠାରୁ ଅଧିକ କଷ୍ଟସାଧ୍ୟ। ମୌଳିକ ଲେଖାରେ ବିଷୟ ବିନ୍ୟାସର ପ୍ରାକ୍‌କଥନ ଲେଖକର ସ୍ୱାଧୀନଚେତନା ଓ ମୁକ୍ତ ଭାବନା ଉପରେ ନିର୍ଭରଶୀଳ ହୋଇଥିବା ସ୍ଥଳେ ଅନୁବାଦ କ୍ଷେତ୍ରରେ ଅନୁବାଦକଙ୍କୁ ମୂଳ ଲେଖାର ବୈଶିଷ୍ଟ୍ୟ ଅକ୍ଷୁଣ୍ଣ ରଖିବା, ମୂଳରଚନାରେ ପ୍ରତିଫଳିତ ଭାବ, ସଭ୍ୟତା, ସଂସ୍କୃତି, ଶୈଳୀ, ଭାଷାପାଟବ ଓ ଲୋକାଚାର ଇତ୍ୟାଦି ଭାବଗତ ଓ ଆଙ୍ଗିକ ପ୍ରଧାନ ବୈଚିତ୍ର୍ୟ ଓ ସଂରଚନା ପ୍ରତି ଧ୍ୟାନ ଦେବାକୁ ପଡ଼ିଥାଏ। ମୂଳରଚନାରେ ଥିବା ଦେଶଜ ଶବ୍ଦାବଳୀ, ସେହି ମୂଳଭାଷାର ପ୍ରବାଦ, ପ୍ରବଚନ ଓ ଆପ୍ତବଚନଧର୍ମୀ ଶବ୍ଦ ପୁଞ୍ଜଗୁଡ଼ିକର ସମାର୍ଥବୋଧକ ଶବ୍ଦ ପ୍ରଦାନ କରି ଅନୁବାଦକ ଅନୁବାଦ କଳାକୁ ରସାଣିତ କରିବାକୁ ଗଲାବେଳେ ବହୁଶ୍ରମ, ବହୁଜ୍ଞାନ ଶକ୍ତିର ବ୍ୟୟ କରିଥାଏ। ଅଧ୍ୟାପକ ଗୋଲୋକ ବିହାରୀ ଧଳଙ୍କ ମତାନୁସାରେ– ''ଅନ୍ୟ ସାହିତ୍ୟକୁ ଅନୁବାଦ କରିବା ସମୟରେ ସେହି ଭାଷାର ପ୍ରାଣସ୍ପନ୍ଦ ପ୍ରତି ସଚେତନ ହେବାକୁ ପଡ଼ିବ।'' ଅନୁବାଦର କଳାପଣରେ ଅନୁବାଦକର ଦ୍ୱୈତସତ୍ତା ସଂଘର୍ଷ ଓ ଆତ୍ମିକତା ସୂତ୍ରରେ କାର୍ଯ୍ୟକ୍ଷମ ହୋଇଥାଏ। ପ୍ରଥମ ସତ୍ତାଟିରେ ଅନୁବାଦକ ନିଜସ୍ୱଭାଷା, ସଂସ୍କୃତି, ସମାଜ, ପାଠକୀୟ ଚାହିଦା ଓ ଐତିହ୍ୟ ପ୍ରତି ସଚେତନ। ତା'ର ଏସବୁ ସ୍ୱାଭିମାନକୁ ବଳିଷ୍ଠ ଓ ଭାବମୟ କରିବା ଭଳି ଅନ୍ୟ ଭାଷା, ସାହିତ୍ୟକୃତିର ସାମର୍ଥ୍ୟ ଅଛି କି ନାହିଁ– ଏହି ପ୍ରଶ୍ନରୁ ଦ୍ୱିତୀୟ ସତ୍ତାର ଜନ୍ମ। ଭିନ୍ନ ଜଗତର, ଭାଷାର ଓ ଅନୁଭୂତିର ମହତ୍ତ୍ୱକୁ ନିଜ ଖୁସି, ଆବଶ୍ୟକତା ଓ ଦୃଷ୍ଟାନ୍ତ ନିମନ୍ତେ ସେ ଗ୍ରହଣ

କରେ। ଭିନ୍ନତା ସହିତ ନିଜସ୍ୱର ଆତ୍ମିକ ସଂପର୍କ ସ୍ଥାପନ ପରେ ସେ ଅନୁବାଦ କଳାକର୍ମରେ ବିଜଡ଼ିତ ହୁଏ। ଏହାଦ୍ୱାରା ଭିନ୍ନ କୃତିଟିକୁ ନିଜ କୃତିରୂପେ ଓ ନିଜ ଆଗ୍ରହରେ ଭିନ୍ନ ଚିନ୍ତା ଓ ପ୍ରତ୍ୟୟକୁ ଧାରଣ କରିବାର ସଂଭାବନା ସହଜ ହୋଇଯାଏ। ଏ ଦିଗରୁ ଅନୁବାଦ ହେଉଛି– 'ବଡ଼ାଇ ବ୍ୟାପାର ଯେ ଆନକୁ ମାନିବା।'

ଅନୁବାଦ ସଂକ୍ରିୟାର ବାଟ ଚାଲିବାବେଳେ ଅନୁବାଦକ ଯେଉଁ ନିଶ୍ଚିତ ପ୍ରତିବଂଧକଟିର ସମ୍ମୁଖୀନ ହୁଏ ତାହା ହେଉଛି ମୂଳ ଭାଷାର କୃତିର ଭାବାର୍ଥକୁ ମୋଟାମୋଟି ଅନୁରୂପ ଅଭିବ୍ୟକ୍ତି ଦେବାରେ ଅସମର୍ଥତା। ପ୍ରତ୍ୟେକ ଭାଷାର ଧ୍ୱନି, ଶବ୍ଦରୂପ, ବାକ୍ୟ, ଅର୍ଥ, ଲକ୍ଷଣା, ବ୍ୟଂଜନା, ପ୍ରାୟୋଗିକ ଚିତ୍ରପ୍ରତୀକ ବିଧାନ, ସାଂସ୍କୃତିକ ସଂରଚନା ଭିତ୍ତିକ ସମାଜତାତ୍ତ୍ୱିକ ଅର୍ଥର ଅଲଗା ଅଲଗା ସ୍ୱାତନ୍ତ୍ର୍ୟ ଥାଏ। ମୂଳ ଭାଷାର ଏବଂବିଧ ଅର୍ଥକରଣକୁ ଅନୁବାଦକ ନିଜର ଲକ୍ଷ୍ୟଭାଷାରେ ସନ୍ନିକଟ ଆନୁରୂପ୍ୟ ଦେବାକୁ ପ୍ରଯତ୍ନମନା ହେବା ଉଚିତ। ଉଭୟ ଭାଷାର ଅଭିଧାତ୍ମକ ଶବ୍ଦକୋଶ ଓ ସାଂସ୍କୃତିକ ଶବ୍ଦକୋଷର ମେଳକ ଘଟାଇ ଏ କ୍ଷେତ୍ରରେ ଅନୁବାଦକ ଉତ୍ସଭାଷାର ଭାବାର୍ଥ ସହିତ ଲକ୍ଷ୍ୟଭାଷାର ଅନୁସର୍ଜନାତ୍ମକ ଭାବାର୍ଥର ମେଳକ ଘଟାଇବା ଦ୍ୱାରା ସଫଳ ଅନୁବାଦ ବିଶିଷ୍ଟ ଗୁଣ ଓ ଦୀପ୍ତିନେଇ ଉଭା ହୋଇଯାଏ। ଅନେକ ରୂପତାରେ ଏକ ରୂପତାର ଆତ୍ମୀୟତା ଅନୁବାଦ ରୂପରେ ସଂଭବ ହୋଇଥାଏ। ତେଣୁ ଅନୁବାଦକ ପରକୁ ଆପଣାର କରିବାର ଜଣେ ଶ୍ରଦ୍ଧାଳୁ ଶାବ୍ଦିକ ଯାଦୁ ଖେଳାଳୀ।

ଏଠାରେ ଗୋଟିଏ ବିଷୟ ଉଲ୍ଲେଖନୀୟ। ବିଶିଷ୍ଟ ନୋବେଲ୍ ପୁରସ୍କାର ଅଧିକାରୀ କବି ପାବ୍‌ଲୋ ନେରୁଦା; ଯାହାଙ୍କର ପୁସ୍ତକ ବିଶ୍ୱରେ ବହୁଳ ପରିମାଣରେ ୪୫ଟି ଭାଷାରେ ଅନୁବାଦ ହୋଇଛି, ସେ ଏକଦା ପ୍ରଶ୍ନୋତ୍ତର ଛଳରେ କହିଥିଲେ– 'ସ୍ପେନୀୟ ଭାଷା ସହିତ ନିକଟ ସାମଞ୍ଜସ୍ୟ ଇଟାଲୀୟ ଭାଷାର ପ୍ରାୟୋଗିକ ଶବ୍ଦର ଭାବାର୍ଥରେ ଥିବାରୁ ମୋ କବିତା ଇଟାଲୀୟ ଭାଷାରେ ସଫଳ ଭାବେ ଅନୂଦିତ ହୋଇଛି। ଇଂରାଜୀ ଭାଷାରେ ଶବ୍ଦ ସଂସ୍ଥାପନ ବ୍ୟାଖ୍ୟାରେ ସମୁତଲ୍ୟତା ଉପରେ ପ୍ରଶ୍ନ ଉତ୍‌ଥାପନର କାରଣ ଥିଲେ ବି ଅନୁବାଦରେ ମୋଟାମୋଟି ମୋର ଉଚ୍ଚାରଣର ଅନୁରୂପତା ରହିଛି। ମାତ୍ର ଫରାସୀ ଅନୁବାଦରେ ମୋର କବିତାର ଭାବ ଅନେକାଂଶରେ ଅନ୍ତର୍ଦ୍ଧାନ ହୋଇଯାଇଛି। କେତେକ କବିତାରେ ମୋ ଭାବାର୍ଥର ସତ୍ତାନାହିଁ। ତଥାପି ଆପତ୍ତି କରି ହୋଇନାହିଁ ଯେ ବ୍ୟଂଜନା ନ ଥିଲେ ବି ଆକ୍ଷରିକ ଅଭିଧା ତହିଁରେ ଉପସ୍ଥିତ ରହିଛି।' ଏହା ପ୍ରମାଣିତ କରେ ଯେ ଆକ୍ଷରିକ ଶବ୍ଦାର୍ଥ ଅନୁବାଦରେ ଭାବର ଠିକ୍‌ରୂପେ ଅଭିବ୍ୟକ୍ତି ଘଟେନାହିଁ। ଭାବରେ ପରିସ୍ପନ୍ଦକୁ ବୁଝିବାପରେ ଅନୁବାଦକ ଅନୁସର୍ଜନ ଆରମ୍ଭ କରିବା ଉଚିତ। ନଚେତ୍ ଓଡ଼ିଆର 'ମହାବାହୁ' ଇଂରେଜୀ 'Great hand' ଏବଂ ଇଂରେଜୀର 'light food for light life' ଓଡ଼ିଆରେ 'ଆଲୋକ ଖାଦ୍ୟ– ଆଲୋକ ଜୀବନ ପାଇଁ' ପରି ହାସ୍ୟକର ରୂପାନ୍ତରମାନେ ଆତଯାତ ହେବେ। ଅନୁବାଦ ଏଦିଗରୁ ଅଭିଧାକରଣର କୌତୁକ କ୍ରୀଡାନୁହେଁ, ବରଂ ଲବ୍‌ଧଜ୍ଞାନର ସାଂସ୍କୃତିକ ବୋଧକରଣ କଳା

ଭାବରେ ବିବେଚିତ ହୋଇଥାଏ। ଅନୁବାଦ କ୍ଷେତ୍ରରେ ମୂଳ ଭାଷାର ରୂଢ଼ି ଓ କ୍ରିୟାବିଧାନ ପ୍ରତି ଅଧିକ ସଚେତନ ହେବା ଉଚିତ। ପ୍ରତ୍ୟେକ ଭାଷାର ରୂଢ଼ିବିନ୍ୟାସ ସ୍ୱତନ୍ତ୍ର। କ୍ରିୟାଗୁଡ଼ିକର ପ୍ରୟୋଗ ମଧ୍ୟ ବିଚିତ୍ର। କ୍ରିୟାମାନେ ଯେତିକି ନିର୍ଦ୍ଦିଷ୍ଟ ଅର୍ଥ ଦିଅନ୍ତି ନାହିଁ ତାହାଠାରୁ ଅଧିକ ପ୍ରକ୍ରିୟାତ୍ମକ ବୈଚିତ୍ର ଅର୍ଥ ପ୍ରଦାନ କରି ଭାବୁକର ଗ୍ରାହ୍ୟଶକ୍ତି ଓ ପଣ୍ଡିତପଣ ସହିତ ବୌଦ୍ଧିକ କ୍ରୀଡ଼ା କରନ୍ତି। ଯଥା– ଓଡ଼ିଆରେ ଚିଡା କାଟିବା, ବାଟ କାଟିବା, ବଂଧୁ କାଟିବା, ଚୁଟିକାଟିବା, ପେଟକାଟିବା, ତିନି ଦଉଡି କାଟିବା, ଅଗକାଟିବା, ଗଛ କାଟିବା ଆଦି ଶବ୍ଦମେଳରେ ଥିବା 'କାଟିବା' ନିର୍ଦ୍ଦିଷ୍ଟ ଆଭିଧାନିକ ଅର୍ଥ ନଦେଇ ବ୍ୟବହାର ଦିଗରୁ ସୂକ୍ଷ୍ମ ଅବବୋଧର ଭାବାର୍ଥ ପ୍ରଦାନ କରେ। ଅନ୍ୟଭାଷୀ ଅନୁବାଦକ ଏ ଚମତ୍କାରିତା ସହିତ ନମିଶିଲେ ମୂଳ ପାଠରେ ଥିବା 'କାଟିବା' ପରି ବିବିଧ ବିଚିତ୍ର କ୍ରିୟାଟିର ଅର୍ଥ ପ୍ରମାଦ ଘଟିବା ହିଁ ସାର ହେବ। ତେଣୁ ଅନୁବାଦ କର୍ମ ହେଉଛି– ଆଗପଛ ଦେଖି, ହାତେମାପି ଚାଖଣ୍ଡେ ଚାଲିବାର ବଡ କାଠିକର ପାଠ ଓ ବଡ଼କଠିନ ଅନ୍ୟ ସନ୍ତାନକୁ କୋଳେଇ ଧରିବା।

ଯେଉଁ ଭାଷାରୁ ଅନୁବାଦଯୋଗ୍ୟ ଗ୍ରନ୍ଥ ଅନୁବାଦକ ନିଜଭୂମିର ଗ୍ରାହକୀୟ ପଠନପଣକୁ ଚାହିଁ ଅନୁବାଦ କରେ ସେହି ଉତ୍ସଭାଷାର ଅନ୍ତଃସୌନ୍ଦର୍ଯ ଓ ଅର୍ଥଦୀପ୍ତି ନିଶ୍ଚିତ ରୂପାନ୍ତରୀକରଣର ମାଧ୍ୟମଭାଷାଠାରୁ ସ୍ୱତନ୍ତ୍ର। ଏଥିପ୍ରତି ସଚେତନ ରହି ଜଣେ ଭାଷାଭିଜ୍ଞ ଭାବରେ ଅନୁବାଦକ ମୂଳଗ୍ରନ୍ଥର ଶବ୍ଦ ଓ ଶବ୍ଦମେଳକୁ ଆଭିଧାନିକ ଅର୍ଥକରଣରେ ବିଚାର ନକରି ତା'ର ପ୍ରାୟୋଗିକ ସୂକ୍ଷ୍ମ ଭାବାବୋଧମୂଳକ ସୂଚନାର୍ଥକୁ ବୁଝି ତାହାର ସମତୂଲ୍ୟ ଓ ଆନୁରୂପ୍ୟ ଅର୍ଥନିଷ୍ଠ ଶବ୍ଦକୁ ନିଜ ଭାଷାରେ ଦେଖି ଲୋଡି ଅନୁବାଦ ପ୍ରକ୍ରିୟାରେ ବିନିଯୋଗ କରିବା ଉଚିତ। ଏକଦା ଜନୈକ ରୂଷୀୟ ଲେଖକ ନିଜର ଭାରତୀୟ ଅନୁବାଦ ସଂପର୍କରେ କହିଥିଲେ– ''ମୋ କଥାଭାଗର ଚରିତ୍ର ଯାହା ପ୍ରତ୍ୟକ୍ଷ କର୍ମରେ ଦେଖାଇ ଦେଇଥିଲେ ଭାରତୀୟ ଭାବନାବାଦୀ ଅନୁବାଦକମାନେ ତାହାକୁ ସ୍ୱପ୍ନରେ ଦେଖିବା ପ୍ରସଙ୍ଗ କରିଦେଲେ।'' ଏ ଦିଗରୁ ମୂଳପାଠର ସୂକ୍ଷ୍ମାର୍ଥର ଆବେଦନଟିକୁ ବୁଝି ତଦନ୍ରୁରୂପ ଶବ୍ଦଶୃଙ୍ଖଳା ଉତ୍ସଭାଷାରେ ଅନୁବାଦ କରିବା ଉଚିତ। ନଚେତ୍ ମୂଳପାଠର ମାତୃତ୍ୱବୋଧ ଅନୁବାଦପାଠରେ ମାଉସୀ ଶ୍ରଦ୍ଧାବତ୍ କୌତୁକ ପ୍ରସଙ୍ଗ ହୋଇଯାଇପାରେ।

ପୁନଶ୍ଚ ଅନୁବାଦକ ଏ ଅବଗତିରେ ସ୍ଥିର ରହିବା ଉଚିତ ଯେ ଅନୁବାଦକଳା କଦାପି ଅନ୍ୟର ଅନୁସରଣ ଓ ସ୍ୱୀକରଣ ନୁହେଁ। ଅନ୍ୟର ଅବଲମ୍ବନ ଓ ନିଜ ଦେଶ-କାଳ-ପାତ୍ରରେ ତାହାର ପ୍ରତିରୋପଣ କୌଶଳ ଉପରେ ଅନୁବାଦ ପିଣ୍ଡିତ ନୁହେଁ। ଭିନ୍ନଜଣଙ୍କ ସୁନାମ ଓ ଆଦରକୁ ଦେଖି ତା' କଳ୍ପନାରୁ ପଟ୍ଟ, ବାଗ, ଶ୍ରୀ ଆଣି ନିଜ ଗ୍ରନ୍ଥର ଅନୁକଳ୍ପନା କରିବାର ଚମତ୍କାରିତା ମଧ୍ୟ ଅନୁବାଦ କଳା ନୁହେଁ। ଏହାଦ୍ୱାରା ମୂଳ ଲେଖାର ଅପମାନ ହୁଏ। ମୂଳ ସର୍ଜନଶୀଳ ଉପାଦାନ ବିଖଣ୍ଡିତ ହୋଇଥାଏ ଏବଂ ଅନୁସୃଜନ

କୃତିଟି ଚୌର୍ଯ୍ୟକୃତିତ୍ୱର ଅପନିନ୍ଦା ମୁଣ୍ଡାଏ। ଅନୁବାଦକର ଧର୍ମ ଅନୁବାଦ ବଳରେ ଭିନ୍ନଟିକୁ ନିଜ ଭାଷାରେ ପଛରେ କହିବା, ନିଖୁଣ ଭାବଶ୍ରୀ ରଖି କହିବା ଓ ଅମଳିନ କରି କହିବା। ମୂଳ ଭାଷାର ଭାବ ଉତ୍ପାଦନ ଧର୍ମ କ୍ରିୟା ଅନୁବାଦର ସଂକ୍ରିୟାରେ ବିଶୁଦ୍ଧ ଭାବେ ପୁନରୁତ୍ପାଦିତ ହେବା ଉଚିତ। ଏହି ମର୍ମରେ ଅନୁବାଦ ବିଧାନଟିକୁ ନିମ୍ନ ସାରଣୀ ମତେ ଅନୁଭବ କରାଯାଇପାରେ।




ଅଭିପ୍ରାୟସ୍ତରଟି ପାଠକୀୟ ଚାହିଦା, ଅନୁବାଦର ଉଦ୍ଦେଶ୍ୟ, ସାଂସ୍କୃତିକ ବିଶେଷତ୍ୱ ଓ ଅନୁବାଦକର ଆଗ୍ରହ ସହିତ ଜଡିତ। ସାଧାରଣତଃ ଅନୁବାଦକ ନିଜ ଆଗ୍ରହ ସହିତ ପାଠକର ଅନୁବାଦଗ୍ରନ୍ଥ ଫଳର ଚାହିଦାକୁ ଆଧାର କରିଥାଏ।

ନିର୍ବାଚନ ସ୍ତରରେ ପାଠକ ଚାହୁଁନଥିବା ଅଥବା ପାଠକମାନେ ଅବଧାରଣାକୁ ଆସିବା ଭଳି ଭିନ୍ନଭାଷାର ପ୍ରସିଦ୍ଧ ଲେଖକଙ୍କର ଯୋଗ୍ୟ ବହୁଚର୍ଚ୍ଚିତ ଗ୍ରନ୍ଥ (ବ୍ୟବସାୟିକ ବରାଦର ଅଗଡ଼ଂବଗଡଂ ଗ୍ରନ୍ଥ ନୁହେଁ) ଅନୁବାଦ ପାଇଁ ଅନୁବାଦକ ନିର୍ବାଚନ କରିବା ଉଚିତ। ଏଠାରେ ଅନୁବାଦକ ଉତ୍ସଭାଷାର ମୂଳଗ୍ରନ୍ଥ ଅବିକଳ ନିଜ ଭାଷାଜ୍ଞାନରେ ନିର୍ବାଚନ କରିବା ଅଧିକ ସଫଳତାର କାରଣ ହେବ। ମୂଳଭାଷାରୁ ଅନ୍ୟ ସହଭାଷାରେ ଅନୁଦିତ ଗ୍ରନ୍ଥକୁ ନିଜର ଲକ୍ଷ୍ୟ ଭାଷାରେ ପ୍ରକାଶକରିବା ଦ୍ୱାରା ଖଣ୍ଡିତ ଅନୁବାଦର ଆଶଙ୍କା ଥାଏ।

ତୃତୀୟ ସ୍ତରଟି ଉତ୍ସସଂଧାନ ସ୍ତର। ଏ ସ୍ତରରେ ଅନୁବାଦ ଆଗ୍ରହୀ ଅନୁସୃଜକ ରୂପେ ମୂଳ ଭାଷାର ଅର୍ଥକାରକ ଶୃଙ୍ଖଳା/ପ୍ରାୟୋଗିକ ସ୍ୱାତନ୍ତ୍ର ମୂଳଗ୍ରନ୍ଥର ସର୍ଜନ ଧାରାରେ ଅଭିବ୍ୟକ୍ତି ଲାଭ କରିଥିବା ସାଂସ୍କୃତିକ-ସାମାଜିକ ବିଶେଷତ୍ୱ ଏବଂ ମୂଳ ଲେଖକଙ୍କର ସ୍ୱାଧୀନଚିନ୍ତା/ନୂଆଦୃଷ୍ଟି/ମୌଳ କଳ୍ପନା/ଆଭିପ୍ରାୟିକ ଭାବନା ଇତ୍ୟାଦିର ଉତ୍ସ ଅନୁସଂଧାନ କରି ସେସବୁ ମଧ୍ୟରେ ନିଜର ବିଶ୍ୱାସ ଓ ନିଜ ସାଂସ୍କୃତିକ ସାମାଜିକ ଅଭିଳାଷକୁ ଯୋଡ଼ି ଗ୍ରନ୍ଥଟି କେତେଦୂର ଅନୁବାଦଯୋଗ୍ୟ ଓ ସଫଳ ଅନୁସୃଷ୍ଟି ହୋଇପାରିବ ତାହା ନିରୂପଣ କରିବା ଉଚିତ। ମୂଳଗ୍ରନ୍ଥଟିକୁ ପଢ଼ି ଭାବପ୍ରଣ ହୋଇ ହୁଙ୍କାପିଟା ମାନସିକତାରେ ଅନୁବାଦରେ ଆପଣାକୁ ନିୟୋଜନ କଲେ ଅନୁବାଦକ ଅନୁସୃଜନ ନାଁରେ ଏକ ବିକଳାଙ୍ଗ ଗ୍ରନ୍ଥଚିତ୍ର ମାତ୍ର ଦିଏ।

ଚତୁର୍ଥ ସ୍ତରରେ ସୁନିର୍ବାଚିତ ଗ୍ରନ୍ଥଟିକୁ ବାରମ୍ବାର ପଢ଼ି ତାହାର ଭାବଭଣ୍ଡାରର ଗ୍ରନ୍ଥିମୋଚନ କରି ଭିନ୍ନତାକୁ ଆତ୍ମୀୟତାରେ ପରିଣତ କରି ଅନୁବାଦ କର୍ମସାଧନରେ ସଂଶ୍ଳିଷ୍ଟ

ହେବାକୁ ପଡେ। ଉତ୍ସଭାଷାନୁକୂଳ ଲକ୍ଷ୍ୟଭାଷାର ଶବ୍ଦଚୟନ କରି ଭିନ୍ନରଚନାଟିକୁ ନିଜ ରଚନା ଭାବରେ ପ୍ରତିରୋପଣ କରାଯାଏ। ନିଜ ରଚନା ଶତ ପ୍ରତିଶତ ସ୍ୱାଧୀନତା ଲୋଡିବସିଲେ ଅନୁବାଦ ନିରାପତ୍ତା ହରାଏ। ଅନୁବାଦକ ଏଠି ମନେରଖିବା ଉଚିତ ସେ ଯୋଗାଡ଼ିଆ ସେବକଟିଏ, ମାତ୍ର ମହତ ସାରସ୍ୱତ ବଂଧୁଟିଏ। ସେ ନିଜଭାଷାଭାଷୀ ପାଠକକୁ ଅନ୍ୟ ମଣ୍ଡଳର ମହତକୃତିଟିଏ ଯୋଗାଇ ଦେଉଛି। ପାଠକର ଇଚ୍ଛାନୁରୂପ ଓ ଜ୍ଞାତଯୋଗ୍ୟ ଅନୁପମ ସୃଷ୍ଟିଟିର ସର୍ଜନଶୀଳ ମାଧୁରୀକୁ ଅନୁବାଦକ ଭାଷା ରୂପାନ୍ତରୀକରଣ ସୂତ୍ରରେ ପରଷି ଦେଉଛି। ମୂଳପାଠର ସୀମାରୁ ସେ ବାହାରି ନଯାଇ ଜଣେ ପଣ୍ଡିତମନା ଉଦାର ବିତରକ ରୂପେ ଅନ୍ୟ ସହିତ ନିଜ ଅଂଚଳର ପଠନପଣକୁ ଯୋଡି ଅନ୍ୟର ସାର୍ବଜନୀନ ମହତ୍ ଅନୁଭୂତିକୁ ବିତରଣ କରୁଛି ଓ ଅନ୍ୟକୁ ନିଜପାଇଁ ପ୍ରତିନିର୍ମାଣ କରୁଛି। ସେ ସ୍ୱାଧୀନନୁହେଁ ଆସକ୍ତ। ତେଣୁ ଅନୁବାଦ ପ୍ରବିଧି ଏକ ପ୍ରତିନିର୍ମାଣୀୟ ଆସକ୍ତ ପ୍ରବିଧି।

(ତିନି)

ପୂର୍ବରୁ ଆଲୋଚିତ ଅନୁବାଦକର ରୁଚି, ଜ୍ଞାନ ଓ ପରିବେଶ ଅନୁଯାୟୀ ଅନୁବାଦରେ ସ୍ୱାତନ୍ତ୍ୟ ଫୁଟେ। ମାର୍କସୀୟଚେତନା ବିଷୟରେ ରୁଚି ଓ ଜ୍ଞାନଥିବା ବ୍ୟକ୍ତି ମାକ୍‌ସିମ୍ ଗର୍କିଙ୍କର 'ମଦର' ଉପନ୍ୟାସକୁ ସଫଳ ଭାବେ ଅର୍ଥ ସଙ୍ଗତି ଓ ଭାବ ସଙ୍ଗତି ଦେଇ ଅନୁବାଦ କରିପାରେ। ସେହିପରି ପ୍ରତିବେଶୀ ଓଡ଼ିଶୀ ସଂସ୍କୃତି ଓ ଧାରଣା ସମ୍ପର୍କରେ ଆସିଥିବା ଓ ଏଠାକାର ପରିବେଶ ବିଷୟରେ ଜ୍ଞାନଥିବା ବଙ୍ଗୀୟ ଅନୁବାଦକ ଓଡ଼ିଶୀ ସାହିତ୍ୟରେ ମାଟିବୋଧ କୃଷିଚେତନାକୁ ନେଇ ରଚିତ ଛ'ମାଣ ଆଠଗୁଣ୍ଠ, ମାଟିର ମଣିଷ, ମାଟିମଟାଳ, ଧରିତ୍ରୀର କାଳ ଓ ମଗ୍ନମାଟିକୁ ଯେପରି ସରସନିଷ୍ଠ କରି ଅନୁବାଦ କରିପାରିବ ତାହା ଜଣେ ମାଲାୟାଲାମ କି ମରାଠୀଭାଷୀ କିମ୍ବା ବିଦେଶୀ ଭାଷାଭାଷୀ କରିପାରିବ ନାହିଁ। ଅନୁବାଦର ଏହି ସ୍ୱାତନ୍ତ୍ୟବୋଧକୁ ନେଇ ଏହି କଳା ବିଭାଗକୁ– ଭାବ-ନିର୍ମାଣ ପଦ୍ଧତି ଓ ଆବେଦନ ଦିଗରୁ ଆକ୍ଷରିକ ଅନୁବାଦ, ଭାବାନୁବାଦ, ଛାୟାନୁବାଦ, ଆଦର୍ଶାନୁବାଦ ଓ ମର୍ମାନୁବାଦ ଭାବରେ ବିଭକ୍ତ କରାଯାଏ।

ଆକ୍ଷରିକ ଅନୁବାଦରେ ଭାଷା ବିନ୍ୟାସ ଓ ଭାବସଂହତି ପ୍ରତି ନିଷ୍ଠାପର ଦୃଷ୍ଟି ନଦେଇ ଅନୁବାଦକ କେବଳ ବିଷୟ ବସ୍ତୁର ସାରଧର୍ମ ଉପରେ ଆଲୋକପାତ କରିଥିବା ସ୍ଥଳେ ମର୍ମାନୁବାଦ ବା ଭାବାନୁବାଦରେ ବିଷୟ-ବିନ୍ୟାସର ସାବଲୀଳତା ଓ ଭାଷାର ସ୍ୱାଭାବିକ ମାଧୁରୀ ପ୍ରତି ଅନୁବାଦକ ସଚେତନ ରହି ଅନୁବାଦକଳା ସମାହିତ କରିଥାଏ। ଛାୟାନୁବାଦରେ ମୂଳ ଲେଖାର ବିଷୟ ବିନ୍ୟାସ ଛାୟାରେ ଓ ଭାବବୋଧର ସମତାରେ ଅନୁବାଦ କାର୍ଯ୍ୟ ସଂଘଟିତ ହୋଇଥାଏ। ଆକ୍ଷରିକ ଅନୁବାଦ ବିଷୟାନୁସାରୀ ଓ ଭାଷାର ଆକ୍ଷରିକ ଅର୍ଥ ରୂପାନ୍ତରୀକରଣ ଯୋଗ୍ୟତା ରଖିଥାଏ। ଭାବାନୁବାଦ ମୂଳଲେଖାର ପ୍ରଭାବକୁ ଅତୁଟ ରଖିବା ଉପରେ ଗୁରୁତ୍ୱଦିଏ। ଛାୟାନୁବାଦରେ ମୂଳ ଲେଖାର ଭାବ ଓ ଭାବ ଭଗ୍ନାଂଶର ମର୍ମହିଁ ଅନୁସୃଜିତ ହୋଇଥାଏ। ମୂଳସୃଷ୍ଟି ଓ ଅନୁବାଦଯୋଗ୍ୟ ସଂରଚନାଧର୍ମକୁ ନେଇ ଅନୁବାଦକୁ ଗଦ୍ୟାନୁବାଦ, ପଦ୍ୟାନୁବା ଓ ମୁକ୍ତଛନ୍ଦାନୁବାଦ ଭାବରେ ବିଭକ୍ତ କରାଯାଇଥାଏ।

ରୂପାନ୍ତରୀକରଣ ସଂକ୍ରିୟା ଦିଗରୁ ମୂଳ ଭାଷାର ସାହିତ୍ୟିକ ପ୍ରଜାତିକୁ ଅନ୍ୟଭାଷାର ଅନ୍ୟ ପ୍ରକାରର ସାହିତ୍ୟିକ ପ୍ରଜାତିରେ ପରିଣତ କରିବାର କୃତିତ୍ୱକୁ ନେଇ ଅନୁବାଦକୁ ନାଟ୍ୟ ରୂପାନ୍ତର, ଗଦ୍ୟ ରୂପାନ୍ତର, କାବ୍ୟ ରୂପାନ୍ତର, ପଦ୍ୟ ରୂପାନ୍ତର ଭାବରେ ବିବେଚନା କରାଯାଇଥାଏ। ମୂଳ ହିନ୍ଦୀଭାଷାର ଗଳ୍ପଟିକୁ ଓଡ଼ିଆ ଅନୁବାଦକ ଉଦ୍ଦେଶ୍ୟ ଭିତ୍ତିରେ ଏକାଙ୍କିକା ରୂପରେ ଅନୁସୃଜନ କରିବାର ପ୍ରକ୍ରିୟାଟି ଏ ପ୍ରକାର ଅନୁବାଦର ଦୃଷ୍ଟାନ୍ତ।

ଯେକୌଣସି ପଦ୍ଧତିରେ ଅନୁବାଦ କରାଯାଉ, ଅନୁବାଦ କାର୍ଯ୍ୟ କରିବା ସମୟରେ ଅନୁବାଦକ ମୂଳଲେଖାର ଭାବସମ୍ପଦ, କଳାସମ୍ପଦ, ଅନ୍ତଃସ୍ୱର ଓ ଭାଷା ସୌନ୍ଦର୍ଯ୍ୟର ମୌଳିକପଣ ଠାରୁ ଦୂରେଇ ଯିବା ଉଚତ ନୁହେଁ। ଏହି କଳାଗତ ସତର୍କତା ଠାରୁ ବିଚ୍ଛିନ୍ନ ହୋଇଗଲେ Woodrow Wilsonଙ୍କ ମତାନୁସାରେ– ''ଅନୁବାଦ ପାଠକରିବା ଅର୍ଥ ମୂଳଗ୍ରନ୍ଥର ଖଣ୍ଡିତ, ବିନଷ୍ଟ ଓ ବିକଳାଙ୍ଗ ରୂପ ସନ୍ଦର୍ଶନ କରିବା'' ସହିତ ସମାନ। ଅନୁବାଦ ପ୍ରସଙ୍ଗରେ ପାଶ୍ଚାତ ବିଦ୍ୱାନ ଡ୍ରାଇଡେନ୍‌ଙ୍କ ଉକ୍ତିକୁ ଏଠାରେ ଅନୁଦିତ କରାଯାଇପାରେ– ମୌଳିକ ଲେଖାରେ ଥିବା କଳାଶକ୍ତି ଓ ଜୀବନୀଶକ୍ତି ଅନୁବାଦରେ ଅବିକଳ ପ୍ରକାଶିତ ହେବା ଆବଶ୍ୟକ। ଶବ୍ଦରୁ ଶବ୍ଦ ଅନୁବାଦ କରୁଥିବା ବ୍ୟକ୍ତି କ୍ଳାନ୍ତିକର ରୂପାନ୍ତରୀକରଣରେ ସକଳ ଶକ୍ତି ବିନଷ୍ଟ କରାଇଥାଏ।'' ସୁତରାଂ ଭାବାର୍ଥ ବ୍ୟଂଜନା ପ୍ରତି ଅସତର୍କ ଅନୁବାଦ ମୂଷା ହାତୀକୁ ପିଠେଇ ନେବାର ଆମନ୍ତ୍ରଣ ପରି ହାସ୍ୟାସ୍ପଦ।

## (ଚାରି)

ଓଡ଼ିଆ ସାହିତ୍ୟର ବିକାଶରେ ଅନୁବାଦର ଦୁଇଟି ପରମ୍ପରା ବିଦ୍ୟମାନ। ଆଦିକବି ସାରଳା ଦାସ, ବଳରାମ ଦାସ ଓ ଜଗନ୍ନାଥ ଦାସ ନିଜର ସୃଜନଶୀଳ କଳ୍ପନା ବଳରେ ସଂସ୍କୃତରେ ଲିଖିତ ପୁରାଣକୃତି– ମହାଭାରତ, ରାମାୟଣ, ଶ୍ରୀମଦ୍ ଭାଗବତକୁ ଅନୁବାଦ କରିଛନ୍ତି। ଆକ୍ଷରିକ ଅନୁବାଦ ଅପେକ୍ଷା ସର୍ଜନାତ୍ମକ ଭାବାର୍ଥ କୈନ୍ଦ୍ରିକ ଅନୁବାଦ ଏମାନଙ୍କ ସାଧନାରୁ ଲକ୍ଷ୍ୟ କରାଯାଏ। ଆହରଣ, ଅନୁକରଣ, ଅନୁସରଣ ଓ ଅନୁକୃତିକରଣର ବୈଶିଷ୍ଟ୍ୟ ମଧ୍ୟରେ ଏସବୁ ମହାକାବ୍ୟରେ ଓଡ଼ିଆ କବିତ୍ରୟ ଯଥେଷ୍ଟ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଛନ୍ତି। ଏମାନଙ୍କ ଅନୁବାଦ ବ୍ୟାସ ବାଲ୍ମୀକିଙ୍କର ଛାୟାଛବି ନ ହୋଇ ଯୁଗଧର୍ମ ଓ ଯୁଗରୁଚି ପ୍ରଭାବରେ ନବକଳେବର ଧାରଣ କରିଛି ଏବଂ ଜାତୀୟ ଜୀବନର ପ୍ରତିବିମ୍ବ ବହନ କରି ଜାତିର ହୃଦୟ କନ୍ଦରରେ ସୁପ୍ରତିଷ୍ଠିତ ହୋଇପାରିଛି।''

ଏମାନଙ୍କ ବ୍ୟତୀତ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ଜୟସିଂ-ଗୀତା; କୃଷ୍ଣ ପଟ୍ଟନାୟକ ଭାଗବତ, କଳ୍କି ପୁରାଣ, କୃଷ୍ଣସିଂହ-ମହାଭାରତ, ଦୀନବନ୍ଧୁ, ଖାଡ଼ଙ୍ଗା-ଭାଗବତ, ହଳଧର ଦାସ-ଅଧ୍ୟାତ୍ମ ରାମାୟଣ, ତ୍ରିପୁରାରୀ ଦାସ– କଟପାୟୀ, ଧରଣୀଧର ଦାସ-ଗୀତଗୋବିନ୍ଦ, ବଜର ଦାସ- ଅର୍ଥ ଗୋବିନ୍ଦ, ମୁକୁନ୍ଦ ଦାସ– ବେତାଳପଞ୍ଚବିଂଶତି, ଚନ୍ଦ୍ରମଣି ମହାନ୍ତି– ହଂସଦୂତ ଇତ୍ୟାଦି କାବ୍ୟପୁରାଣଗୁଡ଼ିକୁ ସଂସ୍କୃତରୁ ଅନୁବାଦ କରଛନ୍ତି। ଏସବୁରୁ ଅଧିକାଂଶ ହେଉଛି ଅନୁକରଣ ଧର୍ମୀ ସଂସ୍କୃତ ସାହିତ୍ୟର ଭାବାନୁବାଦ। ଅଷ୍ଟାଦ ଶତାବ୍ଦୀର ବୈଷ୍ଣବ କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମ ବଙ୍ଗୀୟ କବି କୃଷ୍ଣଦାସ କବିରାଜଙ୍କ 'ଚୈତନ୍ୟ ଚରିତାମୃତ' ଓ ରୂପଗୋସ୍ୱାମୀଙ୍କ ବିଦଗ୍ଧ ମାଧବ ଗ୍ରନ୍ଥଦ୍ୱୟକୁ 'ଶ୍ରୀକୃଷ୍ଣ ଚୈତନ୍ୟ ଚରିତାମୃତସାର ଓ ବ୍ରଜଲାଳାମୃତ ସମୁଦ୍ର' ନାମରେ ଓଡ଼ିଆରେ ଅନୁବାଦ କରିଛନ୍ତି। ଏସବୁରେ ଭାବ ଆକ୍ଷରିକ ଓ ରୂପାଙ୍ଗିକ ବିନ୍ୟାସ ଓଡ଼ିଆତ୍ୱଗୁଣରେ ଚମତ୍କାର।

(ପାଞ୍ଚ)

ମିସ୍‌ନାରୀ ପାଦ୍ରୀମାନେ ଓଡ଼ିଶାରେ ଖ୍ରୀଷ୍ଟଧର୍ମର ପ୍ରଚାର ପାଇଁ ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା କରି ଖ୍ରୀଷ୍ଟୀୟ ଧର୍ମଗ୍ରନ୍ଥ ଓ ବାଇବେଲ ଇତ୍ୟାଦିର ଓଡ଼ିଆ ଅନୁବାଦ କରି ଆଧୁନିକ ଓଡ଼ିଆ ସାହିତ୍ୟରେ ନୂତନ ଅଭିରୁଚିର ଅନୁବାଦକଳା ପ୍ରଥମ କରି ଆରମ୍ଭ କରିଛନ୍ତି। ଯଦିଓ ଏମାନଙ୍କର ଅନୁବାଦରେ କିମ୍ଭୁତକିମାକାର ଭାଷା ପ୍ରୟୋଗ ମଧ୍ୟରେ ଓଡ଼ିଆ ଭାଷା ନିଜର ରୂପସୌନ୍ଦର୍ଯ୍ୟ ହରାଇ ଅପଭାଷା (Jargon) ସଦୃଶ ହୋଇଛି ତଥାପି ଅନୁବାଦ କଳାକର୍ମର ଭିତ୍ତିସ୍ଥାପନ ଏଥିରୁ ହିଁ ସମ୍ଭବ ହୋଇଛି। ୧୮୧୦ରେ ଅନୁଦିତ ବାଇବେଲ୍ ବ୍ୟତୀତ Pilgrims Progress. Dying Saying of Bunion ଗ୍ରନ୍ଥଦ୍ୱୟ ସ୍ୱର୍ଗଯାତ୍ରୀର ବୃତ୍ତାନ୍ତ ଓ ମୃତ୍ୟୁକାଳୀନ ବଚନ ଶୀର୍ଷକରେ ଓଡ଼ିଆରେ ଅନୁଦିତ ହୋଇଛି। ଇଂରେଜୀ ଶିକ୍ଷାର ପ୍ରଚଳନ ଫଳରେ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକର ପ୍ରକାଶନ ଓ ଲିଖନ ଏକ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ରୂପେ ୧୮୩୫-୬୫ ମସିହା ମଧ୍ୟରେ ଦେଖାଦେଇଛି। ଫଳରେ ପାଠ୍ୟପୁସ୍ତକ ନିମନ୍ତେ– ବୋଧୋଦୟ, ଶକୁନ୍ତଳା ଉପାଖ୍ୟାନ, ଆଖ୍ୟାନମଞ୍ଜରୀ, ନୀତିବୋଧ, ପଦାର୍ଥ ବିଦ୍ୟାସାର, ଇତିହାସ ସାର ସଂଗ୍ରହ ଓ ଚାରୁପାଠ ଇତ୍ୟାଦି ସଂସ୍କୃତ, ବଙ୍ଗଳା ଓ ଇଂରାଜୀ ଭାଷାରୁ ଓଡ଼ିଆରେ ଅନୂଦିତ ହୋଇଛି। ପାଠ୍ୟପୁସ୍ତକ ଅନୁବାଦକ ଭାବରେ ବିଚ୍ଛନ୍ଦଚରଣ, ବନମାଳି ସିଂ, ରାଧାନାଥ ରାୟ, ଡ. ଲେସି ଓ ମଧୁସୂଦନ ପ୍ରମୁଖ ପ୍ରଧାନ।

୧୮୭୨ ମସିହାରେ ବଙ୍ଗଳା ଉପକଥା ''ଫୁଲମନି ଓ କରୁନାର ବିବରଣ'' ଗ୍ରନ୍ଥର ଓଡ଼ିଆ ଅନୁବାଦ ରେଭେରେଣ୍ଡ ଷ୍ଟବିନ୍‌ସ କରିଛନ୍ତି, ଯାହା ଓଡ଼ିଆ କଥାସାହିତ୍ୟ

ପରମ୍ପରାରେ ପ୍ରଥମ ସଫଳ ଅନୁବାଦ-କୃତି ଭାବରେ ଗ୍ରହଣୀୟ। ଖ୍ରୀଷ୍ଟିୟାନ୍ ପ୍ରଚାର ସାହିତ୍ୟ ରୂପେ ଏହା ରଚିତ ହୋଇଥିଲା ଏବଂ ଓଡ଼ିଆ ସମେତ ବାରଟି ଭାରତୀୟ ଭାଷାରେ ଅନୂଦିତ ହୋଇଥିବା ଏହି ଗ୍ରନ୍ଥର ମୂଳ ବିଷୟଟି ବଙ୍ଗୀୟ ଗ୍ରାମ୍ୟ ଜୀବନର ଚିତ୍ର ଉପରେ ଲିଖିତ ହୋଇଥିଲେ ମଧ୍ୟ ଉତ୍କଳୀୟ ପାଠକ ସମାଜ ନିକଟରେ ଗ୍ରାହ୍ୟ ହେବା ଉଦ୍ଦେଶ୍ୟରେ ଅନେକ ସ୍ଥଳରେ ଓଡ଼ିଆ ବିଷୟକ ସୂଚନା ଖଂଜିଦିଆ ହୋଇଛି। ଅନୁବାଦର ଆସାଂସ୍କୃତିକୀକରଣ ଜନିତ ପ୍ରଭାବକୁ ଏହି କଥାନୁବାଦ ଗ୍ରନ୍ଥରୁ ଅନୁଭବ କରିହୁଏ।

(ଛଅ)

ନୂତନ ମଧ୍ୟବିତ୍ତ ଶିକ୍ଷିତ ପାଠକମାନଙ୍କ ରୁଚିବୋଧକୁ ଉନ୍ନତ, ମାର୍ଜିତ ଓ ଆନନ୍ଦମୂଳକ କରିବା ନିମନ୍ତେ ରାଧାନାଥ ଓ ମଧୁସୂଦନ କେତେକ ଉଚ୍ଚଶ୍ରେଣୀୟ ଗ୍ରନ୍ଥ ଓଡ଼ିଆରେ ଅନୁବାଦ କରିଛନ୍ତି। ରାଧାନାଥ 'ଇତାଲୀୟ ଯୁବା', 'ମେଘଦୂତ' ଓ 'ତୁଳସୀସ୍ତବକ'ର ମାଧୁର୍ଯ୍ୟ ଗୁଣସମ୍ପନ୍ନ ଅନୁବାଦ କରିଥିବା ବେଳେ ମଧୁସୂଦନ ଭବଭୂତିଙ୍କ ଉତ୍ତର ରାମଚରିକ ଆଶ୍ରୟରେ 'ସୀତା ବନବାସ' ଅନୁବାଦ କାବ୍ୟ ରଚନା କରିଛନ୍ତି। ସୂର୍ଯ୍ୟ, ଉଲ୍‌କାପିଣ୍ଡ, ଚନ୍ଦ୍ର ଓ ତାରା, ପ୍ରଣୟର ଅଦ୍ଭୁତ ପରିଣାମ, ନିର୍ବାସିତର ବିଳାପ, ଆତ୍ମସମର୍ପଣ ଇତ୍ୟାଦି କବିତା ଓ ପ୍ରବନ୍ଧଗୁଡ଼ିକୁ ମଧୁସୂଦନ ଇଂରେଜୀ ସାହିତ୍ୟରୁ ଅନୁସରଣମୂଳକ ରୀତିରେ ଅନୁବାଦ କରିଛନ୍ତି। ମଧୁସୂଦନଙ୍କ ଅନୁବାଦ କଳା ସମ୍ପର୍କରେ ଡକ୍ଟର ନଟବର ସାମନ୍ତରାୟ ଯଥାର୍ଥରେ ଉଲ୍ଲେଖ କରିଛନ୍ତି– "ଶୁଦ୍ଧ ମାର୍ଜିତ ଶବ୍ଦ ନିର୍ବାଚନ, ଗୁରୁଗମ୍ଭୀର ଭାଷାର ବିନିଯୋଗ, ପରିଶେଷରେ ନିଜ ଧର୍ମଧାରଣାର ସମ୍ୟକ୍ ପ୍ରତିଫଳନ– ଏ ସମସ୍ତଙ୍କର ସହାୟତାରେ ମଧୁସୂଦନଙ୍କ ଦ୍ୱାରା ଅନୁବାଦ ସ୍ୱତନ୍ତ୍ର ରଚନାରେ ପରିଣତ ହୋଇପାରିଛି।" ମଧୁସୂଦନ ମଧ୍ୟ ଅନୁବାଦର ଆସାଂସ୍କୃତିକୀକରଣ ସଂକ୍ରିୟା ପ୍ରତି ସଚେତନ ଅଛନ୍ତି।

ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାକ୍‌ଅଧ୍ୟାୟରେ ଫକୀରମୋହନଙ୍କ ସାହିତ୍ୟ ସାଧନା ଏକ ଗୌରବୋଦୀପ୍ତ ଅଧ୍ୟାୟ। ଏହି ସାଧନା ଓଡ଼ିଆ ସାହିତ୍ୟକୁ ସମାଜବାଦୀ ଭାବକଳ୍ପ କେବଳ ପ୍ରଦାନ କରିନାହିଁ ଓଡ଼ିଆ ସାହିତ୍ୟରେ ଅନୁବାଦ-କଳା-ବିଭବର ପ୍ରସାର ସାଧନ ମଧ୍ୟ କରିଛି। ରାମାୟଣ, ମହାଭାରତ, ଭାଗବତ ଓ ହରିବଂଶ ଇତ୍ୟାଦି ସଂସ୍କୃତ ପୁରାଣ ସାହିତ୍ୟର ଅନୁବାଦ କରି ବ୍ୟାସକବିରଂ ସମ୍ମାନରେ ସେ ମାନ୍ୟତା ଲାଭ କରିଛନ୍ତି। ତାଙ୍କର ବହୁଚର୍ଚ୍ଚିତ ବୌଦ୍ଧାବତାର କାବ୍ୟ ବଙ୍ଗକବି ନବୀନ ଚନ୍ଦ୍ରସେନଙ୍କ 'ଅମିତାଭ' ଓ ବୌଦ୍ଧଗ୍ରନ୍ଥ 'ଲଳିତବିସ୍ତରଂ'ର ସୌନ୍ଦର୍ଯ୍ୟାତ୍ମକ ମର୍ମାନୁବାଦ। ଟୟନ୍‌ବୀଙ୍କ ଓଡ଼ିଆ ସାହିତ୍ୟର ଇତିହାସ ୧୮୦୩-୧୮୦୪ ଜଗନ୍ମୋହନ ଲାଲା 'ଓଡ଼ିଶା ବିଜୟ ନାମରେ ଅନୁବାଦ କରିଛନ୍ତି; ଯାହା ଅନୁବାଦ ବିଷୟ ନିର୍ବାଚନକୁ ସାହିତ୍ୟେତର ପ୍ରସଙ୍ଗ ସହିତ ସଂଯୁକ୍ତ କରିଦେଇଛି।

''ପୁରାତନରେ ନୂତନତା ଓ ଆହରଣରେ ମୌଳିକତା ପ୍ରତିଫଳିତ କରିବା ପ୍ରତିଭାର ବିଧି ପ୍ରତିପାଦିତ ଅଧିକାର;'' ଗଙ୍ଗାଧର ମେହେରଙ୍କ ସାହିତ୍ୟ ସାଧନା ଭିତରେ କାଳିଦାସ ଓ ଭବଭୂତିଙ୍କ କଳାକୃତିର ଛାୟା ଅନୁବାଦକୁ ଲକ୍ଷ୍ୟକରି ରାଧାନାଥ ପ୍ରୋକ୍ତ ମନ୍ତବ୍ୟ ପ୍ରଦାନ କରିଛନ୍ତି। ତପସ୍ୱିନୀରେ ଉତ୍ତର ରାମଚରିତ ଓ ପ୍ରଣୟ ବଲ୍ଲରୀରେ ଅଭିଜ୍ଞାନ ଶାକୁନ୍ତଳଂର ଭାବଗତ ଅନୁକୃତି ଓ ଛାୟାପାତକୁ ପାଠକ ସ୍ପଷ୍ଟ ଅନୁଭବ କରିଥା'ନ୍ତି।

ଆଧୁନିକତାର ପ୍ରାକ୍ ପର୍ଯ୍ୟାୟରେ ଅଧିକାଂଶ ଲେଖକ ଅନୁବାଦ ଓ ଅନୁସରଣରୁ ସାହିତ୍ୟ ଜୀବନ ଆରମ୍ଭ କରିଛନ୍ତି। ଏମାନଙ୍କ ମଧ୍ୟରୁ ନାରାୟଣ ମୋହନ ଦେ ଗୋଟିଏ ପ୍ରଶ୍ନ (ଆର୍‌ନୋଲ୍‌ଡଙ୍କ କବିତା ଅନୁସରଣରେ), ଚକ୍ରକେଳି (ବାଉନିଂ କବିତାର ଅନୁବାଦ), ଆଗମନୀ (ରବୀନ୍ଦ୍ରନାଥଙ୍କ ଅୟିଭୁବନ ମନମୋହିନୀର ଅନୁସରଣରେ ରଚିତ) କଳହଂସ କେଦାର (କୁପରଙ୍କ କବିତା ଅନୁବାଦ), ଏକାକିନୀ କୃଷକ କାମିନୀ (ୱାଡ୍‌ସୱାର୍ଥଙ୍କ ସଲିଟାରୀ ରିପର କବିତାର ଅନୁବାଦ) ଓ ଭରତ ପକ୍ଷୀ (ଶେଲିଙ୍କ କବିତାର ଅନୁବାଦ) ଇତ୍ୟାଦି କବିତାର ସୃଷ୍ଟି ପଶ୍ଚାତ୍‌ରେ ଭାବାନୁସରଣମୂଳକ ଅନୁବାଦଧର୍ମକୁ ଗ୍ରହଣ କରିଛନ୍ତି।

ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାକ୍‌ପର୍ଯ୍ୟାୟରେ ସଚ୍ଚୀନ୍ଦ୍ରନାଥ ଦାସଙ୍କ କବିତା ଅନୁବାଦ-କଳା-କର୍ମ ଅନୁସାରେ ପ୍ରତିଷ୍ଠା ଲାଭ କରିଛି। ଅନୁବାଦ କଳାପାଟବ ମଧ୍ୟରେ ଆଧୁନିକତାକୁ ଶ୍ରୀଯୁକ୍ତ ଦାସ ଗୀତିକବିତାରେ ଅନୁପ୍ରବେଶ କରାଇଛନ୍ତି। ଶାରୀ, ଇଟାଲୀରେ ସୂର୍ଯ୍ୟାସ୍ତ, ବୀରବାଳା ଟିମୋକ୍ଲିଆ, ଶୋକାତୁରା ଇତ୍ୟାଦି କବିତାରେ ସେ ଯଥାକ୍ରମେ ପାଶ୍ଚାତ୍ୟ କବି ୱାଡ୍‌ସୱାର୍ଥ, ଶେଲି, ଓ ପେଟ୍ରାର୍କ କବିତାକୁ ଅନୂଦିତ କରିଛନ୍ତି।

ଓଡ଼ିଆ ନାଟକ ସାହିତ୍ୟ କ୍ଷେତ୍ରରେ ଏହି କାଳରେ (୧୮୮୦-୧୯୧୦) ଅନୁବାଦ ମାଧ୍ୟମରେ ନୂତନ ସାହିତ୍ୟାଦର୍ଶର ଅଭିବୃଦ୍ଧି ସାଧିତ ହୋଇଛି। ଏ ସମୟର ଅନୁବାଦକ ନାଟ୍ୟକାର ଓ ଅନୁବାଦ ନାଟକଗୁଡ଼ିକ ମଧ୍ୟରେ– କିଶୋରଚନ୍ଦ୍ର ରାଜେନ୍ଦ୍ର ଦେବଙ୍କଙ୍କ 'ବିଦଗ୍ଧ ମାଧବ' ବୀର ମିତ୍ରୋଦୟ ସିଂହଦେବଙ୍କ ରତ୍ନାବଳୀ, ଅଭିଜ୍ଞାନ ଶାକୁନ୍ତଳ', 'ବିକ୍ରମୋର୍ବଶୀ; ହରିହର ରଥଙ୍କ ଶକୁନ୍ତଳା, ବେଣୀସଂହାର; ଗୋପୀନାଥ ନନ୍ଦଙ୍କ ସୀତା ବନବାସ; ମୃତ୍ୟୁଞ୍ଜୟ ରଥଙ୍କ ମୁଦ୍ରାରାକ୍ଷସ ଇତ୍ୟାଦି ଉଲ୍ଲେଖଯୋଗ୍ୟ। ଏସବୁ ନାଟକଗୁଡ଼ିକ ସଂସ୍କୃତରୁ ଅନୂଦିତ ହୋଇଥିବାବେଳେ ଜଗତବଲ୍ଲଭ ଦାସ ସେକ୍‌ସପିୟରଙ୍କ ନାଟକକୁ ଅନୁବାଦ କରି ଏ ସମୟରେ ବହୁପାଠକଙ୍କ ପ୍ରଶଂସାଭାଜନ

ହୋଇଛନ୍ତି। ରାମଶଙ୍କର ରାୟ 'ଋକ୍‌ବେଦ ସଂହିତା' ପ୍ରଥମଖଣ୍ଡ ଓ 'ଯଜୁର୍ବେଦ ସଂହିତା' ତୃତୀୟଖଣ୍ଡ ଅନ୍ୱୟକ୍ରମେ ଓଡ଼ିଆରେ ଅନୁବାଦ କରି ଆଧ୍ୟାତ୍ମିକ ରସବାଦୀ ପାଠକଙ୍କ ନିକଟରେ ବୈଦିକ ସୌନ୍ଦର୍ଯ୍ୟ-ତତ୍ତ୍ୱର ଗାମ୍ଭୀର୍ଯ୍ୟକୁ ସରଳୀକୃତ କରି ଉପସ୍ଥାପନ କରିଛନ୍ତି।

(ସାତ)

ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାକ୍ ପର୍ବର ଅନୁବାଦ ସାହିତ୍ୟଠାରୁ ସତ୍ୟବାଦୀ ସାହିତ୍ୟଧାରାର ଅନୁବାଦ ଭାବ, ଭାଷା ଓ ବିଷୟନିଷ୍ଠାର ମୌଳିକତା ସଂରକ୍ଷଣ ଦିଗରୁ ଅଧିକ ବଳିଷ୍ଠ ଓ ରୁଚିଶୀଳ। ସତ୍ୟବାଦୀ ସାହିତ୍ୟ ଚେତନାର ମୁଖ୍ୟସ୍ୱର ଜାତୀୟତାବୋଧକୁ ଲକ୍ଷ୍ୟରେ ରଖି ପଣ୍ଡିତ ଗୋଦାବରୀଶ ବହୁ ଜାତୀୟତା ଭାବୋଦ୍ରେକଧର୍ମୀ ଅନୁବାଦ କୃତିରେ ହସ୍ତ ଦେଇଛନ୍ତି। 'ନିର୍ବାସିତ' ଓ '୧୮୧୭' ଉପନ୍ୟାସ ଦ୍ୱୟରେ ଗଜପତି ଦିବ୍ୟସିଂହ ଦେବଙ୍କ ନିବାସନ ଦଣ୍ଡ ଓ ବକ୍‌ସି ଜଗବନ୍ଧୁଙ୍କ ପାଇକ ବିଦ୍ରୋହକୁ ବିଷୟବସ୍ତୁ ଭାବରେ ଗ୍ରହଣ କରିଥିଲେବି ବିଗୋଦାବରୀଶ ଏ ଉଭୟରେ ବୈଦେଶିକ ବିଷୟ ଓ ଘଟଣା ମଧ୍ୟରେ ସ୍ୱଦେଶୀୟତାର ସଂଯୋଜନା କରିଛନ୍ତି। 'ଘଟାନ୍ତର' ଉପନ୍ୟାସଟି ରବର୍ଟ ଲୁଇସ୍ ଷ୍ଟିଭେନ୍ ସନ୍‌ଙ୍କର 'Strange case of Dr. Jekyll and Mr. Hyde" ନାମକ ଉପନ୍ୟାସର ଅବଲମ୍ୱନରେ ପଣ୍ଡିତ ମିଶ୍ର ଲେଖିଛନ୍ତି। ଭିକ୍ଟର ହ୍ୟୁଗୋଙ୍କ ପୃଥିବୀ ପ୍ରସିଦ୍ଧ ଉପନ୍ୟାସ– 'ଲା' ମିଜରେବଲ୍'ର ଭାବାନୁସରଣରେ ସେ 'ଅଭାଗିନୀ' ଉପନ୍ୟାସ ରଚନା କରିଛନ୍ତି। ପରବର୍ତ୍ତୀ କାଳରେ ଏହି ଉପନ୍ୟାସର ବିଧିବଦ୍ଧ ଓଡ଼ିଆ ଅନୁବାଦ ରାମଚନ୍ଦ୍ର ଆଚାର୍ଯ୍ୟ 'ପୀୟୂଷ ପ୍ରବାହ' ନାମରେ କରିଛନ୍ତି। ଗୋଦାବରୀଶଙ୍କ ପରି ବିଦେଶୀ କଥାବସ୍ତୁ, ଚରିତ୍ର ଓ ଚିନ୍ତାଧାରାକୁ ଦେଶୀୟ ଭାବଧାରା ସହିତ ସମୀକୃତ କରି ନୀଳକଣ୍ଠ ଟେନିସନଙ୍କ 'Enoch Arden' କାବ୍ୟର ଅନୁକୃତି କରଣ 'ଦାସନାଏକ' ଶୀର୍ଷକରେ କରିଛନ୍ତି। ସେହପରି ତାଙ୍କର ଅନ୍ୟତମ କାବ୍ୟାନୁବାଦ ହେଉଛି 'ପ୍ରଣୟିନୀ' ଯାହା ଟେନିସନଙ୍କ 'The Princess'ରୁ ଅନୁଦିତ ହୋଇଛି। ରାଧାନାଥ, ମଧୁସୂଦନ ଓ ଫକୀରମୋହନ କାଳୀନ ଅନୁବାଦ ଧାରାରେ ଆକ୍ଷରିକ ଅନୁବାଦ-କଳା କୌଶଳ ପରିଗୃହୀତ ହୋଇଥିବାବେଳେ ସତ୍ୟବାଦୀ ସାଧକମାନେ ମୂଳ ସୃଷ୍ଟିର ମର୍ମାନୁସରଣାତ୍ମକ ଭାବାନୁବାଦ କରିଛନ୍ତି। ପୁନଶ୍ଚ ପ୍ରାକ୍ କାଳରେ ବିଶେଷତଃ ସଂସ୍କୃତ ସାହିତ୍ୟରୁ ଅନୁବାଦକୃତି ସମ୍ଭବ ହୋଇଥିବା ସ୍ଥଳେ ସତ୍ୟବାଦୀ ଚେତନାର ଲେଖକମାନେ ପାଶ୍ଚାତ୍ୟମୁଖୀ ହୋଇଛନ୍ତି ଏହାହିଁ ଦୃଶ୍ୟମାନ ବୈଚିତ୍ର୍ୟ।

(ଆଠ)

ପ୍ରାକ୍ ସ୍ୱାଧୀନତା କାଳରେ ଦୁଇଦୁଇଟି ବିଶ୍ୱଯୁଦ୍ଧର କରୁଣ ହତାଶାସମ୍ପନ୍ନ ପରିଣତି ବିଶ୍ୱବୁଦ୍ଧିଜୀବୀଙ୍କ ମାନସରେ ମାନବ ଏକତାର ଓ ମାନବ ମୈତ୍ରୀର ମହାନୁଭବ ଚେତନାର ସଂସ୍ଥାପନ ପ୍ରତି ଅନୁଗତ କରାଇଛି। ଫଳରେ ବିଶ୍ୱର ବହୁ ଅମର କୃତି ବହୁଭାଷାରେ ଘଟାନ୍ତର କଳେବର ଧାରଣକରିଛି। ଏହିଭାବନାରୁ ଓଡ଼ିଆ ଅନୁବାଦ ସାହିତ୍ୟର ଗୁଣାତ୍ମକ ସମ୍ପ୍ରସାରଣ ପ୍ରାକ୍-ସ୍ୱାଧୀନତା କାଳରେ ସହଜ ହୋଇପଡ଼ିଛି। ଶ୍ରୀ ଅମରବଲ୍ଲଭ ଦେଙ୍କ 'ବୀରପୂଜା' ଓ ଉଦୟନାଥ ଷଡ଼ଙ୍ଗୀଙ୍କ ଲିଖିତ 'ଟମକକାଙ୍କ କୁଟୀର' ଦୁଇଟି ଶ୍ରେଷ୍ଠ ଅନୁବାଦ କୃତିର ଦୃଷ୍ଟାନ୍ତ; ଯାହା ଇଂରେଜୀ ପ୍ରାବନ୍ଧିକ "କାର ଲାଇଲ୍‌ଙ୍କର "The Hero and Hero Worship" ପ୍ରବନ୍ଧ ପୁସ୍ତକର ଓ ମିସେସ ଷ୍ଟୋ ହାରିଏଟ ଏଲିଜାବେଥ୍‌ଙ୍କର 'Uncle Tom's Cabin' ଉପନ୍ୟାସର ଓଡ଼ିଆ ଅନୁବାଦ।

ଏହି ପର୍ଯ୍ୟାୟରେ ଗୋପବନ୍ଧୁ ଚୌଧୁରୀ, ସୁନନ୍ଦକର, ଗୋଲକ ବିହାରୀ ଧଳ, ଲକ୍ଷ୍ମୀନାରାୟଣ ମହାନ୍ତି ଓ ମନମୋହନ ମିଶ୍ର ପ୍ରମୁଖ ହିନ୍ଦୀ, ବଙ୍ଗଳା ଓ ଇଂରାଜୀରୁ ବହୁ ସାହିତ୍ୟ କୃତି ଓଡ଼ିଆରେ ଅନୁବାଦ କରିଛନ୍ତି। ଗୋପବନ୍ଧୁ ଚୌଧୁରୀ 'ମହାତ୍ମାଗାନ୍ଧୀଙ୍କ ଆତ୍ମଜୀବନୀ' ଚରିତ୍ରକୁ, ସୁରେନ୍ଦ୍ର ଦ୍ୱିବେଦୀ 'ଜବାହାରଲାଲଙ୍କ ଆତ୍ମଜୀବନୀକୁ 'ବିଶ୍ୱଇତିହାସ'କୁ, ରାଧାନାଥ ରଥ, ରାଜ ଗୋପାଳଚାରୀଙ୍କ 'ଆମ ସଂସ୍କୃତିଗୋଧନ' ଓ ଚୟନମ୍ମୀଙ୍କ 'ଏକ ବିଶ୍ୱ ଓ ଭାରତ' ଇତ୍ୟାଦିର ଓଡ଼ିଆ ଅନୁବାଦ କରିଛନ୍ତି। ମନମୋହନ ମିଶ୍ର ଗର୍କୀ ଓ କାମ୍ୟୁଙ୍କ ଉପାଦେୟ ଉପନ୍ୟାସଗୁଡ଼ିକର ଅନୁବାଦ କରିଥିବାବେଳେ ଗର୍କୀଂକର ବିଖ୍ୟାତ ଉପନ୍ୟାସ 'mother'କୁ ସୁନନ୍ଦକର 'ମା' ନାମରେ ଅନୁଦିତ କରିଛନ୍ତି। ମନମୋହନଙ୍କ 'ମନୁଷ୍ୟଦୈତ୍ୟ' ଯୁଦ୍ଧୋତ୍ତର କାଳୀନ ଓଡ଼ିଆ ଅନୁବାଦ ସାହିତ୍ୟ ବିକାଶ କ୍ରମରେ ଏକ ଉତ୍କୃଷ୍ଟ କୃତି। ଏହି ସମୟରେ ବଙ୍କିମଚନ୍ଦ୍ରଙ୍କ ଆନନ୍ଦମଠ, କପାଳ କୁଣ୍ଡଳା ଶରତ ଚନ୍ଦ୍ରଙ୍କର 'କୋରେଲ', ପଲବର୍କଙ୍କ 'Good Earth' ବୋରିସ୍ ପାଷ୍ଟେରନକ୍‌ଙ୍କ 'Doctor Zhivago', ଦସ୍ତୋଭସ୍କି, ଟଲଷ୍ଟୟ ଓ ମାୟାସ୍କୋଭସ୍କିଙ୍କ ପ୍ରସିଦ୍ଧ ଗ୍ରନ୍ଥଗୁଡ଼ିକର ଅନୁବାଦ ପାଠକମାନଙ୍କ ପଠନ ପିପାସାକୁ ଚରିତାର୍ଥ କରି ଅନୁବାଦ କଳାକୁ ବହୁଚର୍ଚ୍ଚିତ କରାଇଛି। ଜାନକୀନାଥ ରାଉତରାୟ ମହାପାତ୍ରଙ୍କ ଫରାସୀ ଉପନ୍ୟାସ 'ନାନା'ର ଓଡ଼ିଆ ଅନୁବାଦ ଏ ପର୍ଯ୍ୟାୟରେ ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି। ଏହି ପର୍ଯ୍ୟାୟର ଅନୂଦିତ ଗ୍ରନ୍ଥଗୁଡ଼ିକ ସମ୍ପର୍କରେ ଗୋପାଳଚନ୍ଦ୍ର ପ୍ରହରାଜ ତର୍ଜମା କରି ଯଥାର୍ଥରେ ଲେଖିଛନ୍ତି– "ଅପର

ସାହିତ୍ୟରୁ ଗଳ୍ପାଦି ଅବିକଳ ଅନୁବାଦ କରିବାରେ ବାହାଦୁରୀ ନାହିଁ। ଗଳ୍ପମାନଙ୍କୁ ନିର୍ବାଚନ କରିବା ଓ ଉକ୍ତ ଗଳ୍ପଗୁଡ଼ିକୁ ଆମ ସାହିତ୍ୟର ରୀତି ଓ ରୁଚି ଅନୁସାରେ ବଢ଼ାଇବାରେ କୃତିତ୍ୱ ଅଛି।'' ଓଡ଼ିଆ ସାହିତ୍ୟ ପାଠକର ରୁଚି ବିଧିରେ ଏସବୁ ଗ୍ରନ୍ଥଗୁଡ଼ିକର ଭାବନିଷ୍ଠ ଅନୁବାଦ ଘଟିଥିବାରୁ ଏସବୁ ଗଣବୋଧ୍ୟ ହୋଇପାରିଛି।

(ନଅ)

ସ୍ୱାଧୀନତା ପ୍ରାପ୍ତି ପରେ ରାଷ୍ଟ୍ରୀୟଚେତନାର ବିକାଶୋନ୍ମୁଖୀ ପ୍ରକ୍ରିୟା ଗଣଚେତନାକୁ ଅର୍ଥନୀତି, ସମାଜ, ସଂସ୍କୃତି, ଶିଳ୍ପ, ସଭ୍ୟତା ଓ ସାହିତ୍ୟ ଦିଗରୁ ବିଶ୍ୱାଭିମୁଖୀ କରିଛି। ସମାଜ, ସଂସ୍କୃତି ଓ ଦର୍ଶନ ଅନୁରକ୍ତ ଆଧୁନିକ ଭାବବାଦୀ ଲେଖକମାନେ ବିଶ୍ୱସାହିତ୍ୟ ଚେତନାକୁ ଏବଂ ଅନ୍ୟାନ୍ୟ ଭାରତୀୟ ପ୍ରାନ୍ତୀୟସାହିତ୍ୟ ଧାରାକୁ ଓଡ଼ିଆ ପାଠକ ନିକଟରେ ପରିଚିତ କରାଇ ଓଡ଼ିଆ ସାହିତ୍ୟ ଓ ପାଠକକୁ ବହିର୍ମୁଖୀ କରିବାନିମନ୍ତେ ପ୍ରୟାସ କରିଛନ୍ତି। ଫଳରେ ଦେଶବିଦେଶର ଭାବନିଷ୍ଠ, ପ୍ରତିକ୍ରିୟାଶୀଳ ଓ ଭାବାଲୋଡ଼ନ ସୃଷ୍ଟିଧର୍ମୀ ଅମର ଅନୁପ୍ରକୃତିଗୁଡ଼ିକର ବହୁଳ ଅନୁବାଦ ଏହି ସ୍ୱାଧୀନତୋତ୍ତର ପର୍ଯ୍ୟାୟରେ ସମ୍ଭବ ହୋଇଛି। ଏହିକ୍ରମରେ ପ୍ରତିବେଶୀ କବି ରବୀନ୍ଦ୍ରନାଥ, ଔପନ୍ୟାସିକ ବଙ୍କିମଚନ୍ଦ୍ର, ଶରତ୍‌ଚନ୍ଦ୍ର, ତାରାଶଙ୍କର, ସୁଭାଷଚନ୍ଦ୍ର, ଆଶାପୂର୍ଣ୍ଣା ଦେବୀ, ନାଟ୍ୟକାର ବୁଦ୍ଧଦେବ ବସୁଙ୍କଠାରୁ ଜାତୀୟସମ୍ମାନପ୍ରାପ୍ତ ଲେଖକ ମହାଦେବୀ ବର୍ମା, ଅମୃତା ପ୍ରୀତମ୍, ବିଷ୍ଣୁ ଖାଣ୍ଡେକର, ଶିବଶଙ୍କର ପିଲାଇ,କୃଷ୍ଣ ମୂର୍ତ୍ତି, କେ ଏମ୍. ମୁନ୍‌ସୀ ପ୍ରମୁଖଙ୍କ କୃତିରାଜି ଓଡ଼ିଆରେ ଅନୂଦିତ ହୋଇଛି। ଦେଶବିଦେଶର ଲୋକକାହାଣୀର ଅନୁବାଦ ଏ ପର୍ଯ୍ୟାୟର ଭାଷାନ୍ତରୀକରଣ କଳାକୁ ସମୃଦ୍ଧ କରିଛି। ସେହିପରି କାମ୍ୟୁ, କାଫ୍‌କା, ହୋମିଙ୍ଗ୍ ଓ୍ୱେ, ଚେଖଭ୍, ଜୟେସ୍, ଲରେନ୍‌ସ, ଏମିଲ୍ ଜୋଲା ଓ ବର୍ଣ୍ଣାଡାଶ ପ୍ରଭୃତି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଲେଖକଙ୍କୁ ମଧ୍ୟ ଅନୁରୂପ ଭାବଧର୍ମ ସୁରକ୍ଷା ଭିତ୍ତିରେ ଓଡ଼ିଆରେ ଅନୁବାଦ କରାଯାଇପାରିଛି। ଏହି ପର୍ଯ୍ୟାୟରେ ବହୁ ପାଠକ ପ୍ରଶଂସା ଲାଭକରିଥିବା ଅନୁବାଦକ ଓ ଅନୁବାଦ କଳା ସୃଷ୍ଟିଗୁଡ଼ିକ ମଧ୍ୟରେ ରାଧାମୋହନଙ୍କ 'ମେଘଦୂତ', କୃଷ୍ଣଚନ୍ଦ୍ର କରଙ୍କ 'ଋତୁସଂହାର', ଗୋପାଳ ଚନ୍ଦ୍ର ମିଶ୍ରଙ୍କ 'ଦୂର୍ବାଦଳ' (ଏଜରା ପାଉଣ୍ଡଙ୍କ କବିତାର ଅନୁବାଦ) ଜ୍ଞାନୀନ୍ଦ୍ର ବର୍ମାଙ୍କ 'ମେଘଦୂତ', ପୋଡାଭୂଇଁ, ଗୋଲକ ବିହାରୀ ଧଳଙ୍କ 'ଗୋଦାନ' (ପ୍ରେମଚାନ୍ଦଙ୍କ ଗବନର ଅନୁବାଦ) ଡକ୍ଟର ବୈରାଗୀଚରଣ ଜେନାଙ୍କ 'ଗାଥା ସପ୍ତସତୀ' (ପ୍ରାକୃତକବି ହାଳଙ୍କ ରଚନାର ଅନୁବାଦ), ଧନେଶ୍ୱର ମହାପାତ୍ରଙ୍କ 'କର୍ପୂରମଞ୍ଜରୀ' (ରାଜ ଶେଖରଙ୍କ ନାଟକର ଅନୁବାଦ), ଅନନ୍ତ ଚରଣ ଶୁକ୍ଳାଙ୍କ ଆରିଷ୍ଟୋଟଲ୍‌ଙ୍କ କାବ୍ୟତତ୍ତ୍ୱ ଇତ୍ୟାଦି ଓଡ଼ିଆ ଅନୁବାଦ ସାହିତ୍ୟର ଶ୍ରୀବୃଦ୍ଧି ସାଧନକରିଛି।

ଏତଦ୍‌ବ୍ୟତୀତ ଏହି ପର୍ଯ୍ୟାୟରେ ଅନୁବାଦ ସାହିତ୍ୟ କ୍ଷେତ୍ରରେ ବଳିଷ୍ଠଭାବଦ୍ୟୋତକ ଓ ଆଭିମୁଖ୍ୟନିଷ୍ଠ ଭୂମିକା ଗ୍ରହଣ କରିଥିବା ଅନୁବାଦକଙ୍କ ମଧ୍ୟରେ ଜାନକୀବଲ୍ଲଭ ମହାନ୍ତି, ଶ୍ରୀଧର ଦାସ, ଅନସୂୟା ମହାନ୍ତି, ସୌଭାଗ୍ୟ କୁମାର ମିଶ୍ର, ବସନ୍ତ କୁମାରୀ ଦେବୀ, ସୀତାଦେବୀ ଖାଡ଼ଙ୍ଗା, ପ୍ରତିଭା ରାୟ, ସ୍ନେହ ମହାପାତ୍ର, ମହାପାତ୍ର ଭାସ୍କର ଗନ୍ତାୟତ୍, ଅଜୟ କୁମାର ପଟ୍ଟନାୟକ, ମିହିର ରାଓ, ଖଗେଶ୍ୱର ମହାପାତ୍ର ଏବଂ ଜୟନ୍ତୀ ପଟ୍ଟନାୟକ ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ। ସ୍ୱାଧୀନତୋତ୍ତର ଅନୁବାଦ ସାହିତ୍ୟ ଉତ୍ତର ଅଷ୍ଟଦଶନ୍ଧି କାଳରେ ଆୟତନ ଓ ପ୍ରସାରଣଶୀଳତା ଦିଗରୁ ଏତେ ବ୍ୟାପକତା ଲାଭ କରିଛି ଯେ ଏହାର ତାଲିକା ପ୍ରଦାନ କେବଳ ଆଲୋଚନାର କଳେବର ବୃଦ୍ଧିର କାରଣ ହେବ।

ସ୍ୱାଧୀନତୋତ୍ତର କାଳରେ ପତ୍ରପତ୍ରିକାମାନେ 'ଅନୁବାଦ ସାହିତ୍ୟ' ପ୍ରଜାତିକୁ ମାନ୍ୟତାଦେଇ ତାହା ପ୍ରତି ସ୍ୱତନ୍ତ୍ର ସ୍ତମ୍ଭ ଓ ପୃଷ୍ଠା ନିରୂପିତ ରଖିଛନ୍ତି। ପୁନଶ୍ଚ ସ୍ୱାଧୀନତା ପରେ ବିଶ୍ୱକୁ ନିଜ ଭିତରେ ଦେଖିବା, ବିଶ୍ୱ ଭିତରେ ନିଜକୁ ସ୍ୱାଭିମାନସୁଲଭ ପରିଚିତିରେ ଛିଡ଼ା କରାଇବା, ଜାତୀୟ ସ୍ତରରେ ଉଚ୍ଚାଙ୍ଗ ବାଙ୍‌ମୟ ଧାରା ଓ ଚେତନା ସହିତ ତାଳଦେଇ ଆଗକୁ ମାଡିଚାଲିବାର ଇଚ୍ଛାଶକ୍ତି ପ୍ରବଳ ହୋଇଛି। ଓଡ଼ିଆ ପାଠକ ବାହାରକୁ ଜାଣି ଭିତରର ସର୍ଜନଶୀଳ ରଚନାଗୁଡ଼ିକୁ ମାପିବାକୁ ଅନ୍ୟତମ ପାଠକୀୟ ଆଗ୍ରହ ଓ ଚାହିଦା ଭାବରେ ସ୍ୱୀକାର କରିଛି। ଅନ୍ୟକୁ ଜାଣି ଅନ୍ୟପରି ନିଜକୁ ଗଢ଼ି ଅନ୍ୟ ଅନୁରୂପତାରେ ଅନ୍ୟ ସହିତ ଯୋଡି ହୋଇଯିବାର ଇଚ୍ଛାଶକ୍ତି ସର୍ବତୋଭାବେ ଅନୁବାଦ ପ୍ରଜାତିକୁ ଦୁଇଟି ଅଭିପ୍ରାୟ ଉପରେ ପ୍ରସାରିତ ହେବାକୁ ସୁଯୋଗ ଦେଇଛି। ପ୍ରଥମ ଅଭିପ୍ରାୟଟି ରାଷ୍ଟ୍ରୀୟ ପରିମଣ୍ଡଳର ବିବିଧ ଭାଷା ଓ ସାଂସ୍କୃତିକ-ମାନବିକ-ଜୈବିକ-ନୃତାତ୍ତ୍ୱିକ ସାରସ୍ୱତୀୟ ଲୀଳାକୁ ଅବଲୀଳାକ୍ରମେ ଜାଣି ଜଣେଇବା ଦିଗରୁ ଭାରତୀୟ ସାହିତ୍ୟର ଅନୁବାଦ କରିବା ଏବଂ ଦ୍ୱିତୀୟ ଅଭିପ୍ରାୟ ହେଉଛି ଅନୁବାଦ ମାଧ୍ୟମରେ ବିଶ୍ୱସାହିତ୍ୟ ଧାରାରେ ସମ୍ବନ୍ଧିତ ହେବା ଓ ବିଶ୍ୱବୈଚିତ୍ର ସହିତ ଆପଣାକୁ ତୁଳନାବିଧାନରେ ସଂଯୋଗ କରିବା। ସ୍ଥାନୀୟତାକୁ ରାଷ୍ଟ୍ରୀୟତା ଓ ସାର୍ବିକତା ସହିତ ଯୋଡିବା ଏବଂ ସାର୍ବିକତା-ରାଷ୍ଟ୍ରୀୟତାକୁ ସ୍ଥାନୀୟତା ଭିତରେ ଦେଖି ଦେଖାଇବାର ଦାୟବଦ୍ଧତା ଏ କ୍ଷେତ୍ରରେ ଅନୁବାଦ ଲିଭାଇଥାଏ।

ସଂପ୍ରତି ଏନ୍.ବି.ଟି., କେନ୍ଦ୍ର ସାହିତ୍ୟ ଏକାଡେମୀ, ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଇଷ୍ଟର୍ଣ୍ଣ ମିଡ଼ିଆ ପବ୍ଲିକେଶନ୍ ସଂସ୍ଥା, ଚିନ୍ମୟ ମିଶନ, ରାମକୃଷ୍ଣ ମିଶନ, ଦିବ୍ୟ ଜୀବନ ସଂଘ, ଅରବିନ୍ଦ ଆଶ୍ରମ, ବିଶ୍ୱଭାରତୀ ଶାନ୍ତିନିକେତନ, କୃଷ୍ଣଚେତନା ସଂଘ ଓ ଶତରୂପା, ବର୍ଣ୍ଣାଳି, ନିଶାନ୍ତ ଭଳି ପତ୍ରିକା ପ୍ରକାଶନ ସଂସ୍ଥା

ସହିତ ଓଡ଼ିଶାର ଘରୋଇ ପ୍ରକାଶନ ସଂସ୍ଥା (ବିଶେଷ କରି ଗ୍ରନ୍ଥମନ୍ଦିର, ବିଦ୍ୟାପୁରୀ, ନାଲନ୍ଦା, ଓଡ଼ିଶା ବୁକ୍‌ଷ୍ଟୋର, ଫ୍ରେଣ୍ଡ୍‌ସ ପବ୍ଲିଶର୍ସ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋରର୍ସ ପ୍ରମୁଖ) ଅନୁବାଦର ପ୍ରସାର ସାଧନରେ ପୃଷ୍ଠପୋଷକତା ଯୋଗାଇ ଆସିଛନ୍ତି। ଝଙ୍କାର, ଅମୃତାୟନ, ନବଲିପି, ଇସ୍ତାହାର, ବର୍ତ୍ତିକା, ନବ ରବି, ଗୋକର୍ଣ୍ଣିକା, କଥା କଥା କବିତା କବିତା, ସମାରୋହ, ସୁଚରିତା, ଉଦ୍‌ଭାସ, ପ୍ରତିବେଶୀ, ପ୍ରବାହ ଓ କାବ୍ୟଲୋକ ଆଦି ସାହିତ୍ୟ ପତ୍ରିକା ଏଥି ନିମନ୍ତେ ସ୍ୱତନ୍ତ୍ର ସ୍ତମ୍ଭ ପ୍ରଦାନକରି ଅନୁସୃଜନ ପରଂପରାର ଗତିଶୀଳତାକୁ ବେଗବାନ କରିରଖିଛନ୍ତି। ମାତ୍ର ଏଠାରେ କ୍ଷୋଭର ଦର୍ଶନୀୟ ଚିତ୍ରଟି ହେଉଛି ଓଡ଼ିଶାର ଆଭ୍ୟନ୍ତର ସାହିତ୍ୟ ମଣ୍ଡଳରେ ଅନ୍ୟ ଭାରତୀୟ ଭାଷାରୁ (ଆନ୍ତର୍ଜାତୀୟ ଖ୍ୟାତି ସଂପନ୍ନ କେତେକ ମହତ ଲେଖା ସଗର୍ବ ସଗୌରବ ଅନୁଦିତ ନହୋଇଛନ୍ତି, ଏକଥା ଏଠାରେ ବିସ୍ମୃତ କରାଯାଉନାହିଁ) ଅନୁବାଦକମାନେ ନିଜନିଜ ଉଚ୍ଚତାର ପରିମାଣମାପରେ ଗ୍ରନ୍ଥ ଅନୁବାଦ କରି ଅନ୍ୟଭାଷାର ମହାନଗ୍ରନ୍ଥର ପ୍ରଚୁରତା ଓ ଅନୁବାଦ ଯୋଗ୍ୟତାକୁ ଓଡ଼ିଶାର ପାଠକ ମହଲରେ ପ୍ରମାଣସିଦ୍ଧ କରି ସାରିଥିବା ବେଳେ ଓଡ଼ିଶାର ମହାନ୍‌କୃତି ଓଡ଼ିଶା ବାହାରେ ଦଶଭାଗରୁ ଭାଗେ ଏଯାବତ୍ ଡେଇଁ ଭାଷାନ୍ତର ରୂପ ପାଇପାରିନାହିଁ। ଆମ ଭାଷାରେ ଅନ୍ୟଭାଷୀ ପାଠକଙ୍କୁ ଆନ୍ଦୋଳିତ, ଆମୋଦିତ ଓ ଅନୁପ୍ରେରିତ କରିବା ଭଳି ମହାନ୍ ଲେଖା ନାହିଁ– (ଯଦିଓ ଆମେ ଜାଣୁ ଭୀମଭୋଇ, ମଧୁସୂଦନ, ଫକୀରମୋହନ, କାହ୍ନୁଚରଣ, ଗୋପୀନାଥ, ସଚ୍ଚିଦାନନ୍ଦ, କିଶୋରୀଚରଣ, ସୁରେନ୍ଦ୍ର, ଗୁରୁପ୍ରସାଦଙ୍କ ଭଳି ଆଧୁନିକ କୀର୍ତ୍ତିଧର ଥିଲେ ଓ ମହାପାତ୍ର ନୀଳମଣି ସାହୁ, ମନୋଜ ଦାସ, ଶାନ୍ତନୁକୁମାର ଆଚାର୍ଯ୍ୟ, ଚନ୍ଦ୍ରଶେଖର ରଥ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ଜୟନ୍ତ ମହାପାତ୍ର, ରାଜେନ୍ଦ୍ର କିଶୋର ପଣ୍ଡା, ମନୋରଂଜନ ଦାସ, ବିଜୟମିଶ୍ର, ରମେଶ ପ୍ରସାଦ ପାଣିଗ୍ରାହୀ, ସୌଭାଗ୍ୟ ମିଶ୍ର, ପ୍ରତିଭାରାୟ, ବୀଣାପାଣି ମହାନ୍ତି ଓ ପ୍ରତିଭା ଶତପଥୀ, ଜଗନ୍ନାଥ ପ୍ରସାଦ ଦାସ, ହରପ୍ରସାଦ ଦାସ, ନୀଳାଦ୍ରିଭୂଷଣ ହରିଚନ୍ଦନ ଓ ବିଜୟକୁମାର ଶତପଥୀଙ୍କ ପରି ସର୍ଜନଶୀଳ ଜାତୀୟ ଆନ୍ତର୍ଜାତୀୟ ମହାରଥୀମାନେ ବର୍ତ୍ତମାନ ସକ୍ରିୟ ଅଛନ୍ତି) ଏକଥା କହିବା ଠିକ୍ ଫାବିବ ନାହିଁ। ବରଂ ଏହା ଅପେକ୍ଷା ନିଚୋଳ ସତ୍ୟ ହେଉଛି ନିଷ୍ଠାପର ଓ ଅନୁରକ୍ତ ସେବକ ଅନୁବାଦକର ଅଭାବ ଆମ ଭିତର ଅଗଣା ଓ ବାହାରର ଆକାଶତଳେ ନିଶ୍ଚିତ ରହିଛି। ନିଜ ଭାଷାର ଗୁଣୀ ଓ ନବସ୍ପନ୍ଦନ ସୃଷ୍ଟିକାରୀ ସାହିତ୍ୟ ସ୍ରଷ୍ଟା ଓ ସୃଷ୍ଟିକୁ ଅନୁବାଦ ମାଧ୍ୟମରେ ବାହାର ଜଗତର ସନ୍ନିକଟ କରିବାପାଇଁ ସାଂପ୍ରତିକ ପ୍ରଚାର ଓ ବିଜ୍ଞପ୍ତି ସର୍ବସ୍ୱ ପାଠକୀୟ ବଜାରସ୍ତରରେ ନିଃସ୍ୱାର୍ଥପର ପ୍ରତିଭା ନେତୃତ୍ୱ ଦରକାର। ଏ ପ୍ରକାର ନେତୃତ୍ୱ ଯେ

ଆମ ଭାଷାରେ ନାହାଁନ୍ତି ତାହାନୁହେଁ। ମାତ୍ର ନେତୃତ୍ୱଙ୍କ ପାଖରେ ଜାତି, ପ୍ରିୟଜନ ଶ୍ରଦ୍ଧାଭାବ, ଗୋଷ୍ଠୀବାଦୀ ପ୍ରଶଂସାବୃତ୍ତ ନିଜେ ଚକଚକ ହେବାର ଇଚ୍ଛାବୃତ୍ତି ଏତେପ୍ରବଳ ଯେ ଅସଲ ଗୁଣିଆମାନେ ଅଧାଗୁଣିଆ ହୋଇ ଅନୁବାଦଯୋଗ୍ୟ ପ୍ରତିଭା ହେବାପାଇଁ ଦକ୍ଷ ନେତୃତ୍ୱଙ୍କ ଶୁଭ ଦୃଷ୍ଟି ଆଢୁଆଳରେ ରହି ଯାଉଛନ୍ତି। ଅବଶ୍ୟ ଏପରି ସୁଯୋଗ ବି ସୀମିତ, କାରଣ ଅନ୍ୟଭାଷୀ ଅନୁବାଦକ ଆମ ସ୍ଥାନୀୟ ମହଲରେ ଖୁବ୍ କମ୍ ଆତଯାତ ହୁଅନ୍ତି।

ତଥାପି ଓଡ଼ିଶୀ ପରିମଣ୍ଡଳରେ ଓଡ଼ିଆ ଅନୁବାଦ ସାହିତ୍ୟ ପ୍ରଜାତିର ଶ୍ରୀକୁ ସୁମଣ୍ଡନ କରିବାରେ ନିଜର ସାଧନାକୁ ବିନିଯୋଗ କରିଥିବା ଅନୁସୃଜକଙ୍କ ମଧ୍ୟରେ ୧୯୮୦ ପରବର୍ତ୍ତୀ କାଳରେ ଯେଉଁମାନଙ୍କୁ ସ୍ମରଣ କରାଯାଇପାରେ; ସେମାନେ ହେଉଛନ୍ତି– କମଳଲୋଚନ ମହାନ୍ତି, ଚିତ୍ତରଂଜନ ଦାସ, ମହାପାତ୍ର ନୀଳମଣି ସାହୁ, ନନ୍ଦିନୀ ଶତପଥୀ, ସୀତାଦେବୀ ଖାଡ଼ଙ୍ଗା, ଗୋରାଚାନ୍ଦ ମିଶ୍ର, ବଂଶୀଧର ଭୂୟାଁ, ଖଗେଶ୍ୱର ମହାପାତ୍ର, ଭୀମସେନ ଦାଶ, ବରନ୍ଦ୍ରେକୃଷ୍ଣ ଧଳ, ପ୍ରଫୁଲ୍ଲ ମହାପାତ୍ର, କମଳାକାନ୍ତ ଦାସ, ବଳରାମ ମିଶ୍ର, ଭାବଗ୍ରାହୀ ମିଶ୍ର, ସୁଦର୍ଶନ ଆଚାର୍ଯ୍ୟ, ଶ୍ରୀନିବାସ, ସୁଦର୍ଶନ ଆଚାର୍ଯ୍ୟ, ଚୌଧୁରୀ ହେମକାନ୍ତ ଦାସ, ଯତୀନ୍ କୁମାର ନାୟକ, ସୁଖେନ୍ଦୁମୋହନ ଦାସ, ଶକୁନ୍ତଳା ବଳିୟାର ସିଂହ, ଶ୍ରୀନିବାସ ଉଦ୍‌ଗାତା, ରାମପ୍ରସାଦ ପୁରୋହିତ, ଅଜୟ କୁମାର ପଟ୍ଟନାୟକ, କୁମାର ହସନ୍, ପ୍ରସନ୍ନ କୁମାର ମିଶ୍ର, ପ୍ରଶାନ୍ତ କୁମାର ମହାନ୍ତି, ପ୍ରଭାକର ସ୍ୱାଇଁ, ହରପ୍ରସାଦ ଦାସ, କ୍ଷୀରୋଦ ପରିଡା, ବିଜୟିନୀ ସିଂହଦେଓ, କୃଷ୍ଣ ମୋହନ ମହାନ୍ତି, ନିରଂଜନ ପଣ୍ଡା, ବ୍ରହ୍ମାନନ୍ଦ ଦାସ, ପ୍ରସନ୍ନ କୁମାର ରଥ, ନୀହାର ବାଳା ମହାନ୍ତି, ଲକ୍ଷ୍ମୀକାନ୍ତ ରାଜ, ବନଜଦେବୀ, ସୃଜନ ପ୍ରକାଶ ଦାସ, ପ୍ରଦୀପ୍ତକୁମାର ରାୟ, କିଶୋର ପାଣିଗ୍ରାହୀ, ସଂଗ୍ରାମ ଜେନା, ଅରବିନ୍ଦ ବେହେରା, ଓ ସୁବ୍ରତ କୁଅଁର।

୧୮୪୦ ମସିହା ପରେ ପାରମ୍ପରିକ ଗ୍ରନ୍ଥର ଅନୁବାଦକୁ ନେଇ ଯେଉଁ ଆକ୍ଷରିକ ଅନୁବାଦ ଧାରାର କ୍ରମୋନ୍ମେଷ ଘଟିଥିଲା ତାହା ୨୦୦୦ ମସିହା ବେଳକୁ ବୌଦ୍ଧିକ ଭାବରୂପାନ୍ତରୀକରଣ ଭିତରେ ମର୍ମାନୁବାଦଧର୍ମୀ ହୋଇପାରିଛି। ଭାଷାର ଶୈଳୀଗତ ରୂପାନ୍ତରୀକରଣ ଓ ଭାବର ସ୍ୱାଭାବିକତା ରକ୍ଷା ପ୍ରାକ୍ ସ୍ୱାଧୀନତାକାଳୀନ ଅନୁବାଦ ସାହିତ୍ୟର ବୈଶିଷ୍ଟ୍ୟ ହୋଇଥିବା ସ୍ଥଳେ ସ୍ୱାଧୀନତୋତ୍ତର କାଳରେ ବିଷୟାନୁବାଦ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଛି। ଉପନ୍ୟାସ ଓ ଗଳ୍ପ ବ୍ୟତୀତ ନାଟକ, ପ୍ରବନ୍ଧ ଓ କବିତାର ଅନୁବାଦ ଓଡ଼ିଆ ସାହିତ୍ୟରେ ପରିମାଣାତ୍ମକ ଦିଗରୁ ବିଶେଷ ଉନ୍ନତ ହୋଇନାହିଁ। ଏହାର ଏକମାତ୍ର କାରଣ ଭିନ୍ନଭାଷୀ ଗ୍ରନ୍ଥର ମର୍ମ ଓ ଭାବାନୁସାରୀ

ଅନୁବାଦପାଇଁ ଓଡ଼ିଆ କାର୍ବ୍ୟିକ ଶବ୍ଦବିନ୍ୟାସ ଓ ନାଟକୀୟ ସଂଳାପ ଚାତୁରୀଗତ ବାକ୍‌ବିନ୍ୟାସ ଭିନ୍ନଭାଷୀ ତରିକାପରି ହୋଇପାରିନାହିଁ। ତଥାପି ଭିନ୍ନଭାଷୀ ଶବ୍ଦଚାତୁରୀକୁ ଆଶ୍ରୟ କରି ସୃଜନଶୀଳତା ଭିତରେ ଓଡ଼ିଆ ଅନୁବାଦକମାନେ ନିଜର କଳାସାଧନାକୁ ବିନିଯୋଗ କଲେ ନିଶ୍ଚିତ ଭାବରେ ଓଡ଼ିଆ ସାହିତ୍ୟରେ କଥାସାହିତ୍ୟ ଅନୁରୂପ ନାଟକ, ପ୍ରବନ୍ଧ ଓ କବିତାର ଭାବଧର୍ମୀ ଅନୁବାଦର ଗୁଣାତ୍ମକ ତଥା ପରିମାଣାତ୍ମକ ବିକାଶ ସାଧିତ ହୋଇପାରିବ। ଓଡ଼ିଆ ଭାଷାକୁ ନବୀନତମ ପୁନର୍ବିନ୍ୟାସ ଦେଇ ଉଭୟ ଜାତୀୟ କଳାବୋଧ ଓ ଆନ୍ତର୍ଜାତୀୟ ସାହିତ୍ୟ ଚେତନା ଅନୁକୂଳ କରିବା ନିମନ୍ତେ ଗୁଣାତ୍ମକ ଅନୁବାଦ ସାହିତ୍ୟର ପ୍ରସାର ଓ ପ୍ରଗତି ଏକାନ୍ତ କାମ୍ୟ। ପାଶ୍ଚାତ୍ୟ ସମାଲୋଚକ Albert Guirandଙ୍କ ଅଭିମତାନୁଯାୟୀ– ''ଅନୁବାଦ ସାହିତ୍ୟ-ଶିଳ୍ପକଳାକୁ ଲେଖକ ଓ ଅନୁବାଦକର ମିଳିତ ଦାନରେ ମହିମାନ୍ୱିତ କରୁଥିବା ଏକ ସମବାୟ ସୃଷ୍ଟି।'' ଏହି ମର୍ମକୁ ଗ୍ରହଣ କରି ଅନୁବାଦକମାନେ ନିଜ ଭାଷାରୁ ଅନ୍ୟ ଭାଷାକୁ ଓ ଅନ୍ୟ ଭାଷାରୁ ଆମ ଭାଷାକୁ ଜୀବନ ବଂଚିବାର ଉପାୟମାନଙ୍କୁ ସଂପ୍ରସାରିତ କରିପାରୁଥିବା, ମାନବିକ ମୂଲ୍ୟବୋଧ ନିର୍ମାଣ କରିପାରୁଥିବା ଓ ସାଂସ୍କୃତିକ ସହବନ୍ଧନର ଭାବପିଣ୍ଡ ସୃଷ୍ଟି କରିପାରୁଥିବା ମହାନ୍ କୃତିଗୁଡ଼ିକର ଅନୁବାଦ କରିବାରେ ମନଯୋଗୀ ହେବା ଉଚିତ୍।

ଅତଏବ ମହତ୍ତମ ସାହିତ୍ୟକୃତିର ପାରସ୍ପରିକ ଅନୁବାଦ ମାଧ୍ୟମରେ ସାଂସ୍କୃତିକ ଭାବ ବିନିମୟର ବଂଧୁତ୍ୱପୂର୍ଣ୍ଣ ବାତାବରଣଟିଏ ଏବେଠୁ ନୂଆ ନେଣଦେଣ ଇଚ୍ଛାଶକ୍ତିରେ ତିଆରି କରାଯାଉ ଏବଂ ଜଗତ ସହିତ କୋଳାକୋଳି ହୋଇ ଅନୁବାଦ ମାଧ୍ୟମରେ ଓଡ଼ିଆଭାଷୀ ଅନ୍ୟକୁ ଜାଣୁ ଓ ଅନ୍ୟମାନେ ଓଡ଼ିଆ ଭାଷାକୁ ଜାଣିବା ହୁଅନ୍ତୁ।



# ପ୍ରବନ୍ଧ-କଳା ସଂପର୍କରେ

## (ଏକ)

ପଦ୍ୟର ଶବ୍ଦବସାଣ ଯୋଜନା ଭିତରେ ପ୍ରଥାସିଦ୍ଧ ଭଙ୍ଗୀରେ ଭାସି ନଯାଇ ଚେତନାର ଅନ୍ତଃସ୍ରୋତରେ ଗମ୍ଭୀରତାର ସହିତ ଅବଗାହନ କରି ଗଦ୍ୟାତ୍ମକ ରୀତିରେ ଅନୁଭବମାନଙ୍କୁ ଉଦ୍ଧୃତ ଧର୍ମରେ ବିଶ୍ଳେଷଣ କରିବା ମଧ୍ୟରେ 'ଗଦ୍ୟସାହିତ୍ୟ' 'କବିନାଂ ନିକଷଂ' ଭାବରେ ଗୁରୁପ୍ରତିଷ୍ଠା ଲାଭକରିଆସିଛି। ଗଦ୍ୟ ପ୍ରଜାତିର ପ୍ରକୃଷ୍ଟ ବସ୍ତୁ ଭାବଦ୍ୟୋତକ କଳାବନ୍ଧନ ହେଉଛି 'ପ୍ରବନ୍ଧ'। ଆଧୁନିକ ବାଙ୍ମୟ ପରଂପରାର ନନ୍ଦନତାତ୍ତ୍ୱିକ ସିଦ୍ଧାନ୍ତ ଗଦ୍ୟରେ ଭାବତାତ୍ତ୍ୱିକ କାବ୍ୟିକ ସୌନ୍ଦର୍ଯ୍ୟ ଓ ପ୍ରାଣପ୍ରବାହକୁ ସମର୍ଥନ କରି ପ୍ରବନ୍ଧ-ସୃଜନ-ବ୍ୟାପାରକୁ ଲଳିତ/ରମ୍ୟ ନିବନ୍ଧରେ ରୂପାନ୍ତରିତ କରି ଦେଇଛି। ପ୍ରବଂଧର କଳାବଳୟ ଭିତରେ ଦୃଶ୍ୟମାନ ଘଟଣା, ଚଳନ୍ତି ସମୟବୋଧ, ଅବଦ୍ଧମାନ ସାଂସ୍କୃତିକ ଭାବସତ୍ତା ଓ ଘଟାନ୍ତରିତ ମୂଲ୍ୟବୋଧ ଇତ୍ୟାଦି ଭାବସଂଯୁକ୍ତି ସତଥ୍ୟ ଓ ତତ୍ତ୍ୱନିଷ୍ଠ ହୋଇ ରୂପ ପାଇପାରୁଛି। ପ୍ରବନ୍ଧ ଆପଣାକୁ ସମସ୍ତଙ୍କ ମେଳରେ ସଭିଙ୍କ ବିଶ୍ୱାସ ଓ ସିଦ୍ଧାନ୍ତ କ୍ରମେ ଆପଣାକୁ ଦେଖି ଦେଖାଇ ଓ ଅନ୍ୟକୁ ଦେଖି ନିଜ ମଧ୍ୟରେ ମିଶାଇବାର ମନସ୍ୱୀ ଦୃଷ୍ଟିଭଙ୍ଗୀର ବିରଳ ଅନୁଭବମାନ ଯୋଗାଇଦେବାରେ ସଫଳ ହୋଇଛି। ଏହି କାରଣରୁ ଆଧୁନିକ ପ୍ରବନ୍ଧର ପରିଭାଷା ହୋଇଛି– ଜଗତ, ଜୀବନ, ଜାତି ଓ ଯୋଗ (ସମୟ) ସଂପର୍କରେ ଏକ ଦାର୍ପଣିକ ଅନୁକୃତିର ତଥ୍ୟାତ୍ମକ ଚଳନ୍ତିକଳା।

## (ଦୁଇ)

ଜିଜ୍ଞାସା, ଅନ୍ୱେଷା, ରହସ୍ୟାନୁସଂଧାନ, ତର୍କଣା, ତୁଳନା ଓ ତର୍ଜମା କରିବାର ମାନସିକତା ଯେବେଠାରୁ ମନୁଷ୍ୟର ସାଂସ୍କୃତିକ, ସାମାଜିକ, ଆଧ୍ୟାତ୍ମିକ, ବୈୟକ୍ତିକ ଓ ପାରିପାର୍ଶ୍ୱିକ ଭାବମାନସକୁ ଆବୋରି ବସିବାକୁ ଆରମ୍ଭ କରିଛି ସେବେଠାରୁ ସେ ଆବେଗ, କଳ୍ପନା, ଭାବପ୍ରବଣତା, ମୋହାଚ୍ଛନ୍ନତା, ବିହ୍ୱଳତା ଆଦି ସରଳତାଠାରୁ ଦୂରେଇ ଯାଇ ଦର୍ଶନ-ମନନ-ଚିନ୍ତନର ବାଛବିଚାର କରୁକରୁ ସମସ୍ୟା-ସଂଘର୍ଷ-ସମାଧାନର ଜଟିଳ ମାର୍ଗରେ ପଥିକ ହେବାକୁ ବାଧ୍ୟ ହୋଇଛି। ଏହି ଜଟିଳ ବାଧ୍ୟବାଧକତାରୁ ଜନ୍ମନେଇଛି ପୁରୁଣା ନିଗଡ଼କୁ ଭାଙ୍ଗି ଦେଇ ନୂଆ ହେବାର, ନୂଆ କରିବାର, ନୂଆ ଦେଖିବାର, ନୂଆ ଦେଖାଇବାର ଓ ନୂଆ ବିଧାନରେ ଚାଲିବାର ଜ୍ଞାନ ବିଜ୍ଞାନ। ବୁଦ୍ଧିବାଦୀ ବିଜ୍ଞାନର ଅବବୋଧ ଯୁକ୍ତିନିଷ୍ଠତାର ମଂଚ ଉପରେ ଛିଡ଼ା ହୋଇଛି ଏବଂ ମନୁଷ୍ୟର ସମୂହ ପ୍ରତ୍ୟୟକୁ ଉସ୍କେଇଛି

ପରିବର୍ତ୍ତିତ ହେବାକୁ। ଫଳରେ ନାନାରଙ୍ଗର ପ୍ରାସଙ୍ଗିକତାର ପୋଷାକ ପିନ୍ଧି ଅଦ୍ଭୁତ ଯାଦୁକରୀ ଘଟାୟନ ମଧ୍ୟରେ ନିଜର ସ୍ୱରୂପ ଓ ସଂଭାବନାକୁ ପ୍ରତିମୂଲ୍ୟବୋଧର ଦ୍ୱାହିରେ ଭିନ୍ନରୂପ ଦେଇଛି- ଯାହାର ଅପର ଆଖ୍ୟା ହେଉଛି ଆଧୁନିକ ଯୁଗ। ସର୍ବଦା ପୁନର୍ନବାର ପରିଧିରେ ଭ୍ରମଣ କରିବାର ଦୁର୍ବାର ଅଭିଳାଷ ପୋଷଣ କରିଆସୁଥିବା ତୃତୀୟଚକ୍ଷୁର ମନୁଷ୍ୟମାନେ (କଳାତ୍ମକ ପରିଣତି ଓ ଇଙ୍ଗିତ ଧର୍ମରେ ଧ୍ୱଂସ ଓ ସୃଜନ କରିବାର ପ୍ରତିଭାପଣର ଅଧିକାରୀ ମନୁଷ୍ୟମାନେ) ସର୍ଜନଶୀଳ ସାଧକ ଭାବରେ ଆବେଗ/କଳ୍ପନା/ଭାବୁକତାର ଗୀତିମୟ-ଛନ୍ଦମୟ-ରସମୟ କଳାର ଜଗତ ଉପେକ୍ଷା କରି ତତ୍ତ୍ୱାଶ୍ରିତ ବ୍ୟାଖ୍ୟାଶ୍ରିତ ବ୍ୟାଖ୍ୟାତ୍ମକ ପ୍ରବଂଧକଳାକୁ ଭାବାଭିବ୍ୟକ୍ତିର ସର୍ବଶ୍ରେଷ୍ଠ ମାଧ୍ୟମ ରୂପେ ସ୍ୱୟମ୍ବର ସୂତ୍ରରେ ଆପଣେଇ ନେଇଛନ୍ତି। ଚେତନାକକ୍ଷର ମନନଶୀଳ ଓ ଗଭୀରତମ ପ୍ରଦେଶରେ ପାଦ ଥାପି ପ୍ରାବଂଧିକ ଘୋଷଣା କରିଛି ଗଦ୍ୟ ହେଉଛି ବାହ୍ୟ ବ୍ୟାପାରର ବୋଧମାନଙ୍କୁ ଆଧାର କରି ଅନ୍ତଃରୀଣ ଅବବୋଧକୁ ରୂପଦେବାର ଓ ବିଶ୍ଳେଷଣ କରିବାର ଶବ୍ଦକଳା।

ଶ୍ରେଷ୍ଠ ସର୍ଜନଶୀଳ ପ୍ରତିଭାର କାରୟିତ୍ରୀ ଦୃଷ୍ଟିଭଙ୍ଗୀ ବିଭାବନଧର୍ମୀ ପ୍ରଜ୍ଞାନପ୍ରକଳ୍ପ ବଳରେ ସମୟ ସଚେତନ, ଐତିହ୍ୟସଚେତନ, ବାସ୍ତବ-ବ୍ୟବସ୍ଥା ସଚେତନ, ପରଂପରା ସଚେତନ ଓ ଆତ୍ମସଚେତନ ହୋଇ ନାତିଦୀର୍ଘ ଶବ୍ଦକ୍ରୀଡ଼ାର ପ୍ରାଙ୍ଗଣରେ ଖେଳି ଖେଳି ଜଗତ, ଜୀବନ ଓ ସମୟ ସମ୍ବନ୍ଧରେ ଯେଉଁ ବୌଦ୍ଧିକ ଚର୍ଚ୍ଚା ଓ ଚର୍ଯ୍ୟା କରିଥାଏ ତାହାକୁ ପ୍ରବନ୍ଧ ଭାବରେ ପରିଭାଷିତ କରାଯାଇଥାଏ। ସର୍ବୋପରି ଏକ ବୁଦ୍ଧିଦୀପ୍ତ ମନୀଷାସଂପନ୍ନ ଦୃଷ୍ଟିଭଙ୍ଗୀ ଓ ଉତ୍ତରଣଶୀଳ ଧୀଶକ୍ତି ହିଁ ଯଥାର୍ଥରେ ପ୍ରବଂଧକୁ ସମୂହ-ସମର୍ଥିତ ଚିନ୍ତାଧାରର ବିଶ୍ୱସ୍ତ ଚିତ୍ରରେ ରୂପାନ୍ତରିତ କରିଦିଏ। ଏକ ରୁଚିକର ପ୍ରବଂଧ ବହୁଭାବପ୍ରସ୍ଥିକ ହୋଇଥାଏ। ତତ୍ତ୍ୱ, ଦର୍ଶନ, ଯୁକ୍ତି, ଚିନ୍ତା, ବ୍ୟକ୍ତିତ୍ୱବୋଧ, ସାମୂହିକ ଆଚାର ବିଚାର, ପାରଂପରିକ ଧାରଣା, ନବନ୍ୟାୟିକ ବିଚାରବତ୍ତା ଏହାର ବିଷୟ-ପରିସରଭୁକ୍ତ ହୋଇଥାଏ। ସେଣ୍ଟସ୍ୱବରୀ ଓ୍ୱାର୍କ ଅଫ୍ ପ୍ରୋଜ୍ ଆର୍ଟ ଶୀର୍ଷକରେ ପ୍ରବନ୍ଧକୁ ବୟକ୍ତିକ-ସର୍ଜନଶୀଳକଳା ଭାବରେ ଗ୍ରହଣକରି ଏହାର ପରିଭାଷା ନିର୍ଣ୍ଣୟ କରିବାକୁ ଯାଇ ଦର୍ଶାଇଛନ୍ତି– ''ଲେଖକର ବ୍ୟକ୍ତିତ୍ୱର ସ୍ପର୍ଶ ଓ ସାର୍ବଜନୀନ ଦୃଷ୍ଟିଭଙ୍ଗୀର ରସମୟତା ଓ ଅନୁଭବର ମିଶ୍ରଣରେ ନାତିଦୀର୍ଘ ଗଦ୍ୟାତ୍ମକ ରଚନା ହେଉଛି ପ୍ରବନ୍ଧ।''

ପାଶ୍ଚାତ୍ୟ ସାରସ୍ୱତ ସିଦ୍ଧାନ୍ତର 'ଏସାଇସ୍' ହେଉ ଅଥବା ପ୍ରାଚ୍ୟ ଅଳଙ୍କାର ଶାସ୍ତ୍ରାନୁସାରୀ ପ୍ରବନ୍ଧ (ପ୍ର-ବନ୍ଧ୍+ଅ) ହେଉ ଏହାର ଆଭିଧାନିକ ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି– ''ବିକ୍ଷିପ୍ତ ଚିନ୍ତାର ଉତ୍କୃଷ୍ଟ କଳାତ୍ମକ ଗଦ୍ୟମୟ ପରିପ୍ରକାଶ।'' ସୃଷ୍ଟି ଉଦ୍ଦେଶ୍ୟ ଦିଗରୁ ପାଠକର ବିଚାର ବିମର୍ଶ ସାମର୍ଥ୍ୟକୁ ସଫଳ ପ୍ରବନ୍ଧ ମାର୍ଜିତ, ଶବଳିତ କରିପାରେ ଏବଂ ନୂତନ ମୂଲ୍ୟବୋଧରେ ତା'ର ମନନଦକ୍ଷତାକୁ ଉଦ୍‌ବୁଦ୍ଧ ଓ ଉଜ୍ଜୀବିତ କରିପାରେ। ପ୍ରାଚ୍ୟ ସାହିତ୍ୟ ପରଂପରାରେ ଭାବବାହୀ ଭାଷାର ବଳିଷ୍ଠ ଚାତୁରୀରେ ସତ୍ୟ ଓ ତଥ୍ୟନିଷ୍ଠ ପ୍ରସଙ୍ଗକୁ

ବାନ୍ଧିରଖି ସୁକୌଶଳରେ ପ୍ରକାଶ କରାଯାଇଥିବା ପ୍ରକୃଷ୍ଟ ରଚନାକୁ (‘ପ୍ରବନ୍ଧେନ/ପ୍ରବନ୍ଧନ ପ୍ରତିଭାତି/ଗଦ୍ୟଂ କବିନାଂ ନିକଷଂ ବଦନ୍ତି/ଚିତ୍ରକାବ୍ୟ ପ୍ରବନ୍ଧ ପ୍ରବନ୍ଧ/ଭାଷା ପ୍ରବନ୍ଧେ ଭାଗବତ/ ଜୟଦେବକୃତ ପ୍ରବନ୍ଧ ପ୍ରବନ୍ଧ/ରସବିଚାରରେ ଗୀତା ପ୍ରବନ୍ଧ) ପ୍ରବନ୍ଧଭାବରେ ବିବେଚନା କରାଯାଇଛି। ଫରାସୀ ସାହିତ୍ୟରେ ପ୍ରଥମେ ମଣ୍ଟେନ୍‌ଙ୍କ ‘ଏସେସ୍’ ଶବ୍ଦ ଗଦ୍ୟଭଂଗୀର ରଚନା ଅର୍ଥରେ ବ୍ୟବହାର କରି ଏହାକୁ ବିଶେଷ ପ୍ରଚେଷ୍ଟା ବା ବାଙ୍ମୟ ପ୍ରଯତ୍ନ ଭାବରେ ଅର୍ଥନିଷ୍ଠ କରିଛନ୍ତି। ଏହି ‘ଏସେସ୍’ ଶବ୍ଦରୁ ଇଂରାଜୀରେ ‘ଏସେ’ ଶବ୍ଦକୁ ଉତ୍ପନ୍ନ କରାଯାଇ ଏହାର ପାରିଭାଷିକ ଅର୍ଥଭାଷଣ କରାଯାଇଛି ଏହିପରି ‘‘ଯେ କୌଣସି ବିଷୟର ସଯୌକ୍ତିକ ବୁଦ୍ଧିଦୀପ୍ତ ପରିପ୍ରକାଶର ସଫଳ ପ୍ରଚେଷ୍ଟା।’’ ଇଂରାଜୀ ପ୍ରବଂଧସାହିତ୍ୟର ଆଦିସୂରୀ ବେକନ୍‌ଙ୍କ ମତରେ ‘‘ପ୍ରବନ୍ଧ ହେଉଛି ବିକ୍ଷିପ୍ତ ବା ଯାଦୃଚ୍ଛିକ ଚିନ୍ତାଧାରାର ଧ୍ୟାନନିଷ୍ଠ ଓ ଶୃଙ୍ଖଳିତ ଲିଖନ।’’

ପରବର୍ତ୍ତୀ ସମୟରେ ବିଶିଷ୍ଟ ୟୁରୋବିଦ୍ୱାନ ଡକ୍ଟର ସାମୁଏଲ୍ ଜନ୍‌ସନ ପ୍ରବଂଧକଳାକୁ– ‘‘ଲଘୁମନର ଅନିୟମିତ ଅଭିବ୍ୟକ୍ତି’’ ଭାବରେ ମୂଲ୍ୟାୟନ କରିଥିଲେ ମଧ୍ୟ ଉପନିବେଶବାଦୀ ସାହିତ୍ୟର ପ୍ରସାର ଓ ବିଚାର କାଳରେ ଏହି ଗଦ୍ୟାତ୍ମକ କଳା-ପ୍ରଜାତିଟି ସଂହତ ମନର ଯୁକ୍ତିରସାଣିତ ପ୍ରଜ୍ଞାଦ୍ୟୋତକ, ସ୍ପଷ୍ଟସୂଚନା ପ୍ରଦାୟକ ଏବଂ ଚଳନ୍ତି ସମସ୍ୟାର ତଥ୍ୟାତ୍ମକ ଅନୁଶୀଳନଧର୍ମୀ ରଚନା ଭାବରେ ପ୍ରସିଦ୍ଧି ଲାଭ କରିଛି। ପଦ୍ୟପ୍ରଧାନ ମଧ୍ୟଯୁଗୀୟ ସାରସ୍ୱତ ବ୍ୟବସ୍ଥାକୁ ଗଦ୍ୟାତ୍ମକ କରି ପାଠକଙ୍କୁ ବିଚାରବାଦିତାର ଆବେଦନଟିଏ ଯୋଗାଇଦେବା ଭିତ୍ତିରେ ପ୍ରବନ୍ଧର ପାଠକୀୟ ଆଦୃତି ମୂର୍ଦ୍ଧନ୍ୟସାଧନାର ପରିଚାୟକ ହୋଇଛି। ବିଶ୍ୱ ପ୍ରଗତିଶୀଳ ପ୍ରତିଯୋଗିତାର ଭୂମି ଉପରେ ଏହା ପରୀକ୍ଷିତ ହୋଇଛି ଯେ ଯେଉଁ ଭୂମିଖଣ୍ଡର ପ୍ରାବଂଧିକ ଯେତେ ନିଷ୍କପଟ, ନିରପେକ୍ଷ, ନିର୍ଭୟ ଓ ଗଠନାତ୍ମକ ହୋଇ ସତ୍ୟଦର୍ଶୀ ବାଙ୍ମୟ ଭୂମିକା ସଂପାଦନ କରିଛି ସେ ଜାତି ସେତେ ଅଭୟ, ଅଖଣ୍ଡ ଓ ଅଭୁତ ପ୍ରାଣପ୍ରାଚୁର୍ଯ୍ୟର ଅଧିକାରୀ ହୋଇଉଠିଛି। ଏହି ମର୍ମରେ ଭଲ ପ୍ରବଂଧର ଆବେଦବୋଧକୁ ନିମ୍ନମତେ ସମର୍ଥନ କରାଯାଇପାରେ;

(୧) ପାଠକର ଚିତ୍ତବୃତ୍ତିକୁ ଉଚ୍ଚାଙ୍ଗ ପ୍ରବନ୍ଧ ଯୁକ୍ତିନିଷ୍ଠ, ତର୍କମୁଖୀ ଓ ବିଚାରନିଷ୍ଠ କରିତୋଳେ; ଯାହାଫଳରେ ସରଳ ବିଶ୍ୱାସର ନିସର୍ତ୍ତ ପ୍ରତାରଣାମାନଙ୍କ ପ୍ରତି ପ୍ରବଂଧ ପାଠକଟି ସର୍ବଦା ସଚେତନ ହୋଇ ଜୀବନ ବଂଚି ଶିଖେ।

(୨) ଭଲ ପ୍ରବଂଧ ପାଠକର ପ୍ରଜ୍ଞାକୁ ଜାଗ୍ରତ କରେ, ବିଚାରକୁ ଶାଣିତ କରେ ଓ କର୍ମପନ୍ଥାକୁ ପ୍ରମାଣସିଦ୍ଧ କରିତୋଳେ; ଯାହା ଫଳରେ ପ୍ରବଂଧାନୁରାଗୀ ଭେଦାଭେଦର ଜୀବନ-ସମସ୍ୟା ପ୍ରତି ସର୍ବଦା ନିରପେକ୍ଷ ରହିବାରେ ପ୍ରୟାସମନା ହୋଇଥାଏ।

(୩) ଭଲ ପ୍ରବଂଧ ପାଠକକୁ ସମସ୍ୟା ସଚେତନ, ସମୟ ସଚେତନ ଓ ସୃଜନ ଧ୍ୱଂସର କାରଣ ପ୍ରତି ସଚେତନ କରିଦିଏ; ଯାହାଦ୍ୱାରା ପାଠକର ଆତ୍ମବିଚାରଶକ୍ତି ପ୍ରଖର ହେବା ସଂଗେ ସଂଗେ ସମସ୍ୟାର ଅନ୍ତଃକାରଣ ଓ ପାରିପାର୍ଶ୍ୱିକ ବାସ୍ତବତାର ପଶ୍ଚାତ୍‌ରେ ଥିବା ରହସ୍ୟ ନିରୂପଣ କରିବାରେ ସେ ସମର୍ଥ ହୋଇପାରିଥାଏ।

(୪) ବିରୋଧାଭାସର ପ୍ରତିକ୍ରିୟା ଭିତରେ ଭଲପ୍ରବଂଧ ଯଥାର୍ଥତାର ଓ ସତ୍ୟାସତ୍ୟର ଆଭାସ ଦିଏ, (ପାଠକକୁ) ମୂଲ୍ୟବୋଧକୁ ଚିହ୍ନାଇଦିଏ; ସଂଭାବନାକୁ ଧରିବାର ଓ ବିଗତ ଅନୁଭୂତିର ପଟ୍ଟଭୂମିରେ ଥିବା ଇଙ୍ଗିତକୁ ଜାଣିପାରିବାର ସୂତ୍ରଟିକୁ ବତାଇଦିଏ।

(୫) ପାଠକର ଭାବାନୁଭୂତିକୁ ପରିଚ୍ଛନ୍ନ ଓ ସଂସ୍କାର ସଂପନ୍ନ କରିଦେବା ସଂଗେ ସଂଗେ ତା'ର ଅଭିବ୍ୟକ୍ତିକୁ ଶୃଙ୍ଖଳିତ ଓ ସଂହତ କରିତୋଳେ।

(୬) ଅପ-ଧାରଣାମାନଙ୍କୁ ସଂସ୍କାରୋଚିତ ପ୍ରତ୍ୟୟରେ ରୂପାନ୍ତରିତ କରି ପ୍ରବନ୍ଧ ପାଠକ ଭଲ ପ୍ରବଂଧର ବିଷୟଜଗତ ସହିତ ସମୀଭୂତ ହେବାଦ୍ୱାରା ସେ ଅନୋପଯୋଗୀ ଜୀବନଚର୍ଯ୍ୟା ପ୍ରତି ବିମନାହୋଇ ଏକ ନୈତିକ ଅର୍ଥପୂର୍ଣ୍ଣ ଜୀବନ ବଂଚିବାକୁ ଆପଣେଇ ନିଏ।

(୭) ଭଲ ପ୍ରବଂଧ ପାଠକଙ୍କୁ ଉତ୍ତର-ଦାୟବଦ୍ଧତାର ମହତ୍ତ୍ୱ ପ୍ରତି ପ୍ରରୋଚିତ କରେ ଏବଂ ଧାରଣାଙ୍କୁ ସମୁଜ୍ଜ୍ୱଳ, ଜୀବନଧାରାର ବିଧାନକୁ ସମତାସୂଚକ ଓ ବୁଦ୍ଧିମତାକୁ ଗମ୍ଭୀର/ଗଭୀର କରିତୋଳେ। ପ୍ରବଂଧ ପାଠକଙ୍କୁ ପ୍ରାସଙ୍ଗିକତାମାନଙ୍କ ସଂପର୍କରେ ଧ୍ୟାନନିଷ୍ଠ କରିଦିଏ ଏବଂ ପାଠକର-ଜୀବନ-ଭଣ୍ଡାରର ସବୁଦ୍ୱାରା ଉନ୍ମୁକ୍ତ କରିଦେଇ ମୁକ୍ତ ବିଚାରର ବୁଦ୍ଧିବାଦୀ ସାମର୍ଥ୍ୟକୁ ବଢ଼ାଇଦିଏ। ପ୍ରବଂଧ ପାଠକର ସିଦ୍ଧାନ୍ତଙ୍କୁ ସୂଚନାଧର୍ମୀ, ଉପଲକ୍ଷ୍ୟଧର୍ମୀ, ତଥ୍ୟଧର୍ମୀ ଓ ପ୍ରତିଫଳନଧର୍ମୀ କରିଦିଏ ଏବଂ ପାଠକଙ୍କୁ ମିତ୍ର ଦୃଷ୍ଟିଟିଏ ଦେଇଥାଏ।

୧୯୭୦ ପରେ ଚିତ୍ତରଂଜନ ଦାସ, ମହାପାତ୍ର ନୀଳମଣିସାହୁ, ବାମାଚରଣ ମିତ୍ର, ଭୁବନେଶ୍ୱର ବେହେରା, ସଦାଶିବ ମିଶ୍ର, ବୈଦ୍ୟନାଥ ମିଶ୍ର, ହରେକୃଷ୍ଣ ମହତାବ, ରାଧାନାଥ ରଥ, ଶରତକୁମାର ମହାନ୍ତି, ଚନ୍ଦ୍ରଶେଖର ରଥ ଓ ସୂର୍ଯ୍ୟକାନ୍ତ ଦାସ ପ୍ରମୁଖଙ୍କ ଚିନ୍ତାନିଷ୍ଠ ସୃଜନପଣକୁ ଆଶ୍ରୟ କରି ମନୁଷ୍ୟର ଆତ୍ମବୃତ୍ତି, ଆତ୍ମପ୍ରବୃତ୍ତି, ଅନ୍ତଃବାସ୍ତବତା, ମନସ୍ତାତ୍ତ୍ୱିକ ସ୍ଥିତି, ରାଜନୀତିକ ସତ୍ତା ଓ ବସ୍ତୁଭୋଗବାଦୀ ମାନସିକତାର ସୁରୁଚିସଂପନ୍ନ ଗତିଶୀଳତା ପ୍ରତି କଳାତ୍ମକ/ଇଙ୍ଗିତାତ୍ମକ ପରାମର୍ଶ ପ୍ରବଂଧସାହିତ୍ୟରେ ଦେଇଆସିଛନ୍ତି। ସଂପ୍ରତି ବହୁତ ହୋଇଗଲା, ଆଉ ଆବଶ୍ୟକ ନାହିଁ, ଗଭୀର ଅଧ୍ୟୟନ, ତଥ୍ୟ ସଂଗ୍ରହ ଓ ଶୃଙ୍ଖଳିତ ଉପସ୍ଥାପନାର ଅଭାବୀ ଜଟିଳତାରେ ପଶି ହେବନି, ପ୍ରକାରାନ୍ତରେ ପାଠକ ନାହାନ୍ତି,– ଏ ପ୍ରକାର ଅନେକ ପ୍ରତିକୂଳ ମନୋଭାବ ଓ ମନ୍ଥର ଇଚ୍ଛାବୃତ୍ତି ଓଡ଼ିଆ ପ୍ରବନ୍ଧ

ସାହିତ୍ୟରେ ତରୁଣପଢ଼ିଟିଏ ସୃଷ୍ଟି କରିବାରେ ବାଧକ ହୋଇପଡିଛି। ଏ ପ୍ରକାର ପ୍ରଶ୍ନବାଚୀଟିଏ ଏବେ ନବଶତାବ୍ଦୀର ପ୍ରଭାବୀ ଆକାଶର ଉତ୍ତରାଶାରେ ଯଥାର୍ଥ ଉତ୍ତର ଆଶା କରୁନାହିଁକି ?

(ତିନି)

ଆଲୋଚନାର ଏ ପ୍ରକରଣରେ ପ୍ରବନ୍ଧ କଳାର ଉପାଦାନ, ଗଠନଧର୍ମ ଓ ପ୍ରାରୂପ ସଂପର୍କରେ ଅନୁଶୀଳନ କରାଯାଉଛି। ପ୍ରବନ୍ଧ-କଳାର ନିର୍ମାଣରେ ଧୂରୀଣ ଗଦ୍ୟଶିଳ୍ପୀ ଓ ଭଲ ପ୍ରବନ୍ଧ ସହିତ ସଂପୃକ୍ତ ବିଦ୍ୱାନ ସହୃଦୟଙ୍କ ବିଦଗ୍ଧପଣ ନିମନ୍ତେ ଏ ପର୍ଯ୍ୟାୟ କିଛି ନୂତନ ତଥ୍ୟ ନଦେଇପାରେ। କିନ୍ତୁ କ୍ରମଶଃ କାକଜ୍ୟୋତ୍ସ୍ନାନୁମୁଖୀ ହେଉଥିବା ଓଡ଼ିଆ ପ୍ରବନ୍ଧ ସାହିତ୍ୟର ମାର୍ଗକୁ ଏକ ଅନାସ୍ୱାଦିତ ଓ ଅନଦୃଶିତପୂର୍ବ ଶୋଭାରେ ଶୁଭଗସୂଚକ ନୂଆମାଦକତାର ଦୀପ୍ତିଟିଏ ଯେଉଁମାନେ ଦେବାକୁ ମନ କରିବେ ସେମାନଙ୍କ ପାଖରେ ଏ ଆଲୋଚନାଂଶର ପ୍ରତିପାଦ୍ୟଗୁଡ଼ିକ ସାମାନ୍ୟ ସହାୟକ ଆଭାସ ମାତ୍ର ହୋଇପାରିବ।

ଏକ ସ୍ୱୟଂ ସଂପୂର୍ଣ୍ଣ ଆତ୍ମାନୁଭୂତିକ ଦର୍ଶନରେ ଅଥବା ସାମୂହିକ ଉପଲବ୍ଧିର ମାନକରେ ଚମତ୍କାର ସର୍ଜନ-କଳା ଭାବରେ ଏକ ସଫଳ ପ୍ରବଂଧର ମୌଳ ଉପାଦାନ ଓ ଲକ୍ଷଣଗୁଡ଼ିକ ହେଉଛି–

- ସମୟ ସଙ୍ଗତ ବାସ୍ତବତାକୁ ସମୟୋତ୍ତୀର୍ଣ୍ଣ ଚିରାୟତ ଆଭିମୁଖ୍ୟର ବାସ୍ତବତା ଭିତ୍ତିରେ ବିଚାର କରିବା ଓ ରୂପାନ୍ତରିତ କରିବା।
- ଦର୍ଶନ+ମନନ+ଆବେଗର ମିଶ୍ରଣରେ ପ୍ରତିପାଦ୍ୟ ଭାବୋଚିତ ବକ୍ତବ୍ୟକୁ ଯଥୋଚିତ ଶବ୍ଦବସାଣ ଭିତ୍ତିରେ ପରିବେଷଣ କରିବା।
- ଅଭ୍ରାନ୍ତ ତଥ୍ୟମୂଳକ ପ୍ରସଙ୍ଗର ବିଶ୍ଳେଷଣ କରିବା।
- ସୂଚନାଧର୍ମୀ ବା ବିବରଣୀସୂଚକ ପ୍ରକାଶ ଚାତୁରୀ ବଳରେ ପ୍ରତିପାଦ୍ୟ ବିଷୟକୁ ଚିତ୍ରଧର୍ମରେ ପାଠକର ଗ୍ରାହ୍ୟଶକ୍ତି ଓ ବିଚାରଶକ୍ତି ତଥା ବିଶ୍ୱାସ ଅନୁସାରୀ କରି ଉପସ୍ଥାପନ କରିବା।
- ଦୃଷ୍ଟାନ୍ତଧର୍ମୀ ତଥା ଉପଲକ୍ଷ୍ୟ ପ୍ରଧାନ କରି ସିଦ୍ଧାନ୍ତରେ ପାଠକଙ୍କୁ ଉପନୀତ କରିବା।
- ପାଠକ ସହଜରେ ପ୍ରବଂଧକୁ ଆବୋରିଥିବା ଚେତନାର ବଳୟ ଭିତରକୁ ପଶି, ତାହା ସହିତ ସମ୍ବନ୍ଧ ସ୍ଥାପନ କରି, ପୁନଶ୍ଚ ବଳୟ ବାହାରକୁ ଆସି ନୈର୍ବ୍ୟକ୍ତିକ ଦୃଷ୍ଟିଭଙ୍ଗୀରେ ଆନ୍ତର୍ନିର୍ଯ୍ୟାସକୁ ବୁଝିଲୋଡି ପାରୁଥିବ। ଏ ଦୃଷ୍ଟିରୁ ସଫଳ ପ୍ରବଂଧରେ ନାଟକୀୟ ଉତ୍କଣ୍ଠା, ଆବେଗ, ଶ୍ଳେଷ ଓ ଗ୍ରନ୍ଥି ଉନ୍ମୋଚନ ରୀତିରେ କଳ୍ପନାରହିତ ଯୁକ୍ତି ପ୍ରଖ୍ୟାପିତ ହେବା ଆବଶ୍ୟକ।

- ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ବିଧେୟ ପ୍ରତି ଧ୍ୟାନନିଷ୍ଠ ରହି ବହୁଧା ବିଭକ୍ତ ଭାବନାର/ସମସ୍ୟାର/ଘଟଣାର ଏକସୂତ୍ରୀକରଣ ପର୍ଯ୍ୟାଲୋଚନା କରିବାର ସର୍ଜନଶୀଳ ଦକ୍ଷତା ଭଲ ପ୍ରବଂଧର ଆବେଦନକାରକ-ଲକ୍ଷଣ।
- ବର୍ତ୍ତମାନର ପ୍ରସଙ୍ଗୋଚିତ ବିଷୟଗୁଡ଼ିକୁ ଔଚିତ୍ୟସାଧନ ଭିତ୍ତିରେ ପାଠକର ବିଶ୍ୱାସ, ଦର୍ଶନ, ଗ୍ରାହ୍ୟବୋଧ ଦ୍ୱାରା ପରିଚିତ ଅତୀତ ଓ ଭବିଷ୍ୟତ ସହିତ ସଂଯୁକ୍ତ କରି ତାକୁ ନିଷ୍କର୍ଷରେ ପହଞ୍ଚାଇବାର କୌଶଳ।
- କୂଟରହିତ ଅନୁଶୀଳନ ଓ ଅବତାରଣା; ସରଳ, ବକ୍ତବ୍ୟଧର୍ମୀ ଓ ଦୃଷ୍ଟାନ୍ତମୂଳକ କରି ବିଷୟର ଉପସ୍ଥାପନା।
- ପ୍ରତିପାଦନୀୟଗୁଡ଼ିକୁ ସାମୂହିକ ବିଶ୍ୱାସ ଅନୁକୂଳ କରି ପରିଣତି ପ୍ରଦାନ କରିବା।

ସୁତରାଂ ଏକ ପଠନୀୟ ଓ ବରଣୀୟ ପ୍ରବନ୍ଧ ରଚନା ନିମିତ୍ତ ଗଠନାତ୍ମକ ଉପାଦାନ/ଗୁଣଗୁଡ଼ିକ ହେଉଛି–

(i) ଭାବମାନଙ୍କ ଏକକ ବୈଚିତ୍ର୍ୟ ମଧ୍ୟରେ ସମତା ସଂପାଦନ।

(ii) ସଂକ୍ଷିପ୍ତତା ଓ ସୀମିତ ପରିସର (ସ୍ୱଳ୍ପ ସମୟସୀମା ପଠନ ଦିଗରୁ) ମଧ୍ୟରେ ବ୍ୟାପକ, ଗମ୍ଭୀର, ଗଭୀର ଓ ଚିରାୟତ ପ୍ରତ୍ୟୟ/ଚିନ୍ତାଧାରା/ଦର୍ଶନର ଚମତ୍କାର ଅବତାରଣା।

(iii) ତଥ୍ୟ ଓ ସତ୍ୟର ଭ୍ରମଶୂନ୍ୟ ଉପସ୍ଥାପନ।

(iv) ବିବିଧ ଭାବ ମଧ୍ୟରେ ଘାଟନିକ ଓ ସୈଦ୍ଧାନ୍ତିକ ସଂହତି।

(v) ପ୍ରକାଶଭଙ୍ଗୀରେ ସ୍ୱଚ୍ଛତା, ଯଥାର୍ଥବାଦିତା, ନିଷ୍କପଟତା ଓ ସାବଲୀଳତା।

(vi) ସମୟୋପଯୋଗୀ ଓ ମୂଲ୍ୟବୋଧର ଘଟାନ୍ତରିତ ଅବସ୍ଥାକ୍ରମେ ପ୍ରଚଳିତ ଧାରଣାମାନଙ୍କର ନବନ୍ୟାୟିକ ଅର୍ଥାନ୍ତରୀକରଣ।

(vii) ଅଯଥା ଅତିବାସ୍ତବ ପ୍ରସଙ୍ଗ, ଅତିଶୟୋକ୍ତି ବର୍ଣ୍ଣନା, ଅନାବଶ୍ୟକୀୟ ଶବ୍ଦବସାଣ, ଅତିକଥନଧର୍ମିତା, ନିରର୍ଥକବାକ୍ ପଲ୍ଲବନତାର ପରିହାର ପୂର୍ବକ ଶୃଙ୍ଖଳାବଦ୍ଧ ଉଦାହରଣଧର୍ମୀ ସଂରଚନା ପ୍ରତି ସଚେତନ।

ଏ ଦୃଷ୍ଟିରୁ ଏକ ସମର୍ଥ ପ୍ରାବଂଧିକ ଏକ ପ୍ରବଂଧର ଅସଙ୍ଗତ ଶବ୍ଦାଚାତୁରୀକୁ ପରିହାର କରି ସଂକ୍ଷିପ୍ତ ପରିସର ଭିତରେ ବିସ୍ତୃତ, ବ୍ୟାପକ, ଚିରାୟତ ସତ୍ୟ ଓ ତଥ୍ୟର ପରିବେଷଣ ଉପରେ ଗୁରୁତ୍ୱ ଦେଇଥାନ୍ତି। ବିଷୟବୃତ୍ତର ବିବିଧ ଚିନ୍ତାଭିତରେ ଶୃଙ୍ଖଳା ରକ୍ଷା କରି ଉତ୍‌କୃଷ୍ଟ ଚିନ୍ତାମାନଙ୍କ ମଧ୍ୟରେ ମହତ୍ତର ଜୀବନ ଗଠନର ପ୍ରେରଣା ଶକ୍ତିଗୁଡ଼ିକୁ ଉଦ୍‌ଭାବନ ଓ ଦୃଶ୍ୟମାନ କରି ସେସବୁ ଭିତରେ ଶୃଙ୍ଖଳା ବା ସଂହତି ସ୍ଥାପନ କରିବାଦ୍ୱାରା ପ୍ରବଂଧର ସୃଜନଶୀଳତା ଓ ଗୁଣାତ୍ମକ ବୈଚିତ୍ର୍ୟ ବୃଦ୍ଧିପାଇଥାଏ। ପ୍ରକାଶଭଙ୍ଗୀରେ

ସାବଲୀଳତା ଓ ଦୃଷ୍ଟାନ୍ତଧର୍ମିତା ପ୍ରବନ୍ଧକୁ ଶ୍ରୀବୃଦ୍ଧି ସଂପନ୍ନ ଓ ପ୍ରମାଣସିଦ୍ଧ କରି ତୋଳିଥାଏ। ପାଠକର ଭାବନା ଜଗତରେ ପ୍ରବଂଧର ଶାସ୍ତ୍ରୀୟତାକୁ ଗ୍ରହଣଯୋଗ୍ୟ କରିବାପାଇଁ ଉନ୍ନତଚେତନାର ପ୍ରାବନ୍ଧିକ ବହୁପାଠୀ ଭାବରେ ପାଠକର ପ୍ରତ୍ୟୟବୋଧକୁ ଆନ୍ଦୋଳିତ/ପ୍ରଭାବିତ/ନିୟନ୍ତ୍ରିତ କରିଆସିଥିବା ଅନ୍ତଃଶାସ୍ତ୍ରୀୟ ପ୍ରସଙ୍ଗର (ପୁରାଣ/ଇତିହାସ/ବାର୍ତ୍ତମାନିକ ବିଷୟ-ଉପଲକ୍ଷ୍ୟ/ଚଳନ୍ତିକାର ଚଞ୍ଚକିତ ଘଟଣା/ଭୂଗୋଳ/ଲୋକ ଶାସ୍ତ୍ରାଦି ପ୍ରସଙ୍ଗ/ଚରିତ୍ର/କଥନୀ) ଅବତରଣିକା ଉପରେ ଗୁରୁତ୍ୱାରୋପ କରିଥାନ୍ତି। ଭଲ ପ୍ରବନ୍ଧର ପ୍ରସଙ୍ଗ ପାଠକ ଉପରେ ଶାସ୍ତ୍ରୀୟବିଧାନ ପରି ଲଦି ଦିଆଯାଏ ନାହିଁ; ବରଂ ତା'ର ରୁଚି ପ୍ରତି ସଶ୍ରଦ୍ଧ ରହି ତାକୁ କ୍ରମଶଃ ଗ୍ରହଣ କରିବାର ଅବକାଶଟିଏ ଉଦାହରଣମୂଳକ ବର୍ଣ୍ଣନାପାଟବ ମଧ୍ୟରେ ଦିଆଯାଇଥାଏ। ଏ ଧରଣର ପ୍ରବଂଧକୁ ଭାବପ୍ରବୋଧନକାରୀ ପ୍ରବଂଧ ଭାବରେ ପାଠକ ଜୀବନବ୍ୟାପୀ ଦୃଷ୍ଟାନ୍ତ ଭାବରେ ମନରେ ବହନ କରିବାରେ। ରାଧାନାଥଙ୍କ ବିବେକୀ, ମଧୁସୂଦନଙ୍କ 'ଅନନ୍ତପ୍ରେମ', ଶଶିଭୂଷଣଙ୍କ 'ସୌନ୍ଦର୍ଯ୍ୟ ଓ ପ୍ରେମ', ମୋହିନୀ ମୋହନଙ୍କ 'ଭାଗ୍ୟ, ବିଶ୍ୱନାଥଙ୍କ 'ମହାସ୍ରୋତ', ରେବାରାୟଙ୍କ 'ସ୍ତ୍ରୀଶିକ୍ଷା', ଗୋପବଂଧୁଙ୍କ 'ଦୟା', ନୀଳକଣ୍ଠଙ୍କ 'ଅଛୁଁଓ ହେବୁ', ବାସୁଦେବଙ୍କ 'ଆଶା', ବିପିନବିହାରୀଙ୍କ 'ପରିବାର', ରତ୍ନାକର ପତିଙ୍କ 'ଧର୍ମ ଓ କର୍ମ, ମାୟାଧରଙ୍କ 'ନିଜ ଦାୟିତ୍ୱ', ଗୋବିନ୍ଦଚନ୍ଦ୍ରଙ୍କ 'ବଟୁଆ', ବ୍ରଜବିହାରୀଙ୍କ 'ଯୁବକ ଓ ଜଗତ', ଗୋପାଳଚନ୍ଦ୍ରଙ୍କ 'ଦେଶସେବକ', ନିତ୍ୟାନନ୍ଦଙ୍କ 'ଅଶ୍ରୁ', ସରଳା ଦେବୀଙ୍କ 'ଭାରତୀୟନାରୀର ଆଦର୍ଶ', ଗୋପୀନାଥଙ୍କ 'କଳାଶକ୍ତି', ଗୋଲୋକ ବିହାରୀଙ୍କର 'ଜାତି, ଯୋଜନା ଓ ବିଶେଷଜ୍ଞ, ଚିତ୍ତରଞ୍ଜନଙ୍କ 'ବିଶ୍ୱକୁ ଗବାକ୍ଷ', ମହାପାତ୍ର ନୀଳମଣିସାହୁଙ୍କ 'ଭୟଭକ୍ତି ଓ ପ୍ରେମଭକ୍ତି', କୃଷ୍ଣଚନ୍ଦ୍ରଙ୍କ 'ପୁଷ୍ପପୁରରେ ବର୍ଷାବରଣ', ଭୁବନେଶ୍ୱରଙ୍କ 'ଭୁଲ', ଚନ୍ଦ୍ରଶେଖରଙ୍କ 'ନୂଆପୁରୁଣା', ରାଧାନାଥଙ୍କ 'ମାନସିକ ଦ୍ୱନ୍ଦ୍ୱ', ଶରତକୁମାରଙ୍କ 'ସଂସ୍କୃତି ଓ ଅପସଂସ୍କୃତି ଓ ନିତ୍ୟାନନ୍ଦ ଶତପଥୀଙ୍କ 'କ୍ରାନ୍ତି ନା କ୍ଳାନ୍ତି' ଇତ୍ୟାଦି ପ୍ରବଂଧଗୁଡ଼ିକ ଚିରାୟତ ରୁଚି-ଉଦ୍ଭେଦିତ କଳାବେଦନର ପ୍ରାମାଣିକ ନମୁନାମାତ୍ର।

(ଚାରି)

ଆଲୋଚନାର ଚତୁର୍ଥ ସ୍ତରଟିରେ ଭଲ ପ୍ରବଂଧ ଓ ପ୍ରଭାବଶାଳୀ ପ୍ରାବଂଧିକଙ୍କ ମଧ୍ୟରେ ଥିବା (କ୍ରିୟା-ପ୍ରତିକ୍ରିୟା ଧ୍ୱଂସ-ସୃଜନ, ଭୂମି-ଭୂମା, ବାସ୍ତବ-ଅବାସ୍ତବ, ଦର୍ଶନ-ମନନ ଆଦି ବିରୋଧଭାସୀ ସଂପର୍କ ଭିତ୍ତିରେ ଧର୍ମ) ତୃତୀୟ ସମ୍ବନ୍ଧସୂତ୍ରକୁ ଆକଳନ କରାଯାଉଛି। ଏହି କ୍ରମରେ ପ୍ରଥମ ଉଲ୍ଲେଖଯୋଗ୍ୟ ଅନୁଭୂତିଟି/କଥୟିତବ୍ୟଟି ହେଉଛି–ରୁଚିଶୀଳ ଓ ଜୀବନାନୁକୂଳ ଭଲପ୍ରବନ୍ଧଟିଏ ବିଚିତ୍ର ଓ ବିରଳ ଅନୁଭୂତିର ଉଦାତ୍ତ ତରଙ୍ଗଟିଏ ପରି ପ୍ରାବଂଧିକଙ୍କ ମାନସକୂଳରେ ମଥାପିଟି ପ୍ରାବଂଧିକଙ୍କୁ ଓଦାକରି ତାଙ୍କ ଦ୍ୱାରା ନିଜକୁ ଲେଖାଇ ନେଇଥାଏ। ଉନ୍ନତମାନର ପ୍ରବଂଧ ପରିଯୋଜନା ପ୍ରକ୍ରିୟାରେ ନୁହେଁ ବରଂ

ମୁକ୍ତମନା, ଗମ୍ଭୀର ଭାବଦର୍ଶୀ, ନୀରବସଂଭାବନାଦର୍ଶୀ, ନୂଆ ମୂଲ୍ୟବୋଧ ପ୍ରତି ଅଭିଳାଷୀ ସୂକ୍ଷ୍ମଦ୍ରଷ୍ଟା (ଦେବକୀ ଓ ବସୁଦେବଙ୍କ ପରି ବିଲକ୍ଷଣ ଅଭିଜ୍ଞତାର ମୂର୍ଦ୍ଧନ୍ୟ-ସତ୍ତାମାନଙ୍କ ଇଚ୍ଛାଶକ୍ତି ଅନୁରୂପ ବସୁଦେବାଂଶୀ ଜନ୍ମ ଲାଭ ପରି) ପ୍ରାବଂଧିକଙ୍କ ଦ୍ୱାରା ଉତ୍ତରଣଚେତନାର ଉପଲବ୍ଧି ଓ ସମାଧାନ ରୂପରେ ସଂଭବ ହୋଇଥାଏ। ଏହି ମର୍ମରେ ସମର୍ଥ, ସକ୍ରୃତ ଓ ସତ୍ତମ ପ୍ରାବଂଧିକ ପ୍ରାୟଶଃ–

- ଭାବାଳୁ ନୁହଁନ୍ତି; ବରଂ ଭାବମିଶ୍ର ବ୍ୟକ୍ତିତ୍ୱ ଭିତ୍ତିରେ ବିରଳ ଅନୁଭବର ଅଧିକାରୀ ହୋଇଥିବେ।
- ଦୃଶ୍ୟମାନ ବସ୍ତୁ, ଘଟଣା ଓ ଜୀବନଚର୍ଯ୍ୟାର ଅନ୍ତରାଳରେ ଅଦୃଶ୍ୟ ରହିଥିବା ସତ୍ୟ ଓ ସତ୍ତା ପ୍ରତି ଆସକ୍ତିର ସହିତ ସଚେତନ ଥିବେ।
- ମୁକ୍ତ ବୁଦ୍ଧିର ବକ୍ତବ୍ୟ ଉପସ୍ଥାପନାରେ ସାହସ ଓ ସତର୍କତା ଅବଲମ୍ବନ ପୂର୍ବକ ଦୃଢ଼ ସାରଗ୍ରାହୀ ଚିତ୍ତବୃତ୍ତିର ଅଧିକାରୀ ହୋଇଥିବେ।
- ସଂସ୍କାରମୁକ୍ତ ଓ ନୂତନତ୍ୱର ଅନୁସଂଧାନ ଦେବାରେ ବ୍ୟାକୁଳ ଜିଜ୍ଞାସାବୃତ୍ତିକ ହୋଇଥିବେ।
- ନିଷ୍କପଟପଣର ମାନସିକତା ଥିବ ଏବଂ ବିବେକବାନ, ତର୍କଣାନିଷ୍ଠ, ଯୁକ୍ତିପ୍ରବଣ ଓ ଗାମ୍ଭୀର୍ଯ୍ୟହୃଦୟର ଅଧିକାରୀ ହୋଇଥିବେ।
- ପ୍ରଜ୍ଞାଶକ୍ତି, ମେଧାଶକ୍ତି, ତଥ୍ୟ-ବିଶ୍ଳେଷଣକାରକ ନ୍ୟାୟଶକ୍ତିର ଭାବାନୁଷଙ୍ଗିକ ବ୍ୟକ୍ତିତ୍ୱଥିବ ଏବଂ ପ୍ରଥାସିଦ୍ଧ ସାଧାରଣମାନଙ୍କୁ ଅଭିନବ/ପ୍ରତିମୂଲ୍ୟବୋଧାତ୍ମକ ନ୍ୟାୟରେ ରୂପାନ୍ତରିତ କରିପାରୁଥିବେ।
- ଭାବ ବିଶ୍ୱସ୍ତ ଶବ୍ଦ-ବିନ୍ୟାସରେ ଧୂରୀଣ ଓ ପାଠକ ବିଶ୍ୱାସ ଭାଜନ ଅର୍ଥ/ବାକ୍ୟ-କଳାରେ ପ୍ରବୀଣ ହୋଇଥିବେ।
- ମିଥ୍ୟା ଓ ନକରାତ୍ମକ ସମୂହ ଦୃଷ୍ଟିଭିତରୁ ମଧ୍ୟ ଉଦାର ଡୋଳା ସଂଚାଳନ କରି ରଚନାତ୍ମକ ସତ୍ୟର ଆଭାସକୁ ଧରିପାରୁଥିବେ।
- ସତ୍ୟକୁ ଅବିରଳ ସଂଧାନ କରି ଦେଖାଇବାର ଆସ୍ପର୍ଦ୍ଧାସଂପନ୍ନ ନିଷ୍ପତ୍ତି ନିର୍ଣ୍ଣୟକାରୀ ମାନସିକତା ତାଙ୍କର ରହିଥିବ।
- ବହୁପାଠୀ, ବିଶ୍ଳେଷଣନିପୁଣ, ସାମହିତ ଚେତନା ସଂପନ୍ନ, ନିରପେକ୍ଷ-ମୀମାଂସକ ଗୁଣବତ୍ତାର ଅଧିକାରୀ ହୋଇଥିବେ।

ଏହି ଦୃଷ୍ଟିରୁ ପିନି, ସିନୋକା, ବେକନ, ଡ୍ରାଇଡେନ୍, ଅସ୍‌କାର, ଜନ୍‌ସନ୍, ଡନ୍, ଷ୍ଟିଲ୍, ଲାମ୍ବ୍, ଷ୍ଟିଭେନ୍‌ସନ୍, ହାଜ୍‌ଲିଟ, ରସ୍କିନ୍, ମାକ୍‌ଲେ, ଆରନୋଲଡ୍, ଲାସ୍କି, ରସେଲ୍, ଶାନ୍ତାୟନ୍, ଜେମ୍‌ସ୍, ସାର୍ତ୍ରେ, ମାର୍କସ୍, ଆଣ୍ଡିଉଜ୍, କ୍ରୋଚେ, ମଙ୍କ୍, ବର୍ଗସନ୍,

ଡିଫୋ, ରବୀନ୍ଦ୍ରନାଥ, ବିଦ୍ୟାସାଗର, ଅରବିନ୍ଦ, ରାଜଗୋପାଳାଚାରୀ, ମହାତ୍ମାଗାନ୍ଧୀ, ରାଧାକ୍ରିଷ୍ଣନ୍, ନୀଳକଣ୍ଠ, ଶଶିଭୂଷଣ, ରତ୍ନାକର, କୃଷ୍ଣଚନ୍ଦ୍ର, ଚିତ୍ତରଂଜନ, ମନୋଜ, ମହାପାତ୍ର ନୀଳମଣି, ଚନ୍ଦ୍ରଶେଖର ଓ ଶରତକୁମାର ପ୍ରମୁଖ (ଆନ୍ତର୍ଜାତୀୟ/ଜାତୀୟ/ପ୍ରାଦେଶିକ) ଗଦ୍ୟଶିଳ୍ପୀଙ୍କୁ ସ୍ୱତନ୍ତ୍ର ଭାବରେ ପାଠକୀୟ ଶ୍ରଦ୍ଧାପଣ ନେଇ ବାରମ୍ବାର ଅଧ୍ୟୟନ କରିବାର ଆବଶ୍ୟକତା ରହିଛି; ଯାହାଦ୍ୱାରା (ଫଳପ୍ରସୂ ପରିଣତିଭାବରେ) ମହତ୍ତର କଳା-ଗୁଣର ପ୍ରବଂଧ-ସର୍ଜନପଣର ବିଶେଷତ୍ୱ ସଂପର୍କରେ କେବଳ ଧାରଣା ମିଳିବ ନାହିଁ; ବରଂ ଏଥିସହିତ ପାଠକର ଜୀବନଚର୍ଯ୍ୟା ଅପୂର୍ବ ପ୍ରାଣପ୍ରାଚୁର୍ଯ୍ୟରେ ଉଦ୍ଭାସିତ ହୋଇ ଉଠିବା ସଙ୍ଗେ ସଙ୍ଗେ ଉଦାର-ଉଦାତ୍ତ-ଉଲ୍ଲାସମୟ ଦୃଷ୍ଟିଭଙ୍ଗୀଟିଏ ଆପଣା ଭିତରେ ଅନୁକମ୍ପେଇ ଉଠିବ।

(ପାଞ୍ଚ)

ପ୍ରବନ୍ଧ-କଳା ସମ୍ବନ୍ଧୀୟ ଏହି ପ୍ରବନ୍ଧର ପଞ୍ଚମ ସୋପାନରେ ପ୍ରବଂଧର ଆତ୍ମିକ ଓ ଆଙ୍ଗିକ ବିକାଶକ୍ରମର ପାଶ୍ଚାତରେ ପ୍ରେରଣାଦାୟକ ହେତୁରୂପରେ ଭୂମିକା ସଂପାଦନ କରିଥିବା କେତେକ ବିଭାସିତ ପ୍ରକ୍ରିୟାର ତର୍ଜମା କରାଯାଉଛି।

ପାଶ୍ଚାତ୍ୟ ଜଗତର ଅନୁକୃତି କଳାତତ୍ତ୍ୱ (Mimetic Theory of Art) ପ୍ରବଂଧ ରଚନା ନିମନ୍ତେ ପ୍ରାବଂଧିକର ଅନୁଭୂତି ଉପରେ ଗୁରୁତ୍ୱ ଆରୋପ କରିଛି। ପ୍ରାବଂଧିକର ସୃଜନାଭୂତି ହେଉଛି ପାରିପାର୍ଶ୍ୱିକତା ସହିତ ସମଯୋଜନାର ଏକ ପ୍ରକ୍ରିୟା। ପ୍ରବଂଧରେ ପ୍ରତିଫଳିତ ସମସ୍ୟା, ଚିତ୍ରରୂପ, ସିଦ୍ଧାନ୍ତ ଇତ୍ୟାଦି ହେଉଛି ଜୀବନ ଓ ଜଗତ ସଂପର୍କିତ ଦାର୍ପଣିକ ଅନୁକୃତି। ପ୍ରାବଂଧିକ ପରିପାର୍ଶ୍ୱ ଭିତରେ ସମୟ ବଂଚୁଥିବା ଜୀବନ ନକଲକାର। ତଥ୍ୟାତ୍ମକ ଓ ସୂଚନାଧର୍ମୀ ପ୍ରବଂଧ ସମକାଳୀନ ଚଳନ୍ତିକାର ଦର୍ପଣ ନିର୍ଦ୍ଧାରଣ କରାଯାଇଛି। ପ୍ରବଂଧର କଳେବର ଭିତରେ ପ୍ରାବଂଧିକ ଉତ୍ତମ ବିନ୍ୟାସକ ରୂପେ ମୂଲ୍ୟବୋଧ, ସମୟର ପ୍ରାଣସ୍ପନ୍ଦନ ଓ ପରଂପରା ଅନୁବନ୍ଧିତ ଜୀବନ ଦୃଷ୍ଟିର ସମୂହ ଉପଲବ୍ଧିକୁ ଭାସମାନ ରୀତିରେ (ମନ୍ମୟଧର୍ମୀ ପ୍ରବଂଧ ରୂପରେ) ରୂପାୟନ କରିଥାନ୍ତି। ଅନୁକୃତିତତ୍ତ୍ୱର ପ୍ରସାର ଦ୍ୱାରା ପ୍ରବଂଧକଳା ପ୍ରଭାବିତ ହେବା ପରେ ପ୍ରବଂଧ ଅନୁଶୀଳିତ ପ୍ରସଙ୍ଗ, ତଥ୍ୟ ଓ ସତ୍ୟର ପ୍ରତିବିମ୍ବାୟିତ ଫଳକଭୂମି ଭାବରେ ପରିଗୃହୀତ ହୋଇଛି ଏବଂ ଜୀବନ-ସମାଜ-ସମୟର ପ୍ରସଙ୍ଗଗୁଡ଼ିକ ପ୍ରବଂଧରେ ଅନୁବୃତ ହୋଇଛି।

ପାଶ୍ଚାତ୍ୟ ଜଗତୀୟ ଉପଯୋଗୀତତ୍ତ୍ୱ (Pagmatic Theory) ପ୍ରବଂଧର ରଚନା ଅପେକ୍ଷା ଏହାର ପ୍ରାୟୋଗିକ ଆବେଦନ ଧର୍ମ ଉପରେ ପ୍ରାଧାନ୍ୟ ଦେଇଛି। ଫଳରେ ପ୍ରବଂଧର ରଚନାକ୍ରମରେ ପ୍ରାବଂଧିକ ଆବେଦନ ଧର୍ମପ୍ରତି ସଚେତନ ହୋଇଉଠିଛି। ଆବେଦନର ପରିଣତିବୋଧଟିକୁ ଶିକ୍ଷାପ୍ରଦ, ଆବେଗପ୍ରଦ, ଚିନ୍ତାପ୍ରଦ ଓ ଯୁକ୍ତିପ୍ରଦ ଏହିପରି ଚାରିଗୋଟି ଦିଗରୁ ବିଚାର କରାଯାଉଛି। ପ୍ରବଂଧର ଶେଷ ବକ୍ତବ୍ୟଧର୍ମୀ ଅଭିଲକ୍ଷ୍ୟଟି

ହେଉଛି ବିଷୟର ସାମଗ୍ରିକ ବଳୟଟି ଏକ ବୃହତ୍ତର ଶୃଙ୍ଖଳାବୋଧର ଉପଯୋଗିତା ସମ୍ବନ୍ଧରେ ସଚେତନ କରାଇ ଦେଉଥିବ। ପାଠକର ପ୍ରଥାସଂଚିତ ବିଚାର ବିମର୍ଶ ଓ ଲୋକାଚାରୀୟ ଅନୁରାଗଗୁଡ଼ିକ ନୂତନ ମୂଲ୍ୟବୋଧ ଭିତ୍ତିରେ ଯଥାର୍ଥ ପ୍ରୟୋଜନୀୟତାର ବାହକ ହେଉଛନ୍ତି କି ନାହିଁ ଏହା ପଠନ ପ୍ରକ୍ରିୟା ଦ୍ୱାରା ସିଦ୍ଧ ହେବ। ପ୍ରବଂଧ-ସୃଜନପଣ ପାଠକ ପାଖରେ ପ୍ରତିପାଦ୍ୟ ବିଷୟବସ୍ତୁକୁ ଜ୍ଞାନାତ୍ମକ ଉଦ୍ଦେଶ୍ୟ, ପ୍ରୟୋଗ କୌଶଳ ମୂଳକ ଉଦ୍ଦେଶ୍ୟ ଓ ପ୍ରଭାବାତ୍ମକ ଉଦ୍ଦେଶ୍ୟ ସାଧନ କ୍ରମେ ଉପସ୍ଥାପନା କରିବାକୁ ହେବ। ଏହି ତତ୍ତ୍ୱର ଅନୁଗାମୀ ହୋଇ ପ୍ରବଂଧରଚନାର ଧାରାରେ ବିଷୟବସ୍ତୁଟିକୁ ପ୍ରାବଂଧିକ ନିର୍ଦ୍ଦେଶନା, ଉପଦେଶନ, ପରିମାପ ଓ ମୂଲ୍ୟାୟନ ଭିତ୍ତିରେ ଅନୁଶୀଳନ, ନିୟମ ଓ ଫଳାଫଳ ଅନୁବଦ୍ଧିତ କରିବାକୁ ଉଚିତବୋଧ କରିଛି। ପ୍ରାରମ୍ଭ ସଚେତନ, ସମସ୍ୟା ସଚେତନ, ସମାଧାନ ପ୍ରତି ଅନୁଭୂତି ନିର୍ମାଣ ଓ ନୈତିକ ଅଭିଜ୍ଞତାର ନିରବଚ୍ଛିନ୍ନ ପୁନର୍ଗଠନ ମଧ୍ୟରେ ପ୍ରତିମୂଲ୍ୟବୋଧର ପ୍ରତିଷ୍ଠା ହେଉଛି ପ୍ରବନ୍ଧର ବିଧେୟ। ପ୍ରୟୋଗବାଦୀ ସିଦ୍ଧାନ୍ତ ଅନୁସାରେ ମନୁଷ୍ୟର ଅଭିଜ୍ଞତା ଓ ସମସ୍ୟାସଂସର୍ଗ ଆବିଷ୍କାରକ ମନୋଭାବ ଉପରେ ସାମୂହିକ ମୂଲ୍ୟବୋଧର ପୁନର୍ଗଠନ ନିର୍ଭରଶୀଳ। ଅଭିଜ୍ଞତାରୁ ଅଭିଜ୍ଞତାକୁ ଅତିକ୍ରମ କରି ନିରବଚ୍ଛିନ୍ନ ଭାବରେ ମୂଲ୍ୟବୋଧର ନୂତନ ରୂପାନ୍ତରୀକରଣ ସୃଜନ-ଧ୍ୱଂସ-ସୃଜନ ପ୍ରକ୍ରିୟା ଦେଇ ସମ୍ଭବ ହୋଇଥାଏ। ଫଳରେ ପ୍ରବଂଧ କଳାରେ ଅନ୍ୟାନ୍ୟ ବାଙ୍‌ମୟ କଳା-ପ୍ରୀତି ପରି ବ୍ୟକ୍ତିସତ୍ତାର ଅଭିଜ୍ଞତାକୁ ଆଧାର କରି ସାମାଜିକଧାରଣା ଓ ସାମାଜିକ ଦାୟବଦ୍ଧତାର ଅନୁଚିନ୍ତା ପ୍ରକଟିତ ହୋଇଛି।

ପରବର୍ତ୍ତୀ ପର୍ଯ୍ୟାୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ମାନବ-ସମ୍ବଳ-ବିଶ୍ୱାସୀ ସମୟଖଣ୍ଡରେ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦୀ ସମାଜତତ୍ତ୍ୱ ଓ ସାଂସ୍କୃତିକ ଭାବବିନିମୟ ବିଶ୍ୱସ୍ତ ସମାଜତତ୍ତ୍ୱ ସମତା, ସହବନ୍ଧନ, ସମବ୍ୟର୍ଥଭାବନା ପାରସ୍ପରିକ ଦାୟବଦ୍ଧତା, ସମୂହଜୀବନର ଅଙ୍ଗୀକାରତ୍ୱ, ପରିବେଶ ସହିତ ସମଯୋଜନା ଆଦି ପ୍ରସଙ୍ଗଗୁଡ଼ିକ ପ୍ରମାଣିତ କରିଛନ୍ତି ଯେ- ସାମାଜିକ ଶୃଙ୍ଖଳାର ପୃଷ୍ଠଭୂମିରେ ବ୍ୟକ୍ତିକଲ୍ୟାଣର ବିକାଶ ସଂଭବ ହୁଏ। ଏହା କଳାବୋଧରେ ବ୍ୟକ୍ତିଦୃଷ୍ଟି ଓ ସମଷ୍ଟି ଦୃଷ୍ଟିରୁ ସମବାୟ ସାଧନ କରିଛି। ଫଳରେ ପ୍ରବଂଧର ବସ୍ତୁନିଷ୍ଠତାର ଦୃଷ୍ଟିଭଙ୍ଗୀ ସହିତ ବୟକ୍ତିକ ଆବେଗରେ ସମନ୍ୱୟ ସଂପାଦିତ ହୋଇଛି। ପ୍ରାବଂଧିକ ମୁଁତ୍ୱ ସର୍ବସ୍ୱ ଇଚ୍ଛାବୃତ୍ତିକୁ (ମନ୍ମୟ ସୂଚକ) ତଦ୍‌ଗତଚିତ୍ତ ବୃତ୍ତି (ତନ୍ମୟଧର୍ମୀ ସାମୂହିକ ଉପଲବ୍ଧି) ସହିତ ସଂଶ୍ଳେଷଣ କରି ଏକ ବିଭ୍ରାଜିତ ଜୀବନଧାରଣର ପ୍ରତିପାଦନଟିଏ ପ୍ରବଂଧ-ବୃତ୍ତରେ ପରିବେକ୍ଷଣ କରିବାକୁ ଆଗ୍ରହମନା ହୋଇଉଠିଛି। ସର୍ବାପେକ୍ଷା ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଅବସ୍ଥାରେ ମଣିଷର ବଂଚିବାପଣକୁ ସ୍ଥିତିବାଦୀ ଦର୍ଶନ ଓ ପ୍ରାମାଣିକ ମନୋବିଜ୍ଞାନ ସ୍ୱତନ୍ତ୍ର ନମନୀୟତାର ପରିଭାଷାଟିଏ (ଯାହା ଜଟିଳ-ଅସଂଗତିର ବଳୟ ଭିତରେ ଲୁଚି ରହିଥିବା ପରିଭାଷା) ଦେଇଛି। ମୂଲ୍ୟବୋଧମାନେ ଦର୍ଶନ ଓ ମନନର ଦ୍ୱିପାକ୍ଷିକ ପଲାରେ ତଉଲ ହୋଇଛନ୍ତି। ସ୍ଥିତିବାଦ ଗୋଟିଏ ପକ୍ଷରେ ମଣିଷର ଆତ୍ମମଗ୍ନତାର ବଂଚିବା ଉପରେ ଗୁରୁତ୍ୱ

ଦେବା ସଙ୍ଗେ ସଙ୍ଗେ ଅପରପକ୍ଷରେ ପ୍ରତିଯୋଗିତାର ପୃଷ୍ଠଭୂମିରେ ତୁଳନାତ୍ମକ ମାନସିକତାଟିଏ ବୃଦ୍ଧି କରିଛି। ବ୍ୟକ୍ତିଗତ ପାର୍ଥକ୍ୟ, ବ୍ୟକ୍ତିତ୍ୱର ପରିମାପ, ପାରିପାର୍ଶ୍ୱିକ ଅବସ୍ଥା ସହିତ ଖାପ୍‌ଖୁଆଇ ଚଳିବାର ମାନସିକ ସ୍ୱାସ୍ଥ୍ୟ ଏବଂ ରାଜନୀତିଠାରୁ ଧର୍ମନୀତି ପର୍ଯ୍ୟନ୍ତ ପ୍ରତିଟି ବ୍ୟାବହାରିକ ପରିସ୍ଥିତିରେ ସ୍ୱାଧୀନ-ମନର-ଉପସ୍ଥିତିକୁ ସମର୍ଥନ କରିବାର ଅବକାଶମାନ ସ୍ଥିତିବାଦ ଯୋଗାଇ ଦେଇଛି। ପ୍ରାମାଣିକ ମନୋବିଜ୍ଞାନ ବଂଚିବାର କୌଶଳକୁ ବ୍ୟକ୍ତିର ମାନସିକ ବାସ୍ତବତାର ପ୍ରସଙ୍ଗ ବୋଲି ପ୍ରମାଣିତ କରିଛି। ଜୀବନ ଚର୍ଯ୍ୟା ଏବଂ ମନସ୍ତାତ୍ତ୍ୱିକ ପ୍ରସ୍ତୁତି ନିୟମର ଅଧୀନ। ସାଂସ୍କୃତିକ ବା ସାମୂହିକ ମାନସିକତାର ବାହିରେ ବଳଶାଳୀ ଅନୁଭୂତିର ଧାରକ ବ୍ୟକ୍ତିସତ୍ତା ନିଜର ମାନସିକ ଇଚ୍ଛାବୃତ୍ତିକୁ ସଯତ୍ନରେ ସମୂହବୃତ୍ତିରେ ଉଦ୍‌ଭାସିତ କରାଇପାରିଥାଏ। ଏ ଧରଣର ଇଚ୍ଛାବୃତ୍ତି କଳାକାରଟିଏ, ଶିଳ୍ପୀଟିଏ, ଲେଖକଟିଏ, ଦାର୍ଶନିକଟିଏ, ବୈଜ୍ଞାନିକଟିଏ, ଧର୍ମପୁରୋଧାଟିଏ ରାଜନେତାଟିଏ, କ୍ଷମତାବିଳାସୀଟିଏ, ସୁବିଧାବାଦୀଟିଏ ଅଥବା ଚକ୍ରବ୍ୟୂହରଚନାକାରୀଟିଏ ହୋଇପାରନ୍ତି। ଫଳରେ ଚେତନାର ବିସ୍ତାରିତ ବଳୟ ଭିତରେ ସଂପର୍କ ଓ ସଂପର୍କହୀନତାର ବିରୋଧାଭାସୀ ଜୀବନାନୁଭୂତି ପ୍ରବଂଧକଳାର ଉପାଦାନ ହେବାକୁ ଏଇ ପୃଷ୍ଠଭୂମିରେ ବାଧ୍ୟ ହୋଇଛି। ଅବକ୍ଷୟ, ଅବମୂଲ୍ୟାୟନ, ଅନାବବୋଧ ଓ ଅସଂଗତି ପ୍ରବଂଧର ବିଷୟବସ୍ତୁ ହୋଇଛି। ମନନଶୀଳତାର ତାର୍କିକ ଅଭିଜ୍ଞତା ପ୍ରବଂଧର ପ୍ରାସଙ୍ଗିକତାକୁ ବାନ୍ଧିରଖିଛି।

ମାତ୍ର ସ୍ୱାଧୀନତା ପରବର୍ତ୍ତୀ କାଳରେ ଅନୁକରଣ ମାନସିକତା ଦ୍ୱାରା ପ୍ରରୋଚିତ ହୋଇ ଭାରତୀୟ ବିଦ୍ୱାନ-ପ୍ରାବଂଧିକମାନେ କେତେକ ସମୟରେ ଅପ-ଅବବୋଧଗୁଡ଼ିକୁ ପ୍ରବନ୍ଧ-ସୃଜନର ମୌଳିକ ନିଦାନ ଭାବରେ ଗ୍ରହଣ କରିଥିଲେ ମଧ୍ୟ ଏହାହିଁ ବିଚିତ୍ର ନିଜ ଭୂମିବୋଧର ପ୍ରାରବ୍ଧ ମେଦିନୀ ପ୍ରେମର କଲ୍ୟାଣକର ଦର୍ଶନ ଦ୍ୱାରା ଅନୁପ୍ରାଣିତ ହୋଇ ଅଧିକାଂଶ ସମୟରେ ଗୁରୁତାତ୍ତ୍ୱିକ ସିଦ୍ଧାନ୍ତ ପ୍ରତିପାଦନ ଅପେକ୍ଷା ସଖ୍ୟଭାବନିଷ୍ଠ ପାରାମର୍ଶିକ ଆବେଦନର ନକରାତ୍ମକ ସ୍ଥିତିବୋଧଗୁଡ଼ିକୁ ସକାରାତ୍ମକ ଜୀବନ ସ୍ରୋତରେ ରୂପାନ୍ତରିତ କରିପାରିଛନ୍ତି। ଓଡ଼ିଆ ପ୍ରବଂଧଧାରରେ ସ୍ୱାଧୀନତୋତ୍ତର ପର୍ଯ୍ୟାୟରେ ମହାପାତ୍ର ନୀଳମଣି, ମନୋଜ, ଚିତ୍ତରଂଜନ, ଚନ୍ଦ୍ରଶେଖର ଓ ଶରତକୁମାରଙ୍କ ପ୍ରବଂଧରେ ମାନବୀୟ ମନନଶୀଳ-ବୃତ୍ତିପଣର ପ୍ରୋକ୍ତ ମହାନୁଭବ ଲକ୍ଷଣକୁ ସହଜରେ ପାଠକ ଖୋଜିଲୋଡି ପାଇଥାଏ। ସ୍ଥୁଳ ରସିକତା ଭିତରେ ସୂକ୍ଷ୍ମ ଅନ୍ତର୍ଦୃଷ୍ଟିର (ମହ ମହବାସ୍ମାର ଓ ଉଦାର ମାନବୀୟତାର) ସତ୍ୟମାନେ ଏମାନଙ୍କ ପ୍ରବଂଧରେ ନିରୁତା ଜୀବନାଭିଳାଷର ପ୍ରସଙ୍ଗ ହୋଇ ପ୍ରକାଶ ପାଇଥାନ୍ତି। ଅସଂଭବ ଅଲଂଘ୍ୟ, ଅବିଶ୍ୱାସ୍ୟ ମନେହେଉଥବା ଭାବ/ସମସ୍ୟା ଏମାନଙ୍କ ପ୍ରବଂଧ ସଂପର୍କରେ ପଠନପିପାସା ମଧ୍ୟରେ ଆସିବାପରେ ସ୍ୱତଃ ସମାଧେୟ ମାର୍ଗଟିଏ ମନରେ ସୃଷ୍ଟି ହୋଇଯାଏ। ସମାବୃତ୍ତର ପ୍ରବଂଧଗୁଡ଼ିକ ସର୍ବଦା କାଳ୍ପନିକତା ଅପେକ୍ଷା, ଦାର୍ଶନିକତା ଓ ଜୀବନାନୁଭୂତିର ମନନ-ଧର୍ମିତାକୁ ଅଧିକ ଗୁରୁତ୍ୱ ଦେଇଥାଏ ଏବଂ ନିଜ ଭିତରେ ବ୍ରହ୍ମାଣ୍ଡର ବାସ୍ତବାଭିବ୍ୟକ୍ତିକୁ

ଦେଖାଇବାର ପ୍ରବଣତା ଏ ଧରଣର ପ୍ରବଂଧର ବିଶେଷତ୍ୱ ହୋଇଥାଏ- ଯାହା ପୂର୍ବୋକ୍ତ ଗଦ୍ୟଶିଳ୍ପୀଙ୍କ ପ୍ରବଂଧ ସଂସାରରେ ବିଚରଣ କରିଥିବା ପାଠକମାନେ ବୁଝିପାରିଛନ୍ତି। ଉତ୍ତର ପିଢ଼ିର ବାଙ୍‌ମୟ ସାଧନାରେ ଏବଂବିଧ ଦୃଷ୍ଟିଭଙ୍ଗୀର ସହାବସ୍ଥାନ ନିମନ୍ତେ ପ୍ରଯତ୍ନ କ୍ରମଶଃ ଛିନ୍ନ-ବୋଡ଼ା-ଲାଙ୍ଗୁଡୀ ପ୍ରସଙ୍ଗ ହୋଇ ଯାଉ ନାହିଁ କି ?

ବିଶ୍ୱ-ମାନବବାଦୀ ଓ ଦାର୍ଶନିକ ପରିମଣ୍ଡଳକୁ ଅଭିବ୍ୟକ୍ତି ତତ୍ତ୍ୱ (Expressive Theory) ଦର୍ଶନ, ସମାଜତତ୍ତ୍ୱ ଓ ଜୀବୀତତ୍ତ୍ୱକୁ ମାନସିକ-ବାସ୍ତବତାର ପ୍ରସଙ୍ଗ ଭାବରେ ଚର୍ଚ୍ଚାକରି ଏକ ଅଭିନବ ଅନୁପ୍ରାଣନାଯୁକ୍ତ ଦୃଷ୍ଟିଭଙ୍ଗୀର ପ୍ରସାର ସାଧନ ଘଟାଇଛି। ପ୍ରବଂଧ ସାହିତ୍ୟ ପରିସରକୁ ଅନ୍ତଃମନର ବାସ୍ତବତା ଦ୍ୱାରା ଋଦ୍ଧିମନ୍ତ ପ୍ରସଙ୍ଗ ଓ ବିବିଧ ଚେତନାକୁ ଏହି ତତ୍ତ୍ୱ ଅନୁପ୍ରବେଶ କରାଇଛି। ନାଟକ, ଗଳ୍ପ, ଉପନ୍ୟାସ ଓ କବିତାକୁ ପରୀକ୍ଷା ଓ ପ୍ରୟୋଗବାଦିତାରେ ବିସ୍ତାରିତ ଓ ନୂତନସଂଜ୍ଞାବାଚକ କରିଥିବା ଏହି ତତ୍ତ୍ୱ ପ୍ରବଂଧ ମାଧ୍ୟମରେ ଯେଉଁ ମୁଖ୍ୟ ବୈଶିଷ୍ଟ୍ୟକୁ ପ୍ରତିଷ୍ଠା ଦେଇଛି ତାହା ହେଉଛି ବାହାରର ଦୁନିଆକୁ ଆତ୍ମସମୀକ୍ଷଣପୂର୍ବକ ଭିତର ଦୁନିଆଁର ମାନସିକ-ଦାୟବଦ୍ଧତାର ବିଚାର କ୍ରମେ ପରିମାପିତ କରିବା। ଆତ୍ମବ୍ୟାଖ୍ୟାରେ ବୌଦ୍ଧିକ ଫାଣ୍ଟାସି ମାଧ୍ୟମରେ ମାନସିକ ସ୍ୱାଭିମାନପଣର ବୃତ୍ତିଗୁଡ଼ିକୁ ବାଟ ଦେଖାଇବାର ପଦ୍ଧତିଟିଏ ପ୍ରାବଂଧିକ ପାଇଯାଇଛି। ସାମୂହିକବିଧାନ ଦ୍ୱାରା ପରିଚାଳିତ ବାହ୍ୟବାସ୍ତବତାର ଜୀବନ ଏକ ମାୟାନୁଭୂତିର ଖେଳ ଏବଂ ସମଯୋଜନା ଦ୍ୱାରା ଅନୁପ୍ରାଣିତ (Adjustive mentality) ଜୀବନ। ମଣିଷର ଅନ୍ତଃବାସ୍ତବତାର ଉପଲବ୍ଧି ହିଁ ନିଷ୍କପଟ ଭାବରେ ସତ୍ୟ– ଏହି ପ୍ରକାର ବିଚାର ବିଶ୍ୱ ଚେତନାପ୍ରସ୍ଥରେ ଆତ୍ମନିଷ୍ଠ ମନସ୍ତତ୍ତ୍ୱର ଖସଡ଼ା ନିର୍ମାଣ କରିଛି। ଆତ୍ମବୋଧର ବୃତ୍ତି-ପ୍ରବୃତ୍ତିଗୁଡ଼ିକୁ ଆଧାର କରି ପ୍ରବଂଧ ସାହିତ୍ୟର ବିସ୍ତାର ଘଟିଛି; ଯେଉଁଥିରେ ଲେଖକୀୟ ଦର୍ଶନ ଓ ବିଚାର ସମାଜବିଧାନ, ଆର୍ଥନୀତିକ ବ୍ୟବସ୍ଥା, ସାଂସ୍କୃତିକ ଧାରଣା, ନୈତିକ ମୂଲ୍ୟବୋଧର ମାପକାଠି ଓ ଶାସନଗତ ତରାଜୁର ପ୍ରଭାବରେ ନିୟନ୍ତ୍ରିତ ନହୋଇ ବରଂ ନିଜର ପ୍ରଭାବଶାଳୀ ଚେତନାସ୍ରୋତରେ ଏସବୁକୁ ବାହିନେଇଛି। ମନସ୍ତାତ୍ତ୍ୱିକ ମୂଲ୍ୟବୋଧର ଚିତ୍ରଧର୍ମୀ ପ୍ରାମାଣିକ ଅଭିବ୍ୟକ୍ତି ଧର୍ମରେ ବିଳସିତ ଏ ପ୍ରକାର କଳାଦର୍ଶନଟି ଲାଞ୍ଜିନୋ, ଟାସୋ, ହବ୍‌ସ, ମୋରଟିକ୍, ବ୍ରାଡ୍‌ଲେ, ରସେଲ୍ ଓ ଟି.ଏସ୍. ଇଲିୟଟ ପ୍ରମୁଖ ଚିନ୍ତାନାୟକଙ୍କ ଦ୍ୱାରା ସଂପ୍ରସାରିତ ଭାବତତ୍ତ୍ୱ (Objective Theory) ସାହିତ୍ୟ-କଳା କ୍ଷେତ୍ରରେ ବସ୍ତୁରୂପକ ବୟକ୍ତିକତା ଓ ଅନ୍ତର୍ମୁଖୀ ଇଙ୍ଗୀତାତ୍ମକ ବିଚାର ବିଶ୍ଳେଷଣ ଅନୁଯାୟୀ ପ୍ରସଙ୍ଗ ଉପସ୍ଥାପନା ଉପରେ ଗୁରୁତ୍ୱ ଦେଇଛି। ବିଷୟଗୁଡ଼ିକ ପାରସ୍ପରିକ ସମ୍ବନ୍ଧାଶ୍ରୟୀ ହୋଇ ପ୍ରବଂଧସୃଷ୍ଟିରେ ବକ୍ତବ୍ୟଟିଏ କେବଳ ପରିବେଷଣ କରିବା ଉପରେ ପ୍ରାଧାନ୍ୟ ଦେଇଛନ୍ତି। ବହୁଧା ସତ୍ୟ ଓ ଆଦର୍ଶର ପ୍ରଖ୍ୟାପକ ବସ୍ତୁନିଷ୍ଠ ପ୍ରବନ୍ଧ ମଧ୍ୟ ଏହା ଫଳରେ ଆତ୍ମକଥନଧର୍ମୀ ପ୍ରକ୍ରିୟାର ଫଳପ୍ରସୂ ହୋଇ ଉଠିଛନ୍ତି। ଅନ୍ୟାନ୍ୟ ସାହିତ୍ୟ-ପ୍ରାରୂପ ପରି ପ୍ରବନ୍ଧ ମଧ୍ୟ ବୌଦ୍ଧିକ-

ମସ୍ତିଷ୍କ-କସ୍ରତରେ ପ୍ରସ୍ତୁତିଶାଳାରୁ ମୁକ୍ତ ହୋଇ ସମ୍ବେଦନଶୀଳ ହୃଦୟବୃତ୍ତିର ବେଳାଭୂମିରେ ସ୍ୱଚ୍ଛନ୍ଦ କ୍ରୀଡ଼ା କରିଛି। ଆବେଗତତ୍ତ୍ୱ ଦିଗରୁ ବିଶ୍ୱଯୁଦ୍ଧୋତ୍ତର କଳାକଳ୍ପର ବିଚାରବିମର୍ଶ ପରଂପରାରେ ଉପଯୋଗୀତା ଓ ବାସ୍ତବତାକୁ ଆବେଗପ୍ରବଣ ଶୈଳୀରେ ରୂପାୟଣ କରାଯାଇଛି। ପ୍ରାବନ୍ଧିକଙ୍କ ପରିଭାଷା ହୋଇଛି–

- ''ସମବେଦନା ଓ ସହିଷ୍ଣୁପଣର ମାନସିକତା ମଧ୍ୟରେ ଜଗତ ଓ ଜୀବନକୁ ନିରପେକ୍ଷ ଦୃଷ୍ଟିରେ ଅଙ୍ଗୀକାର କରିଥିବା ଅନୁଭବୀଟିଏ।
- ଭାସମାନ ତରଙ୍ଗାୟିତ ମନୋଭାବ ପ୍ରତି ବିଶ୍ୱସ୍ତ ନହୋଇ ତଟସ୍ଥ ଦୃଷ୍ଟିରେ ଦୃଶ୍ୟମାନ ବାସ୍ତବତାର ସମ୍ମୁଖୀନ ହୋଇ ତହିଁ ମଧ୍ୟରେ ଲୁଚିଥିବା ଗୋପନ/ଅନ୍ତର୍ମୁଖୀ ବାସ୍ତବତାର ସ୍ୱରୂପ ବ୍ୟାଖ୍ୟା କରିବାର କ୍ଷମତାଥିବା ଭାବୁକଟିଏ।
- ସ୍ୱଭାବସୁଲଭ ରସିକତାରେ ଉପରର ଖୋଳପା ଛଡ଼ାଇ ଭିତରେ ନିର୍ଯ୍ୟାସକୁ ଦେଖାଇବାର ସମ୍ବେଦନଶୀଳ ବିଚାରକଟିଏ।
- ଜୀବନ ପାରଂପରିକ ଚେତନା ନଦୀର ପ୍ରତିକୂଳ ସ୍ରୋତରେ ଗତିକରି ନାସ୍ତିବାଚକ ସତ୍ୟର ଶାମୁକାଗୁଡ଼ିକୁ ଉଦ୍ଧାର କରି ଅନୁକୂଳ ସ୍ରୋତରେ ପହଁରି ଆସି ଆସ୍ତିବାଚକ ମୂଲ୍ୟବୋଧର ମୁକ୍ତା ପ୍ରଦାନକାରୀ ସାମର୍ଥ୍ୟର ଅଧିକାରୀଟିଏ।
- ଚଳନ୍ତି ଦୃଶ୍ୟବୋଧ ଗୁଡ଼ିକର ବୀଭତ୍ସତାକୁ ବୋଝ ମନେ ନ କରି ବିଭଙ୍ଗ ଅବିଶ୍ୱାସଗୁଡ଼ିକୁ ସଇତାନ ମନେ ନ କରି, ଅଶୃଙ୍ଖଳିତ ବିରୋଧାଭାସଗୁଡ଼ିକୁ ଜୀବନସଂଗତି ଓ ଜାତୀୟ ସ୍ୱାଭିମାନର ବାଧକ ମନେନକରି ସେସବୁର କାରଣ ଆତ୍ମବ୍ୟାଖ୍ୟାନ ପଦ୍ଧତିରେ ନିର୍ଣ୍ଣୟ କରି ସେସବୁକୁ ବିଭାବନ ଶବ୍ଦାର୍ଥୀକରଣ ପ୍ରକ୍ରିୟାରେ ଉପଯୋଗ କରି ଏକ ନୂତନ ବିବର୍ତ୍ତିତ ଆୟତନରେ ଦେଖାଇଦେବାର ଅନ୍ତଦର୍ଶୀଟିଏ।''

ଓଡ଼ିଆ ପ୍ରବଂଧ ସାହିତ୍ୟରେ ସ୍ୱର୍ଣ୍ଣାଦ୍ରିର ସ୍ୱପ୍ନ, ବର୍ତ୍ତମାନ ଯୁଗର ଆକାଂକ୍ଷା ଓ ଉଦ୍ଦେଶ୍ୟ, ଶାମୁକା ଓ ମୁକ୍ତା, ଆଧୁନିକ, ସ୍ୱାଧୀନଜାତିର ନୂତନମୂଲ୍ୟବୋଧ, ଶୁଣନ୍ତୁ, ଶିଳା ଓ ଶାଳଗ୍ରାମ, ମଣିଷ ଦେବତା, ହିଂସା ପ୍ରମତ୍ତଭାରତ, ଜୀବଧର୍ମ, ବିବର୍ତ୍ତନ, ମଧୁସନ୍ଧାନ, ଆକାଶମୁଖୀ, ଓଡ଼ିଶା ଓ ଓଡ଼ିଆ, ଯୁଗ ସଙ୍କଟରସ୍ୱରୂପ, ଗୋଟିଏ ଗୋଟିଏ ନମୁନା ଶୀର୍ଷକ ପ୍ରବଂଧ ଯାହା ଭିତରେ ଥରେ ପାଠକ ବିଚରଣ କରିବାମାତ୍ରେ "ଲେଖକଙ୍କ ବ୍ୟକ୍ତିଗତ ଭାବନାବଳୟ ଭିତରେ ସେ ନିଜକୁ, ନିଜ ପ୍ରାରବ୍ଧକୁ ସମକାଳଙ୍କୁ ଓ ସଂଭାବନାକୁ ସହଜରେ ଭେଟିପାରିଥାଏ। ଆଦର୍ଶର ରକ୍ଷରଶୀଳତାଠାରୁ ଏସବୁ ପ୍ରବନ୍ଧର କଳାବିତ୍‌ମାନେ ଜୀବନର ଆସ୍ତିବାଚକ ଚେତନାଗୁଡ଼ିକୁ ସାର୍ବକାଳିକ-ବାର୍ତ୍ତାବହନ କରିଥିବା ମାନ୍ତ୍ରିକ ଉଚ୍ଚାରଣରେ ରୂପାନ୍ତରିତ କରିଦେଇଛନ୍ତି। ଏହି ମର୍ମରେ ଅନ୍ତଃପ୍ରଭାବୀ କଳାଗୁଣରେ ଏସବୁ ପ୍ରବନ୍ଧର

ଲେଖକ ପ୍ରକାରାନ୍ତରେ ନିଜେ ପାଠକ ହୋଇ ଯାଇଛି । ଫଳରେ ପ୍ରବନ୍ଧଗୁଡ଼ିକ ପାଠକରିବା ସମୟରେ ପାଠକ ଯେପରି ମନେ କରିଛି ନିଜର ବିରଳ ଜୀବନାନୁଭୂତି ଓ ପରିଦୃଶ୍ୟମାନ ଜଗତର ଅନ୍ତରୀଣ ସତ୍ୟ ତା'ର ପ୍ରିୟ ପ୍ରାବଂଧିକ ଦ୍ୱାରା ଶବ୍ଦକ୍ରୀଡ଼ା କରୁକରୁ ଲେଖିହୋଇ ଯାଇଛି । ପାଠକ ଓ ପ୍ରାବଂଧିକ ଭିତରେ ସାହୃଦୟ-ସମ୍ବଦ-ବିନିମୟ ଘଟିପାରିଛି ।

(ଛଅ)

ପ୍ରଥମ ବିଶ୍ୱଯୁଦ୍ଧପରେ ଗୋଟିଏ ପକ୍ଷରେ ସୋଭିଏତ୍ ଦେଶର ସମାଜବାଦୀ ବାମମାର୍ଗୀ ଦର୍ଶନ ମାନବବାଦ ଓ ସାଧାରଣ ମଣିଷର ପୁରୁଷାର୍ଥକୁ କଳାକ୍ଷେତ୍ରରେ ଉପପାଦ୍ୟ ଭାବରେ ପ୍ରତିଷ୍ଠା ଦେଉଥିବା ସମୟରେ ଅନ୍ୟପାଖରେ ଆମେରିକାର ସମୃଦ୍ଧିବୋଧ ନବମାନବବାଦୀ ଦୃଷ୍ଟିଭଙ୍ଗୀକୁ ସାରସ୍ୱତୀୟ ଚେତନାପକ୍ଷରେ ଏକ ଆନ୍ଦୋଳନ ରୂପରେ ସମର୍ଥନ କରିଛି । ମାନବୀୟ ସହାନୁଭୂତି ପ୍ରଦର୍ଶନ କରି ମାନବର ସର୍ବୋତ୍ତମ ସତ୍ତାର ମହତ୍ତ୍ୱକୁ ବିଶ୍ୱମୁଖୀ ଓ ଚିରାୟତମୁଖୀ କରିହେବ ନାହିଁ । ଏଥି ସହିତ ସାଧାରଣ ମାନବୀୟ ଅନ୍ତଃସତ୍ତାକୁ ପ୍ରତିବୋଧ, ଆତ୍ମବ୍ୟାଖ୍ୟା, ଐତିହ୍ୟାନୁଗତ୍ୟ, ବୟକ୍ତିକ ଅନ୍ତଃସୌନ୍ଦର୍ଯ୍ୟ ଉପରେ ଆସ୍ଥା ସ୍ଥାପନ କରିବାର ଦୃଢ଼ତା ଓ ଉତ୍ତରଦାୟୀ ବିଚାରବୋଧ ଉପରେ ପ୍ରତିଷ୍ଠିତ ରାଜନୀତିକ ନେତୃତ୍ୱପଣ ମାଧ୍ୟମରେ ଏକ ସମୂହଦୃଷ୍ଟିର ସର୍ବୋତ୍ତମ ସତ୍ତାରେ ରୂପାନ୍ତରୀକରଣ କରିବାର ମହତ୍ତର ବିଧେୟ ଉପରେ ନବମାନବବାଦ ଗୁରୁତ୍ୱ ଆରୋପ କରିଛି । ଏହାଦ୍ୱାରା ଦର୍ଶନରାଜ୍ୟରେ ନିମ୍ନମୁଖୀ ଚିନ୍ତା, ସାଧାରଣ ଜୀବନ ବଂଚୁଥିବା ଅଭିଳଷିତ ସତ୍ତା ଓ ଊର୍ଦ୍ଧ୍ୱ ଚେତନାର ବାସ୍ତବତା ଉପରେ ସଂଘର୍ଷରତ ଚିତ୍ତବୃତ୍ତି ସର୍ବଦା ନିତ୍ୟସମରରେ ରତ ରହିଛି– ଏ ପ୍ରକାର ଏକ ମାନବୀୟଚେତନାର ବିକାଶ ଘଟିଛି । ଏହି ଆନ୍ଦୋଳନ କ୍ରମଶଃ ପ୍ରବଂଧକଳାରେ ପ୍ରାବନ୍ଧିକଙ୍କ ଭୂମିକାକୁ ବ୍ୟକ୍ତିସତ୍ତାର ଐତିହ୍ୟ ଭାବ ପ୍ରବୋଧକ ଓ ଉତ୍ତରପିଢ଼ିର ମାନବ ସଂହତି ପ୍ରତି ଦାୟବଦ୍ଧତାର ଭୂମିକାଭାବରେ ଅର୍ଥନିଷ୍ଠ କରିଛି । ଏହି ଅର୍ଥନିଷ୍ଠ କଳାବୋଧର ଆବେଦନଟିକୁ ମାୟାଧର, କାଳିନ୍ଦୀଚରଣ, ଗୋଲକ ବିହାରୀ, ମନୋଜ ଦାସ, ଚିତ୍ତରଂଜନ ଦାସ ଓ ଶରତ କୁମାର ମହାନ୍ତିଙ୍କ ପ୍ରବଂଧ ମାନସିକତାରେ ଲକ୍ଷ୍ୟ କରାଯାଇପାରେ । ପଲ୍ ଏଲ ମେର ଓ ବାବିଡାଙ୍କ ଚିନ୍ତାଧାରା ''ବର୍ତ୍ତମାନର ମଣିଷଟି ଉତ୍ତର ସମୟ ପାଇଁ ଉତ୍ତରଦାୟୀ ଏହାହିଁ ମାନବିକ ମୂଲ୍ୟବୋଧର ପ୍ରାଥମିକ ଐତିହ୍ୟ''– ସହିତ ପ୍ରୋକ୍ତ ଓଡ଼ିଆ ଭାଷୀ ପ୍ରାବନ୍ଧିକମାନଙ୍କର ବିଚାର ବିମର୍ଶଗୁଡ଼ିକ କେତେଦୂର ନିକଟବର୍ତ୍ତୀ ପାଠକମାନେ ହିଁ ବିଚାର କରିପାରୁଥିବେ ।

ଓଡ଼ିଆ ପ୍ରବଂଧ ସାହିତ୍ୟର କ୍ରମୋନ୍ନତିରେ ପାଠକ ଅନ୍ୟ ଏକ ବିଧାନକୁ ଲକ୍ଷ୍ୟ କରିଥିବେ । ୧୯୨୫ରୁ ୧୯୪୭ ମସିହା ମଧ୍ୟରେ ଜଗତ ଓ ଜୀବନର ସ୍ୱଭାବ ସୁଲଭ ରୂପାୟନ ସମସ୍ୟାଧର୍ମୀ ପ୍ରବଂଧ ଭଣ୍ଡାରଟିଏ ସୃଷ୍ଟି କରିପାରିଛି । ଏହି ଭଣ୍ଡାରଟି ଅବଶ୍ୟ

ଉପନିବେଶବାଦୀ କର୍ମଶୃଙ୍ଖଳା ଭିତ୍ତିରେ ପ୍ରତିକ୍ରିୟାଶୀଳ ହୋଇ ଆଦର୍ଶବାଦର ଆଲୋକଶିଖାରେ ଦୃଶ୍ୟମାନ ହୋଇଛି। ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ, ସାମ୍ୟବାଦୀ ପ୍ରତ୍ୟୟ ଓ ଉପନିବେଶବାଦୀ ପ୍ରଭୁଭକ୍ତିପଣ ଏ ଭଣ୍ଡାରରେ ଗଚ୍ଛିତ ପ୍ରବଂଧରତ୍ନମାନଙ୍କ କେତୋଟି ବିଶେଷ ଲକ୍ଷଣ। ତାହାସତ୍ତ୍ୱେ ନିତ୍ୟାନନ୍ଦ, ଲକ୍ଷ୍ମୀନାରାୟଣ, ଗୋପାଳଚନ୍ଦ୍ର, ଗୋବିନ୍ଦ, ସରଳା, କାଳିନ୍ଦୀଚରଣ ଓ ନୀଳକଣ୍ଠଙ୍କ ଲେଖନୀରେ ଓଡ଼ିଶୀ/ଭାରତୀୟ ଆତ୍ମପରିଚୟର ମୁଦ୍ରାଙ୍କ ଏବଂ ସର୍ବୋତ୍ତମ ସତ୍ତାର ଚିତ୍ତବୃତ୍ତିକୁ ପ୍ରରୋଚିତ କରିବା ଭଳି ସ୍ୱାକ୍ଷର ନିହିତ ରହିଛି। 'ଆର୍ଯ୍ୟଜୀବନ, ଭାରତୀୟ ନାରୀ, ଧର୍ମ ଓ କର୍ମ, ଦେଶସେବକ, ବଟୁଆ, ଓଡ଼ିଆ ଜାତି କିଏ ସଭ୍ୟତା ଓ ସଂସ୍କୃତି' ଇତ୍ୟାଦି ପ୍ରବଂଧଗୁଡ଼ିକ ଏହି ମର୍ମରେ ନମୁନାସ୍ୱରୂପ ପଠନଯୋଗ୍ୟ। ଏଠାରେ ଭିନ୍ନ ଏକ ବିଷୟ ଉଲ୍ଲେଖଯୋଗ୍ୟ-ଫ୍ରାନ୍‌ସର ଡାଡାବାଦୀ ଓ ଅତିବାସ୍ତବବାଦୀ ଚିନ୍ତାଧାରା ଦ୍ୱାରା ଅବଚେତନମାନସରେ ଆଦିମ ପ୍ରବୃତ୍ତି ପ୍ରାଧାନ୍ୟ ମୁକ୍ତମନର ଅବାଧ ସାରସ୍ୱତୀୟ ଖେଳ ସମଗ୍ର ପାଶ୍ଚାତ୍ୟ ଜଗତରେ ପ୍ରବନ୍ଧକଳାକୁ ଆକ୍‌ତା ମାକ୍‌ତା କରି ଦେଇଥିବାବେଳେ ଏବଂ ଆମ ମାଟିର ଉପନ୍ୟାସ-ଗଳ୍ପ-ନାଟକ-କବିତା ଧାରାକୁ ଚହଲା ଢ଼େଉରେ ନଚେଇ ଦେଇଥିଲେ ମଧ୍ୟ ପ୍ରବନ୍ଧର ମୂର୍ଦ୍ଧନ୍ୟ କଳେବରକୁ ଏହା ସ୍ପର୍ଶ କରିପାରିନାହିଁ। ଅପରପକ୍ଷରେ ମାର୍କ୍‌ସଙ୍କ ସାମାଜିକ ବାସ୍ତବବାଦ ପ୍ରତି ଆମ ପ୍ରବଂଧ ସାହିତ୍ୟ ଅନୁରକ୍ତ ଥିଲେ ମଧ୍ୟ ବାସ୍ତବବାଦୀ ଜୀବନଚର୍ଯ୍ୟା ଓ ସାମାଜିକ ଅଙ୍ଗୀକାରବଦ୍ଧତା ସହିତ ନୀତିବାଦୀ କଳାମୂଲ୍ୟର ମିଶ୍ରଣରେ ଆମ ପ୍ରଗତିବାଦୀ ପ୍ରାବଂଧିକମାନେ ପରୋକ୍ଷରେ ଆମ ପାଠକମାନଙ୍କୁ ଯେଉଁ ସାମାଜିକ-ସମସ୍ୟାର ଚିତ୍ରଛବି ଯୋଗାଇ ଦେଇଛନ୍ତି; ତାହାର ଅନ୍ତଃନିଶ୍ୱାସ ପଣଟି ଗାନ୍ଧିବାଦୀ ସାମାଜିକତା ଓ ଆଦର୍ଶବାଦ ବ୍ୟତୀତ ଅନ୍ୟକିଛି ନୁହେଁ।

ସ୍ୱାଧୀନତୋତ୍ତର ଓଡ଼ିଆ ପ୍ରବଂଧ ସାହିତ୍ୟର ଅନ୍ୟ ଏକ ବିଶେଷ ଆଖିଦୃଶିଆ ବିଶେଷତ୍ୱ ହେଉଛି-ଭାବୋଦ୍ଦୀପନାମୟ ଜୀବନ ସୌନ୍ଦର୍ଯ୍ୟର ପରିପ୍ରକାଶ। ମହାପାତ୍ର ନୀଳମଣିସାହୁ, ଚନ୍ଦ୍ରଶେଖର ରଥ, ଚିତ୍ତରଂଜନ ଦାସ, ମନୋଜଦାସଙ୍କ (ପୂର୍ବରୁ ନିତ୍ୟାନନ୍ଦ ମହାପାତ୍ର, ବାମାଚରଣ ମିତ୍ର, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଗୋପୀନାଥ ମହାନ୍ତି ପ୍ରମୁଖ) ଭଳି ପ୍ରାବନ୍ଧିକଙ୍କ ପ୍ରବଂଧ କଳାର ଜଗତରେ ପରିଭ୍ରମଣ କରିବାବେଳେ ଭାବଦର୍ଶୀ ପାଠକ ଏକ ନାନ୍ଦନିକ-ପ୍ରଲୁବ୍ଧପଣରେ ଜୀବନପରିଚର୍ଯ୍ୟାର ଚିତ୍ରମୟ ରସମୟ ଭାବାନୁଭୂତି ସହିତ ସାକ୍ଷାତ କରିପାରିବେ। ପାଶ୍ଚାତ୍ୟ ଜଗତରେ ବସ୍ତୁବୋଧାତ୍ମକ ସୌନ୍ଦର୍ଯ୍ୟ ଭିତ୍ତିରେ ଆତ୍ମାର ଦୁଃସାହସିକ ଚିତ୍ରରୂପ ଅଙ୍କନ କରିଥିବା ଗଦ୍ୟଶିଳ୍ପୀ ଅନାତୋଲ, ଏ. ହଜର,ସିଶ୍ଲେ, କ୍ୱିଓସ୍କି ଓ ପିସାରୋଙ୍କ ପ୍ରବଂଧ ଧାରଣାବାଦୀ/ଆବେଗପ୍ରବୋଧିତ ତତ୍ତ୍ୱବାଦୀ କଳାର ଶ୍ରେଷ୍ଠତ୍ୱ ସମର୍ଥନ କରିଛି। ମାତ୍ର ଓଡ଼ିଆ ଗଦ୍ୟ ଶିଳ୍ପୀଙ୍କ ଚିନ୍ତାଧାରାରେ ବସ୍ତୁକୁ ସୁଖପ୍ରଦ ଇନ୍ଦ୍ରିୟଗ୍ରାହୀ ପ୍ରତୀତିପଣ ଦୃଷ୍ଟିରେ (Impressionistic vision) ଦେଖିବାର ଇଚ୍ଛାଶକ୍ତି ପ୍ରକାଶ ପାଇନାହିଁ। ଏମାନଙ୍କ ଦୃଷ୍ଟିଭଙ୍ଗୀ ଭାରତୀୟ-ପାରମାର୍ଥୀ-ଦର୍ଶନ ଦ୍ୱାରା ଅନୁପ୍ରାଣିତ ହୋଇଛି। ବସ୍ତୁର ବାହ୍ୟ

ସୌନ୍ଦର୍ଯ୍ୟର ନାନ୍ଦିକାର ନହୋଇ ବରଂ ଏମାନେ ବସ୍ତୁଧର୍ମ ଭିତରେ ଜୀବାତୁଶକ୍ତିର ଅଦୃଶ୍ୟ-ଆହ୍ଲାଦକୁ ଲକ୍ଷ୍ୟ କରିଛନ୍ତି । ଆତ୍ମ-ଅନ୍ୱେଷା, ମଧୁସଂଧାନୀ, ଅନ୍ତଃ-ସୌନ୍ଦର୍ଯ୍ୟଗ୍ରାହୀ ଭାବୁକପଣ ମଧ୍ୟରେ ଦୃଶ୍ୟ > ଅଦୃଶ୍ୟରେ, ବିଷୟ > ବିଷୋୟୋତ୍ତର ନାନ୍ଦନିକ ସତ୍ତାରେ ଏମାନଙ୍କ ଦ୍ୱାରା ଉତ୍ତରିତ ହୋଇଉଠିଛି ।

କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ମାୟାଧର ମାନସିଂହ, ମହାପାତ୍ର ନୀଳମଣି ସାହୁ, ଚିତ୍ତରଂଜନ ଦାସ, ଚନ୍ଦ୍ରଶେଖର ରଥ ଓ ଶ୍ରଦ୍ଧାକର ସୂପକାର ପ୍ରମୁଖଙ୍କ ପ୍ରବଂଧସଂସାରକୁ ଦୃଷ୍ଟିପାତ କଲେ ପାଠକ ବାହାରୁ ଯେଉଁ ଦାର୍ଶନିକ ବଳୟଟିକୁ ଦେଖେ ତାହା ଯେତିକି ଗଦ୍ୟାୟିତ ତାହାର ଭିତର ସୌନ୍ଦର୍ଯ୍ୟ ସହିତ ମିଶିବା ପରେ ତାହା ତଦାପେକ୍ଷା ପଦ୍ୟାୟିତଧର୍ମରେ ପାଠକଚିତ୍ତକୁ ଆବିଷ୍ଟ କରିଦିଏ । ବେଳେବେଳେ ମଧୁସଂଧାନ, ମଥୁରାନଗରୀ, ଏକଲବ୍ୟ, ବିଶ୍ୱକୁଗବାକ୍ଷ, ନୂଆପୁରୁଣା, ସମୂହ ଦୃଷ୍ଟି, ନିଜଦାୟିତ୍ୱ, ମଣିଷ ସଂପର୍କରେ ଏକ ପ୍ରବଂଧ, ପୁଷ୍ପପୁରରେ ବର୍ଷାବରଣ, ସ୍ୱର୍ଣ୍ଣାଦ୍ରିରେ ସ୍ୱପ୍ନ, ଭୟଭକ୍ତି-ପ୍ରେମଭକ୍ତି, ରଥସପ୍ତକ– ଏପରି ଅନେକ ପ୍ରବଂଧକୁ ପାଠକରିବା ପରେ ଏହି ସିଦ୍ଧାନ୍ତରେ ପହଞ୍ଚିବାକୁ ପଡିଥାଏ ଦର୍ଶନର ପ୍ରଗାଢ଼ ରହସ୍ୟ ଓ ଜଟିଳ ଗାମ୍ଭୀର୍ଯ୍ୟପଣ ଏତେ କୋମଳ-ଲଳିତ-ସରସ ପଦ୍ୟାୟିତ ଭଙ୍ଗୀରେ ସୁଖବୋଧକ ଓ ହୃଦୟବିଦଗ୍ଧକାରକ ହୋଇ କାବ୍ୟିକଛଟାରେ ଲେଖି ହୋଇପାରିନଥା'ନ୍ତା । ମହାଭାବର ଗଦ୍ୟ ଭିତରେ ପଦ୍ୟର ସ୍ରୋତାୟିତ ଗତି ବେଶ୍ ଚମତ୍କାର ଓ ବାରମ୍ବାର ତହିଁରେ ଅବଗାହନ କରିବାକୁ ପାଠକ ଲଂପଦେବାକୁ ବାଧ୍ୟ । ଗଦ୍ୟ ଓ ପଦ୍ୟ ଏଥିରେ ବିରୋଧଭାବ ବିସ୍ମରି ଚିରବଂଧୁତାରେ ଅନୁବନ୍ଧିତ ହୋଇଯାଇଛନ୍ତି । ଭୁବନେଶ୍ୱର ବେହେରାଙ୍କ ଭୁଲ୍, ମଣିଷପାଇଁ ଗୋଟିଏ ପ୍ରବଂଧ, ଭୁଷ୍ଟପଣ୍ଡିତ, ମୁକ୍ତା ଓ ଶାମୁକା, ଶରତକୁମାର ମହାନ୍ତିଙ୍କ ଏକବିଂଶ ଶତାବ୍ଦୀକୁ ଯାତ୍ରା, ଅସ୍ତିତ୍ୱବାଦର ମର୍ମକଥା ଓ ଗାନ୍ଧୀମଣିଷର ଯେକୌଣସି ଭାଗ, ସଂସ୍କୃତି ଓ ଅପସଂସ୍କୃତି, ସଦାଶିବ ମିଶ୍ରଙ୍କ ନନାଥା'ନ୍ତି, ଅର୍ଥ ଓ ଅର୍ଥାନ୍ତର, ଗୋଲକବିହାରୀ ଧଳଙ୍କ ଜାତୀୟ ଜୀବନ ଓ ସଂସ୍କୃତି, ସ୍ୱାଧୀନ ଜାତିର ନୂତନ ମୂଲ୍ୟବୋଧ, ମଣିଷ କେବେ, ଜାତି, ଯୋଜନା ଓ ବିଶେଷଜ୍ଞ ଆଦି ପ୍ରବଂଧଗୁଡିକ ସହିତ ମାନସିକ ସଂପର୍କ ପ୍ରତିଷ୍ଠା କରିବା ମାତ୍ରେ ପାଠକ ଗଦ୍ୟ ଭିତରେ ପଦ୍ୟାତ୍ମକ ଆବେଦନର ଦୃଷ୍ଟାନ୍ତ, ଗଳ୍ପାତ୍ମକ ଶ୍ରୁତିପ୍ରିୟତାର ଯୁକ୍ତିନିଷ୍ଠ ସିଦ୍ଧାନ୍ତ ଓ ନାଟକୀୟ ସଂଳାପ ଧର୍ମର ଉତ୍କଣ୍ଠାକୁ ଉପଭୋଗ କରିପାରିଥାଏ । ଉପରୋକ୍ତ ଗଦ୍ୟଶିଳ୍ପୀମାନେ ଦର୍ଶନ-ଜୀବନ-ମନନ-ସମୟ-ମୂଲ୍ୟବୋଧ-ଐତିହ୍ୟ-ପାରିପାର୍ଶ୍ୱିକବାସ୍ତବତା ଇତ୍ୟାଦି ବସ୍ତୁବୋଧଗୁଡିକୁ ନେଇ ଗଦ୍ୟରେ କାବ୍ୟମୟ ଅମୃତ ଓ ଦୁର୍ଲଭ ଭାବଭାଣ୍ଡ ନିର୍ମାଣ କରିହୁଏ ତାହା ପ୍ରମାଣିତ କରିଦେଇଛନ୍ତି । ବୌଦ୍ଧିକ ଗଭୀରତା, ଆବେଗିକ ସୌନ୍ଦର୍ଯ୍ୟ ଓ ମାନସିକ ବିଚାରବୋଧଗୁଡିକୁ ଅସତ୍ୟ ଓ ପ୍ରବଞ୍ଚନାଠାରୁ ମୁକ୍ତ କରି ଏମାନେ ନିଜ ନିଜ ଲେଖାରେ ମହାକାବ୍ୟିକ ଦୃଷ୍ଟାନ୍ତ ରୂପରେ

ପ୍ରତିପାଦନ କରିଦେଇଛନ୍ତି; ଯାହାକୁ ପାଠକରିବା ପରେ ବାସ୍ତବାୟିତ ଆଦର୍ଶର ସତ୍ୟଗୁଡ଼ିକ ଛାଣି ହୋଇ ପାଠକର ହୃଦୟରେ ପ୍ରବେଶ କରେ, ସ୍ୱଚ୍ଛ ହୋଇ ଉର୍ଦ୍ଧ୍ୱମୁଖୀନ ହୁଏ ଓ ପାଠକକୁ ଏକ ଯୁକ୍ତିନିଷ୍ଠ ଭାବନିଷ୍ଠ ପୁରୁଷାକାରସଂପନ୍ନ ଓ ସହିଷ୍ଣୁପଣର ନାରୀଭାବାପନ୍ନ ଗଭୀର ଜୀବନ ବଂଚିବାକୁଁ ଅନୁପ୍ରେରିତ କରେ। ବ୍ୟକ୍ତିଗତ ଓ ସାମୂହିକ ଜୀବନରୁ ଅଭାବବୋଧ, ନିଃସଙ୍ଗତାବୋଧ, ମନ୍ଦବୋଧ, ଅବିଚାରବୋଧ ଦୂରେଇଯାଇ ମାନସିକ ବଳିଷ୍ଠତା ପାଇଁ ଉଦାହରଣମାନ ଯୋଗାଇ ଦେବାରେ ଏମାନଙ୍କ ପଦ୍ୟାୟିତ ଗଦ୍ୟ ଆମ ପାଠକଙ୍କ ପାଇଁ ଦୁର୍ମିଳ ସୁଯୋଗ ତିଆରି କରିପାରିଛନ୍ତି– ଏହାହିଁ ଆମ ସାହିତ୍ୟର ଗୌରବ। ଏମାନଙ୍କ ଗଦ୍ୟଶୈଳୀରେ ଶବ୍ଦବି ଚିତ୍ରାତ୍ମକ ହୋଇ ଭାବକୁ ଦୃଶ୍ୟମାନତାରେ, ଦୃଶ୍ୟମାନ ବସ୍ତୁକୁ ବ୍ୟକ୍ତିପଣର ସ୍ୱାଭିମାନରେ ଓ ବ୍ୟକ୍ତିତ୍ୱବୋଧକୁ ବସ୍ତୁଧର୍ମର ସଂରୂପରେ ଦେଖାଇ ଦେଇପାରିଛି ଓ ଓଡ଼ିଆଗଦ୍ୟକୁ ବିଲକ୍ଷଣଗାମ୍ଭୀର୍ଯ୍ୟରେ ପ୍ରତିଷ୍ଠା ଦେଇପାରିଛି।

(ସାତ)

ପ୍ରବଂଧର ଅନ୍ତିମ ପର୍ଯ୍ୟାୟରେ ଓଡ଼ିଆ ପ୍ରବଂଧ ସାହିତ୍ୟର କ୍ରମୋନ୍ନତି, ଉପରେ ସମ୍ୟକ୍ ଦୃଷ୍ଟିପାତ କରାଯାଉଅଛି। କଳାତ୍ମକ ଦିଗରୁ ଓଡ଼ିଆ ସାହିତ୍ୟର ଏହି ବିଭାଗଟି ୧୮୭୩ ମସିହାରୁ ଏଯାବତ୍ ମୁଖ୍ୟତଃ ତିନୋଟି ବିଧାନକୁ ଅନୁସରଣ କରିଛି- ତଥ୍ୟାତ୍ମକ ଉପସ୍ଥାପନା, ବିବରଣୀ ସୂଚକ ଉପସ୍ଥାପନା ଓ ଦୃଷ୍ଟାନ୍ତ-ଧର୍ମୀ ଉପସ୍ଥାପନା। ଦର୍ଶନ, ଚଳନ୍ତିକା, ସାମାଜିକ ସମସ୍ୟା, ସାଂସ୍କୃତିକ ମୂଲ୍ୟବୋଦ ଆଦର୍ଶବାଦ ୧୯୪୭ ପର୍ଯ୍ୟନ୍ତ ଓଡ଼ିଆ ପ୍ରବଂଧର ପ୍ରାଣପକ୍ଷରେ ଅବଧାରିତ ହୋଇଛି। ବୟକ୍ତିକ ଆବେଗ, କାବ୍ୟିକ ଦୃଷ୍ଟିଭଙ୍ଗୀ, ମାନସିକ ବାସ୍ତବତା, ଭାବୋଦ୍ଦୀପକ ନନ୍ଦନପଣ ଓ ନବମାନବବାଦୀ ଦୃଷ୍ଟିଭଙ୍ଗୀ ସହିତ ବିଶ୍ୱମୟତା ଅବଶ୍ୟ ସ୍ୱାଧୀନତା ପରବର୍ତ୍ତୀ ପ୍ରବଂଧର ଆତ୍ମିକ ଉପାଦାନ ହୋଇଛି। ସ୍ୱାଧୀନତା ପର୍ଯ୍ୟନ୍ତ ଓଡ଼ିଆ ପ୍ରାବନ୍ଧିକ ତଦ୍‌ମୟ ଚିତ୍ତର ବଶବର୍ତ୍ତୀ ହୋଇ ସମୂହ ଦୃଷ୍ଟିପ୍ରତି ସଚେତନ ରହି ତନ୍ମୟଧର୍ମୀ ପବଂଧ ରଚନା ଉପରେ ଗୁରୁତ୍ୱ ଦେଇଛନ୍ତି। ମାତ୍ର ବ୍ୟକ୍ତିନିଷ୍ଠ ଆତ୍ମାନୁଭୂତି ମୂଳକ ମନ୍ମୟଧର୍ମୀ ପ୍ରବଂଧର ପ୍ରସାର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଲେଖନୀରେ ଭାବପ୍ରବୋଧନଧର୍ମୀ ହେବାପରେ ନିତ୍ୟାନନ୍ଦ,ଗୋପୀନାଥ ସୁରେନ୍ଦ୍ର, ଭୁବନେଶ୍ୱର ଓ ଚନ୍ଦ୍ରଶେଖରଙ୍କ ସାଧନାରେ ପ୍ରସାରିତ ଦିଗନ୍ତର ପ୍ରସଙ୍ଗ ରୂପରେ ପ୍ରତିଭାତ ହୋଇଉଠିଛି। ଅପରପକ୍ଷରେ ନୀଳକଣ୍ଠ, ଗୋପବଂଧୁ, ଗୋବିନ୍ଦ, କାଳିନ୍ଦୀଚରଣ ସାଧନା କ୍ରମେ ପ୍ରବଂଧର ସାଂସ୍କୃତିକ ପକ୍ଷଟି ସମାଜତତ୍ତ୍ୱ, ଐତିହ୍ୟଅଁାମୁଖିତା, ଆଦର୍ଶବାଦୀ ଦଁର୍ଶନ, ପାରମାର୍ଥିକ ବିଶ୍ୱାସ, ନନ୍ଦନତାତ୍ତ୍ୱିକ ବିଚାର, ଯୁକ୍ତିନିଷ୍ଠ ମୀମାଂସା, ମନସ୍ତାତ୍ତ୍ୱିକ ବାସ୍ତବତା ଆଶ୍ରିତ ହୋଇ ଚିତ୍ତରଂଜନ, ମନୋଜ, ନୀଳମଣି, ଚନ୍ଦ୍ରଶେଖର, ରାଧାନାଥ ଓ ସଦାଶିବଙ୍କ ତର୍କ କଳ୍ପନାର ଖେଳରେ ଉଜ୍ଜୀବିତ ହୋଇଉଠିଛି। ଦର୍ଶନ, ମନନ, ଆବେଗ ଓ ଯୁକ୍ତିନିଷ୍ଠତା ଦିଗରୁ

ବିଜ୍ଞାନସମ୍ମତ ଗ୍ରାହ୍ୟବୋଧରେ ଶରତକୁମାର ମହାନ୍ତିଙ୍କ ପ୍ରବଂଧ ଗୁଣାତ୍ମକ ପ୍ରସଙ୍ଗର ନିଦର୍ଶନ ହୋଇପାରିଛି ।

୧୮୭୩ରୁ ୧୯୨୦ ମସିହା ମଧ୍ୟରେ ଆଦର୍ଶବାଦୀ ଚିନ୍ତାଧାରା, ନୈତିକ ଜୀବନ ଶୃଙ୍ଖଳା କର୍ମବାଦୀ ଚିନ୍ତାଧାରା, ଧର୍ମବୋଧ, ସାମାଜିକ ସଂସ୍କାର ଓ ସାମୂହିକ କଲ୍ୟାଣବୋଧର ପ୍ରସଙ୍ଗ ଓଡ଼ିଆ ପ୍ରବଂଧର ବିଷୟବସ୍ତୁକୁ ଆବୋରି ବସିଛି । ରାଧାନାଥ-ମଧୁସୂଦନ-ବିଶ୍ୱନାଥ-ଫକୀରମୋହନ-ଗଙ୍ଗାଧର-ସାଧୁଚରଣ-ମୃତ୍ୟୁଞ୍ଜୟ-ରେବାରାୟ ପ୍ରମୁଖଙ୍କ ପ୍ରବଂଧ ଏ କ୍ଷେତ୍ରରେ ଦୃଷ୍ଟାନ୍ତଧର୍ମୀ । ୧୯୨୦ରୁ ୧୯୩୦ ମସିହା ମଧ୍ୟରେ ନୀତିବାଦୀ ଜୀବନଦର୍ଶନ, ତ୍ୟାଗ-ଦୟା-କ୍ଷମା-କରୁଣା-ସମବେଦନା-ସମବ୍ୟଥୀ ପଣର ଆଦର୍ଶବାଦ, ଜାତୀୟ ସ୍ମୃତିଚାରଣ ଇତ୍ୟାଦି ପ୍ରସଙ୍ଗ ଗୋପବଂଧୁ,ନୀଳକଣ୍ଠ, ଜଳନ୍ଧର, ବାସୁଦେବ, ଚିନ୍ତାମଣି ଓ କୃପାସିନ୍ଧୁ, ପ୍ରମୁଖଙ୍କ ପ୍ରବଂଧରେ ବିକସିତ ହୋଇଉଠିଛି । ବସ୍ତୁନିଷ୍ଠ ଦୃଷ୍ଟିଭଙ୍ଗୀରେ ପ୍ରବଂଧକୁ ସାମାଜିକ ମୂଲ୍ୟବୋଧକାରକ ଉଦ୍ଦେଶ୍ୟ ଉପରେ ଏଯାବତ୍ ପ୍ରାବଂଧିକମାନେ ପ୍ରତିଷ୍ଠା ଦେଇ ଆସିଛନ୍ତି । ମାତ୍ର ଶଶିଭୂଷଣ ଓ ମୋହିନୀ ମୋହନ ଏ କ୍ଷେତ୍ରରେ ପ୍ରତିମୂଲ୍ୟବୋଧର ସଂସ୍ଥାପନ କରି ମନ୍ମୟଧର୍ମୀ ଆବେଗ ପ୍ରବୋଧିତ ଚିତ୍ତବୃତ୍ତିରେ ଜୀବନ ଓ ଜଗତକୁ ରୂପାୟନ କରିଛନ୍ତି । ଶଶିଭୂଷଣ ପ୍ରକୃତିବାଦୀ ଦୃଷ୍ଟିଭଙ୍ଗୀ ଓ ଭାବବାଦୀ ବିଚାରବତ୍ତା ବଳରେ ବ୍ୟକ୍ତିନିଷ୍ଠ ପ୍ରବଂଧ କଳାର ଭିତ୍ତିସ୍ଥାପନ କରିଥିବାବେଳେ ମୋହିନୀ ମୋହନ ବ୍ୟକ୍ତିବାଦୀ ସ୍ୱାଧୀନତାର ଦୃଷ୍ଟିଭଙ୍ଗୀକୁ ନବନ୍ୟାୟିକ ଦର୍ଶନରେ ପ୍ରକାଶ କରି ପ୍ରବଂଧ କଳାକୁ ଚିନ୍ତାନିଷ୍ଠତାର ଗାମ୍ଭୀର୍ଯ୍ୟ ପ୍ରଦାନ କରିଛନ୍ତି । ୧୯୩୦ରୁ ୧୯୪୭ ମଧ୍ୟରେ ଶଶିଭୂଷଣ, ନୀଳକଣ୍ଠ ଓ ମୋହିନୀମୋହନଙ୍କ ପ୍ରାବଂଧିକ-ମନୋଭୂମି ପ୍ରତି ସଚେତନ ରହି ବ୍ୟକ୍ତିନିଷ୍ଠତା ଓ ବସ୍ତୁନିଷ୍ଠତାର ମଧୁର ସମବାୟ ସାଧନ ଭିତ୍ତିରେ ଦର୍ଶନ, ମନସ୍ତତ୍ତ୍ୱ,ରହସ୍ୟ ତତ୍ତ୍ୱ, ସମାଜତତ୍ତ୍ୱ, ଐତିହ୍ୟବୋଧ, ମାନବବାଦୀ ଆଦର୍ଶବାଦ, ଉତ୍ତରିତ ଜୀବନ ବିଶ୍ୱାସ ଇତ୍ୟାଦିକୁ ଏକ ଦ୍ରବଣୀୟ ସୃଜନଶୀଳ-ମାନସିକତାର ପାତ୍ରରେ ମିଶାଇ ଓଡ଼ିଆ ପ୍ରବଂଧ ସାହିତ୍ୟ ଭାରତୀୟ ସାହିତ୍ୟ ପରିପ୍ରେକ୍ଷୀରେ ଉଚ୍ଚାଙ୍ଗ ସୋପାନରେ ଅଧିଷ୍ଠିତ ହୋଇଛି । ରତ୍ନାକର ପତି, ବ୍ରଜବିହାରୀ ମହାନ୍ତି, ବିପିନବିହାରୀ ରାୟ, କାଳିନ୍ଦୀଚରଣ, ମାୟାଧର ମାନସିଂହ ଓ ବିରୁପାକ୍ଷଙ୍କ ଅବଦାନ ଏହି ପର୍ଯ୍ୟାୟରେ ସ୍ମରଣୀୟ । ସମକାଳୀନ ବାସ୍ତବତା ଓ ପ୍ରାସଙ୍ଗିକ ଜୀବନବଳୟର ତଥ୍ୟବୋଧ ଓ ତାର ବ୍ୟଂଜନାତ୍ମକ ରୂପାୟନ ଦିଗରୁ ପ୍ରବଂଧ ଏହି ସମୟରେ ଗୋପାଳଚନ୍ଦ୍ର ଓ ଗୋବିନ୍ଦଚନ୍ଦ୍ରଙ୍କ ସାଧନାକୁ ଆଶ୍ରୟ କରି ଲଳିତ ନିବନ୍ଧର ମାନ୍ୟତାରେ ପାଠକର ଚିତ୍ତବୃତ୍ତିକୁ ରମ୍ୟବୋଧାତ୍ମକ ପ୍ରକ୍ରିୟାରେ ସମକାଳ ପ୍ରତି ପ୍ରତିକ୍ରିୟାଶୀଳ କରି ଗଢ଼ିତୋଳିଛି ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ ପ୍ରାବଂଧିକମାନେ ନିଜସ୍ୱ ଆତ୍ମ ପରିଚିତି ଓ ମାଟିପଣର ନିରୁତା ମୂଲ୍ୟବୋଧକୁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ୱୀକୃତି ଦେବାକୁ ଆସ୍ଥାବାଦୀ

ହୋଇ ଗୁଣାତ୍ମକ ପ୍ରବଂଧ-କଳାର ଅଭିବୃଦ୍ଧି ପାଇଁ ପ୍ରୟାସମନା ହୋଇଛନ୍ତି। ୧୯୭୦-୮୦ ପର୍ଯ୍ୟନ୍ତ ଏହି ମନୋଭାବ ମାତ୍ର ହାତଗଣତି ସଂଖ୍ୟା ଭିତରେ ପ୍ରାବଂଧିକଙ୍କ ଆସନକୁ ସୀମିତ ରଖିଛି। କବିତା ଓ ସାହିତ୍ୟ ସମାଲୋଚନା (ଅଧ୍ୟାପକୀୟ ବୃତ୍ତି, ଆଫିସିକ ଉପାଧି ଭିତ୍ତିରେ) ପରିମାଣାତ୍ମକ ଦିଗରୁ ସୌଭାଗ୍ୟର ବିଷୟଭାବେ ବହୁଗୁଣିତ ହୋଇଥିବାବେଳେ ପ୍ରବଂଧ ସାହିତ୍ୟ ଭୂମିକଂପରୁ ଆତ୍ମରକ୍ଷା କରୁଥିବା ନିକୋବର ଦ୍ୱୀପପୁଂଜର ମୂଳ ଅଧିବାସୀଙ୍କ ପରି କ୍ଷୟମୁଖୀ ହେବାର ବ୍ୟାକୁଳ କାରଣର ବିଷୟ ହୋଇପଡ଼ିନାହିଁ କି ? ତଟସ୍ଥ ଦୃଷ୍ଟିରେ ଦୃଶ୍ୟମାନ ବାସ୍ତବତା, ସମକାଳୀନ ମାନବୀୟବୃତ୍ତି-ପ୍ରବୃତ୍ତି-ଅଭ୍ୟାସ ଓ ପ୍ରାରବ୍ଧ ମୂଲ୍ୟବୋଧଗୁଡ଼ିକୁ ଅନ୍ତଃଭାବ-ପ୍ରବୋଧନଧର୍ମୀ ଶାଣିତ ବ୍ୟଂଜନାର ରମ୍ୟଇଙ୍ଗିତରେ ଆମମାନଙ୍କୁ ୧୯୬୫ ପର୍ଯ୍ୟନ୍ତ ଦେଖାଇ, ଚିହ୍ନାଇ ଓ ସେସବୁସହିତ ମିଶାଇ ଆସିଥିବା ମୁକ୍ତମନା ଓ ଗମ୍ଭୀର ଭାବଦର୍ଶୀ ପ୍ରାବଂଧିକ ହରେକୃଷ୍ଣ, କୃଷ୍ଣଚନ୍ଦ୍ର, ଭୁବନେଶ୍ୱର, ସୁରେନ୍ଦ୍ର, ଗୋଲୋକବିହାରୀ, ସତ୍ୟନାରାୟଣ,(ସମସ୍ତେ ସ୍ୱର୍ଗତ, ମାତ୍ର ସ୍ମରଣୀୟ) ନିତ୍ୟାନନ୍ଦ,ନୀଳମଣି, ଚିତ୍ତରଂଜନ,ମନୋଜ, ଚନ୍ଦ୍ରଶେଖର,ଶରତକୁମାର ପ୍ରମୁଖଙ୍କ ସୃଷ୍ଟି ଚିନ୍ତାବିମର୍ଶ ଅବକାଶକୁ ମୁଗ୍ଧ-ବିମୁଗ୍ଧ-ଭାସମାନ ସୌନ୍ଦର୍ଯ୍ୟରେ ଭାଷ୍ୟମାନ କରିବାର ନିଷ୍ଠାପଣ ପ୍ରତି ସଂପ୍ରତି ତରୁଣ ପିଢ଼ିର ସାହିତ୍ୟ ସାଧକ ଓ ଆନୁଷ୍ଠାନିକ ପ୍ରୋତ୍ସାହନ-ଶକ୍ତିମାନେ କେତେଦୂର ତରଳ ଶ୍ରଦ୍ଧା ଦେଖାଉଛନ୍ତି- ତାହା ହିଁ ଆଗାମୀ ପାଞ୍ଚବର୍ଷର ସାହିତ୍ୟ ସ୍ରଷ୍ଟା ସହୃଦୟମାନେ ଅପେକ୍ଷମାଣ ଡୋଳାରେ ଚାହିଁ ରହିଛନ୍ତି। ଆଗାମୀ ପାଞ୍ଚବର୍ଷ ଭିତରେ ଓଡ଼ିଆ ପ୍ରବଂଧ ପକ୍ଷପୂର୍ଣ୍ଣ କି ପକ୍ଷହୀନ ହେବ ତାହା ଜଣାପଡ଼ିଯିବ। ଏଠାରେ ଗୋଟିଏ କଥା ସ୍ମରଣୀୟ ସାହିତ୍ୟକୁ ସାଂପ୍ରତିକୀ ଜ୍ଞାନ ଓ ପାରିପାର୍ଶ୍ୱିକ ପ୍ରୟୋଜନ ଭିତ୍ତିକ ବିଦ୍ୟାରେ କେବଳ ପ୍ରବଂଧ ହିଁ ପ୍ରତିଷ୍ଠିତ କରିପାରିଥାଏ। କଳାବିଦ୍ୟାରେ ଭାବ ପ୍ରବଣତା ସହିତ ବୈଷୟିକ ଜୀବନଧର୍ମର ଉପାଦାନ ଓ ଭାବବେଦନ ପ୍ରବଂଧ ହିଁ ଦେଇଥାଏ।ଏ ମୂଳ ଭାବନା ଓ ପରିଭାଷାଟିକୁ ବର୍ତ୍ତମାନ ଶବ୍ଦ କ୍ରୀଡ଼କମାନେ ବୁଝିବା ହୁଅନ୍ତୁ। ସଂପୂର୍ଣ୍ଣ ହଜିଯିବା ପୂର୍ବରୁ ପ୍ରବଂଧ ବିହନକୁ କେଉଁମାନେ ସାଇତି ରଖିବେ– ତାହା କ୍ରମଶଃ ପ୍ରଶ୍ନବାଚୀ ସୃଷ୍ଟିକରୁଛି। ନଚେତ୍ ପ୍ରବନ୍ଧ କଳାପରି ଏକ ଜାତୀୟଭାବ ପ୍ରବୋଧକ ଓ ମୂଲ୍ୟବୋଧ ସଂପନ୍ନ କଳାବିଭାଗ ଓଡ଼ିଆ ସାହିତ୍ୟର ମାନଚିତ୍ରରୁ ବିସ୍ମୃତ ହେବାର ଅଥବା କ୍ଷୀଣ ବିନ୍ଦୁରୂପରେ ଦୁର୍ଭାଗ୍ୟର ପରିଣତିଟିଏ ପାଇବାର ସଂଭାବନାକୁ ଏଡାଇ ଦିଆଯାଇ ନପାରେ।



# ସୃଜନ-କଳ୍ପ-ବିଧାନରେ ଓଡ଼ିଆ ଗୀତିକବିତା

(ଏକ)

ପ୍ରତିପାଦନୀୟ ଶୀର୍ଷକଟି ପାଞ୍ଚୋଟି ସ୍ତର ଦେଇ ପ୍ରତିବେଦନଧର୍ମୀ ହେବ। ଗୀତିକବିତାର କଳାକଳ୍ପ-ବିଧାନ ପ୍ରତି ଅନୁକୂଳ ମାନସ ପୋଷଣ କରାଯାଇ ଆଧୁନିକ ଓଡ଼ିଆ ଗୀତିକବିତାର ଭୌମିକ ସ୍ଥିତି, ଗୁଣାତ୍ମକ ସୌକର୍ଯ୍ୟ ଓ ଆବେଦନୀୟ ଭୂମିକା ସଂପର୍କରେ ଅନୁଶୀଳନ କରିବା ଏହି ଶୀର୍ଷକର ପ୍ରାସଙ୍ଗିକତା ହେବ। ପ୍ରତିକ୍ରିୟାଶୀଳ ପର୍ଯ୍ୟାଲୋଚନା, ସମାଲୋଚନା ଅପେକ୍ଷା ସହୃଦୟପଣର ଉପଲବ୍ଧି, କଳାକଳ୍ପନା-ସିଦ୍ଧାନ୍ତ ଅନୁସାରୀ ଅଭିମତ ଓ ଅବଧାରଣା ହେବ ଏହି ପ୍ରସଙ୍ଗର ମୁଖ୍ୟ ଉଦ୍ଦେଶ୍ୟ। ଗୀତିକବିତାର ବିଶ୍ୱମୁଖୀ ପରିଭାଷାର ମାନଦଣ୍ଡ ଓ କଳାବେଦନର ବିବର୍ତ୍ତିତ ଆଭିମୁଖ୍ୟ ଭିତ୍ତିରେ ଓଡ଼ିଆ ଗେୟପ୍ରଧାନ ଗୀତିକବିତାର ଭାବଗତ ଐଶ୍ୱର୍ଯ୍ୟ ଓ ସୃଜନ-କଳ୍ପୀୟ ବୈଚିତ୍ର୍ୟ ସଂଭରଣ ହେବ ଏହାର ମୌଳିକ ବିବେଚନାର ଉଦ୍ଦେଶ୍ୟ।

(ଦୁଇ)

ପ୍ରଥମ ସ୍ତରରେ ଚିରାୟତ କଳାବୋଧ ଓ ଜୀବନାନୁଷଙ୍ଗୀ ପରିଭାଷା ଦିଗରୁ ଗୀତିକବିତାର ପାଠକୀୟ ପ୍ରତୀତି ନିରୂପଣ କରାଯାଇପାରେ। ''ଗୀତି କବିତା ଛନ୍ଦାୟିତ ଜୀବନର ଶୁଭଗ ଶବ୍ଦାନୁରଣନ, ଯାହାର ରଚନା, ପଠନ, ଗାୟନ ଓ ଶ୍ରବଣରେ ସହୃୟର ଆଶା, ସ୍ୱପ୍ନ, ଅନ୍ତଃମନ, ବହିଃବୃତ୍ତି, କର୍ମଶୃଙ୍ଖଳା, ନକରାତ୍ମକ ଯନ୍ତ୍ରଣା ସମୂହ ସଂଗୀତମୟ ହୋଇଉଠେ।'' ଏପ୍ରକାର ପରିଭାଷା ଦିଗରୁ ସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା ଏକ କ୍ଷୀଣସୂତ୍ରୀୟ ଆବେଦନ ଧର୍ମରେ ଯେଉଁ ସୃଜନ-ପ୍ରାରୂପଟି ରସାଗ୍ରହୀ ମନରେ ସକରାତ୍ମକ ସଂଭାବନାର ମୂର୍ତ୍ତିମନ୍ତ ଓ ମୃଦୁକଳାର ଭାବମୂର୍ତ୍ତିଟିଏ ଉଦ୍‌ଭାସିତ କରିଦିଏ ଏବଂ ଯାହା ଜୀବନ, ପ୍ରାରବ୍ଧ, ବିଶ୍ୱାସ ଓ ସମୟ ବ୍ୟବସ୍ଥା ସହିତ ଛଳଛଳ ଢଙ୍ଗରେ ନିର୍ଝର ନାଦର ତାଳେ ତାଳେ ଗତିକରେ ତାହାହିଁ 'ନିର୍ମଳ-ଗୀତିକବିତା'। ସ୍ୱଚ୍ଛ ଓ ସବଳ ନନ୍ଦନବୋଧ ସହିତ ସଂଚାରଣଧର୍ମୀ ଶ୍ରେୟବୃତ୍ତିର ମିଶ୍ରଣରେ ଗୀତିକବିତାର ପରିକଳ୍ପନା ମାନବ ଜୀବନକୁ ଯୁଗ ଯୁଗଧରି ବିହ୍ୱଳ, ଉର୍ଦ୍ଧ୍ୱଗ, ଉତ୍ତାନପାଦୀୟ ଓ ସୁସ୍ଥକର ଜୀବନ ବଂଚିବାର ପ୍ରଲୁବ୍ଧ ଆକର୍ଷଣ ଦେଇଆସିଛି। ଏହି କାରଣରୁ ପ୍ରକୃତି ଜଗତର ବିସ୍ମୟକର ରହସ୍ୟ ପ୍ରତି ଅଭିଚିକୀର୍ଷୁ ବୈଦିକ ବାଣୀଗୁଡ଼ିକର ରଚୟିତା ଆର୍ଯ୍ୟଋଷିକବିମାନେ ସାମବେଦର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରି ସଂଗୀତ ସୃଜନ-ଶ୍ରବଣ-ଗାୟନକୁ 'ଜୀବାତୁଶକ୍ତି' ଭାବରେ ମାନ୍ୟତା ଦେଇଛନ୍ତି।

ଅଥର୍ବବେଦ, ସଂହିତା, କୋଷଗ୍ରନ୍ଥର ବିକାଶପରେ ଭାରତୀୟ ଭାବଶାସ୍ତ୍ରୀମାନେ ଶ୍ଲୋକ, ତନ୍ତ୍ର, ମନ୍ତ୍ର, ନାଦ, ଲୟ, ତାଳ, ଯତି, ବୃତ୍ତି, ରୀତି, ରାଗ ଓ ଗୁଣ ଇତ୍ୟାଦିର ସ୍ନାୟବିକ ତଥା ଇନ୍ଦ୍ରିୟ ଭାବ ପ୍ରବୋଧକ ଶକ୍ତିକୁ ପ୍ରତିଷ୍ଠା ଦେଇ ପଶୁ, ପକ୍ଷୀ, ବୃକ୍ଷ, ପ୍ରେତାଦିଙ୍କ ବଶୀକରଣରେ ସଂଗୀତଧର୍ମୀ ଗୀତିକାର ପ୍ରାୟୋଗିକ ଗୁରୁତ୍ୱକୁ ସମୁଦାୟମୁଖୀ କରିପାରିଛନ୍ତି। ୟୁରୋଖଣ୍ଡର ବସ୍ତୁବାଦୀ ଆଧୁନିକ ଜଡ଼ଶାସ୍ତ୍ରୀମାନେ ମଧ୍ୟ ପ୍ରମାଣ କରିସାରିଲେଣି ବୃକ୍ଷାଦି ସଜୀବମାନେ ସଂଗୀତର ସଂପର୍କରେ ଆସି ଉଦ୍ଭେଦିତ ହୋଇଉଠନ୍ତି। ମନସ୍ତତ୍ତ୍ୱବିତ୍‌ମାନେ ତ୍ରିସ୍ତରୀୟ ଚହଲାମନକୁ ସ୍ଥିର ଓ ପ୍ରସଙ୍ଗାନୁମୋଦିତ ଦୃଢ଼ତା ଦେବାପାଇଁ ସଂଗୀତ, ନୃତ୍ୟ, ଧ୍ୱନିମାଧୁର୍ଯ୍ୟ ଓ ଭାବସମ୍ବେଦ୍ୟ ଗୀତିକବିତାକୁ ମାନସିକ-ଉପଚାର ଭାବରେ ବ୍ୟବହାର କରି ମହତ ବିଶ୍ୱାସ ସୃଷ୍ଟିଶୀଳ ଭାବମୟ ଗୀତ-ସୃଜନ ହିଁ ମାନବୀୟ-ବିବେକବୋଧର ମୌଳ ନିଦାନବୋଲି ପ୍ରତିପାଦନ କରିସାରିଛନ୍ତି। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଯୁଦ୍ଧାକ୍ରାନ୍ତ ମଣିଷ ଓ ଯୁଦ୍ଧ ସଂପୃକ୍ତ ସୈନିକମାନଙ୍କର ଅନୁତାପଦଗ୍ଧ ଯନ୍ତ୍ରଣାଛନ୍ନ ମନକୁ ସ୍ୱ ସ୍ୱ ଜାତିର ଆସ୍ତିବାଚକ ବିଶ୍ୱାସ ସଂଯୁକ୍ତ ଭାବନାର ଗୀତିକା ଶୁଣାଇ ଓ ପଢ଼ାଇ ପୁନଶ୍ଚ ଅବସ୍ଥାକୁ ଅଣାଯିବାର ପ୍ରକ୍ରିୟା ବହୁ ଯୁଦ୍ଧ-ଜଡ଼ିତ ଭୂଖଣ୍ଡରେ କରାଯାଇଥିବା ନିଜର ମଧ୍ୟ ସୁଲଭ।

ସୁତରାଂ ନାଗକୁ ନାଗେଶ୍ୱରୀ, ପଦ୍ମତୋଳା ଓ ସାପୁଆର ଡମ୍ବରୁ ଚାଳିତ ହସ୍ତ-ଆଣ୍ଠୁର ମୁଦ୍ରା ଯେପରି ମିଶ୍ରିତ ଆବେଦନରେ ନୃତ୍ୟାୟିତ କରିଦିଏ, ସେହିପରି ବିଷାକ୍ତ ଓ ବିଭ୍ରଷ୍ଟ ମନକୁ ଗୀତିକବିତାର ସୃଜନ-ଅବବୋଧ ନୃତ୍ୟ-ଗୀତ-ସାହିତ୍ୟ ସମନ୍ୱିତ ଏକାନ୍ନବର୍ତ୍ତୀ କଳାଗୁଣ ଭାବରେ ବିବେକାନୁମୋଦିତ, ଆହ୍ଲାଦୋଜ୍ଜୀବିତ ଓ ଭାବମୟ ପୁନର୍ନବାରେ ଭରିଦିଏ। ସେଥିପାଇଁ ପ୍ରାଚୀନ ଗ୍ରୀକ୍ ପରଂପରାରେ ବାହ୍ୟ ଆନୁଷଙ୍ଗିକ ବାଦ୍ୟ ଯନ୍ତ୍ର 'ଲାୟାର' ସହଯୋଗରେ ଚାରଣଗାୟକ କଣ୍ଠରେ ଗାନକରା-ଯାଉଥିବା ଭାବୁକ ହୃଦୟବତ୍ତାର ଆବେଗପ୍ରବଣ 'କ୍ଷୁଦ୍ରଗୀତିକାକୁ'କୁ (ଲିରିକ୍) ଏଲିଜାବେଥଙ୍କ ସମୟରୁ ଗୋଷ୍ଠୀବଦ୍ଧ ଆଭିଜାତ୍ୟ ଭାବନାର ଆନୁଷ୍ଠାନିକ ମିଳିତ ସ୍ୱରସମ୍ବନ୍ଧୀ ଗୀତିକା (କୋରସ୍) ଠାରୁ ମହତ୍ତର କଳାସାଧନ ଭାବରେ ସମର୍ଥନ କରାଯାଇ ସମଗ୍ର ପଶ୍ଚିମ ବିଶ୍ୱରେ ଗୀତିକବିତାକୁ ''ମାନବୀୟ ଭାବପ୍ରବଣତାର ଶାଶ୍ୱତ କଳାକଳ୍ପ'' ଭାବରେ ପରିଭାଷିତ କରାଯାଇଛି। ସ୍ୱୈରବାଦୀ କାବ୍ୟାନ୍ଦୋଳନ (ରୋମାଣ୍ଟିକ କବିତା ପ୍ରସାରକାଳ) ମାଧ୍ୟମରେ ଗୀତିକବିତା 'ସ୍ୱଚ୍ଛନ୍ଦମନର ବଳଶାଳୀ ଭାବନାର ମୁକ୍ତ ଓ ସବଳିତ ପରିପ୍ରକାଶ ଭାବରେ ଏବଂ ଚିତ୍ରକଳ୍ପବାଦୀ କାବ୍ୟାନ୍ଦୋଳନ ଏହାର ପରିଚିତିକୁ ଆବେଗ, କଳ୍ପନା ଓ ସଂଗୀତମୟ ପରିସରର ଊର୍ଦ୍ଧ୍ୱକୁ ଉତ୍ତୋଳିତ କରିନେଇ ''ବାଚନିକ ଶବ୍ଦର ଗୀତିମୟତା ଭିତରେ ଅନ୍ତଃଜଗତର ସକଳ ଭାବଧାରାକୁ ଚିତ୍ରବୋଧାତ୍ମକ ରୂପାୟନ ଦେଉଥିବା ପରିମିତି କବିତା'' ଭାବରେ ଅର୍ଥଜ୍ଞାପନ କରିଛି। ଯୁଦ୍ଧୋତ୍ତର ସାହିତ୍ୟ ବ୍ୟବସ୍ଥାରେ ସ୍ଥିତିବାଦୀୟ ଉପଲବ୍ଧି ଓ ଘନବାଦୀ ଦୃଷ୍ଟିଭଙ୍ଗୀ ଭିତ୍ତିରେ ଗୀତିକବିତାରେ ମଧୁର୍ଯ୍ୟକୁ ''ଭାସମାନ ଇଙ୍ଗିତଧର୍ମ ରୂପରେ ଆକଳନ''

କରାଯାଇଛି । ବିଶିଷ୍ଟ ଚିନ୍ତାନାୟକ ନିତ୍‌ସେ ପ୍ରତ୍ୟେକ ସାହିତ୍ୟ ପ୍ରଜାତିରେ ଆବେଦନଶୀଳ ଶକ୍ତିଭାବରେ କବିତାଧର୍ମୀ ଗୀତିମୟ ଶାବ୍ଦିକତାକୁ ଗ୍ରହଣ କରିଛନ୍ତି । ଏହି ମର୍ମରେ ସେ ବିଶ୍ୱାସ କରନ୍ତି– ''ବିସ୍ମୟୋତ୍ପାଦକ ଶକ୍ତି ହିଁ ସଂଗୀତ ଏବଂ ବ୍ୟକ୍ତିର ସର୍ବୋତ୍କୃଷ୍ଟ ବଂଚିବାପଣର ଅଖଣ୍ଡ ବିଶ୍ୱାସ ପଣକୁ ନୂଆନୂଆ ବିସ୍ମୟରେ ଏହା ଉଦ୍‌ବୁଦ୍ଧ କରିଥାଏ ।'' ନୋବେଲ୍ ପୁରସ୍କାର ଅଧିକାରୀ ବିଶ୍ୱଚର୍ଚ୍ଚିତ ଗୀତିକାର ଓ୍ୱେଷ୍ଟ ଇଣ୍ଡିଜ୍‌ର କବି ଓ୍ୱାଲକଟ୍‌ଙ୍କ ମତରେ ''ଗୋଟିଏ ଜାତିର ପ୍ରାଣଧର୍ମର ସାରଲ୍ୟ ଓ ସଂସ୍କୃତିର ମହାନତା ତା'ର ସଂଗୀତ ଉଚ୍ଚାରଣରୁ ଜଣାଯାଏ; ଯାହା ପ୍ରମାଣିତ କରେ ଗୀତିକବିତା କେବଳ ଆବେଗମୟ ଗୀତର ଶବ୍ଦ-ବସାଣ-କଳା ନୁହେଁ; ଏହା ଏକ ସାଂସ୍କୃତିକ ଚେତନାର, ମାଟିପାଣି ଭିତରେ ଗତିଶୀଳ ଜୀବନ-ଯତିର ଲୟ ଓ ତାଳ ତଥା ଉତ୍‌ଥାନ ଓ ଉତ୍‌କୃଷ୍ଟତାର ଶ୍ରୁତି ସୁଖକର ଝଙ୍କାର ।'' ଷୋଡ଼ଶ ଶତାବ୍ଦୀର ସମାଲୋଚକ ଉଇଲିୟମ ଓ୍ୱେବଙ୍କ ମତରେ କ୍ଲାସିକ୍, ଏଲିଜିଆକ୍, ଅୟେମ୍ବିକ୍ ଓ ଲିରିକ୍ ଚାରିପ୍ରକାର କବିତାକଳା ମଧ୍ୟରୁ ଲିରିକ୍ ହେଉଛି ଗାନୋଚିତ ଏବଂ ବୟକ୍ତିକ ଆବେଗଗୁଡ଼ିକ ଏଥିରେ ସବୁକାଳ ପାଇଁ ଗାଇ ହୋଇଯାଇଥାଏ । ସପ୍ତଦଶ ଶତାବ୍ଦୀର ସାହିତ୍ୟଶାସ୍ତ୍ରୀ ଯୋଫ୍ରେ ଲିରିକ୍‌କୁ ଗୀତିଧର୍ମୀ କବିତା (ମ୍ୟୁଜିକାଲ ପୋଏଟ୍ରି) ଭାବରେ ପରିଭାଷିତ କରି ସମୂହ ଅବବୋଧର ପ୍ରଚଳିତ ଧାରାଠାରୁ ମୁକ୍ତ ବ୍ୟକ୍ତିବାଦୀ କଳାମାନସର ନିରୁତା ପରିପ୍ରକାଶ ଭାବରେ ଆଖ୍ୟାୟିତ କରିଛନ୍ତି । ସଂପ୍ରତି ପାଶ୍ଚାତ୍ୟ ଜଗତର ଆତ୍ମସଂଭାଷଣ ଧର୍ମୀ ଗୀତିକବିତାରେ ସାମାଜିକ-ବାହ୍ୟଧର୍ମରେ ଛଦ୍ମ ଜୀବନ ବଂଚୁଥିବା ବ୍ୟକ୍ତିର ଭାସମାନଗୁଣ, ସ୍ୱଭାବ, ବୃତ୍ତିକୁ ଇଙ୍ଗିତ କରୁଥିବା ସର୍ଜନ-ଅଭିଳାଷପଣ ପ୍ରକାଶ ପାଉଥିଲେ ମଧ୍ୟ ୟୁରୋ କବିତା ତତ୍ତ୍ୱ ଅନୁସାରେ ଗୀତିକବିତା ହେଉଛି– ( ୧ ) ବୟକ୍ତିକ ଅନୁକୃତିର ସଂକ୍ଷିପ୍ତ ଅଭିବ୍ୟକ୍ତି ( ୨ ) ଯେଉଁଥିରେ ସହଜଭାବନା, ସ୍ୱଚ୍ଛନ୍ଦକଳ୍ପନା, ତର୍କମୁକ୍ତ ଉପଲବ୍ଧି, ଇନ୍ଦ୍ରିୟବୋଧ ସମର୍ଥିତ ଉଚ୍ଚାରଣ ଗୀତିମୟ ହୋଇ ପ୍ରକାଶ ପାଇଥାଏ ଓ (୩) ଯାହା ଶ୍ରବଣେନ୍ଦ୍ରିୟ ପ୍ରତିକ୍ରିୟା ଦେଇ ଦର୍ଶନେନ୍ଦ୍ରିୟ ଦ୍ୱାରା ଲବ୍ଧ ସତ୍ୟକୁ ସଂଗୀତ ଶୈଳୀରେ ପରିବହନ କରିନେଇଥାଏ ।

ପୁନଶ୍ଚ ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରତିକ୍ରିୟା ମଧ୍ୟରେ ଉପନିବେଶବାଦରୁ ମୁକ୍ତି ପାଇଁ ବିଶ୍ୱର ବହୁସାମ୍ରାଜ୍ୟବାଦୀ ଅଧିନସ୍ଥ ଭୂଖଣ୍ଡରେ ଉଦ୍‌ବୋଧନୀ ସଂଗୀତ ଓ ଦେଶାତ୍ମବୋଧ ମୂଳକ ପ୍ରଚାରଧର୍ମୀ ଗୀତିକାର ପ୍ରସାର ଘଟିଛି । ଏହି ସମୟରେ ଦ୍ୱନ୍ଦ୍ୱାତ୍ମକ-ସାମାଜିକ-ଶ୍ରେଣୀବୋଧର ମାର୍କସୀୟ ବିଚାରକୁ ନେଇ ଶୋଷଣ ଓ ଶୋଷକ ବିରୋଧୀ ଗୀତିକା ରଚନାର ମନୋଭାବର ବିକାଶ ଘଟିଛି । ମାତ୍ର ଏହି ମନୋଭାବ ଉତ୍ତର ଉପନିବେଶବାଦୀ ବ୍ୟବସ୍ଥାରେ ଓ ପୁଂଜିବାଦୀ ଗଣତାନ୍ତ୍ରିକ ସଂସ୍କାର ପ୍ରକ୍ରିୟାର ଭୂମିଖଣ୍ଡରେ ପୂର୍ବବତ୍ ବଳିଷ୍ଠ ହୋଇ ରହିନାହିଁ । ଉଦ୍‌ବୋଧନୀ ଭାବବୋଧର ପ୍ରାସଙ୍ଗିକତାମାନ (ନୈତିକ ଜୀବନଚର୍ଯ୍ୟା, ମାନବୀୟ ଦାୟବଦ୍ଧତା, ଗଠନାତ୍ମକ ପ୍ରତିଶ୍ରୁତି, ଭୂମିବାଦୀ ଦୃଷ୍ଟିଭଙ୍ଗୀ,

ସଦିଚ୍ଛା ଓ ସହାନୁଭୂତିମୂଳକ ସମବ୍ୟଥୀପଣ, ତ୍ୟାଗପୂତ ପ୍ରଣୟବୋଧ ଇତ୍ୟାଦି) ଗୁରୁତ୍ୱ ହରାଇବସିବା ଦ୍ୱାରା ବ୍ୟକ୍ତିସ୍ୱାତନ୍ତ୍ର୍ୟମୂଳକ ନାଗରୀ ସଭ୍ୟତାର ମାନସିକତା ବୃଦ୍ଧିପାଇଛି। ଧବଳ-ଭାକ୍ତିକ-ଭଦ୍ରତା ନବସଂସ୍କାରର ଅବବୋଧ ଓ ପ୍ରକ୍ରିୟାଗୁଡ଼ିକୁ ନିୟନ୍ତ୍ରଣ କରିଛି। ଫଳରେ ସାହିତ୍ୟର ଅନ୍ୟାନ୍ୟ ବିଭାଗ ପରି ଗୀତିକବିତା ତା'ର ଲଳିତ-ମଧୁର-ଇଙ୍ଗିତଧର୍ମୀ ଆବେଗ ପ୍ରବଣତାର ମୂଳ ପରିଭାଷାରୁ ଦୂରେଇ ଯାଇଛି। ଏଥିରେ କୌତୁକହାସର ବ୍ୟଂଜନାମାନ (ଜୋକ୍/ମିମିକ୍ରି/ଫନ୍-ଆଇରନି/ପାରୋଡି/ପପ୍-ସାଟାୟାର୍/ସ୍ଲାଇସ-ପନ୍) ଚଳନ୍ତି ବାସ୍ତବତାର ରୂପାୟନ ଭାବରେ ପ୍ରକାଶ ପାଇଛି। ଅବଶ୍ୟ ଭାରତ, ମିଶର, ପାକିସ୍ତାନ, ଇରାକ, ଇରାନ, ଆଫ୍ରିକା, ଓ୍ୱେଷ୍ଟଇଣ୍ଡିଜ୍, ଜାପାନ୍ ଓ ଥାଇଲାଣ୍ଡ୍ ଇତ୍ୟାଦି ପ୍ରାରବ୍ଧ ଐତିହ୍ୟ ପ୍ରତି ବିଶ୍ୱସ୍ତ ଭୂମିଖଣ୍ଡର କେତେକ ଆଧୁନିକ ଓ ପରଂପରାବୋଧର ସମନ୍ୱୟରେ ଆସ୍ଥାବାନ ଗୀତିକାର ଅତୀତର ସ୍ମୃତିଚାରଣ ଭୌଗୋଳିକ-ଦେଶମାତୃକାର ସୌନ୍ଦର୍ଯ୍ୟକଥନ ସହ ପୂର୍ବପୁରୁଷଙ୍କ ମହିମା ବର୍ଣ୍ଣନ ମଧ୍ୟରେ ଗୀତିକବିତାର ମୌଳିକତତ୍ତ୍ୱକୁ ସଂଜୀବିତ ରଖିଛନ୍ତି। ଏଠାରେ ଉଲ୍ଲେଖଯୋଗ୍ୟ ଏହି କାରଣରୁ ଉତ୍ତର ଉପନିବେଶବାଦୀ ଓଡ଼ିଆ ଗୀତିକାରମାନେ ଲୋକ ଗୀତର ଶୈଳୀ, ପଲ୍ଲୀଚେତନାର ଲଘୁ ସଂଗୀତ, ଆଧ୍ୟାତ୍ମିକ ତନ୍ମୟଧର୍ମୀ ଅନୁଭବ ଓ ଦେଶପ୍ରୀତିମୂଳକ ଗୀତିକାମାନ ରଚନା କରିବାରେ ୧୯୮୫ ମସିହା ପର୍ଯ୍ୟନ୍ତ ଅନୁକୂଳ ମାନସ ଅଛନ୍ତି।

(ତିନି)

ଅପରପକ୍ଷରେ ଭାରତୀୟ ସାରସ୍ୱତ ପରଂପରାରେ ଗୀତିକବିତାର ଏକ ପ୍ରାଚୀନତମ ମୌଳିକ କଳାବିଧାନ ରହିଛି। ଭାରତୀୟ ଦର୍ଶନ ମର୍ତ୍ତବ୍ୟ ବଂଚିବାପଣକୁ ତିନିଗୋଟି ଦିଗରୁ ବିଚାର କରେ। ପ୍ରଥମଟି ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ମାଟିପଣ ଭିତରେ ନିରୁତା ସାମାଜିକ ପରିଧିର ଜୀବନ। ଏ ପ୍ରକାର ବଂଚିବାପଣ ବ୍ୟକ୍ତିସତ୍ତାର ସାଂପ୍ରତିକ ସମୟ, ସମାଜଶୃଙ୍ଖଳା ଓ ପ୍ରାରବ୍ଧ ସଂସ୍କାର ନିୟନ୍ତ୍ରିତ ଏକ ଦୀର୍ଘ ସୂତ୍ରୀୟ ଜୀବନ। ଏହା ପ୍ରାୟଶଃ ସମୂହଚେତନା ଉପରେ ପ୍ରତିଷ୍ଠିତ। ବ୍ୟକ୍ତିର ଆତ୍ମୋପଲବ୍ଧି ହିଁ ସ୍ୱଚ୍ଛନ୍ଦ ଓ ବିଷୟମୁକ୍ତ ଜୀବନ ପାଇଁ ତାକୁ ପ୍ରରୋଚିତ କରେ। ଏହି ବିଷୟମୁକ୍ତ, ମୋହଶୂନ୍ୟ ଆତ୍ମବୋଧ ବର୍ତ୍ତମାନ ସହିତ ଅତୀତର, ଅତୀତ ସହିତ ଭବିଷ୍ୟତର ଓ ଭବିଷ୍ୟତ ସହିତ ବର୍ତ୍ତମାନର ଯୋଗସୂତ୍ରକୁ ବିଶ୍ୱାସ କରେ ନାହିଁ। ବରଂ ମୁହୂର୍ତ୍ତ ସର୍ବସ୍ୱ ଆବେଗ ମଧ୍ୟରେ ସେ କ୍ଷଣସୂତ୍ରୀ ଜୀବନ ବଂଚିଥାଏ। ଅନ୍ୟ ଗୋଟିଏ ଜୀବନ ହେଉଛି ଭାବବାଦୀର ଜୀବନ। ଏହା ଏକ ମାନ୍ତ୍ରିକ ଆଶାବୋଧର ଆଶ୍ରାବାଡ଼ି ଉପରେ ନିର୍ଭରଶୀଳ। ନିତ୍ୟର, ଚିରାୟତସତ୍ୟର, ପରାପର ବିଚାର ଊର୍ଦ୍ଧ୍ୱରେ ସତ୍-ଚିତ୍-ଆନନ୍ଦର ଅଦୃଶ୍ୟ ଇଙ୍ଗିତ ଦ୍ୱାରା ପରିଚାଳିତ ହେଉଥିବା ପରାବୋଧର ଜୀବନ। ଭାରତୀୟ ଗୀତିକବିତା ଏହି ତ୍ରିସ୍ତରୀୟ ଭୂମିସଂଲଗ୍ନ ଅନୁଭବ ଜଗତ ମଧ୍ୟରୁ କ୍ଷଣସୂତ୍ରୀ ଓ ପରାସୂତ୍ରୀର ଜୀବନାନୁଭୂତିକୁ ଭାବସତ୍ତାରେ ଗ୍ରହଣ କରିଆସୁଛି।

ଭାବାଂଶ ସର୍ବସ୍ୱ ଗୀତିକବିତା ବା କ୍ଷଣସୂତ୍ରୀ କବିତାରେ ନିରୁତା ମାଟିପଣ ଭିତରେ ଶୃଙ୍ଗାର-ଶାନ୍ତ-କରୁଣାଦି ନବଧା-ରସର ଜୀବନ ବଂଚୁବଂଚୁ ଯେଉଁ ବଳଶାଳୀ ଭାବଟି ବୁଦ୍ଧିବତ୍ତା ଓ ମସ୍ତିଷ୍କ ସିଦ୍ଧାନ୍ତର ଯୌକ୍ତିକତା ଅପେକ୍ଷା ହୃଦୟବତ୍ତାର ଆବେଗ ଦ୍ୱାରା ପରିପୁଷ୍ଟ ହୋଇଉଠିଛି ତାହାର ଗୀତି-ବଶିଷ୍ଠ ପ୍ରକାଶ (ମୁକ୍ତକ କ୍ଷୀଣସୂତ୍ରୀ ଗୀତିକା/ଖଣ୍ଡ-କବିତା/ସଂଖ୍ୟାପଦିକା ଭାବରେ ଭାରତୀୟ ବାଙ୍‌ମୟ ପରଂପରାରେ ଗୀତିକବିତାର ଅପର ସମାଖ୍ୟା ପ୍ରଚଳିତ) ଉପରେ ଭାରତୀୟ ଗୀତିକବି ଗୁରୁତ୍ୱାରୋପ କରିଆସିଛନ୍ତି। ଆନନ୍ଦବର୍ଦ୍ଧନ, ରୁଦ୍ରଟ, ରାଜଶେଖର, କୁନ୍ତଳା ମମ୍ମଟ, ବିଶ୍ୱନାଥ, ଗୋପୀନାଥ ପ୍ରମୁଖ ଭାରତୀୟ ଆଲଙ୍କାରିକମାନଙ୍କ ବିଚାରରେ ଗୀତିକବିତା ହେଉଛି–

–ଖଣ୍ଡିତ ଚିତ୍ତାବୃତ୍ତିର ମୁକ୍ତକଳା ବା ମୁକ୍ତକ।

–ସଂଖ୍ୟାଶ୍ରିତ ସ୍ୱଳ୍ପାୟୁ ବିଶିଷ୍ଟ (କ୍ଷୁଦ୍ରପରିସର ଅର୍ଥରେ) ଗୀତିକା।

–କ୍ଷଣସୂତ୍ରୀ ଲଳିତ ପଦାବଳୀ।

–ପୂର୍ଣ୍ଣାଙ୍ଗ ରସାନୁଭୂତି (ଭାବ-ବିଭାବ-ଅନୁଭାବ-ସଂଚାରୀଭାବ ସମନ୍ୱିତ) ମଧ୍ୟରୁ ଏକକ ରସ ନିବିଡ଼ ଚିତ୍ତାବସ୍ଥା ବା ପ୍ରବୃତ୍ତି ଲଳିତ ବାଣୀଭଙ୍ଗୀର ଆଶ୍ରୟରେ ମଧୁର ଇଙ୍ଗିତ ଧର୍ମରେ ରୂପପାଇଥାଏ।

–ଏକ-ରସର ଏକ ଅବସ୍ଥା ପ୍ରତିପାଦ୍ୟ ଉଦ୍ଦେଶ୍ୟ ହୋଇଥିବା ଏକ ରାଗର ଭାବାନୁକୂଳ ପ୍ରୟୋଗ/ପରିବେଷଣ ଏଥିରେ ସଂଭବ ହୋଇଥାଏ।

–ବହିର୍ଜଗତର ଭାବନାନୁସାରୀ ଉପମା ମାଧ୍ୟମରେ କବିଜ ଚିତ୍ତବୃତ୍ତି (ଭିନ୍ନ ଅର୍ଥରେ ଅନ୍ତର୍ଜଗତର ଉପଲବ୍ଧି) ପ୍ରକାଶ ପାଉଥିବାରୁ ଏହା ଖୁବ୍ କମ୍ କାଳ ମଧ୍ୟରେ ସହୃଦୟଙ୍କୁ ତଟସ୍ଥ-ନିକ୍ଷେବୀରେ ରୂପାନ୍ତରିତ କରିଦିଏ।

–ଅଗ୍ନିପୁରାଣଙ୍କ ବିଚାରରେ ମୁକ୍ତକ ହେଉଛି – ଏକକ ରାଗାଶ୍ରିତ, ଚମତ୍କାର ଗୁଣାବଳୀରେ ମଣ୍ଡିତ ସ୍ୱଳ୍ପପାଦ ବିଶିଷ୍ଟ ଏକଭାବର ପଦରଚନା।

–ରୁଦ୍ରଟଙ୍କ ମତରେ ପୂର୍ବାପର ପ୍ରସଙ୍ଗ ରହିତ ନିର୍ଦ୍ଦିଷ୍ଟ ବୃତ୍ତିର ଗୀତିମୟରୂପ ହେଉଛି ମୁକ୍ତକ।

–ଆଲଙ୍କାରିକ ଗୋପୀନାଥଙ୍କ ଦୃଷ୍ଟିରେ ସରଳ ଭାବର ସଂଖ୍ୟାଶ୍ରୟୀ ପଦ୍ୟରୂପ ହେଉଛି ଖଣ୍ଡକାବ୍ୟ (ଗୀତିକବିତା)।

ନନ୍ଦନଶାସ୍ତ୍ରର ଉପରୋକ୍ତ ପରିଭାଷା ସହିତ ସୂତ୍ରାୟିତ ସମ୍ବନ୍ଧ ରକ୍ଷାକରି ବିଶେଷ ଭାବରେ ମଧ୍ୟଯୁଗୀୟ ଗୋଷ୍ଠୀ/ସଂପ୍ରଦାୟ-ଚେତନାଶ୍ରିତ ଧର୍ମଧାରାର ଭାବୁକମାନେ ଏବଂ ବିଳାସପ୍ରିୟ ଦରବାରୀୟ ନୃତ୍ୟ-ସଂଗୀତ ପରଂପରାର ରସଭୋକ୍ତାମାନେ ସମୂହଚେତନାକୁ

ଉଦ୍‌ବୋଧିତ, ଉଚ୍ଚାଟିତ, ଆନ୍ଦୋଳିତ ଓ ପ୍ରଲୁବ୍ଧ କରୁଥିବା ଗୀତିକା ବା ସଂଗୀତ-ପଦୀମାନ ରଚନା କରିଛନ୍ତି । ଏହି କାରଣରୁ ଗୀତଗୋବିନ୍ଦ ସଂସ୍କୃତିର ପରବର୍ତ୍ତୀ ପ୍ରସାରିତ ପର୍ଯ୍ୟାୟରେ (୧୫୦୦ରୁ ୧୮୫୦ ମସିହା ପର୍ଯ୍ୟନ୍ତ) ଓଡ଼ିଆ ଭାବମାନସ ଚଉତିଶା, ଚୌପଦୀ, କୋଇଲି, ଭଜନ, ଜଣାଣ, ସ୍ତୁତି, ମାଳିକା, ମନଃଶିକ୍ଷାମୂଳକ ଗୀତିକା, ବୋଲି, ପୋଇ, ଓଗାଳ, ମାଳଶ୍ରୀ, ଚିଟାଉଗୀତିକା ଇତ୍ୟାଦି ପଦାବଳୀ ରଚନାକୁ ଭାବପ୍ରକାଶର ମାଧ୍ୟମ ରୂପରେ ଗ୍ରହଣ କରିଛି । ଶୁଣିବା, ଗାଇବା ଓ ଜୀବନବୃତ୍ତି ନିର୍ବାହରେ ଉଦାହରଣ ଦେବାଦିଗରୁ ଏସବୁ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଛି । ଏଗୁଡ଼ିକ ମୁଖ୍ୟତଃ ସାଂପ୍ରଦାୟିକ-ଧର୍ମୀୟଚେତନାର ଉପାସ୍ୟ ଦେବାଦେବୀଙ୍କୁ କେନ୍ଦ୍ରକରି ରହିଥିବା ସମୂହ-ବିଶ୍ୱାସବୋଧ ଉପରେ ପ୍ରତିଷ୍ଠିତ । ବାରମାସୀ ଯୌବନଭାବ ପ୍ରବୋଧକ ଶୃଙ୍ଗାର ରସମୂଳକ ଭାବାବଳୀ କବିତାଗୁଡ଼ିକରେ ମଧ୍ୟ ରଚୟିତାଙ୍କ ଆବେଗ ନିଜସ୍ୱ ହୃଦୟ ବିଚାରର ପ୍ରତିକ୍ରିୟା ଅପେକ୍ଷା ସାମୂହିକ ଚେତନା ଦ୍ୱାରା ନିର୍ଦ୍ଦିଷ୍ଟ ରସାବେଗ ଦ୍ୱାରା ବିକସିତ ହୋଇଉଠିଛି । ତଥାପି ମନବୋଧ ଚଉତିଶା, ବର୍ଷାଭାବନା ଚଉତିଶା, ଉପେନ୍ଦ୍ରଭଂଜଙ୍କ ଶୃଙ୍ଗାର ରସାବୋଧଧର୍ମୀ ଗୀତିକା, କବିସୂର୍ଯ୍ୟଙ୍କ ଇଂଗିତାତ୍ମକ ସଂଗୀତ ଓ ସର୍ପଜଣାଣ, ଉଦ୍ଧବ ଚଉତିଶା, କାନ୍ତକୋଇଲି, ଶ୍ରୀରାମ କୋଇଲି, ଜେମାମଣି ଚିଟାଉ, ବନମାଳୀ- ବରକିଶୋର-ସାରିଆଙ୍କ ରଚିତ ସ୍ୱାଭିମାନଭରା ଜଗନ୍ନାଥଜଣାଣର ବୟକ୍ତିକ ଭକ୍ତିମତ୍ତା ଭିତରେ ନୈର୍ବ୍ୟକ୍ତିକ ସମୂହ-ଅବବୋଧ ଅପେକ୍ଷା ବ୍ୟକ୍ତିନିଷ୍ଠ ମନ୍ମୟତା ସ୍ୱଚ୍ଛନ୍ଦ ରୂପ ପାଇଥିବାର ଲକ୍ଷ୍ୟ କରାଯାଇପାରେ (ଏସବୁ କେତୋଟି ନମୁନାମାତ୍ର) ।

ମାତ୍ର ବର୍ହିଭାବନାର ଅନ୍ତର୍ମୁଖୀକରଣ ସଂଗୀତ ଓ ମନନଶୀଳ ଆତ୍ମାନୁଭୂତିର ମଧୁର ଗୀତିମୟ ରୂପାୟନ ଭିତ୍ତିରେ ଯଥାର୍ଥ ଗୀତିକବିତାର ଅୟମାରମ୍ଭ ଘଟିଛି ଉପନିବେଶବାଦୀ ଶିକ୍ଷା-ସଂସ୍କୃତି-ସାହିତ୍ୟ ପ୍ରଭାବ ସୂତ୍ରରେ ୧୮୭୬ ମସିହାରେ ରାଧାନାଥ ଓ ମଧୁସୂଦନଙ୍କ ମିଳିତ ଉଦ୍ୟମରେ ପ୍ରକାଶିତ 'କବିତାବଳୀ' ଭିତରେ । ପରବର୍ତ୍ତୀ କାଳରେ ପ୍ରକାଶିତ ଗୋବିନ୍ଦ ରଥଙ୍କ କବିତା କଳାପ (୧୮୮୫) ଲାଲା ରାମନାରାୟଣଙ୍କ କବିତା ସଂଗ୍ରହ (୧୮୮୮), ମଧୁସୂଦନଙ୍କ କୁସୁମାଞ୍ଜଳି, ବସନ୍ତ ଗାଥା, ଛାନ୍ଦମାଳା, ଗଙ୍ଗାଧରଙ୍କ ଅର୍ଘ୍ୟଥାଳି, ଫକୀରମୋହନଙ୍କ ପୁଷ୍ପମାଳା, ଉପହାର, ନନ୍ଦକିଶୋରଙ୍କ ନିର୍ଝରଣୀ, ପଲ୍ଲୀଚିତ୍ର, ପଦ୍ମଚରଣଙ୍କ ପଦ୍ମପାଖୁଡ଼ା, ଗୋଲାପଗୁଚ୍ଛ, ଲକ୍ଷ୍ମୀକାନ୍ତଙ୍କ ଜୀବନ ସଂଗୀତ, ଗୋପବଂଧୁଙ୍କ କାରାକବିତା, ଗୋଦାବରୀଶଙ୍କ କିଶଳୟ ଓ କୁନ୍ତଳା କୁମାରୀଙ୍କର ଉଚ୍ଛ୍ୱାସ, ଅର୍ଚ୍ଚନା ଇତ୍ୟାଦି ବହୁଚର୍ଚ୍ଚିତ କଳାକୃତିଗୁଡ଼ିକ ଓଡ଼ିଆ କବିତା ସାଧନାକୁ ଗୀତିକବିତାମୁଖୀ କରିଦେଇଛି । ନିରୁତା ବିଭୁପ୍ରୀତି, ରୋମାଣ୍ଟିକ୍ ରହସ୍ୟବାଦ, ପ୍ରକୃତିପ୍ରବଣତା, ଐତିହ୍ୟଭାବଦ୍ୟୋତକ ରୋମାଣ୍ଟିକ ଚେତନା, ସ୍ୱପ୍ନ ପ୍ରବଣ ପ୍ରଣୟାନୁଭୂତି, ମାନବୀୟ ସହାନୁଭୂତି, ଗ୍ରାମ୍ୟାନୁରକ୍ତି, ମାଟି-ବିଦଗ୍ଧ-ଉପଲବ୍ଧି ଓ ଅଚରିତାର୍ଥ ବାସନାଗର୍ଭକ ବିଷାଦ ଇତ୍ୟାଦି ବିଷୟାବେଗ

ଗୀତିକବିତାର କଳ୍ପନା-ପରିସରଭୁକ୍ତ ହୋଇଯାଇଛି । ଯେଉଁ ତିନୋଟି ବିଷୟ କାବ୍ୟ ପ୍ରାଧାନ୍ୟକୁ ଭାଙ୍ଗି ଦେଇ ଗୀତିକବିତାକୁ ବଳିଷ୍ଠ ଓ ଦୃଶ୍ୟମାନ ତଥା ସାରସ୍ୱତ ସାଧନାର ଶ୍ରେଷ୍ଠତମ ମାଧ୍ୟମ /କାରୟିତ୍ରୀ କଳ୍ପନାର ମହତ୍ତର ଉପାୟ ରୂପରେ ପ୍ରତିଷ୍ଠା ଦେଇଛି ତାହା ହେଉଛି–

(କ) ଭାରତୀୟ ଜୀବନ ବିଶ୍ୱସ୍ତ ଆଭିମୁଖ୍ୟଟି ହେଉଛି ପାରମାର୍ଥିକ ଧର୍ମୀୟ ଚେତନା; ଯାହା ଏହାକୁ ଭାବବାଦୀ କରିଛି । ମାତ୍ର ଅଭିଜାତ ବର୍ଗର ମାନକ-ବିଧାନ ଦ୍ୱାରା ନିୟନ୍ତ୍ରିତ ଧର୍ମଚେତନା ସାଧାରଣ ଜୀବନ ପ୍ରତି ବାଧକ ଓ ଶୋଷକ ହୋଇଆସିଛି । ଉପେକ୍ଷିତ ଶୁଦ୍ରବୋଧ ଏ ପ୍ରକାର ଧାରଣା ଓ ବିଧାନ ବିପକ୍ଷରେ ଅନେକ ପର୍ଯ୍ୟାୟରେ ପ୍ରତିକ୍ରିୟା ପ୍ରକାଶ କରିଛି; ଯାହା ଜୈନ, ବୌଦ୍ଧ, ତନ୍ତ୍ର, ନାଥ, ଶାକ୍ତ ଓ ପରେ ପ୍ରଚ୍ଛନ୍ନ ବୌଦ୍ଧରୂପୀ ପଞ୍ଚସଖା ଅବବୋଧ ଏବଂ ଶୂନ୍ୟ-ନିରାକାର ବ୍ରହ୍ମ ଉପାସନାବାଦୀ ଅଲେଖ ଇତ୍ୟାଦି ଧର୍ମସଂପ୍ରଦାୟର ବିକାଶ ସାଧନର ମାର୍ଗକୁ ସହଜ ଓ ଲୋକାଭିମୁଖୀ କରିଛି । ଏହି ପ୍ରକ୍ରିୟାର ଏକ ଉଚ୍ଚାଙ୍ଗ ଗୀତିମୟ କଳାବୋଧ ୧୮୬୫ରୁ ୧୮୯୨ ମସିହା ମଧ୍ୟରେ ଭୀମଭୋଇଙ୍କ (ଅଲେଖଧର୍ମ ତତ୍ତ୍ୱ ଓ ଦର୍ଶନ ଆଧାରିତ) ଜଣାଣ, ଭଜନ, ସ୍ତୁତି, ସଂହିତା ଗୀତିକା ଓ ଚଉତିଶା ଭିତ୍ତିରେ ସାଧାରଣ ବର୍ଗର ଭକ୍ତିଭାବନାରେ ପ୍ରସାର ଲାଭ କରିଛି । ମାନବବାଦୀ ସହାନୁଭୂତି, ଜୀବନ-ପ୍ରକୃତି-ଈଶ୍ୱରଙ୍କୁ ଏକୀଭୂତ କରିବାର ମହାନୁଭବ ଦର୍ଶନ, ମାନବ-କଲ୍ୟାଣ-ବିଶ୍ୱସ୍ତ ବଳିଷ୍ଠ ଉଚ୍ଚାରଣ ଆଦି ନବୀନ ଓ ମହତ୍ତର ଉପଲବ୍ଧିମାନଙ୍କୁ ଗୀତିକାମାନଙ୍କରେ ପ୍ରତିଫଳନ କରି ଭୀମଭୋଇ ଯେଉଁ ଧାର୍ମିକ-ସଂଗୀତ-ସାହିତ୍ୟର ପ୍ରସାର ଓ ପ୍ରଚାର କରିଥିଲେ (ଓଡ଼ିଆ ନଥିବା ଓଡ଼ିଶା-ଖଣ୍ଡରେ ରହି) ତାହା ଓଡ଼ିଆ ସାହିତ୍ୟ ଅନୁରାଗୀମାନଙ୍କୁ ଦୀର୍ଘସୂତ୍ରୀ କାଳ୍ପନିକ କାବ୍ୟଧାରାରୁ କ୍ଷଣସୂତ୍ରୀ ଅଥଚ ତୀବ୍ର ଆବେଦନଧର୍ମୀ ଗୀତିକବିତାର ରଚନା ପ୍ରକ୍ରିୟା ଦିଗକୁ ଆକର୍ଷି ଆଣିପାରିଛି । ଏବେବି ଭୀମଭଜନର ଭୀମ-ପ୍ରସାର ଶ୍ରୋତା/ଗାୟକ/ ଗ୍ରାହକଙ୍କର ଚିତ୍ତବୃତ୍ତିକୁ ଭକ୍ତିବୋଧ+ମାନବିକତା+ଗମ୍ଭୀର ସ୍ୱରଝଙ୍କାରରେ ବିସ୍ମୟ-ବିମୁଗ୍ଧ କରିରଖିଛି ।

(ଖ) ବ୍ରାହ୍ମବାଦୀ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଜୀବନଦେବତାବାଦ କୈନ୍ଦ୍ରିକ (ରୋମାଣ୍ଟିକ ରହସ୍ୟବାଦୀ) ଗୀତିକବିତାର ବିଶ୍ୱବ୍ୟାପୀ ଆଦର ଓ ସମ୍ମାନ ସହିତ ଓଡ଼ିଶାର ଗୀତିକବି ମଧୁସୂଦନଙ୍କ ଋଷିକ ଗୀତିଭାବନାକୁ ରବୀନ୍ଦ୍ରଙ୍କର ହୃଦୟ-ଉଲ୍ଲାସକ ମାନ୍ୟତା ଏବଂ ପରେ ପରେ ଗୀତାଂଜଳିର ସଂଗୀତ ମୁଖର ଭକ୍ତିବାଦୀ ରହସ୍ୟମୂଳକ ଜୀବନଦର୍ଶନ ପ୍ରଭାବରେ ସର୍ବ ଭାରତୀୟ ସ୍ତରରେ ବିକାଶଲାଭ କରିଥିବା ରୋମାଣ୍ଟିକ ଗୀତିକବିତାର ପ୍ରାବଲ୍ୟ ସହିତ ସମୀଭୂତ ହେବାର ମାନସିକତା ଓଡ଼ିଆ କବିତାକୁ ଗୀତିପରଂପରାର ସ୍ୱାଭିମାନରେ ପରିଚିତି ଦେବାକୁ ପ୍ରୋତ୍ସାହିତ କରିଛି । ଏହି ପ୍ରୋତ୍ସାହନର ତରଙ୍ଗାୟିତ କଂପନକୁ ଲକ୍ଷ୍ମୀକାନ୍ତଙ୍କ ଜୀବନସଂଗୀତ, ପଦ୍ମଚରଣଙ୍କ ପଦ୍ମପାଖୁଡା, ଗୋପବଂଧୁଙ୍କ

କାରାକବିତା, ନନ୍ଦକିଶୋରଙ୍କ ନିର୍ଝରଣୀ, କୁନ୍ତଳା କୁମାରୀଙ୍କ ଅଂଜଳି, ଅର୍ଚ୍ଚନା, ସବୁଜପନ୍ଥୀଙ୍କ ସବୁଜ କବିତା ଓ ସବୁଜ ସମକାଳୀନ ସ୍ୱତନ୍ତ୍ରା-ତାଳ-ନିନାଦକ ମାୟାଧର, ସଚ୍ଚିଦାନନ୍ଦ ଓ ବିନୋଦଙ୍କ 'ଧୂପ, ପୂର୍ଣ୍ଣିମା, ପାଥେୟ, ହୈମନ୍ତୀ ଆଦି ସଂକଳନ ଭିତରେ ପ୍ରତ୍ୟକ୍ଷ ଅନୁଭବ କରାଯାଇଛି। ରାଧାମୋହନଙ୍କ ସାରସ୍ୱତ କଳ୍ପନାରେ ଏହି ସ୍ପନ୍ଦନ ଅଧିକ ରସ ମୁଖର, ଆବୃତ୍ତିମୁଖର ଓ ଆଦର୍ଶମୁଖର ହୋଇଉଠିଛି।

(ଗ) ୨.୨.୧୮୯୫ ମସିହାରେ ନବସଂବାଦ ଫକୀରମୋହନଙ୍କ କବିତ୍ୱକୁ ପ୍ରାଣାବେଗର ସ୍ୱଚ୍ଛନ୍ଦ ପରିପ୍ରକାଶ ଭାବରେ ଅର୍ଥ-ନିଷ୍ଠ କରିବାଦ୍ୱାରା ଏବଂ ୧୯୦୪ ମସିହାରେ ମଧୁସୂଦନଙ୍କ କବିତ୍ୱକୁ ରାଧାନାଥ ଉର୍ଦ୍ଧାୟନର ସ୍ମରଣ ଭାବରେ ପ୍ରଶଂସା କରିବା ଫଳରେ ଓଡ଼ିଆ ପଦ୍ୟଧାରାରେ ଅନଭାବିତପୂର୍ବ ଗୀତିକବିତା ରଚନା କରିବାରେ କବିମାନେ ଅଧିକ ଧ୍ୟାନନିଷ୍ଠ ହୋଇଛଠିଛନ୍ତି। ମାତ୍ରାବୃତ୍ତ ଛନ୍ଦ, ମୁକ୍ତଛନ୍ଦ ଓ ଉପଧାକାରକ ଯତିପାତର ମୂର୍ଚ୍ଛନା ସହିତ ରବାଡମ୍ବର ଧ୍ୱନିମାତ୍ରିକ ଶବ୍ଦ-ବିନ୍ୟାସ କ୍ରମଶଃ ଲକ୍ଷ୍ମୀକାନ୍ତ, କୃଷ୍ଣ ମୋହନ, ନାରାୟଣମୋହନ, ପଦ୍ମଚରଣ ଓ ସଚ୍ଚୀଦ୍ର ପ୍ରମୁଖଙ୍କ ମାଧ୍ୟମରେ ଗୀତିକବିତା କଳାକଳ୍ପନାରେ ଅନୁସୃତ ହୋଇ ଗୋଦାବରୀଶ, କୁନ୍ତଳା, କାଳିନ୍ଦୀ, ଅନ୍ନଦା, ମାୟାଧର, ବୈକୁଣ୍ଠ, କ୍ଷେତ୍ରବର, ହରିଶ୍ଚନ୍ଦ୍ର, ବିନୋଦ, ସଚ୍ଚିଦାନନ୍ଦ, ପ୍ରାଣକୃଷ୍ଣ, ରାଧାମୋହନଙ୍କ ଲେଖନୀରେ ଗଭୀର, ଗମ୍ଭୀର, ଗୀତିଧୂରୀଣତାସଂପନ୍ନ ହୋଇଉଠିଛି। ରାମନାରାୟଣ, ଗୋପବଂଧୁ ଓ ମଧୁସୂଦନ ଦାସ ଓଡ଼ିଶାର ଐତିହ୍ୟବାଦୀ ଜାଗୃତିର ଅନ୍ୟତମ ଉଦ୍‌ବୋଧନୀ ପ୍ରେରଣା ରୂପରେ ଭଂଜ, କବିସୂର୍ଯ୍ୟ, ବୀର କିଶୋର ଦେବ, ଶାରିଆ, ଅଭିମନ୍ୟୁ, ଭକ୍ତଚରଣ, ବନମାଳୀ ପ୍ରମୁଖଙ୍କ ଗୀତିକାବ୍ୟ/ପଦାବଳୀ/ରସଗୀତଗୁଡ଼ିକୁ ପ୍ରଶଂସାସୂଚକ ସମର୍ଥନ କରିବା ଦ୍ୱାରା ଏସବୁ ଧୀରେ ଧୀରେ ପାଲା, ଦାସକାଠିଆ, ଗୋଟିପୁଅ-ନାଚ-ଗୀତ, ବାଦୀଗୀତ, ଲୋକ-ନାଚ-ଗୀତ (ଧୁଡୁକି-କେଳାକେଲୁଣୀ-ଘୋଡାନାଚ ଗୀତ-ଗୋପାଳ ଲଉଡ଼ି-ଦଣ୍ଡନୃତ୍ୟ ଇତ୍ୟାଦି ପ୍ରାରୂପରେ) ମାଧ୍ୟମରେ ଓଡ଼ିଆ ପ୍ରାଚୀନ ସଂଗୀତର ଲୋକ-ସୁଖ-କାରକ ଓ ସମୂହ-ଭାବ-ପ୍ରବୋଧନ ମୂଳକ ପ୍ରସାର ଘଟିଛି। ଏଥିପ୍ରତି ସଚେତନ ରହି ମୁକ୍ତିସଂଗ୍ରାମ ପୃଷ୍ଠଭୂମିରେ ଜାତିପ୍ରାଣରେ ସ୍ୱାଭିମାନବୋଧ ଓ ସ୍ୱାଧୀନ ପ୍ରାଣ ଜାଗରଣ ସୃଷ୍ଟି ଉଦ୍ଦେଶ୍ୟରେ ୧୯୩୦ରୁ ୧୯୪୭ ମଧରେ ବୀରକିଶୋର ବାଞ୍ଛାନିଧି, ମନମୋହନ, କ୍ଷମୋହନ ପ୍ରମୁଖ ସମଛାନ୍ଦର ଗୀତିକବିତା ଅନକଳ୍ପିତ-ପୂର୍ବ ବୈଶିଷ୍ଟ୍ୟ ଭାବରେ ପରିକଳ୍ପନା କରିଛନ୍ତି। ୧୯୪୭ ପରବର୍ତ୍ତୀ କାଳରେ ନୂତନ ସ୍ୱାଦ ଓ ଅଭିନବ ହେବାର ଉତ୍ତର-ଉପନିବେଶବାଦୀ ମାନସିକତାରୁ ଓଡ଼ିଆ ଗୀତିକବିତା ନୂଆବାଗରେ ରୂପାୟିତ ହେବାକୁ ଲାଗିଛି; ଯାହା ଭିତରେ ରାଧାମୋହନ, ମାୟାଧର, ବୀରକିଶୋର, ବାଞ୍ଛାନିଧି, କୁଂଜବିହାରୀ, ନିତ୍ୟାନନ୍ଦ, ପ୍ରାଣକୃଷ୍ଣଙ୍କ ଦ୍ୱାରା ଲିଖିତ ଧ୍ୱନିମାତ୍ରିକ ବୃତ୍ତଛନ୍ଦ ସହିତ ପ୍ରାଚୀନ ଓଡ଼ିଶୀ ସଂଗୀତ ପରଂପରାର ଯତି-ଲୟ-ତାଳ-ସ୍ୱର-ରାଗ ବିଧାନର ମିଶ୍ରଣ ସାଧନ ପୂର୍ବକ ଏକ ନୂତନ

ଲଳିତ ଭାବଦ୍ୟୋତକ ଲଘୁସ୍ୱରମାତ୍ରିକ/ସୁଗମଗାନ-ଶ୍ରୁତିସର୍ବସ୍ୱ ଆଧୁନିକ ଗୀତିକବିତାର (ଆଧୁନିକୀ) ବିକାଶ ଘଟିଛି। ଗୀତିକାର+ ଗୀତ ନିର୍ଦ୍ଦେଶକ (ସ୍ୱରକାର) + ଗାୟକ + ବାଦ୍ୟ ପରିବେଷକର ମିଳିତ ଉଦ୍ୟମରେ ଗୀତିକବିତା/ଆଧୁନିକସଂଗୀତ ସହୃଦୟ ପ୍ରାର୍ଥୀରେ ଇନ୍ଦ୍ରିୟଗ୍ରାହୀ ଆବେଦନଧର୍ମରେ ପ୍ରଭାବଶାଳୀ ଓ ଆଦରଭାଜନକଳା ହୋଇପାରିଛି। ବାଚନିକ ଶବ୍ଦ ମାଧୁର୍ଯ୍ୟ ଓ କାବ୍ୟିକ ଭାବମାଧୁର୍ଯ୍ୟର ସମନ୍ୱୟରେ ଗୀତିକବିତା ଶ୍ରବଣେନ୍ଦ୍ରିୟ ସୁଖ କାରକ ହୋଇ ମସ୍ତିଷ୍କବତ୍ତା ଅପେକ୍ଷା ହୃଦୟବତ୍ତାର ପ୍ରେୟ କବିତା ଭାବରେ ପାଠକ ପ୍ରସିଦ୍ଧି ଲାଭ କରିଛି। ଦର୍ଶନ, ମନସ୍ତତ୍ତ୍ୱ, ସଂଗୀତ ଓ ସାହିତ୍ୟର ଆବେଗିକ ଅବବୋଧର ସୃଷ୍ଟୁ ସମାବେଶ ଏହାର ଚିରାୟତ ଆବେଦନକୁ ଗୁଣାତ୍ମକ କରିତୋଳିଛି। ଏ କ୍ଷେତ୍ରରେ କାଳୀଚରଣମାନେ + ବାଳକୃଷ୍ଣମାନେ + ରାଖାଲ୍ ମହାନ୍ତିମାନେ ଓଡ଼ିଆ ଗୀତିକବିତାକୁ ମିଶ୍ର କଳାବୋଧର ପ୍ରସଙ୍ଗ ଭାବରେ ପ୍ରତିଷ୍ଠିତ କରିପାରିଛନ୍ତି। ଏହି ପ୍ରତିଷ୍ଠା ପଶ୍ଚାତରେ ଆକାଶବାଣୀ, ଚଳଚିତ୍ର ଶିଳ୍ପ, ମଂଚଶିଳ୍ପ, ସଂଗୀତନାଟକ ଏକାଡେମୀ, ସଂଗୀତ ମହାବିଦ୍ୟାଳୟ ଓ ଦୂରଦର୍ଶନଭଳି ପ୍ରମୁଖ ଅନୁଷ୍ଠାନ ଓ ସଂସ୍ଥାର ଭୂମିଗତ ଅବଦାନ ସ୍ମରଣୀୟ ଅଧ୍ୟାୟର ପ୍ରତୀକ। ସ୍ୱାଧୀନତା ପୂର୍ବରୁ ଉପନିବେଶବାଦୀ ସାମ୍ରାଜ୍ୟବୋଧର ପ୍ରଭାବ ସତ୍ତ୍ୱେ ଓଡ଼ିଶୀ ପରିଚିତି ଓ ଭାରତୀୟ ସ୍ୱାଭିମାନ ଉଦ୍ରେକକାରୀ ଗୀତିକବିତାର ପ୍ରସାର ଓ ପ୍ରଭାବରେ ଯେଉଁ ବଳିଷ୍ଠ ଉଦ୍ୟମ ଅପ୍ରତିହତ ଥିଲା ତାହା ସ୍ୱାଧୀନତା ପରବର୍ତ୍ତୀ କାଳରେ ସ୍ୱାଭିମାନର ସଂଭ୍ରମତା ହରାଇବସିଛି। ବରଂ ଆଧୁନିକ ହେବାର ଦ୍ୱାହିରେ ଉପନିବେଶବାଦୀ ପପ୍‌ମେଲୋଡି/ସ୍ୱାଇସ୍‌ଫନ୍/ଡାଡାବାଦୀ ଗଦ୍ୟମୟତା ଓ ଉଲଗ୍ନ ଇନ୍ଦ୍ରିୟଗ୍ରାହୀ ଭାବପ୍ରବଣତା ଗୀତିକବିତାର ଗାମ୍ଭୀର୍ଯ୍ୟର ବାଧକ ହୋଇଉଠିଛି।

ଏହା ସତ୍ତ୍ୱେ ନବସ୍ୱରର ସଂଚାରଣ ପୂର୍ବକ ଆଧୁନିକ ହେବାର ମାନସିକତା, ନୂଆ ସଂଗୀତରୁଚିର କବିତା ଲେଖିବାର ଶ୍ରଦ୍ଧାଶୀଳ ଉଦ୍ୟମ, ପରଂପରାପ୍ରତି ଆନୁଷଙ୍ଗିକ ବିହ୍ୱଳତା ଓ ସମୟ ଜୀବନକୁ ଦାର୍ଶନିକ ଉପଲବ୍ଧି ଭିତରେ ଚିତ୍ରବୋଧାତ୍ମକ କରି ପରିବେଷଣ କରିବାର ରମଣୀୟ କଳାବିଳାସ-ପ୍ରବୃତ୍ତିରୁ ଗୀତିକବିତା ରଚନା/ଗାୟନ/ଉପସ୍ଥାପନା କରିବାର ସର୍ଜନାତ୍ମକ ପ୍ରକ୍ରିୟାରେ ଯେଉଁମାନେ ପ୍ରୋତ୍ସାହକ-ଗୀତିକାରର ଭୂମିକା ସଂପାଦନ କରିଛନ୍ତି– ସେମାନଙ୍କ ମଧ୍ୟରୁ ଅକ୍ଷୟ, ପ୍ରଫୁଲ୍ଲ, କାଶୀନାଥ, ଦାମୋଦର, ଶାନ୍ତନୁ, ବୀଣା, ସୁନନ୍ଦା, ଶ୍ୟାମାମଣି, ଭୁବନେଶ୍ୱର, ରଘୁନାଥ, ଭିକାରୀ, ନାରାୟଣପ୍ରସାଦ, ଗୁରୁକୃଷ୍ଣ, ଶୀର୍ଷାନନ୍ଦ, ଜୀବନାନନ୍ଦ, ଶିବବ୍ରତ, ମନୋରମା, ସୁନ୍ଦରମଣି, ହରିହର, ପ୍ରଫୁଲ୍ଲ, ଦେବେନ୍ଦ୍ର, ହୃଷିକେଶ, ଖଗେନ୍ଦ୍ର, ଶରତଚନ୍ଦ୍ର, ଶାନ୍ତି, ବିଷ୍ଣୁ, କୁମୁଦଲତା, କୃତିବାସ, ଇନ୍ଦ୍ରମଣି ଓ ଅଲେଖଚନ୍ଦ୍ର ପ୍ରମୁଖଙ୍କ ଅବଦାନ ଉଲ୍ଲେଖଯୋଗ୍ୟ। ଅବଶ୍ୟ ଏମାନଙ୍କ ପୂର୍ବରୁ ସହଜିଆ ଗୀତିକବିତା ଥିଲା ପ୍ରଥମେ କବିତା ଓ ପରେ ସଂଗୀତର ଆବେଦନରେ ଋଦ୍ଧିମନ୍ତ। ଏହି କାରଣରୁ ଗୀତିକବି ଭାବରେ ମାନସିଂହ, ରାଧାମୋହନ, ଜ୍ଞାନୀନ୍ଦ୍ର, ପ୍ରାଣକୃଷ୍ଣ ପ୍ରମୁଖଙ୍କ କବିତା

କଳାରେ ଦୃଶ୍ୟଧର୍ମୀ କବିତାପଣ, ପ୍ରକୃତି-ଭାବ-ପ୍ରବୋକ କବିତାପଣ, ଉପଦେଶାତ୍ମକ-ଆଦର୍ଶବାଦ ସୂଚକ ଗୀତିପ୍ରବଣତା, ବାସ୍ତବବାଦୀ ପ୍ରତିକ୍ରିୟାଶୀଳ ମାନସିକତା, ସୌନ୍ଦର୍ଯ୍ୟାତ୍ମକ ଆବେଦନ ପ୍ରବଣତା, ଜାତୀୟସ୍ୱାକ୍ଷର, ପ୍ରଣୟନିଷ୍ଠ ଇନ୍ଦ୍ରିୟଗ୍ରାହିତା, ସ୍ୱପ୍ନପ୍ରବଣ ପ୍ରଣୟାବେଗ, ବିସ୍ମୟଉତ୍ପାଦକ ଐଶୀଚେତନା, ନିରୁଦ୍ଦେଶ୍ୟ କଳ୍ପନାପ୍ରବଣତା, ସ୍ମୃତିଚାରଣଧର୍ମୀ ଭାବୁକତା, ଅତୀତ ଆମୁଖତା, ସମ୍ବେଦନଶୀଳ ବିଷଣ୍ଣତା ଓ ଆବେଗିକ ବ୍ୟାକୁଳତା ଆଦି ଯେଉଁ ବିବିଧ ବୈଚିତ୍ର୍ୟ ପରିଲକ୍ଷିତ ହେଉଥିଲା ତାହାସବୁ ସ୍ୱାଧୀନତୋତ୍ତର ଗୀତିକାରଙ୍କ ସର୍ଜନପଣ ମାଧ୍ୟମରେ ପ୍ରାୟଶଃ ହ୍ରାସମୁଖର ହୋଇଉଠିଛି । ଅଗ୍ରଗଣ୍ୟ ଆଧୁନିକ-ଗୀତିକାର/ସାଂପ୍ରତିକ ସଂଗୀତକାରଙ୍କ କବିତା ସଂଗ୍ରହ ଓ ରଚନା ସମଗ୍ର ପ୍ରତି ଦୃଷ୍ଟିପାତ କଲେ ଗେୟପ୍ରଧାନ କବିତାର ସ୍ୱତନ୍ତ୍ର ଧାରାରେ ପ୍ରାୟତଃ ତିନୋଟି ବିଶେଷଦିଗ ବଳବତ୍ତର ରୂପ ପାଇଛି । ଯଥା—

(କ) ପ୍ରାଚୀନ ଇତିହାସ ଓ ଦେଶୀୟ ଭୂଗୋଳସତ୍ତାର ମହିମାଗାନ ଭିତ୍ତିରେ ଦେଶ ପ୍ରେମମୂଳକ ଗୀତିକବିତାର ଧାରା ।

(ଖ) ଆଧ୍ୟାତ୍ମିକ ଭାବଚେତନାମୂଳକ ଭକ୍ତିସଂଗୀତର ଧାରା ।

(ଗ) ପ୍ରଣୟ କାମନା ଉଦ୍ଦୀପନଶୀଳ/ପ୍ରଣୟ-ବିଷାଦବିଦଗ୍ଧ/ପ୍ରଣୟୋଚିତ/ସ୍ମୃତିଚାରଣ ମୂଳକ ଅଚରିତାର୍ଥ ପ୍ରଣୟବାସନାଗର୍ଭକ ସ୍ୱଚ୍ଛନ୍ଦବାଦୀ ଗୀତିକବିତାର ଧାରା ।

ଏଠାରେ ଉଲ୍ଲେଖଯୋଗ୍ୟ ଏହି ତିନୋଟି ଧାରା ବ୍ୟତୀତ ଗୁରୁକୃଷ୍ଣ, ନାରାୟଣ ପ୍ରସାଦ, ଜୀବନାନନ୍ଦ, ନନ୍ଦକିଶୋର ଗୌରହରି, ଶିବନ୍‌ତ, ଶୀର୍ଷାନନ୍ଦ, ଶରତଚନ୍ଦ୍ର ଓ ବିଷ୍ଣୁଙ୍କ କବିତାରେ ଜୀବନର ପାର୍ଥିବ ବିଷୟାସକ୍ତିଗୁଡ଼ିକ ବିଷୟୋତ୍ତର ଉପଲବ୍ଧିର ଚମତ୍କାରିତାକୁ ଉତ୍ତୀର୍ଣ୍ଣ ହୋଇଉଠିଛି । ଆଧିଭୌତିକ ଜୀବନର ପ୍ରାଚୁର୍ଯ୍ୟ ପ୍ରତି ବିଶ୍ୱସ୍ତ ଏହି ଗୀତିକାରମାନଙ୍କ ସ୍ୱର ଉପନିଷଦୀୟ ରହସ୍ୟବୋଧକୁ ଏକ ମହତ୍ତର ମନନଶୀଳ ଓ ଉତ୍ତରଣ ଜୀବନବୋଧର ଅନୁଭବରୂପରେ ଭାବନିବିଷ୍ଟ କରିପାରିଛି ।

ଓଡ଼ିଆ ଗୀତିକବିତାର ଏହି ପ୍ରବହମାନ-ସୁବର୍ଣ୍ଣ ଓ ସଜୀବ ପର୍ଯ୍ୟାୟରେ ଗୋଟିଏ ଦୃଶ୍ୟମାନ ସାଦୃଶ୍ୟ ଲକ୍ଷ୍ୟଣୀୟ । ସାଦୃଶ୍ୟଟି ହେଉଛି କୌଣସି ଆଗଧାଡ଼ିର ସଫଳ ଗୀତିକାର ଗୋଟିଏ ନିର୍ଦ୍ଦିଷ୍ଟ ସ୍ୱର ବା ଚେତନାକୁ ସାଧନାର ଆଧାର ଭୂମି ଭାବରେ ଗ୍ରହଣ କରିନାହାନ୍ତି । ସମସ୍ତେ ପାରଦର୍ଶୀ ମନୋଭାବର ଶୀକାର ହୋଇ ରୋମାଣ୍ଟିକ୍ ଲଘୁ ଭାବର ଗୀତିକା, ପାରମାର୍ଥିକ ରହସ୍ୟପଣର ଗୀତିକା, ଦେଶପ୍ରେମଭିତ୍ତିକ ଗୀତିକା, ପଲ୍ଲୀସ୍ୱର ଓ ସ୍ୱଭାବବୋଧର କବିତା ଏବଂ ଜୀବନର ସୁଗମ ମନୋଭାବର ଅଭିବ୍ୟକ୍ତିବାଦୀୟ (ମନସ୍ତାତ୍ତ୍ୱିକ ବାସ୍ତବତାର ଅନ୍ତଃ-ପ୍ରତିକ୍ରିୟା-ସୂଚକ) ଗୀତିକା ପ୍ରାୟତଃ ରଚନା କରିଛନ୍ତି । ଜୀବନ ବିବିଧ ଆବେଗର ଏକ ବିଚିତ୍ର ସମାହାର ଓ ଗୀତିକବିର ଭାବ-ସଂସାର ବିବିଧ

ଆବେଗର ପ୍ରତିକ୍ରିୟା ଦ୍ୱାରା ନିୟମିତ ଜୀବନର ଖଣ୍ଡିତାଂଶର ରସଘନମୟ ବୈଚିତ୍ର୍ୟ ଦ୍ୱାରା ଋଦ୍ଧିମନ୍ତ ହୋଇପାରିଛି ।

ଏହି କାରଣରୁ ଦୀର୍ଘସୂତ୍ରୀ ଜୀବନାନୁଭୂତି ଅପେକ୍ଷା ଜୀବନର ଖଣ୍ଡିତାଂଶ ତଦ୍‌ଜନିତ ବହୁଧା ବିଭକ୍ତ ବଂଚିବାପଣର ଆବେଗିକ ପ୍ରାଣପ୍ରାଚୁର୍ଯ୍ୟକୁ ମୁକ୍ତମନ ନେଇ କଳାରୂପ ପ୍ରଦାନ କରିବା ଉପରେ ସ୍ୱାଧୀନତୋତ୍ତର ଗୀତିକବି ଅଧିକ ଗୁରୁତ୍ୱ ଦେଇଛି । ସଜାଗ, ସଜୀବ ସକାର ଇଚ୍ଛାଶକ୍ତିର ଭାବୁକ ରୂପରେ ସେ ସାଧାରଣ କବିଙ୍କ ପରି ବୌଦ୍ଧିକ ତତ୍ତ୍ୱଦର୍ଶନ ଅପେକ୍ଷା ଅନ୍ତଃମନର ବାସ୍ତବତାକୁ ଇନ୍ଦ୍ରିୟପ୍ରଲୁବ୍ଧ ଇଂଗୀତରେ ପ୍ରକାଶ କରିବାକୁ ଆଗ୍ରହୀ ହୋଇଛି । ସ୍ୱାଧୀନତା ପୂର୍ବରୁ ବ୍ୟକ୍ତିନିଷ୍ଠ ଦର୍ଶନମୂଳକ ଗୀତିକବିତା ଥିଲା ଆବେଦନଧର୍ମରେ ଦର୍ଶନ+କବିତା+ବକ୍ତବ୍ୟଧର୍ମୀତାର ଏକ ସମନ୍ୱିତ ସାଧନ ମାତ୍ର । କିନ୍ତୁ ସ୍ୱାଧୀନତା ପରବର୍ତ୍ତୀ କାଳରେ ଗୀତିକବିତା ମାନସିକ-ବାସ୍ତବତାର ବିରୋଧାଭାସୀ ପ୍ରବୃତ୍ତିଗୁଡ଼ିକୁ ଆଶ୍ରୟ କରି ସଂଗୀତ ଓ ଆବେଗର ଦୋଳାୟିତ ଚିତ୍ତବୃତ୍ତି ଭାବରେ କଳାତ୍ମକ ମାନ୍ୟତା ପାଇଛି । ମାନସିକ ପ୍ରବୃତ୍ତିର ବଳୁଆ ବିଭକ୍ତବୈଚିତ୍ର୍ୟ ହେତୁ ଏକକ କବିର କବିତାରେ ଏକକ ଚେତନାର ପରିପ୍ରକାଶ ନ ଘଟି ବହୁଧାଭାବର ପ୍ରବାହ ସଂଘଟିତ ହୋଇଛି । ଗୀତିକବିତା ହୋଇଛି ମାନସିକ ଚିଦାଭାସର ସଂଗୀତମୟ ରୂପଭାଷଣ ।

(ଚାରି)

ଏହି ମର୍ମରେ ମିଶ୍ରରାଗର ଗୀତିକଳ୍ପଲୋକ ସୃଷ୍ଟି କରିଥିବା ଆଗଧାଡ଼ିର ଗୀତିକବି କତିପୟଙ୍କ ଗୀତିଗୁଚ୍ଛ ଉପରେ ସମ୍ୟକ ସୂଚନା ନିମ୍ନମତେ ପ୍ରଦାନ କରାଯାଉଅଛି ।

''ନଦୀର ନାମ ଅଳସକନ୍ୟା'' ଓ ''କୃଷ୍ଣଚୂଡ଼ାର ଗୀତି'' ଗୀତିକବିତା ସଂକଳନ ଦ୍ୱୟର ସ୍ରଜକ ଶିବବ୍ରତ ଦାସ ଓଡ଼ିଆ ସଂଗୀତ ପ୍ରେମୀ ସହୃଦୟଙ୍କ ନିକଟରେ ସଜାଗ ଆବେଗର ଓ ମୁକ୍ତ-ଆତ୍ମାନୁଭୂତିର ଉଚ୍ଚାରକ ଭାବରେ ପ୍ରତିଭାତ ହୋଇଉଠନ୍ତି । ଜୀବନର ଅବହେଳିତ ଅନୁଭବମାନଙ୍କୁ ମହନୀୟ ପ୍ରେରଣାରେ ଉଜ୍ଜୀବିତ କରିବା ଏବଂ ଆବେଗିକ ଜୀବନାନୁଭୂତିକୁ ଦୃଶ୍ୟଧର୍ମୀ ବାସ୍ତବତାରେ ରୂପାନ୍ତରୀକରଣ କରିବା ହେଉଛି ତାଙ୍କ ଗୀତିକବିତାର ସୃଜନଧର୍ମ ।( ୧ )

ଇନ୍ଦ୍ରିୟଗ୍ରାହୀ ପୁଲକବୋଧ ଓ ଇନ୍ଦ୍ରିୟୋତ୍ତର ପ୍ରଣୟଚେତନା, ଅନ୍ତଃମନ ଓ ବାହ୍ୟବୋଧର ବାସ୍ତବତା ପ୍ରତି ପ୍ରତିକ୍ରିୟା ଓ ବିଦ୍ରୂପାତ୍ମକ ଦୃଷ୍ଟିଭଙ୍ଗୀ, ମୁକ୍ତମନର ଅନ୍ୱେଷା ଓ ଅଭିଳାଷ, ବିଫଳମନର ଦୋଳନ, ଅଚରିତାର୍ଥ ବାସନା ଓ ଅଦୃଶ୍ୟ ଜଗତ ପ୍ରତି ଅନୁରାଗ ସହିତ ଐତିହ୍ୟଭାବ ପ୍ରବୋଧନାଧର୍ମୀ ଦେଶବନ୍ଦନା ଆଦି ବିବିଧ ରସବୋଧରେ ମୁଗ୍ଧ ଦୃଷ୍ଟିର ଗୀତିବଳୟ ସୃଷ୍ଟି କରିଥିବା ହୃଦୟବତ୍ତାର ସଜୀବ ଗୀତିକାର ଗୁରୁକୃଷ୍ଣଙ୍କ ସୃଜନସତ୍ତା ଓଡ଼ିଆ ଗୀତିକବିତାର ପ୍ରବାହକୁ ଭାବପ୍ରଲୁବ୍ଧ ଆକର୍ଷଣରେ ଏକ ଦୃଢ଼ତର ମାଟିବୋଧର

ଭିତ୍ତି ଦେଇପାରିଛି । ଏମନ ଚୋରାପଥେ, ରଜନୀଗନ୍ଧା, ଦିଗ ଦିହୁଡ଼ି, ନମାମି ଜନ୍ମଭୂମି ଆଦି କବିତା ସଂକଳନ ଏହି କ୍ରମରେ ସ୍ମରଣୀୟ । ଯେଉଁଠି ସ୍ୱରରେ ନିରୁତା ଭୂମିବାସନା ଓ ପ୍ରକାଶଭଙ୍ଗୀରେ ଆଧୁନିକ ଧ୍ୱନିମାତ୍ରିକ ଉଚ୍ଚାଟନ ଧର୍ମର ଅପୂର୍ବ ମିଶ୍ରଣ ସଂପାଦନ ହୋଇପାରିଛି । (୨) କାମନା ଓ ଫଳପ୍ରାପ୍ତି ଉଦ୍ଦେଶ୍ୟ ଦ୍ୱାରା ବଳିଷ୍ଠ ଅଥବା ଉପାସ୍ୟଦେବତାଙ୍କର ରୂପ, ମହିମା ଓ ସେବାବିଧାନର ସ୍ତୁତିକର ବନ୍ଦନା ଦ୍ୱାରା ରୁଦ୍ଧିମନ୍ତ ପାରଂପରିକ ଭକ୍ତିଭାବନାରେ ବ୍ୟତିକ୍ରମ ଘଟାଇ ଜୀବନ ଅନ୍ୱେଷା ଓ ଆତ୍ମଜିଜ୍ଞାସାର ହେତୁରହିତ ଭକ୍ତିପ୍ରବଣ ମାନସିକତା, ପଲ୍ଲୀପ୍ରାଣତା, ଦେଶାନୁଭୂତି, ପ୍ରଣୟାବେଗ ଓ ଲଘୁଜୀବନବାଦୀ ଦୃଷ୍ଟିଭଙ୍ଗୀ ସହିତ ଲୋକାଚାରୀୟ ଉପାଦାନ ସମବାୟରେ ରୂପକଳ୍ପୀୟ ଶବ୍ଦଚୟଣ ଚାତୁରୀରେ ଜୀବନାନନ୍ଦ ପାଣି ଓଡ଼ିଆ ଗୀତିକବିତାର ଭାବଗତ ଓ କଳାଗତ ଐଶ୍ୱର୍ଯ୍ୟକୁ କବିତା ଓ ସଂଗୀତର ମିଶ୍ର ଆବେଦନରେ ଅନସ୍ୱାଦିତପୂର୍ବ ଓ ଅନୋଚ୍ଚାରିତପୂର୍ବ କରି ତୋଳିଛନ୍ତି । (୩) ଗୀତରେ କାହାଣୀ, ଗୀତରେ ରହସ୍ୟ, ଗୀତରେ ନାଟକୀୟତା, ଗୀତରେ ବକ୍ତବ୍ୟଧର୍ମୀ ରୂପଭାଷଣ ଓ ଚିତ୍ରଧର୍ମୀ ମାୟାଜାଲ, ଗୀତରେ ଦର୍ଶନ ଓ ମନସ୍ତାତ୍ତ୍ୱିକ ଭାବାୟନ ପ୍ରତିଫଳନ କରି ପରୀକ୍ଷା ନିରୀକ୍ଷାର ବ୍ୟାପକ ପରିସର ସୃଷ୍ଟି କରିଥିବା ପ୍ରାୟୋଗିକ ଗୀତିକାରମାନଙ୍କ ମଧ୍ୟରେ ନାରାୟଣ ପ୍ରସାଦ ଓ ଅକ୍ଷୟ ସ୍ୱତନ୍ତ୍ର ଅଧ୍ୟାୟ ସୃଷ୍ଟି କରିଅଛନ୍ତି । ଏମାନଙ୍କ ସହିତ ଯେଉଁମାନେ ପଲ୍ଲୀସ୍ୱର, ଶାସ୍ତ୍ରୀୟଧ୍ୱର, ଲୋକବୃତ୍ତି ଓ ଚଳନ୍ତି କାବ୍ୟ ବୃତ୍ତିର ମିଳନରେ ଓଡ଼ିଆ ଗୀତିକବିତାକୁ ବିଭାବନୀ ଧର୍ମରେ ବିଶେଷ ବାଣୀଭଙ୍ଗୀର ସୌନ୍ଦର୍ଯ୍ୟ-ଗୌରବରେ ପ୍ରତିଷ୍ଠା ଦେଇଛନ୍ତି ସେମାନଙ୍କ ମଧ୍ୟରେ ନନ୍ଦକିଶୋର, କ୍ଷୀରୋଦ, ଶିବକୁମାର, ଦେବଦାସ, ହରିହର, ହୃଷିକେଶ, ଶରତ, ବିନୋଦିନୀ, ମୀନାକ୍ଷି, ମନୋରମା, ଅର୍ଚ୍ଚନା, ଗୌର ଓ ବିଷ୍ଣୁଙ୍କ ଉଲ୍ଲେଖନୀୟ ଭୂମିକା ସାମାଜିକ ସଂପ୍ରୀତି ଭାଜନ ହୋଇଛପାରିଛି । 'ଦୁଇଟି ଆଖିର କବିତା', 'ମେଘ ଫଗୁଣ','ପ୍ରୀତି ପ୍ରଜାପତି', 'ଠିଆପୁଚି ନାରଙ୍ଗ', 'ଗୀତରେ ଗୀତରେ ଗପ' ଓ 'ଗୀତିବିଚିତ୍ରା'ର ଗୀତିକାର ନାରାୟଣ ପ୍ରସାଦ ସୌନ୍ଦର୍ଯ୍ୟାନୁରାଗୀ ସ୍ୱପ୍ନ ସଂଚାରୀ ଜୀବନାନୁଭୂତିର ଚିତ୍ରପ୍ରତିମା ସୃଷ୍ଟିକରି ଭୂମିରୁ ଭୂମା ସ୍ପର୍ଶୀ ଭାବନାରେ ଓଡ଼ିଆ ଗୀତିକବିତାକୁ ବିଚିତ୍ର ବର୍ଣ୍ଣା କରି ତୋଳିଛନ୍ତି ଯେଉଁଠି ସକଳ ବିରୋଧାଭାସର ଜୀବନ ଆଶାବାଦର ସଂଭାବନାରେ ବିସ୍ତାରିତ ହୋଇଉଠିଛି ।(୪) ଗୀତଗୁଚ୍ଛ, ଗୀତି ଓ ଗଜଲ, ଇଚ୍ଛାବତୀର ନଦୀ, ନନ୍ଦକିଶୋର ଗୀତିବିଚିତ୍ରା ଆଦି ସଂକଳନରେ ସଂଗୀତ ଓ ଦର୍ଶନର ସରସ ମିଳନ ସାଧନ କରି ଈଶ୍ୱର, ପ୍ରକୃତି ଓ ଜୀବନକୁ ସହାନୁଭୂତିଶୀଳତାର ବିନ୍ଦୁରେ ରମଣୀୟ ମୁଦ୍ରାରେ ସହାବସ୍ଥାନ କରାଇ ନନ୍ଦକିଶୋର ଗୀତିକବିତାର ଆତ୍ମାନୁଭୂତିମୂଳକ ପରିଭାଷାରେ ରସସ୍ନିଗ୍ଧତା, ଛନ୍ଦମୟ ସୂକ୍ଷ୍ମତା, ଲୋକବୃତ୍ତିକ ମାଧୁର୍ଯ୍ୟର ସଂଯୋଗ ଘଟାଇଛନ୍ତି । (୫) ଗୀତି କବିତା ସ୍ଥୂଳ ନୁହେଁ ସୂକ୍ଷ୍ମ ମନକୁ ନେଇ ଆତ୍ମପ୍ରକାଶ କରିଥାଏ । ବ୍ୟକ୍ତିକ ଜୀବନଠାରୁ ରାଷ୍ଟ୍ରୀୟ ଓ ବିଶ୍ୱଜୀବନକୁ ସଂକ୍ଷିପ୍ତ ପରିସର

ମଧ୍ୟରେ ଏକ ମେଦିନୀ ଦୃଷ୍ଟିଭଙ୍ଗୀ ଓ ତାହାର ମାନବକଲ୍ୟାଣୀ ବାସନାତାତ୍ତ୍ୱିକ ଭୂମିବାଦୀ ହୃଦୟବତ୍ତା ନେଇ ଦେଖି ଦେଖାଇବାର ସାରସ୍ୱତୀୟ ଲୀଳା କ୍ଷେତ୍ର ହେଉଛି ଗୀତିକବିତା– ଏହି ସତ୍ୟକୁ ପାଠକ/ଶ୍ରୋତା ସାମ୍ନାସାମ୍ନିହୋଇଥାଏ ଶରତଚନ୍ଦ୍ରଙ୍କ ଧୂପବାସ, ନବଚେତନା, ମାଟିମହକ, ଆରଧନା, ପ୍ରତିଧ୍ୱନି ଓ ବନମାଳା ଗୀତିକବିତା ସଂକଳନ ମାଧ୍ୟମରେ। କଲ୍ୟାଣବୋଧ, ଆତ୍ମସଚେତନଶୀଳ ରହସ୍ୟ ଓ ଆସକ୍ତି, ଶାଶ୍ୱତ ସୌନ୍ଦର୍ଯ୍ୟ ଅନୁସନ୍ଧିତ୍ସୁ ବିସ୍ମୟବୋଧ ସହିତମାନବୀୟ ପ୍ରବୃତ୍ତି, ଉଦାତ୍ତ ପ୍ରକୃତି ଓ ଅଚିନ୍ତ୍ୟ ଈଶ୍ୱର ଏକୀଭୂତ ହୋଇ ଉଠିଛନ୍ତି ଶରତଚନ୍ଦ୍ରଙ୍କ ସର୍ଜନଶୀଳ କଳ୍ପ-ଭାବନାର ପରିସରରେ। (୬) ମହାନୁଭବ କାମନାର ଉଦାର ଉଚ୍ଚାରଣ, ବୈଦିକ ସନାତନୀୟ ଦୃଷ୍ଟିଭଙ୍ଗୀ, ଐତିହ୍ୟବାଦୀ ସ୍ୱାଭିମାନ ବୋଧ ଏବଂ ନିର୍ମଳ ନାନ୍ଦନିକ ପ୍ରଣୟାନୁରାଗ ଭିତ୍ତିରେ ଅର୍ଚ୍ଚନା,ମନୋରମା, ଗୌର, ବିଷ୍ଣୁଚରଣ ଓ ହୃଷିକେଶଙ୍କ ଗୀତିକବିତାରେ ସୁମନବର୍ଗ ଉଦାର ଦର୍ଶନ, ଉଦାତ୍ତମନସ୍ତତ୍ତ୍ୱ ଓ ଉଚ୍ଚକିତ ଜୀବନଧର୍ମକୁ ଅନୁଭବ କରିପାରିଥାଏ। (୭) ମାଟିପ୍ରତି ମମତ୍ୱବୋଧ, ଅତୀତ ଆମୁଖତା, ପଲ୍ଲୀଜୀବନର ସ୍ମୃତିଚାରଣ, ପ୍ରକୃତିସଂପ୍ରୀତି, ପୁଷ୍ପସଂପ୍ରୀତି, ନଦୀ ସଂପ୍ରୀତି, ବିଷାଦ ଓ ବେଦନା ପ୍ରତି ଆକର୍ଷଣୀୟ ଅନ୍ତରଙ୍ଗପଣ, ଜାତୀୟ ସ୍ୱାଭିମାନବୋଧର ନିରଂଜନା, ଜୀବନ ସଂପର୍କର ଉଚ୍ଚାରଣ, ନିଟୋଳ ସୌନ୍ଦର୍ଯ୍ୟର ଶୁଭଗ ଜୀବନଚିନ୍ତାର ମାଧୁର୍ଯ୍ୟ, ଚିତ୍ରବୋଧାତ୍ମକ ବାସ୍ତବତାର ରୂପାୟନ ସହିତ ଦର୍ଶନ+ବିସ୍ମୟ+ପୁଲକର ଅପୂର୍ବ ମିଶ୍ରଣରେ ହୃଷିକେଶ, ଉପେନ୍ଦ୍ର, ଖଗେନ୍ଦ୍ର, କୃତ୍ତିବାସ, ବିନୋଦିନୀ, ବୃନ୍ଦାବନ, ମୀନାକ୍ଷି ଶାନ୍ତି ଓ କୁମୁଦଲତାଂ ପ୍ରମୁଖଙ୍କ ସଫଳ ଗୀତିସାଧନା ସାମାଜିକ ରସାମୋଦୀଙ୍କ ହୃୟରେ ଚିରାୟତ କଳାବେଦନ ସୂତ୍ରରେ ସଂଚରଣମୁଖୀ (ଗୁଣୁଗୁଣେଇ) ହୋଇଚାଲିଛି। (୮) ଏହି ପରିପ୍ରେକ୍ଷୀରେ ଦିବ୍ୟଚେତନାର ଅନୁଭବ, ମଧୁର ଚେତନାର ଅନୁଭବ, କରୁଣ ଓ ପୁଲକାୟିତ ଭାବନାର ଅନୁଭବ ଓ କଲ୍ୟାଣକର ନାନ୍ଦନିକ ମେଦିନୀଦୃଷ୍ଟିର ଅନୁଭବ ଭିତ୍ତିରେ ସୂକ୍ଷ୍ମରେ ବିସ୍ତାରିତ ଦୃଶ୍ୟମାନତାର ଚିତ୍ରବିମ୍ବ ସୃଷ୍ଟିକରି ଯେଉଁମାନଙ୍କ ଗୀତିସଂକଳନ ପାଠକ ଆଦୃତିର କଷଟିରେ ରସମୟ ହୋଇଉଠିଛି ସେସବୁ ମଧ୍ୟରେ ମନୋରମାଙ୍କ 'ମିଥୁନ ଚଂପୂ, ରାଗ ମହ୍ଲାର, ମୀନାକ୍ଷି ଦେବୀଙ୍କ 'ଝରାପତ୍ରର ଗୀତି',ଶାନ୍ତି ମହାନ୍ତିଙ୍କର 'ଆକାଶ ଆନନ୍ଦ', ବିଷ୍ଣୁ ଚରଣଙ୍କ 'ଗୁଣୁଗୁଣୁ ଜହ୍ନରାତି, ସଂଗୀତାୟନ', ବିନୋଦେନୀ ଦେବୀଙ୍କ 'ଅମୃତା, ଏଇ କଳାମୋର କଳଙ୍କ', ବୃନ୍ଦାବନଙ୍କ 'ସ୍ମୃତିରୁ ସାଉଁଟି କିଛି, ନ ଆପକ୍ଷୀଗାତୁରେ' ଗୌରହରିଙ୍କ 'ଗୌରଚନ୍ଦ୍ରିକା',ଦେବେନ୍ଦ୍ରଙ୍କ 'ଲୁହର ସହର, କାଚକାନ୍ତୁ', ଶିବକୁମାରଙ୍କ ଅଳି ଅଞ୍ଜଳି', ହରିହରଙ୍କ 'ସ୍ୱରବର୍ଣ୍ଣ', ହୃଷିକେଶଙ୍କ 'ନୀଳ ଶତଦଳ', ପ୍ରଫୁଲ୍ଲଙ୍କ 'ଫୁଲରଫଗୁଣ', କ୍ଷୀରୋଦଙ୍କ 'ସଂଗୀତାବଳୀ', କୀର୍ତ୍ତନ ନାରାୟଣଙ୍କ 'ସତ ଓ ସପନ', କୁମୁଦ ଲତାଙ୍କ 'ହୀରାହାର, ଅର୍ଘ୍ୟ ତୁମପାଇଁ', କୃତ୍ତିବାସଙ୍କ 'ଗୀତିଶତକ', ଗଗେନ୍ଦ୍ରଙ୍କ 'ପ୍ରୀତିକଲ୍ଲୋଳ, ମୋଦେଶ', ଇନ୍ଦୁମଣିଙ୍କ 'ମନଛୁଆଁ ଗୀତି', ଅର୍ଚ୍ଚନାଙ୍କ 'ଜହ୍ନରାତି

ବର୍ଷାରାତି' ଗୌରଙ୍କ 'ଠିକଣା ନଥିବା ଚିଠି, ଗୀତିକା' ଇତ୍ୟାଦି ଉଲ୍ଲେଯୋଗ୍ୟ। ଏହି ପରିପ୍ରେକ୍ଷୀରେ ଶବ୍ଦଗତ ଧ୍ୱନିମାଧୁର୍ଯ୍ୟ, ଛନ୍ଦମୟ ସ୍ୱରମାଧୁର୍ଯ୍ୟ,ନାଦମୟ ଉଚ୍ଚାଟନଧର୍ମ, ତାଳଗତ ଆକର୍ଷଣ, ରୂପକଳ୍ପ ଓ ଚିତ୍ରଧର୍ମୀ ତୁଳନାବୋଧ ସହିତ ବାସ୍ତବତା ଓ କଳ୍ପନାର ମିଶ୍ରଦ୍ୟୋତନାରେ ଅକ୍ଷୟ ଓ ପ୍ରଫୁଲ୍ଲଙ୍କ ଗୀତିକବିତା ଯାଦୁକରୀ ମାୟା ସଂଘଟନ କରିପାରିଛି।

(ପାଞ୍ଚ)

ଏହି ପରିପ୍ରେକ୍ଷରେ ଉପସଂହାର ପର୍ଯ୍ୟାୟରେ ଚିରାୟତ ଗୀତିକବିତା ଗୁଣାତ୍ମକ ବୈଶିଷ୍ଟ୍ୟ ଓ ଗଠନଗତ ସୌନ୍ଦର୍ଯ୍ୟ ଉପରେ ଆଲୋକପାତ କରାଯାଇପାରେ।

– ସାଂପ୍ରତିକ ଗୀତିକବିତା ସ୍ୱଚ୍ଛନ୍ଦମନର ଗେୟପ୍ରଧାନ ଅଭିବ୍ୟକ୍ତି।

– ବିଷୟ ଓ ବିଶ୍ୱାସକୁ ଭଲ ପାଉଥିବା ମଣିଷ ହିଁ ମୁକ୍ତମନର ଗୀତିକବିତା ଲେଖିପାରନ୍ତି। ଭାବଗୁଡିକ ବସ୍ତୁରୂପକ ଓ ସାଦୃଶ୍ୟ ସଙ୍କେତର ଶବ୍ଦକ୍ରୀଡା ମଧ୍ୟରେ ଚିତ୍ରଧର୍ମ ଓ ଗାନଧର୍ମରେ ବିଳସିତ କରାଇବା ପଦ୍ୟବନ୍ଧ ହିଁ ଭଲ ଗୀତିକବିତାକୁ ଜନ୍ମଦିଏ।

– ବିନ୍ଦୁରେ ବ୍ୟାପକ ସିନ୍ଧୁର ଗାମ୍ଭୀର୍ଯ୍ୟ, ଗଭୀରତ୍ୱ ଓ ନୀଳିମାତ୍ୱକୁ ଦେଖାଇବାର ସ୍ୱଚ୍ଛନ୍ଦ ଓ ନିଷ୍କପଟ ମାନସିକତା ଗୀତିକବିତାକୁ ଜନ୍ମଦିଏ।

– ଇନ୍ଦ୍ରିୟ ପରିଧିରେ ବିଚରଣଶୀଳ ଜୀବନକୁ ପକ୍ଷୀର କାକଳି, ଝରଣାର କୁଳୁନିନାଦ, ପତ୍ରର ମର୍ମର ଝଙ୍କାର ସମ ସରସଧ୍ୱନିରେ ଛନ୍ଦମୟ ଓ ଭାବମୟକରି ଉଚ୍ଚାଟିତ କରିବାର ନାଦମୟଗୁଣ ହିଁ ଗୀତିକବିତାର ସର୍ବପ୍ରଧାନ ବୈଶିଷ୍ଟ୍ୟ।

– ସାହିତ୍ୟର ଅନ୍ୟାନ୍ୟ ବିଭାଗ କଳ୍ପକମାନଙ୍କର ଜ୍ଞାନବତ୍ତା ସହିତ ସଂପୃକ୍ତ ଥିବା ସ୍ଥଳେ ଗୀତିକବିତା ହୃଦୟବତ୍ତା ସହିତ ସଂପୃକ୍ତ।

– ହୃଦୟାବେଗର ପ୍ରାବଲ୍ୟକୁ କଳ୍ପନା ଓ ବାସ୍ତବତାର ସମନ୍ୱୟ ସାଧନଶୀଳ ପ୍ରକ୍ରିୟାରେ ରୂପଦେଇ ଗୀତିକବିତା ଜୀବନର ତତ୍ତ୍ୱକୁ ସହଜ ସରଳ ଚାତୁରୀରେ ବିବୃତ କରିପାରିଥାଏ।

–ଆତ୍ମଭାବ ସମ୍ୱଳିତ ଆବୃତ୍ତିସୁଲଭ, ଗାନଧର୍ମୀ, ଭାବଚିତ୍ର ଉତ୍ପାଦନଧର୍ମୀ ଓ ସ୍ୱତଃ-ସ୍ଫୂର୍ତ୍ତ ସଂକ୍ଷିପ୍ତ ପଦାବଳୀ ହିଁ ସଫଳ ଗୀତିକବିତାର ଆଧାର।

–ଆତ୍ମାନୁଭୂତିମୂଳକତା,ଭାବମୟତା, ଆବେଗଧର୍ମିତା, ଗାନଯୋଗ୍ୟତା, ମାଧୁର୍ଯ୍ୟ ବ୍ୟଂଜନାବୃତ୍ତି,ଶବ୍ଦଲାଳିତ୍ୟ, ମାନସିକ ଉତ୍ସ୍ରବଣତା, ସଂକ୍ଷିପ୍ତତା ଓ ସ୍ୱତଃସ୍ଫୂର୍ତ୍ତତା ସଫଳ ଗୀତିକବିତାର ମୌଳିକ ଲକ୍ଷଣ।

–ଚିନ୍ତା-ତର୍କ-ଯୁକ୍ତି-ସିଦ୍ଧାନ୍ତଠାରୁ ଦୂରରେ ଥିବା ଏକମୁଖୀ ଭାବର ସାରଲ୍ୟ ଓ ସ୍ରଷ୍ଟାକର ଆତ୍ମନିଷ୍ଠ ଜୀବନ-ଜଗତ ସଂପର୍କିତ ଅନୁଭୂତି ହିଁ ଏହାର ଭାବଗତ ଆବେଦନ।

—ଦର୍ଶନାଶ୍ରିତ କବିତା ଶବ୍ଦବସାଣରେ ବିଶେଷ୍ୟ ଓ ବିଶେଷଣ ପଦ ଉପରେ ଅତିମାତ୍ରାରେ ଗୁରୁତ୍ୱ ଦେଉଥିବା ବେଳେ ସଫଳ ଗୀତିକବିତା ସ୍ୱଗତଃଧର୍ମର ପ୍ରଚୋଦିତ କ୍ରିୟାପଦ ଉପରେ ପ୍ରାଧାନ୍ୟ ଦେଇଥାଏ ।

—ଉଦାର, ଉଦାତ୍ତ ଓ ମହତଭାବର ଗୀତିକବିତାଟିଏ ଗୋଟିଏ ଜାତିର ସାମୂହିକ ପରିଚିତିକୁ ଭାବମୟ ଓ ପ୍ରବୋଧନଗୁଣରେ ବିସ୍ତାରିତ କରିଦିଏ ଏବଂ ଅପରପକ୍ଷରେ ମନ୍ଦବୋଧର ଗୀତିକା ଗୋଟିଏ ଜାତିକୁ ମୁହୂର୍ତ୍ତକ ମଧ୍ୟରେ ଅପରାଧପ୍ରବଣ ମାନସିକତାରେ ଆକ୍ରାନ୍ତ କରିଦିଏ ।

—ଭଲ ଗୀତିକବିତା ଅପୂର୍ବ ଶିହରଣ ଭିତରେ ସହଜରେ ଶ୍ରୋତାର ହୃଦୟକୁ ସଂରଚିତ ହୋଇଯାଏ ଓ ମାନସିକ ରସମୟତାର ଉଦ୍ଘାଟନ ଧର୍ମରେ ଗୀତିକବିତା ପାଠକର ରସଗ୍ରାହୀମନକୁ ତଟସ୍ଥ-ତଲ୍ଲୀନ କରିଦିଏ ।

—ଆତ୍ମଅନ୍ୱେଷା ଓ ଆତ୍ମରହସ୍ୟମୟ ବ୍ୟାକୁଳତା ସହିତ ଅସୀମ ପ୍ରତି ଆବେଗଦୀପ୍ତ ଆସକ୍ତି ହିଁ ଭାବବାଦୀ ଭାରତୀୟ ବାଙ୍ମୟ ପରଂପରାର ସଫଳ ଗୀତିକବିତାର ମାନକହୋଇ ଆସିଛି ଏବଂ ଏ ପ୍ରକାର ଗୀତିକବିତା ଭଲ ସ୍ରୋତା ଖୋଜେନି, ଲୋଡେନି ବରଂ ଆପଣାର ବଳଶାଳୀ ଭାବସୌନ୍ଦର୍ଯ୍ୟର ମାୟାଜାଲରେ ଯୁଗରୁ ଯୁଗ ପାଠକରୁ ପାଠକ କ୍ରମେ ନୂଆ ନୂଆ ଅର୍ଥରେ ଅର୍ଥୀ ପାଠକଙ୍କୁ ବାଂଧି ରଖିବାରେ ସମର୍ଥ ହୋଇଆସିଛି ।

—ମହତ୍ତର ଜାତୀୟ ସମୟ ହେଉଛି ଯଥାର୍ଥରେ ସେହି ସମୟ ଯେତେବେଳେ ଜୀବନ ଉଦ୍‌ଭାସନ ଧର୍ମୀ ଗୀତିକବିତା ସ୍ୱାଭିମାନୀ ଗୀତିକାରଙ୍କ ଦ୍ୱାରା ଲେଖାଯାଏ, ବୋଲାଯାଏ, ଶୁଣାଯାଏ ଓ ଉଦାହରଣ ଦିଆଯାଏ ଏବଂ ସାର୍ବକାଳୀନ ପ୍ରବାଦ ଗୀତିରେ ସେ-ଗୀତିକା ସମଗ୍ର ମାନବ ପ୍ରାଣର ଉଚ୍ଚାରଣରେ ରୂପାନ୍ତରିତ ହୋଇଯାଏ ।

—ଗୀତିକବିତା ଗୀତିକବିର ଭାବନାରେ ମଧୁରଖୁସି, ମଧୁର ଦୁଃଖ, ମଧୁର ମିଥ୍ୟା, ମଧୁର ସତ୍ୟ, ମଧୁର ଛଳନା, ମଧୁର ବିଶ୍ୱାସ ଭିତ୍ତିରେ ଅଭିବ୍ୟକ୍ତି ପାଇଥାଏ– ମାତ୍ର ପାଠକ ପାଖରେ ମଧୁର ସ୍ୱରରେ ପହଞ୍ଚିବା ବେଳକୁ ତାହା ସର୍ବଦା ସାଇତି ରଖିବା ପରି ସ୍ମରଣୀୟ ମହାର୍ଘ ଅନୁଭବରେ ରୂପାନ୍ତରିତ ହୋଇଯାଇଥାନ୍ତି ଏବଂ ଭଲ ଗୀତିକା ଶବକୁ ଶିବରେ, ବିଷକୁ ବିଷ୍ଣୁରେ, ଅହଂକୁ ବ୍ରହ୍ମରେ ଇଙ୍ଗିତାୟିତ କରିଦିଏ ।

—ଭଲଗୀତ ନକରାତ୍ମକ ଯନ୍ତ୍ରଣା ଓ ବେଦନାରୁ ମଧ୍ୟ ଆରମ୍ଭ ହୋଇପାରେ । ମାତ୍ର ତାହା ବିଷୟ-ବାସନା ପରିଧିରୁ ଉପଲକ୍ଷ୍ୟ ସଂଗ୍ରହ କରି ବିଷୟୋତ୍ତର ବର୍ଣ୍ଣୋତ୍ସବରେ ସେସବୁକୁ ଘଟାନ୍ତରିତ କରିଦିଏ । ଏ ପ୍ରକାର ଗୀତିକାର ପରିଣତିସୂଚକ ଆବେଦନ ମନଭିତରେ ସ୍ଥାୟୀରୂପରେ ବସାବାନ୍ଧିରହେ ଏବଂ ଠିକ୍ ସମୟରେ ମନେପଡ଼ି ମନକୁ ଠିକ୍ ସଂଭାବନାଟିଏ, ଆଶ୍ୱସ୍ତିଟିଏ ଓ ପ୍ରଫୁଲ୍ଲତାଟିଏ ଦେଇପାରେ ।

–ପାଠକ ଶ୍ରଦ୍ଧା ଅଶ୍ରଦ୍ଧା, ଗ୍ରାହ୍ୟ-ଅଗ୍ରାହ୍ୟ, ବିଚାର ଦେଇ ଗୀତିକବିତାକୁ ଲୋଡିବସେ। ଏ ଦିଗରେ ପାଠକର ଚଳନ୍ତି ଅନୁଭୂତି ସହିତ ସାର୍ବକାଳୀନ ପ୍ରତ୍ୟୟକୁ ଉଜ୍ଜୀବିତ କରୁଥିବା ଉତ୍ତରଣ ଚେତନାର ସୂକ୍ଷ୍ମ ସତ୍ତାମାନେ ଗୀତିକବିତାର ଆତ୍ମପକ୍ଷର ନିର୍ଯ୍ୟାସ ହେବା ଏକାନ୍ତ ଜରୁରୀ।

–ସଫଳ ଓ ପାଠକପ୍ରୀତି ଭାଜନ ଗୀତିକବିତା ଗଠନଧର୍ମ ଦିଗରୁ ତିନୋଟି ସ୍ତର ଦେଇ ଗତି କରିଥାଏ। ପ୍ରଥମ ସ୍ତର-ଅଭିପ୍ରାୟ ସ୍ତର। ଦ୍ୱିତୀୟସ୍ତର ଭାବନାର ଆବେଗାତ୍ମକ ଇଙ୍ଗିତସ୍ତର। ତୃତୀୟସ୍ତର-ବକ୍ତବ୍ୟ ପ୍ରବଣତାର ସ୍ତର। ପ୍ରଥମସ୍ତରରେ ଘୋଷାପଦ ଭିତ୍ତିରେ ନାଟକୀୟ ଆତ୍ମଭାଷଣ ଛଳରେ ଚିରାୟତ ସତ୍ୟର ଧାରଣାଟିଏ ସୂଚିତ କରାଯାଇଥାଏ। ଦ୍ୱିତୀୟସ୍ତରରେ ଗୀତିକବି ଜୀବନ ସମ୍ବନ୍ଧରେ, ଦୃଶ୍ୟମାନ ସତ୍ୟ ସଂପର୍କରେ ଅଥବା ପ୍ରତିପାଦ୍ୟ ଉପଲବ୍ଧି ବିଷୟରେ ଏକ ମନନଶୀଳ ଲାଳିତ୍ୟ- ଇଙ୍ଗିତ-ସରସମିଶ୍ରିତ ଅଭିବ୍ୟକ୍ତିକ ଛନ୍ଦରେ ରୂପାୟିତ କରିଥାଏ। ତୃତୀୟ ସ୍ତରରେ ନିଜର ଜୀବନାନୁଭୂତିକୁ ସାର୍ବକାଳୀନ ବକ୍ତବ୍ୟଧର୍ମରେ ସିଦ୍ଧାନ୍ତନିଷ୍ଠ କରିବାର ନାନ୍ଦନିକ କଳାଗୁଣର ପ୍ରଯତ୍ନଟିଏ ଗୋପନାୟିତ ଭଙ୍ଗୀରେ ପ୍ରକାଶ ପାଇଥାଏ। ଏହିପ୍ରକାର ସୂକ୍ଷ୍ମତର କଳାବୋଧର ସୌନ୍ଦର୍ଯ୍ୟ ଉପରେ ଦଣ୍ଡାୟମାନ ଗୀତିକବିତା ରଚନା କାଳରେ ପୁନରୋକ୍ତି, ବିସ୍ତୃତି, ଅତିବ୍ୟାଖ୍ୟା, ସୁଦୀର୍ଘ ଉଚ୍ଚାରଣ, ସ୍ୱାଭିମାନବୋଧ ବିରୁଦ୍ଧ ଶବ୍ଦ ବସାଣ, ଯୁକ୍ତାକ୍ଷରର ବାହୁଲ୍ୟ, ପ୍ରତ୍ୟୟ ବିଶେଷଣ ବହୁଳତା, ସନ୍ଧିମୂଳକ ଶବ୍ଦଚୟନ ଓ ସଂଯୋଜନ ଇତ୍ୟାଦିକୁ ଶବ୍ଦଦୋଷୀୟ ବାକ୍‌ଶକ୍ତି ଭାବରେ ବିବେଚନା କରିବାକୁ ପଡ଼ିଥାଏ। ତେଣୁ ଭଲ ଗୀତିକବିତା ବ୍ୟାବହାରିକ ଶବ୍ଦର ବିଭାବନ ଧର୍ମୀ ଅର୍ଥର ଶ୍ରୁତିପ୍ରୀୟ ଚାରୁତା ପ୍ରତି (ଶ୍ରବଣୀୟତା + ଅନୁଭବ୍ୟତାର ଚାରୁତା) ସର୍ବଦା ଅପେକ୍ଷାମାଣ ହୋଇ ରହିଥାଏ।

ପରିଶେଷରେ ସଂପ୍ରତି ମନ୍ଦ ଅବବୋଧର ଗୀତିକବିତା ଯିଏକି ମାଟିର ଶୁଭଗ ପରଂପରାଠାରୁ କ୍ରମଶଃ ପାଦ ଖସେଇ ମୁହୂର୍ତ୍ତ ସର୍ବସ୍ୱ ଚଞ୍ଚଳତାର କୌତୁକକୁ ଆଦରି ନେଇଛି; ତାହା ପୂର୍ବବତ ଚିରାୟତ କଳାବେଦନର ବଳଶାଳୀ ମାନକ-ମାର୍ଗରେ ଗତିଶୀଳ ହୋଇ ବିମନା ଶ୍ରୋତାଙ୍କୁ ଆମୋଦିତ ଶ୍ରୋତାରେ ପରିଣତ କରିବାକୁ ପ୍ରଯତ୍ନ ମନା ହେବା ଉଚିତ। ଏହି ପ୍ରଯତ୍ନଶୀଳ ମାନସିକତାର ବୀଜମନ୍ତ୍ର ମଧ୍ୟରୁ କେତୋଟି ଗୁରୁତ୍ୱପୂର୍ଣ୍ଣ–

–ଗୀତିକବି ଆବେଗକୁ ବାଂଧି ବଢ଼େଇ ପାରୁଥିବା ବକ୍ତବ୍ୟକୁ କବିତାର ଭାବବସ୍ତୁରେ ଆରୋହଣ କରାନ୍ତୁ।

– ଭାବକୁ ହୃଦୟରେ ସର୍ବଦା ସ୍ଥାୟୀଭାବରେ ସଂଚିତ କରି ରଖିବାର ସାମର୍ଥ୍ୟ ରଖିଥିବା ପ୍ରବୋଧିତ ନବନ୍ୟାୟିକ ଅର୍ଥଦ୍ୟୋତନାର ଶବ୍ଦବସାଣ ଉପରେ ଗୁରୁତ୍ୱ ଦିଆଯାଉ।

– ଜୀବନର ଅଭ୍ୟନ୍ତରର ଅଥବା ବିସ୍ତାରିତ ମହାନୁଭବତାର ପ୍ରବୃତ୍ତିମାନଙ୍କୁ ଖୋଜି, ଚିହ୍ନି, ଲୋଡ଼ି ଶ୍ରଦ୍ଧାର ସହିତ ସେମାନଙ୍କୁ ଆଣି ସମ୍ବେଦନଶୀଳ ଗୁଣରେ ସେମାନଙ୍କୁ

ଛନ୍ଦମୟ କରି ପରିବେଷଣ କରାଯାଉ ଏବଂ ଗୀତିକବିତାର ନୂଆ ପରିଭାଷା ସମୀକ୍ଷାଟିଏ ଓଡ଼ିଆ ମାଟିପଣର ଚଣ୍ଢୁରୁ ଶୁଣାଯାଉ– ''ଗୀତିକବିତା ହେଉଛି ବଂଚିବାର ଅଖଣ୍ଡ ପୁଣ୍ୟାହବାଚକ ବିଶ୍ୱାସବୋଧର ମାନ୍ତ୍ରିକ ଗେୟଧର୍ମୀ କବିତା।''

ପାଦଟୀକା

୧. ''ଟିକି ଶାମୁକାର ବକ୍ଷେ ମୁହିଁ/ଜନମିବି ପୁଣି ମୋତିହୋଇ/ବହୁବାର କାହିଁ ହଜିଯାଇ/ଆସିବିତ ଫେରି ନୂଆ ହୋଇ/ମୁଁ ଯେ ଅସୀମ ପ୍ରେମର ପାଗଳଦିଗନ୍ତ ମମତାର ସାତସିନ୍ଧୁ।''– (ଶିବବ୍ରତ ଦାସ)

୨. ''ଅନ୍ତରେ କାନ୍ଦେ ବାହାରେ ହସେ ମୁଁ/ଏଇ ମୋର ପରିଚୟ/ମରିସାରିଛି ମୁଁ ତେବେ ବି କରୁଛି/ବଂଚିବାର ଅଭିନୟ।'' (ଗୁରୁକୃଷ୍ଣ ଗୋସ୍ୱାମୀ)

୩. ''କରନା ଦେବତା କିଂଶୁକ ମୋତେ କର ମୋତେ ଘାସଫୁଲ''/ଅଥବା ''ଏତ ନୁହେଁ ଗୀତ ଝରାପତରର ନିଛାଟିଆ ମନ୍ଦିର/ଶୁଖିଲା ନଦୀର ନୀରବ ଲହରି ମଲ୍ଲୀଜହ୍ନ ସକାଳର।'' (ଜୀବନାନନ୍ଦ ପାଣି)

୪. ''ଆକାଶରେ ଭରା ଜୋଛନା ହେଲେ ମୋତେ ଚାହିଁବା ମନା
ନୟନରେ କାମନାଦୀପ ହେଲେ ମତେ ଜାଳିବା ମନା
ଅଧର ମୋ କଥାରେ ଭରା ହେଲେ ମତେ ଝରିବା ମନା
ମମତାରେ ଭରା ମୋ ମନ ହେଲେ ଭଲପାଇବା ମନା।'' (ନାରାୟଣ ପ୍ରସାଦ)

୫. ''ମୋ ଆଖିରେ ଭରିଦିଅ ବେଦନାର ଲୋତକ/ମୋ ଓଠରୁ ହରିନିଅ ଶେଷହସ ଝଲକ, ଆଉ କା ଅଧରୁ ପ୍ରଭୁ ହସ ଲୁଟିନଅିନା।'' (ନନ୍ଦକିଶୋର)

୬. ''ଝରିପଡ଼େ ପରା ପାଦପ ପତର ନବକିଶଳୟ ପାଇଁ / ମନ କିନ୍ତୁ କହେ ଝଡ଼ିଲେ ପତର ଆଉତ ଆସିବ ନାହିଁ / ପ୍ରତିଟି ଗୋଧୂଳି କହି ଦେଇଯାଏ ପ୍ରତିଭାର ଆଗମନ।'' ଅଥବା ''ଆକାଶ ବୁଝୁଛି ଏ ମାଟିକୁ ବୋଲି ଆପେ ଆସିଅଛି ନଇଁ/ପବନ ପକାଏ ଆଲଟଚାମର ଆପେ ଆନମନା ହୋଇ।''– (ଶରତଚନ୍ଦ୍ର)

୭. (କ) ''ବନ ତଳତଳେ ଶତସପନର ଝରଣା ଗଲା ଯେ ବହି / ସେ ଫୁଲଟି କଥା ଆଜିଯାଏ ମୁହିଁ କାହାକୁତ କହି ନାହିଁ / ନାଆଁ ନଜଣା ସେ ମଉନୀ ଫୁଲଟି ଚମକାଇ ଦେଲା ମୋତେ।''– (ମନୋରମା ବିଶ୍ୱାଳ)

(ଖ) ''ମୁଁ ଯେ ସୃଷ୍ଟିର ସାମ ସଂଗୀତ ସୁର ବେଦର ଓଁକାର ଧ୍ୱନି / ଜୀବନର ମରୁ ବୁକେ ବହିଯାଏ ପ୍ରଣୟର ସୂରଧୁନୀ / ଶିଶିର ସକାଳ କମଳ କଳି ମୁଁ କାକରେ ଯାଇଛି ଜଳି।''– (ଅର୍ଚ୍ଚନା)

(ଗ) ଲୁହରେ ବି ଆଜି ଛଳନାର ରଙ୍ଗ ପ୍ରୀତିରେ ମଧୁ ଜହର / ବିଶ୍ୱାସହୀନ ଦୁନିଆଁରେ ଆଜି ପ୍ରେମ ଏକ ଖେଳଘର।'' (ହୃଷିକେଶ)

(ଘ) ''ସତକି ମିଛରେ କାହା ପାଇଁ ଟୋପେ ଲୁହ ମୁଁ ଗଡ଼ାଇ ପାରିନି / ମୁଁ ଏକ ନିଆରା ଝଡର ଚଢ଼େଇ ଉଡୁଛି ଅଂଧାର ଚିରି।''– (ଗୌର ପଟ୍ଟନାୟକ)

୮.(କ) ''ତୁମେତ ଦେଇଛ ମୋତେ ଜୀବନେ ଦୁଇଟି ଫୁଲ / ଦୁଃଖ ଆଉ ସୁଖ ରଖିଛି ଯାହାର ନାଆଁ / ଗୋଟିକେ ଭଜି ମୁଁ ତୁମକୁ ପାଇଚି ଯେବେ ଆରଟିରେ ଭଜି ହଜାଇଛି ଖାଲିଯାହା।''– (ବିନୋଦିନୀ ଦେବୀ)

(ଖ) ଆଖିରେ ଭରିଛି କାହାଣୀ ଅନେକ ହୃଦୟେ ଜାଗିଛି ଅଜଣା ପୁଲକ କୁଆଁରୀ ମନର କଅଁଳ ପରଶ ସପନେ ହଜେଇ ଦିଏ।''– (କୃତ୍ତିବାସ)

(ଗ) ହଜିଯାଏ ଦିନ ମରିଯାଏ ମନ ପରଶ ଯା' ନିତି ଝୁରେ / ଶୁଭେ ନାହିଁ ଆଉ ପକ୍ଷୀର କାକଳି ମୃଦୁ ମଧୁଭରା ସୁରେ।''– (ଖଗେନ୍ଦ୍ର ନାଥ)

(ଘ) ''ପିଲାଦିନ ପରି କହିବ ମୁଁ କାଳେ କିଛି ଜମା ଭୁଲି ନାହିଁ/ପୃଥିବୀରୁ କେବେ ଶୁଖି ଯାଏ ନାହିଁ ଭଲ ପାଇବାର ନଈ।''– (ମୀନାକ୍ଷି ଦେବୀ)

(ଙ) ଆଜି ଲାଗୁଛି ସତେ କେହି ଡାକୁଛି ମତେ / ତା'ର ପୁରୁଣା ଗୀତରେ ସେହି ଆଳାପ ସାଥେ।''– (ଶାନ୍ତି ମହାନ୍ତି)



# କବିତା ନିର୍ମାଣ ଓ ଆବୃତ୍ତିକଳା ସଂପର୍କରେ...

(ଏକ)

କବିତା କବି ଅନୁଭୂତିର ଜୀବନ୍ତ ବାଙ୍‌ମୟ ପ୍ରତିମା। ଏହାର ଅପର ସମାଖ୍ୟା କବି-ମାନସ-ଅପତ୍ୟ। ମାନସସଂଭୂତା କବିତାର ଅଭିପ୍ରାୟ କବିଠୁ ଜଗତକୁ/ଜଣଠୁ ଗଣକୁ/ବ୍ୟକ୍ତିଠୁ ବିଶ୍ୱକୁ ପ୍ରସରିଯିବା। ଏହି ପ୍ରସାରଣ ପ୍ରକ୍ରିୟାରେ କବିତା ଶୁଭଙ୍ଗ ସଂକଳ୍ପରେ ଜଗତ ଓ ଜୀବନକୁ ଶିବସୁଷମାରେ ସୁମଣ୍ଡନ କରିଦିଏ। ଏ କାରଣରୁ ଆରିଷ୍ଟୋଟଲଙ୍କ ଠାରୁ ଦେରିଡ଼ା, ଭରତଙ୍କ ଠାରୁ କୁମାରସ୍ୱାମୀଙ୍କ ପର୍ଯ୍ୟନ୍ତ ଜଗତର ବହୁଧା ବିବର୍ତ୍ତନ ଭିତରେ କବିତାକଳା ବିଶ୍ୱବ୍ୟାପୀ ଅବିନାଶୀ-ଶକ୍ତିମତ୍ତାରେ ଚିରସଲିଳା ଚିତ୍ରବହା ରୂପେ ମାନବଜ୍ଞାନର ଆୟୁ ସହିତ ଆଗୁଆ ଆଗେଇ ଚାଲିଛି। ପ୍ରତି ସମୟଖଣ୍ଡରେ ଅବିକାରୀକବିତା ବିନୋଦନକାରକ ପଦମିଳନ ହେବା ଅପେକ୍ଷା ଜୀବନନିଷ୍ଠ ଅନୁଭୂତି ଓ ପ୍ରାଣପ୍ରାଚୁର୍ଯ୍ୟଭରା ଅଭିଜ୍ଞତାର ପବିତ୍ର-ମାନ୍ତ୍ରିକ ଉଚ୍ଚାରଣ ହୋଇଆସିଛି। କୋମଳ ଓ ଗମ୍ଭୀରର ଯୁଗନ୍ଦ୍ୱ ସୌନ୍ଦର୍ଯ୍ୟରେ 'ହଁତ୍ୱ'ର ବିମଳପ୍ରକାଶ ପ୍ରତି ସଶ୍ରଦ୍ଧ ରହି ଜୀବନର ପରମଦୀପିକା ଭାବରେ ଏହା ସମୟରୁ ସମୟ, ବ୍ୟକ୍ତିରୁ ବ୍ୟକ୍ତି, ଜାତିରୁ ଜାତି, ଭୂଭାଗରୁ ଭୂଭାଗ ଦେଇ ସମୂହ କଲ୍ୟାଣ ସାଧନରେ ଅଭିନିବିଷ୍ଟ ରହିଛି। ମାନବଜୀବନ, ତା'ର ସାଂସ୍କୃତିକ ଓ ସହଜାତ ଅଭିଳାଷ ଏବଂ ବିଶ୍ୱ ପ୍ରକୃତିର ବିବିଧ ସୁଷମା ସହିତ କବିର ସୂକ୍ଷ୍ମ-ପ୍ରତ୍ୟକ୍ଷ-ପ୍ରଗାଢ଼-ପ୍ରତିକ୍ରିୟାଶୀଳ ନିବିଡ ସମ୍ବନ୍ଧରୁ ଏହାର ସ୍ଫୂର୍ତ୍ତି। ମାନସିକ ନିର୍ମାଣ ବ୍ୟାପାର ଓ ବାହ୍ୟିକ ସାଧନା ବା ରୂପାୟଣ ଅଭ୍ୟାସ ହେଉଛି କାବ୍ୟସ୍ଫୁରଣର ବୀଜଶକ୍ତି। ପ୍ରତିଭା, ବ୍ୟୁତ୍ପତ୍ତି, ପୂର୍ବଜନ୍ମ ସଂସ୍କାର, ଦିବ୍ୟ ଉନ୍ନତତାର ଅନ୍ତର୍ଦୃଷ୍ଟୀୟ ଅନୁକରଣ ଓ କଳ୍ପନା ବଳରେ ବୀଜଶକ୍ତିର ବାଙ୍‌ମୟ ଅଭିବ୍ୟକ୍ତି ଘଟେ ଓ କବିତା ନିର୍ମାଣ ସଂଭବହୁଏ।

ଅଭିବ୍ୟକ୍ତି ହେଉଛି ଅନୁପମ-ଭାବ-ରହସ୍ୟର ଶବ୍ଦାର୍ଥ ଖେଳ। ସମତା, ପ୍ରସାଦ, ମାଧୁର୍ଯ୍ୟ, ସୁକୁମାର, କାନ୍ତି ଓ ଓଜଃ ଆଦି ଗୁଣଜଡିତ ଶବ୍ଦାର୍ଥ ହେଉଛି କବିତାରମଣୀର ଶରୀର। ଲୋକାନୁବୃତ୍ତି ଓ ଲୋକମଣ୍ଡଳର ବିବିଧ ଲୀଳାକାରକ ଅବସ୍ଥାଚକ୍ରରୁ ସଂଗ୍ରହ କରିଥିବା ରସାନୁଭୂତି ହେଉଛି ଏହାର ଆତ୍ମା। ଉଦ୍‌ବୋଧନଧର୍ମୀ ରମଣୀୟ ଅନୁପ୍ରାସ-ଯମକ-ଉପମା-ରୂପକାଦି ଧ୍ୱନିମାତ୍ରିକ-ଅକ୍ଷରମାତ୍ରିକ ଶୋଭାବର୍ଦ୍ଧନଶୀଳ ସାଦୃଶ୍ୟକଳ୍ପ ସଂରଚନା ହେଉଛି ଏହାର ଗତି। ଗତିର ଆରମ୍ଭବିନ୍ଦୁ ହେଉଛି- କବିର ସର୍ଜନ ପ୍ରବଣ

ତନ୍ମୟତାର ଭାବସ୍ଫୀତ ଆଦି ଅବସ୍ଥା ଏବଂ ଶେଷ ବିନ୍ଦୁଟି ହେଉଛି ଚମତ୍କାର ଆନନ୍ଦ ପ୍ରାପ୍ତିର ଅଭିଳାଷ ରଖିଥିବା ସହୃଦୟର ସ୍ୱଚ୍ଛ ଦର୍ପଣାୟିତ ମନ। ଶବ୍ଦାର୍ଥର ଯାଦୁକରୀ ସଂଶ୍ଲେଷଣାତ୍ମକ ଶକ୍ତି 'କଳ୍ପନା' ହେଉଛି କାବ୍ୟତାର (ବିଚିତ୍ର ବସ୍ତୁ ନିର୍ମାଣ କ୍ଷମତା) ହେତୁବୀଜ। କଳ୍ପନା ସ୍ୱରୂପା ହେତୁବୀଜକୁ ଆଧାର କରି ନିର୍ମାଣ କରାଯାଇଥିବା ନବନ୍ୟାୟିକ ଭାବାଭିପ୍ରାୟଟିକୁ ଅନୁରାଗୀ ଉପଭୋକ୍ତାର ନିର୍ମଳ ମନଦର୍ପଣ ସାମ୍ନାରେ ମୂର୍ତ୍ତିମନ୍ତ କରି ଉଭା କରାଇବା ହିଁ କବିତା ନିର୍ମିତିର ଉଦ୍ଦେଶ୍ୟ।

କବିର ନିର୍ମିତିକୁ (କବିତା କୃତି) ଏକ ପ୍ରୟୋଜନୀୟ, ହିତସାଧନକାରୀ ପ୍ରବୋଧନକ୍ଷମ ନିର୍ମାଣ ଭାବରେ କବିତାମୋଦୀର ହୃଦୟକ୍ଷେତ୍ରରେ ପହଞ୍ଚାଇ ଦେବାରେ ଯେଉଁ ମାଧ୍ୟମ ପ୍ରକ୍ରିୟାଟି ସାହାଯ୍ୟକାରୀ ଭୂମିକା ସଂପାଦନ କରେ ତାହା ହେଉଛି- 'ଆବୃତ୍ତି' ବା 'କବିତା ପାଠ'। ଲେଖକ ଲେଖିସାରିବା ପରେ ନିର୍ମିତିଟି ନୀରବ ନିଶ୍ଚଳ ଥାକରେ ଶୋଭାଯୁକ୍ତ ହୋଇ ରହିବାର କୃତି ମାତ୍ର। କିନ୍ତୁ ନିର୍ମିତିଟିକୁ ଆବୃତ୍ତି କରିବା ପରେ ତାହା 'ପାଠ' ବା ସଜୀବ ରଚନାର ଆଦର ପାଏ। କବିତା ପାଠ ବା କବିତା ଆବୃତ୍ତି ପ୍ରମାଣ କରିଦିଏ ଯେ କବିତାରେ ପଦନିର୍ମିତି ଏକ ସଂଘଟନାତ୍ମକ କ୍ରୀଡାଚାତୁରୀ ନୁହେଁ, ଏହା ଶବ୍ଦାର୍ଥର ପରିଶ୍ରବଣ, ପରିବୋଧନ ଦେଇ ଭାବଦର୍ଶନର ପ୍ରସଙ୍ଗ। ଶବ୍ଦାର୍ଥ ନିର୍ମିତି ଭାବକୁ କବିର ନିଶିଦ୍ଧ ଇଲାକାରୁ ଶ୍ରୋତା/କବିତାଗ୍ରହୀଙ୍କ ଚେତନାଜଗତ ପର୍ଯ୍ୟନ୍ତ ପରିବହନ କରିଦିଏ। ଏହି ଭାବ ପରିବହନ ଓ ପ୍ରସାରଣ କାର୍ଯ୍ୟର ଏକ ଶୃଙ୍ଖଳିତ ଯୋଜନା ହିଁ 'ଆବୃତ୍ତି' ଯାହାକୁ କବିତାର ଅନ୍ୟତମ ଭାବସଂଚାର କଳାଶକ୍ତି କୁହାଯାଇପାରେ। ଆବୃତ୍ତି ଜଣାଇଦିଏ କବିତାର ଜୀବନ ଅଛି (ଆବୃତ୍ତେଃ ଜୀବାତୁ ସୂଚୟତି)। ଆବୃତ୍ତି ସାଧାରଣ ବୃତ୍ତିଗାନ ନୁହେଁ, ଆବୃତ୍ତି କାବ୍ୟିକ ଭାଷାର ଅନ୍ତର୍ନିହିତ ଛଟା ଓ ଶକ୍ତିକୁ ବିସ୍ତାରିଦେବାର ଏକ ବିହ୍ୱଳ କଳାପଣର ଦୃଷ୍ଟାନ୍ତ।

ପରିଦୃଶ୍ୟମାନ ବାସ୍ତବତାର ଆଢୁଆଳରେ ସାଧାରଣ ଘଟଣାଚକ୍ର ଓ ଜୀବନଚର୍ଯ୍ୟାରେ ସତ୍ୟ ଉଦୟସୂର୍ଯ୍ୟର ସତ୍ତା ନେଇ ରହିଥାଏ। ଏପ୍ରକାର ବିରଳ, ପ୍ରଗାଢ଼, ଅନଦୃଶିତପୂର୍ବ ଅନୁଭବଯୋଗ୍ୟ ସତ୍ୟ ସୂକ୍ଷ୍ମଦର୍ଶୀ କବିର ଅନୁଭୂତିସ୍ତରକୁ ଅଣୁସ୍ଫୁଲିଙ୍ଗବତ୍ ଆସିଥାଏ। ଏହାକୁ ମାନସିକ ପ୍ରସ୍ତୁତି ସ୍ତରରେ ସଯତ୍ନରେ ରଖି ଦର୍ଶନ-ମନନ-ବାସାନସଂସ୍କାର-ଲୋକବିଶ୍ୱାସ-ଜାଗତିକ ଧାରଣା ଅନୁସାରେ ପାକସିଦ୍ଧ କରି ପ୍ରକାଶ କରିବାକୁ କବିର ନିର୍ମିସାପଣ ଯଥୋପୋଚିତ ଶବ୍ଦାର୍ଥ ନିବେଶରେ (ଶବ୍ଦ ଅର୍ଥର ଚମତ୍କାର ବିନ୍ୟାସୀକରଣ) ଏକାଗ୍ରତା ସହ ସମାଧିସ୍ଥ ହୁଏ। ଏହି ସମାଧିସ୍ଥ ସିଦ୍ଧଫଳରୂପା କବିତାର ନିର୍ମିତି ନିର୍ମାଣରେ ଚତୁସ୍ତରୀୟ କ୍ରିୟାର ଭୂମିକା ରହିଥାଏ। ଏହି ମର୍ମରେ ପ୍ରଦତ୍ତ ନିର୍ମିତି ନିର୍ମାଣ ସଂକ୍ରିୟାର ସାରଣୀଟିକୁ ଲକ୍ଷ୍ୟ କରାଯାଇପାରେ–

## ନିର୍ମିତି ନିର୍ମାଣ ସଂକ୍ରିୟା

| ୧. କବି | | ୨. କବିତା | | ୩. ଆବୃତ୍ତିକାରୀ | | ପାଠ ଉପଭୋକ୍ତା |
|---|---|---|---|---|---|---|
| ନିର୍ମିତି ସ୍ତର : ସୂକ୍ଷ୍ମଦର୍ଶନ, ଭାବ ସଂପୃକ୍ତ ପ୍ରତିକ୍ରିୟା, ଭାବୋନ୍ମତ୍ତ ଚିତ୍ତାଲୋଡନ, ପ୍ରବୃତ୍ତ ଅବସ୍ଥା, ପ୍ରକାଶୋଚିତ ବ୍ୟାକୁଳତା । | ® | ନିର୍ମାଣସ୍ତର : ରଚିବା, ସଂଘଟନାବୃତ୍ତ କଳ୍ପନା କରିବା, ଭାବୋଚିତ ଶବ୍ଦ ନିବେଶ କରିବା, ଆଶ୍ରୟ ସୌନ୍ଦର୍ଯ୍ୟର (ମାତ୍ରା, ଧ୍ୱନି, ଯତି, ଅଳଙ୍କାର, ଦୃଶ୍ୟବିମ୍ବ, ପୁରାକଳ୍ପ, ସାଦୃଶ୍ୟକଳ୍ପ, ଇଙ୍ଗିତ, ଲକ୍ଷଣା, ବକ୍ରୋକ୍ତି ଇତ୍ୟାଦି) ଶୃଙ୍ଖଳିତ ସଂସ୍ଥାପନ କରିବା । | ® | ବିସ୍ତରଣ ସ୍ତର : କୃତିକୁ ପାଠକରିବା, ଗାଇବା, ବୋଲିବା (ସରବ ପଠନ, ନୀରବ ପଠନ, ଛାନ୍ଦସିକ ପଠନ, ମାନ୍ତ୍ରିକପଠନ ଓ ରସବୋଧକ ପଠନ) | ® | ପ୍ରତିନିର୍ମାଣ ସ୍ତର : ପାଠକୃତିକୁ ଶୁଣିବା, ବୁଝିବା, ଭାବାର୍ଥ ଗ୍ରହଣ କରିବା, ଆତ୍ମୀୟତା ସ୍ଥାପନ କରିବା, ପ୍ରୟୋଗ କରିବା ଓ କବି ଅଭିପ୍ରାୟକୁ ନିଜ ଦେଶ-କାଳ-ପାତ୍ର-ଅନୁଭବ ମଧ୍ୟରେ ବିନିର୍ମାଣ କରିବା । |

ପଥମ ସ୍ତରରେ କବି ପୂର୍ଣ୍ଣମାତ୍ରାରେ ଭାବମୟ। ଦୃଶ୍ୟମାନ ଜଗତ ଓ ଜୀବନକୁ ଦେଖି ତହିଁର ବିହ୍ୱଳପଣର ଅନୁଭବକୁ ଧାରଣ କରି ବିଭିନ୍ନ ବିଜାତୀୟ ଆବେଗ ମଧ୍ୟରେ ସନ୍ଧିସ୍ଥାପନ କରି, ବିରୋଧାଭାସକୁ ସ୍ଥିର ଗଠନାତ୍ମକ ସ୍ଥିତିରେ ରଖି ସମଗୋତ୍ରୀୟ ଭାବକୁ ପରସ୍ପରର ସାପେକ୍ଷା ଓ ଉଦ୍ଦୀପକ ଧର୍ମରେ ସଂଯୁକ୍ତ କରି ଲବ୍ଧ ଭାବକୁ କବିତାଯୋଗ୍ୟ ଅନୁଭୂତିରେ ପରିଣତ କରେ। ଏକ ଭାବୋନ୍ମତ୍ତ ନିର୍ମିସ୍ଥାପଣରେ କବିର ଚମତ୍କାର ଚିତ୍ତବିସ୍ତାର ଘଟେ ଓ ବିସ୍ମୟାନୁଭୂତିର ସଂଚାର ସଂକଳ୍ପ (The wonder spirit) ପାଇଁ କବି ଏ ସ୍ତରରେ ବ୍ୟାକୁଳମନା ହୋଇଉଠେ। ଏ ପ୍ରକାର ପ୍ରଲୁବ୍ଧ ସର୍ଜନଶୀଳ କାଳିସୀଲଗା ଅବସ୍ଥାରେ ଅନେକ ସ୍ୱଚ୍ଛନ୍ଦବାଦୀଙ୍କ ମତରେ ଭାବ କବିଚିତ୍ତକୁ ଅବତରଣ କରେ। ତେଣିକି କବିତା ନିର୍ମାଣପାଇଁ କବି ବାଧ୍ୟ ମାଧ୍ୟମ ମାତ୍ର।

ଦ୍ୱିତୀୟ ସ୍ତରଟି କବିତା ନିର୍ମାଣସ୍ତର। ଏ ସ୍ତରରେ ସର୍ଜନଶୀଳ କ୍ଷମତା ଦ୍ୱିବିଧ କ୍ରୀଡାରେ ଆତ୍ମନିଯୁକ୍ତ ରୁହେ। ଗୋଟିଏ ପ୍ରକାର କ୍ରୀଡାରେ କବି ଭାବ ବା ଭାବସମୂହକୁ ସଜେଇ ବ୍ୟୁତ୍ପତ୍ତି, ଅଭ୍ୟାସ ଓ ପ୍ରଯତ୍ନସିଦ୍ଧ କୌଶଳ ବଳରେ ଶବ୍ଦାର୍ଥ ନିବେଶ କରେ। ଏହା ଏକ ପ୍ରକାର ସ୍ଥାପତ୍ୟଧର୍ମୀ ସଂଘଟନା। ଅନ୍ୟ ପ୍ରକାର କ୍ରୀଡାଟି ବେଶ୍ ଭାବପ୍ରବଣତାର ପ୍ରସଙ୍ଗ। କବିତାର ଭାବ କବିର ସାମଗ୍ରିକ ସତ୍ତାକୁ ଜଡେଇ ଧରେ। ପ୍ରକାଶ ପାଇଁ କବିକୁ ମାଧ୍ୟମ କରି ଆପେ ଆପେ କବି ଲେଖନୀରେ ନିର୍ମିତରୂପ ପାଇଥାଏ। ଅର୍ଥାତ୍ ବଳଶାଳୀ ଇନ୍ଦ୍ରିୟଗ୍ରାହୀ ଆକର୍ଷଣରେ ରମଣୀୟ କରି କୃତିରୂପ ଦେବାରେ ଆଶ୍ରୟ ସୌନ୍ଦର୍ଯ୍ୟଗୁଡ଼ିକର (ଛନ୍ଦ/ଅଳଙ୍କାର/ଅନ୍ତଃଯତି/ମାତ୍ରାମେଳ/ସାଦୃଶ୍ୟକଳ୍ପ/ମିଥ୍/ଚିତ୍ରକଳ୍ପ/ବିରୋଧାଭାସ/ଲକ୍ଷଣା/ବକ୍ରୋକ୍ତି/ଶ୍ଳେଷ/ଧ୍ୱନି/ଗୁଣାତ୍ମକ ପଦବିନ୍ୟାସ ଇତ୍ୟାଦି) ବିନିଯୋଗ ଏ ସ୍ତରରେ କବି ଅନିର୍ମାଣପୂର୍ବ ଚମତ୍କାରିତା ପ୍ରତିପାଦନ କ୍ଷମତା ବଳରେ କରିଥାଏ। ଏହି ସ୍ତରରେ ବସ୍ତୁନିର୍ମାଣ ସଫଳତା ପାଇବା ପରେ ଭାବ କୃତିରୂପ ଗ୍ରହଣ କରେ।

ପାଠ ନ ହେବା ପର୍ଯ୍ୟନ୍ତ କୃତିଟି ଏକ ନିରର୍ଥକ ବସ୍ତୁକଳ୍ପନା ମାତ୍ର। କୃତିର ଭାବ କବିଠାରୁ ସମୂହ ସ୍ତରକୁ ଭାବବିନିମୟ ସୂତ୍ରରେ ସଂଚରିତ ହୋଇ ଆଦୃତିଲାଭ କରିବା ପରେ ତାହା ପାଠ ମର୍ଯ୍ୟାଦା ପାଇଥାଏ। କବିତାକୃତିକୁ ପାଠରେ ରୂପାନ୍ତରିତ କରେ ଆବୃତ୍ତି ବା କବିତା ପାଠ। କବିତା-ନିର୍ମାଣ-ପ୍ରକ୍ରିୟାର ତୃତୀୟ ସ୍ତରରେ ଆବୃତ୍ତି ଦ୍ୱାରା ଭାବବିସ୍ତାର ଘଟିଥାଏ। କବିର କବିତାକୁ ପାଠକାନୁକୂଳକରି ସଂଚରଣ କରାଇବାରେ ଆବୃତ୍ତି ଏକ ମାଧ୍ୟମ ଶକ୍ତି। ସମର୍ଥ ଆବୃତ୍ତିକାରକ ହେଉଛି ଭାବଚାରଣ। ଭାବୋଚିତ ଶବ୍ଦାର୍ଥର ଯଥାଯଥ ସରବ ପଠନ ବଳରେ ଆବୃତ୍ତିକାରୀ କବିତାର ପ୍ରତିପାଦ୍ୟ ବସ୍ତୁସତ୍ତାକୁ ସହୃଦୟ ନିକଟରେ ଉଭା କରାଇ ତା' ହୃଦୟରେ ଉତ୍ସାହ-ଉଦ୍ଦୀପନା ସଂଚାର କରେ। ସଫଳ ଆବୃତ୍ତି କବିତାର ସର୍ବାତ୍ମକ ସାମଗ୍ରିକ ସୌନ୍ଦର୍ଯ୍ୟର ଉପଲବ୍ଧି କରାଇଥାଏ।

ଆବୃତ୍ତିକୁ ଆଧାର କରି ଯଥାଶକ୍ତି ଦ୍ରୁତାନ୍ୱିତ ବେଗରେ କବିତାଟି ଏକ ପାଠରୂପେ ଉପଭୋକ୍ତାର ନିଜସ୍ୱ ଦେଶ-କାଳ-ପାତ୍ର-ଅନୁଭୂତି ସହିତ ସଂଯୋଗିତ ହୋଇଯାଏ। ଚତୁର୍ଥ ସ୍ତରରେ କବିର କବିତା ପାଠକର ପ୍ରିୟ ପାଠ ଭାବରେ ବିଗଠିତ ହୋଇଉଠେ। ଏ ଦୃଷ୍ଟିରୁ କବିତାର ପ୍ରସାରଣ ସଂକ୍ରିୟାରେ କବି-କବିତା-ପାଠକ ମଧ୍ୟରେ ଆବୃତ୍ତି ସନ୍ଧିବିଘଟନର ଦାୟିତ୍ୱ ନିର୍ବାହ କରିଥାଏ।

(ଦୁଇ)

ଏବେ କବିତାର ପ୍ରସାରଣରେ ଉପକାରକ ହୋଇଥିବା ଆବୃତ୍ତିର ପରିଭାଷା ନିର୍ଣ୍ଣୟ କରାଯାଇପାରେ।

ଆମ ଭାଷା ବ୍ୟବସ୍ଥାରେ 'ଆବୃତ୍ତି' ଶବ୍ଦଟି ଏକ ପୂର୍ବପ୍ରତ୍ୟୟାତ୍ମକ ଶୁଦ୍ଧ ତତ୍ସମ ଶବ୍ଦ। ଏହାର ସରଳ ପ୍ରତିବୋଧକ ଶବ୍ଦ ହେଉଛି– ପାଠ/ପଠନ/ପଢ଼ା। ଏହି ପାଠ ବା ପଢ଼ା ନୀରବ ନହୋଇ ଉଚ୍ଚ ଆଦର୍ଶ ପଠନ/ସରବ ପଠନ/ରସବୋଧକ ଶ୍ରୁତି ସୁଖକର ପଠନ/କର୍ଣ୍ଣମନ ରୋଚକ ପଠନ/ସଘୋଷପଠନ ହୋଇଥାଏ। ଆବୃତ୍ତିର ବ୍ୟୁତ୍ପାଦିତ ରୂପଟି . ଏହିପରି– 'ଆ' ଉପସର୍ଗ 'ବୃତ୍' ଧାତୁରେ 'ତି' ପ୍ରତ୍ୟୟ (ଆ – ବୃତ୍ + ତି)। ଏହାର ବ୍ୟୁତ୍ପତ୍ତିଗତ/ପାରିଭାଷିକ ଅର୍ଥଟି ହେଉଛି– ମୁଖସ୍ଥ ବା ଘୋଷା ପାଠର ପୁନର୍ପାଠ। ଅର୍ଥାତ୍ ପୂର୍ବରୁ ସୁନିର୍ବାଚିତ ଓ ପସନ୍ଦଯୋଗ୍ୟ ରଚନାକୁ (କବିତାତ୍ମକ) ଘୋଷି ମୁଖସ୍ଥପଦକୁ ପୁନଃ ପୁନଃ ପରେ ପ୍ରୟୋଜନ ମତେ ସରବ ପାଠ କରିବାର ପ୍ରକ୍ରିୟା ହିଁ ଆବୃତ୍ତି। 'ଆ' ଉପସର୍ଗଟି ମୂଳପଦ 'ବୃତ୍ତି'ରେ ଆଗମ ଅର୍ଥରେ ଅନୁସଂଯୁକ୍ତ ହୋଇ ଏହି ଆବୃତ୍ତି ଶବ୍ଦଟି ବ୍ୟୁତ୍ପନ୍ନ ହୋଇଛି। ସୋଚ୍ଚାରଣ ପଠନ ହେବା ପୂର୍ବରୁ କବିତାରେ ବୃତ୍ତି (ବୃତ୍+ତି) ଛାନ୍ଦସିକ ଗାନଧର୍ମୀ ଅନୁବିଧି ରହିଛି। କବିତାରେ ବୃତ୍ତିଟି କବିର ନିର୍ମାଣକ୍ଷମତା ଓ ଶବ୍ଦବିନ୍ୟାସଶକ୍ତି ବଳରେ ପ୍ରାରମ୍ଭରୁ କବିତାର ପଦସଂଘଟନାରେ ଅକ୍ଷରମାତ୍ରିକ ଶୃଙ୍ଖଳା ଭାବରେ ସୁନିରୂପିତ ଓ ନିୟମିତ ହୋଇ ରହିଛି। ଅକ୍ଷର ମାତ୍ରିକ ଯତିମେଳ ନିୟମ ଜାଣିଥିବା ଓ ବୃତ୍ତିକୁ ଅନାୟାସରେ ସରବ ଉପସ୍ଥାପନ କରିପାରୁଥିବା ପାଠକଟି ସମଷ୍ଟି ସମ୍ମୁଖରେ ଗାଇବା/ବୋଲିବା/ଶୁଣେଇ ପଠନ କରିବା ଛଳରେ କବିତାର ସ୍ଥିରବୃତ୍ତିକୁ ବେଗ ପ୍ରଦାନ କରିଥାଏ। ସୁତରାଂ ବୃତ୍ତିର ପୁନରାଗମନ ଓ ସରବ ଉପସ୍ଥାପନା ହିଁ ଆବୃତ୍ତି।

ଆବୃତ୍ତିର ବ୍ୟାବହାରିକ ସଂଜ୍ଞାଟି କବିତାର ଯତି ଅକ୍ଷରଛନ୍ଦ ବ୍ୟତୀତ ଶବ୍ଦବୃତ୍ତି ସହିତ ମଧ୍ୟ ଜଡ଼ିତ। ଶବ୍ଦବୃତ୍ତି କହିଲେ କବିତାର ଶବ୍ଦ ସଂରଚନା ଭିତରେ ଥିବା ବଚନାୟିତ ଅର୍ଥ ପ୍ରବଣତା। କବିତାର ଶାବ୍ଦିକ ଶୃଙ୍ଖଳା ଭିତରେ ରହିଥିବା ଅର୍ଥ ଦ୍ୟୋତନାକୁ ଭାବବୋଧକ କରିପାରୁଥିବା ଶୁଦ୍ଧ ସରବ ରସ ନିଷ୍ପାଦନଧର୍ମୀ ପାଠ ହିଁ ଆବୃତ୍ତି। କବିତାର

ଭାବାଭିପ୍ରାୟ ଶବ୍ଦାର୍ଥରୂପ ବୃତ୍ତିବନ୍ଧରେ ଆବୃତ୍ତି ହୋଇ ରହିଥାଏ। ଶବ୍ଦ ଅର୍ଥର ସହବନ୍ଧିତ ଆବୃତିକୁ ଅନୁରାଗୀଙ୍କ ନିକଟରେ ଆବୃତ୍ତି ପ୍ରତ୍ୟକ୍ଷ ନିରାବରଣ କରିଦିଏ। ଆବୃତ୍ତିକୁ ଏହି ମର୍ମରେ କବିସନ୍ଧି ପର୍ଯ୍ୟାୟଭୁକ୍ତ କରାଯାଏ। କବିର ଭାବବିନ୍ୟାସ ଓ ଶାବ୍ଦିକ ବିନ୍ୟାସ ସହିତ ସଂଯୋଗ ସ୍ଥାପନ କରି ପାରୁଥିବାରୁ ଆବୃତ୍ତିର ଅପର ସମାଖ୍ୟା ହେଉଛି କବିସନ୍ଧି।

ଆବୃତ୍ତିର ଇଂରାଜୀ ପ୍ରତିଶବ୍ଦଟି ହେଉଛି– 'ରେସିଟେଶନ' (Recitation)। ଏହି ଶବ୍ଦଟି ମୂଳ ଲାଟିନ/ଗ୍ରୀକ୍ ଶବ୍ଦ ରିସାଇଟ୍/ରିସାର୍ଟ (Resite/Risart) ସହିତ ବ୍ୟୁତ୍ପତ୍ତିଗତ ସଂବନ୍ଧ ରଖିଛି। ରିସାଇଟ୍‌ର ଅର୍ଥ ସ୍ମୃତିପାଠର ପୁନରାବୃତ୍ତି କରିବା ଓ ରିସର୍ଟର ଅର୍ଥ ଯାହା ମୁଖସ୍ଥ/କଣ୍ଠସ୍ଥ ତାହାକୁ ପୁନଶ୍ଚ ସ୍ୱରାୟିତ କରି ପାଠ କରିବା। ଡିକେନ୍‌ସ ଏହାକୁ କବିତାର ଭାବସଂଚାର ନିମନ୍ତେ ଏକ ପ୍ରଦର୍ଶନୀକଳା (ପର୍‌ଫର୍‌ମିଂ ଆର୍ଟ) କଳା ପ୍ରଜାତିର କାବ୍ୟିକ କୌଶଳ ଭାବରେ ବିବେଚନା କରିଛନ୍ତି। କବିତାର ଅନ୍ତଃରୀଣ ଭାବକୁ ନାଟକୀୟ ଭଙ୍ଗୀରେ, ବ୍ୟାଖ୍ୟାତ୍ମକ ଆଙ୍ଗିକ ଚାତୁରୀରେ ଓ ସଂଗୀତ ସମଧର୍ମୀ ଆବେଦନରେ ପ୍ରଦର୍ଶନ କରିବାର ଅନ୍ୟତମ କଳା-ବ୍ୟାପାର ହେଉଛି ରେସିଟେଶନ୍/ ଆବୃତ୍ତି। ରେସିଟେସିନର ପ୍ରାୟୋଗିକ ଅର୍ଥ ହେଉଛି– ସମୂହରେ ପସନ୍ଦଯୋଗ୍ୟକରି କାବ୍ୟଭାବକୁ ଶୁଣାଇବାର କଥନ ପଦ୍ଧତି। ଗେୟଧର୍ମ ଓ ବାଚନିକ ସୌନ୍ଦର୍ଯ୍ୟର ଏକ ମିଶ୍ରିତ ମଧ୍ୟବର୍ତ୍ତୀ କଳାଗୁଣ ଏଥିରେ ଉପସ୍ଥିତ ଥାଏ। ବ୍ରିଟାନିକା ଓ ଅନ୍ୟାନ୍ୟ ବିଶ୍ୱକୋଷ ଏହାର ଯେଉଁ ଯେଉଁ ପରିଭାଷା ନିର୍ଣ୍ଣୟ କରିଛନ୍ତି ତାହାର ସାରାଂଶ ହେଉଛି– କବିତାର ବାଚନିକ କଳାତ୍ମକ ପ୍ରତିବେଦନଧର୍ମୀ ଉପସ୍ଥାପନାଭଙ୍ଗୀ ହେଉଛି ରେସିଟେଶନ୍।' ସୁତରାଂ ସୁନ୍ଦର ଶୁଦ୍ଧ ଶାବ୍ଦିକ ଉଚ୍ଚାରଣଭଙ୍ଗୀ, ଅନ୍ତଃରୀଣ ଛନ୍ଦସୁଲଭ ଲାଳିତ୍ୟ, ବାଚନିକ ମାଧୁର୍ଯ୍ୟ, ଭାବକୁ ପ୍ରତିଭାସନ ଧର୍ମରେ ଦେଖାଇ ପାରୁଥିବା କଥନକଳାର ଏକ ମିଶ୍ରିତ କାବ୍ୟ/ କବିତା ପଠନପ୍ରଣାଳୀ ହେଉଛି ରେସିଟେଶନ। ପୁନଶ୍ଚ ପ୍ରାଚୀନ ଫ୍ରେଞ୍ଚ୍ ଶବ୍ଦ Reciter ଲାଟିନ Recitare ଶବ୍ଦରୁ ସୃଷ୍ଟିହୋଇ ଇଂରେଜୀରେ Re + Cite = Recite ଭାବରେ ବ୍ୟବହୃତ ହୋଇଛି, ଯାହାର ଅର୍ଥ ହେଉଛି ଗୀତକୁ ପୁନର୍ବାର ବାଚନିକଭଙ୍ଗୀରେ ଉପସ୍ଥାପିତ କରିବାର ଉପାୟ।

ଇଂରେଜୀ ରେସିଟେଶନର କବିତା କ୍ଷେତ୍ରରେ ଅର୍ଥ ଓ ଭୂମିକା ଯାହା ତାହାର ଅନୁରୂପତାକୁ ଆବୃତ୍ତିରେ ଦେଖାଯାଏ। ଆବୃତ୍ତି ପ୍ରସଙ୍ଗଟି ସମୟନିର୍ଘଣ୍ଟାନୁସାରୀ ଇଂରାଜୀ ଶିକ୍ଷାର ପ୍ରଚଳନ ପରେ ମଧ୍ୟବିତ୍ତ ନୂତନ ଶିକ୍ଷିତ ଗୋଷ୍ଠୀଙ୍କ ଇଂରାଜୀ କବିତା ପଠନ ଭିତ୍ତିରେ ଅନ୍ୟାନ୍ୟ ଭାରତୀୟ ସାହିତ୍ୟ ପରି ଆମ କବିତା ଚର୍ଚ୍ଚାର ଆସରରେ (ଶ୍ରେଣୀଗୃହ, କବିତା ପାଠଚକ୍ର ଓ କବିମେଳି ଇତ୍ୟାଦିରେ) ପରିଗୃହୀତ ହୋଇଛି। ଏହାର ବିସ୍ତାର ପଛରେ ପ୍ରାଚ୍ୟ ସ୍ତୁତିପାଠର ଆବେଦନାତ୍ମକ ପ୍ରଭାବ ଅପେକ୍ଷା ଉପନିବେଶବାଦୀ ସାହିତ୍ୟ

ସଂରଚନାର ଅନୁକରଣ ବଳିଷ୍ଠ ରହିଛି। ଅବଶ୍ୟ କେତେକ କ୍ଷେତ୍ରରେ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିବାକୁ ଯାଇ ଆମ ଆବୃତ୍ତିକାରୀମାନେ ଆମ ଛାନ୍ଦସିକ ମାଧୁର୍ଯ୍ୟ ଓ ୟୁରୋକୈନ୍ଦ୍ରିକ ଭାବାର୍ଥ ପ୍ରତିଭାସନଧର୍ମୀ ରେସିଟେଶନର ବାଚନିକ ଭଙ୍ଗିମାକୁ ମିଶାଇ ପାରିଛନ୍ତି ଏବଂ ଏହି ସୂତ୍ରରେ ଆବୃତ୍ତିର ଚମକ ଆଣିବାକୁ ସଫଳ ପ୍ରଯତ୍ନ କରିପାରିଛନ୍ତି। ଏହାଦ୍ୱାରା ପ୍ରଥାସିଦ୍ଧ ମଧ୍ୟଯୁଗୀୟ ଛାନ୍ଦସିକ ଯତିପାତଗର୍ଭକ କବିତା-ଗାୟନ-ପ୍ରକ୍ରିୟାରେ ସ୍ଥାଣୁତା ଆସିଥିଲେ ବି ବାକ୍‌ଭଙ୍ଗୀ ଓ କାବ୍ୟିକଭଙ୍ଗୀର ସଂଶ୍ଳେଷଣ ଭିତ୍ତିର ଆବୃତ୍ତି ଆମ ବାଙ୍‌ମୟ ଆଧୁନିକତାର ଅନ୍ୟତମ ବିଶେଷତ୍ୱ ଭାବରେ ପରିଗଣିତ ହୋଇଛି। ଛନ୍ଦମୟ କାବ୍ୟଗାନର ପୁରୁଣାରୁଚି ଅନ୍ତର୍ହିତ ହୋଇଛି।

ଏହି କ୍ରମରେ ଆବୃତ୍ତିର ପାରିଭାଷିକ ଲକ୍ଷଣ ନିମ୍ନପ୍ରକାରେ ବିଚାର୍ଯ୍ୟ। ଆବୃତ୍ତି ହେଉଛି–

(କ) ଲିଖିତ ଓ ମୁଖସ୍ଥ କବିତାରେ ସମୂହ ନିକଟରେ ସରବ ଉପସ୍ଥାପନ କରିବାର କୌଶଳ।

(ଖ) ଏକ ଭାବପ୍ରବୋଧକ ଉଚ୍ଚାରଣଧର୍ମୀ ପଠନ ସଂକ୍ରିୟା।

(ଗ) କବିର ଭାବନାକୁ ପାଠକର ଭାବନା ମଧ୍ୟରେ ଆରୋପଣ ଓ ବିନିଯୋଗ କରିବାର ଏକ ସୂକ୍ଷ୍ମ ମନସ୍ତାତ୍ତ୍ୱିକ କାରବାର (psychological speculation) ବା କବି-କବିତା-ପାଠକ ମଧ୍ୟରେ ଏକ ସଂଯୋଗ ଅନୁବିଧିର ମାଧ୍ୟମ।

(ଘ) କବିର କଳ୍ପନାତ୍ମକ ପ୍ରତିବେଦନକୁ ରସାନୁଗ୍ରହୀଙ୍କ ପାଖରେ ପ୍ରତିଫଳନାତ୍ମକ ଢଙ୍ଗରେ ପରିବେଷଣ କରିବାର ସଂଚାରଣ ଉପାୟ।

(ଙ) ମୂଳ ରଚନାରେ ଥିବା ସୃଜନଶୀଳତାର ଇଙ୍ଗିତଗୁଡ଼ିକୁ ମନୋବିଶ୍ଳେଷଣାତ୍ମକ ଭଙ୍ଗୀରେ ବୋଧକରଣ କରିବାର ଏକ ପ୍ରତିଜ୍ଞାପନଧର୍ମୀ ଫଳକୌଶଳ।

(ଚ) କବିତାରେ ଥିବା ଶବ୍ଦର ନାରୀତ୍ୱପଣ ଓ ପୁରୁଷାର୍ଥ ଗୁଣକୁ (female modulated and patriarchal quality) ଅବିକଳ ସ୍ୱରର ଉତ୍‌ଥାନପତନ ଦେଇ ଅକ୍ଷରମାତ୍ରିକ କଳାମାତ୍ରିକ ବିନ୍ୟାସ ନିୟମରେ ଶ୍ରୋତାନୁକୂଳ କରି ପରିବେଷଣ କରିବାର ରସାତ୍ମକ ପଠନଚାତୁରୀ।

(ଛ) କବିତାର ବୁଦ୍ଧିଦୀପ୍ତ ଓ ଅଭିସୂଚନାତ୍ମକ ଭାବସୌନ୍ଦର୍ଯ୍ୟକୁ ସହଜ ବିତରଣ କରାଇବାର ଏକ ଆକ୍ରାନ୍ତ ସୃଷ୍ଟିକାରୀ ପ୍ରଭାବଶାଳୀ ଅତ୍ୟୁତ୍ତମ ସଂଚାର ମାଧ୍ୟମ (transcendental, transmitive, effective and affective medium)।

(ଜ) କବିକର୍ତ୍ତୃକ ଏକ କେନ୍ଦ୍ରାଭିମୁଖୀ ପାଠକୁ ବିକେନ୍ଦ୍ରୀକରଣ ସମୂହ ଉପଲବ୍ଧିରେ ରୂପାନ୍ତର କରିବାର ପଠନ ପ୍ରକ୍ରିୟା।

(ଝ) କବିତାର ଭାଷା, ଛାନ୍ଦସିକତା, ସଂଳାପଧର୍ମିତା, ଶବ୍ଦସାପେକ୍ଷ ବିନ୍ୟାସକୁ ଭାଙ୍ଗି ଯୋଡି ଉଠାପକା କରିପାରୁଥିବା ଏକ କୋମଳ ବ୍ୟାଖ୍ୟାତ୍ମକ ଉଚ୍ଚାରଣ କଳା।

(ଞ) ଏକ କାବ୍ୟିକ ବାଗ୍ମିତାର ପ୍ରସଙ୍ଗ; ଯାହା ଶୁଣାଇବା ଓ ଶୁଣିବା କ୍ରିୟାକର୍ମ ଭିତ୍ତିରେ ଭାବର ଆଦାନପ୍ରଦାନ କରିବାରେ ସେତୁବତ୍ ଦାୟିତ୍ୱ ସଂପାଦନ କରେ।

(ଟ) ଶ୍ରାବ୍ୟ-ଦୃଶ୍ୟ-ପ୍ରଦର୍ଶନୀ କଳାର ମିଶ୍ରଣରେ କବିତାକୁ ଭାବଦ୍ୟୋତକ କରି ପ୍ରକାଶ କରିବାର ପ୍ରେରଣ-ମାଧ୍ୟମ।

(ଠ) ମୁଖସ୍ଥ > ଉଚ୍ଚାରଣ > ପଠନ ଧର୍ମରେ ଆନୁଷ୍ଠାନିକ ଭାବେ ସମୂହ ଉଦ୍ଦେଶ୍ୟରେ କବିତାକୁ ଉପସ୍ଥାପନ କରିବାର ପ୍ରଯତ୍ନସିଦ୍ଧ ବାଗ୍ମିତାର କୌଶଳ।

(ଡ) କବିତାକୁ ଆକୃତିରୂପ ଦେବାର ଏକ ଆଭାଷଣ ବା ବଂଧୁତ୍ୱପୂର୍ଣ୍ଣ ଆଳାପିତ ପଠନ।

(ଢ) ଭାବାଭିବ୍ୟକ୍ତିମୂଳକ ସଂହତ ସଂହୃତ ସଂଚାରଣ ପଦ୍ଧତି।

(ଣ) କବିତାର ସୌନ୍ଦର୍ଯ୍ୟରଥକୁ ସଂଚାଳନ କରାଉଥିବା ସାରଥ୍ୟ (ସାରଥିର କାର୍ଯ୍ୟ)।

(ତିନି)

ଆବୃତ୍ତିକଳାର ଇତିହାସ ଓ କମପ୍ରବାହ ନିରୂପଣ କରିବା ମୋ ପରି ଏକ ସ୍ୱଳ୍ପାଧ୍ୟାୟୀ ପକ୍ଷରେ ସଂଭବ ହୋଇପାରୁନି। ଏ କ୍ଷେତ୍ରରେ ମୋର ନଗଣ୍ୟ ସାମର୍ଥ୍ୟ ଓ ସୀମାବଦ୍ଧତାକୁ ସ୍ୱୀକାର କରୁଛି। ମାତ୍ର ଆଲୋଚନାର ଆବଶ୍ୟକତା ଦିଗରୁ ଏହା ସମ୍ବନ୍ଧରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ବିଚାରରେ ଥିବା କେତେକ ଦିଗ ଓ ତଥ୍ୟକୁ ଏଠାରେ ଚିହ୍ନିତ କରୁଛି ମାତ୍ର।

ପୂର୍ବର ଦୁଇଟି ପର୍ଯ୍ୟାୟର ଆଲୋଚନାରୁ ଦୁଇଟି ବିଷୟ ଅବଧାରିତ ହୋଇପାରିଛି ଯେ– କବିତାରେ ବିଳସିତ କବିର ଭାବନାକୁ ଅନୁରୂପଭାବେ ପାଠକଠାରେ ଉତ୍ପାଦନ ଅଥବା ସଂଚାରଣ କରିବା ନିମନ୍ତେ ଆବୃତ୍ତି ଏକ ସମ୍ବାଦ-ଦାୟିତ୍ୱ (ମିଳନାତ୍ମ ବିନିମୟ ଦାୟିତ୍ୱ) ତୁଲାଇଥାଏ। ଜଣକୁ ଆଉ ଜଣଙ୍କ ପାଖରେ (କବିଙ୍କୁ ପାଠକ ନିକଟରେ) ପ୍ରିୟତମ କରାଇବାର ଘଟସୂତ୍ରୀୟ ମଧ୍ୟସ୍ଥତା କରିବା ବେଳେ ଆବୃତ୍ତି କୋମଳ ଗଦ୍ୟାୟିତ ପଦ୍ୟର ଛନ୍ଦଗୁଣକୁ ବା ବାଚନିକ ସ୍ନିଗ୍ଧତାର ଛାନ୍ଦସିକ ମାଧୁର୍ଯ୍ୟକୁ ବରଣ କରିବା ବ୍ୟତୀତ ଅନ୍ୟଚାରା ନାହିଁ। ଏ ଦିଗରୁ ଆବୃତ୍ତି କଳସତ୍ତା ସହିତ ପ୍ରାଚ୍ୟ ପାଶ୍ଚାତ୍ୟ ଅଳଙ୍କାରଶାସ୍ତ୍ରୀୟ ଛନ୍ଦ ବିଚାରର ଯୋଗସୂତ୍ର ଓ ସନ୍ଧିସୂତ୍ରକୁ ଯଥାସାଧ୍ୟ ଏଠାରେ ଅନୁଶୀଳନ ପରିସରଭୁକ୍ତ କରାଯାଇ ଏହାର ପରିସର ଓ ସ୍ୱରୂପ ସମ୍ବନ୍ଧରେ ଚର୍ଚ୍ଚା କରାଯାଉଛି।

ପ୍ରାଚ୍ୟ ବିଦ୍ୟାରେ ଦ୍ୱାଦଶ ପ୍ରକାରର ଶାସ୍ତ୍ରକୁ ସମର୍ଥନ କରାଯାଇଛି। ସେସବୁ ହେଉଛି– ଶ୍ରୁତିଶାସ୍ତ୍ର, ସ୍ମୃତିଶାସ୍ତ୍ର, ଇତିହାସ, ପୁରାଣ, ପ୍ରମାଣ ଶାସ୍ତ୍ର (ନ୍ୟାୟ/ମୀମାଂସା/

ତର୍କ/ଦର୍ଶନ ସମ୍ବଳିତ), ଜ୍ୟୋତିର୍ବିଜ୍ଞାନ (ଗ୍ରହନକ୍ଷତ୍ର, ବିଚଳନ, ସମୟ ଗଣନା, ସଂଖ୍ୟା ଓ ପରିମାଣାଦି ଗଣନା, ଫଳିତ ଗଣନା ସଂପର୍କିତ), ରାଜସିଦ୍ଧାନ୍ତ (ଅର୍ଥ ଓ ଅନୁଶାସନଧର୍ମୀ) ଲୋକଶାସ୍ତ୍ର, ବିରଚନା (ଅନୁବାଦ), ପ୍ରକୀର୍ଣ୍ଣକ (ପ୍ରାକୃତ ଭାଷାରେ ରଚିତ ବିବିଧ ଶାସ୍ତ୍ର ଏବଂ ଅନ୍ୟାନ୍ୟ ବ୍ୟାଖ୍ୟାତ୍ମକ, ସଂକଳନଧର୍ମୀ ଶାସ୍ତ୍ର ଯଥା– ସଂହିତା, ଟୀକା, ଲୋଚନ, କାମଶାସ୍ତ୍ରାଦି) କାବ୍ୟ ଓ କ୍ରିୟାକଳ୍ପଶାସ୍ତ୍ର (କୋଷ, ଅଭିଧାନ, ବ୍ୟାକରଣ, ଛନ୍ଦ, ଅଳଙ୍କାର, ଶିଳ୍ପ, ସଂଗୀତାଦି ଲକ୍ଷଣ ଶାସ୍ତ୍ର) । ଏସବୁ ମଧ୍ୟରେ କାବ୍ୟବିଦ୍ୟା ବା କାବ୍ୟଶାସ୍ତ୍ରରେ ଥିବା ଜ୍ଞାନ ଅମୃତସ୍ୱରୂପ (କାବ୍ୟାମୃତଂ ଶ୍ରେୟଂ) ଯାହା ଆହ୍ଲାଦଦାୟକ, ଚତୁର୍ବର୍ଗ ଫଳପ୍ରାପ୍ତିକାରକ ଓ ବିଶ୍ୱାସ ସଂପାଦକ । କାବ୍ୟ ସହିତ ଅନ୍ୟ ଏଗାର ପ୍ରକାର ଶାସ୍ତ୍ରଜ୍ଞାନ ଓ ବିଚାର ସିଦ୍ଧାନ୍ତର ଉପଲବ୍ଧି ପାଇଁ ଆବୃତ୍ତି-ଆଶ୍ରୟକୁ ପ୍ରାଚ୍ୟ ବିଦ୍ୟାରେ ଓ ସାଧାରଣ ବିଶ୍ୱାସରେ ଗୁରୁତ୍ୱ ଦିଆଯାଇଆସିଛି (ଆବୃତ୍ତି ସର୍ବଶାସ୍ତ୍ରାଣାଂ ବୋଧାଦପି ଗରିୟସୀ) । ଅନ୍ୟାନ୍ୟ ଶାସ୍ତ୍ର ଅପେକ୍ଷା କାବ୍ୟ-ପୁରାଣ-ପଦ୍ୟ-କବିତା-ମୁକ୍ତକ-ଗୀତିକାବ୍ୟ-ଖଣ୍ଡକାବ୍ୟ ଆଦି ପାଠ ପ୍ରକରଣ-ସୌନ୍ଦର୍ଯ୍ୟ ସଂପାଦନରେ ଛନ୍ଦଶାସ୍ତ୍ରର ବଳିଷ୍ଠ ଭୂମିକାକୁ ସ୍ୱୀକାର କରାଯାଇଛି । ଏ କାରଣରୁ ଭାରତୀୟ ଲେଖା ଓ ପାଠ ଭିତ୍ତିକ ସାରସ୍ୱତୀୟ ବାଙ୍ମୟ ପରଂପରାରେ ଆବୃତ୍ତିକଳାକୁ ଛନ୍ଦବିଚାରସିଦ୍ଧ କରାଯାଇଛି । ସରବ ପଠନ ବା ଆବୃତ୍ତି ଦ୍ୱାରା କାବ୍ୟବାଣୀ ସହଜବୋଧ ହୋଇଥାଏ । ଅନୁରାଗୀ ଶ୍ରୋତାବର୍ଗଙ୍କ ଅବବୋଧ ସ୍ତରକୁ କାବ୍ୟାମୃତକୁ ସଂଚାଳନ କରିନେବାରେ ଆବୃତ୍ତିକୁ ବଳିଷ୍ଠ ଅବଲମ୍ବନ ରୂପେ ସ୍ୱୀକାର କରାଯାଇଛି ।

ପ୍ରାଚୀନ ଭାରତୀୟ ଛନ୍ଦଶାସ୍ତ୍ରୀମାନେ କବିତା ପାଠ ଓ କବିତାଗାନକୁ ନେଇ ଦୁଇ ପ୍ରକାର ବିଚାର ଦେଇଛନ୍ତି । ପିଙ୍ଗଳ, ବଶିଷ୍ଠ, କୌଣ୍ଡିନ୍ୟ, କପିଳ ଓ କମ୍ବଳମୁନି ପ୍ରମୁଖ କବିତାରେ ଯତିପାତକୁ ସ୍ୱୀକାର କରି ଅକ୍ଷରମାତ୍ରିକ ବୃତ୍ତି ନିୟମାନୁମୋଦିତ ଗାନ ଉପରେ ଗୁରୁତ୍ୱ ଦେଇଥିବା ବେଳେ ଭର, କୋହଳ, ମାଣ୍ଡବ୍ୟ, ଅଶ୍ୱତର, ସୈତବ, ଯାସ୍କ ଓ କେଦାର ଭଟ୍ଟ ପ୍ରମୁଖ ଯତିପାତକୁ ମାନ୍ୟତା ନଦେଇ କବିତାପାଠ ବା ଆବୃତ୍ତି ପଦ୍ଧତିରେ କାବ୍ୟବାଣୀର ଶିକ୍ଷା ଓ ପ୍ରସାର ଉପରେ ପ୍ରାଧାନ୍ୟ ଦେଇଛନ୍ତି । କେଦାରଭଟ୍ଟ 'ବୃତ୍ତରତ୍ନାକରଂ'ରେ କାବ୍ୟମୋଦୀ ଗାୟକର ମୁକ୍ତମନା ଉଚ୍ଚାରଣରେ ବୃତ୍ତର ପ୍ରକୃତ ପ୍ରଭାବକୁ ସ୍ୱୀକାର କରିଛନ୍ତି । ସ୍ୱଚ୍ଛନ୍ଦ ଉଚ୍ଚାରଣ ହିଁ ବୃତ୍ତର ମହତ୍ତ୍ୱ କହିବା ସମୟରେ ସେ ପରୋକ୍ଷରେ କାବ୍ୟ ପଙ୍‌କ୍ତିର ଶ୍ରୁତିସୁଖଦାୟକ ପାଠ ବା ଆବୃତ୍ତି ଉପରେ ଆସ୍ଥାବାନ୍ ଅଛନ୍ତି । ଔଚିତ୍ୟ ପ୍ରକରଣବାଦୀ କ୍ଷେମେନ୍ଦ୍ର 'ସୁବୃତ୍ତ ତିଲକଂ' ଗ୍ରନ୍ଥରେ ଛନ୍ଦକଳ୍ପର ଅନ୍ୟତମ ପ୍ରକାର 'ସଂକୃତି'କୁ ଭାବୋଦ୍ରେକା ସ୍ୱଚ୍ଛନ୍ଦ ପଠନ ବିଧାନ ଭାବରେ ସ୍ୱୀକାର କରି କାବ୍ୟାବୃତ୍ତିକୁ ବୋଧନଶକ୍ତି ରୂପେ ଗ୍ରହଣ କରିଛନ୍ତି ।

ଭାରତୀୟ ଛନ୍ଦବିଜ୍ଞାନୀମାନେ ପାଞ୍ଚପ୍ରକାର ଛନ୍ଦର କାବ୍ୟମୟ ବିନିଯୋଗ ନିର୍ଦ୍ଦିଷ୍ଟ କରିଛନ୍ତି; ଯଥା– ଅନାଦିଷ୍ଟ, ବୃହତ୍, ଅତି, କୃତି ଓ ପ୍ରତିତି ଛନ୍ଦ । ପ୍ରଥମ ତିନୋଟି ଛନ୍ଦ

ସମ-ବିଷମ ଯତିପାତ ନିୟମାନୁମୋଦିତ ଓ ଗାନଯୋଗ୍ୟ। ବୃହତ୍‌ଛନ୍ଦର ତ୍ରିଷ୍ଟୁପ୍ ଓ ଅନୁଷ୍ଟୁପ୍ ଛନ୍ଦ ଉଚ୍ଚାରଣଯୋଗ୍ୟ। ବେଦର ମନ୍ତ୍ର ବା ସୂକ୍ତ ଗାନ ହୁଏନାହିଁ, ଉଚ୍ଚାରିତ ହୁଏ ବା ପାଠ ହୁଏ। ବେଦାଂଶ ବିଶେଷ ପବିତ୍ର ଶବ୍ଦ ସମଷ୍ଟି ସୂକ୍ତ/ମନ୍ତ୍ର ଗୁଡ଼ିକ ଅଭୀଷ୍ଟ ସାଧନ ନିମନ୍ତେ ବଶୀକରଣ ସୂତ୍ରରେ ସରସ ସଦ୍‌ବଚନ ରୂପେ ଉଚ୍ଚାରିତ ହୁଏ। ତେଣୁ ବେଦମନ୍ତ୍ରର ସୌନ୍ଦର୍ଯ୍ୟାବେଦନକୁ ଆବୃତ୍ତିଯୋଗ୍ୟ ଧ୍ୱନିମାତ୍ରିକ ପଠନ ଦ୍ୱାରା ଉପଲବ୍ଧି କରିହୁଏ। କୃତି, ପ୍ରକୃତି, ଆକୃତି, ବିକୃତି, ସଂକୃତି, ଅଭିକୃତି ଓ ଉତ୍‌କୃତି– ସାତଭାଗରେ ବିଭକ୍ତ କୃତିଛନ୍ଦର ବିଶେଷତ୍ୱ ହେଉଛି– ନିଜେ ଗାୟକ ଶବ୍ଦ-ବିନ୍ୟାସକୁ ଦେଖି ବୃତ୍ତି ନିର୍ମାଣ କରିଥାଏ ବା ପଙ୍‌କ୍ତି ଆବୃତ୍ତି କରିଥାଏ। ଅପର ପକ୍ଷରେ ଗାନଯୋଗ୍ୟ ଓ ନାଦଯୋଗ୍ୟ ଛନ୍ଦଗୁଣର ସମୁଚ୍ଚୟ ସାଧନ ଦ୍ୱାରା ନିର୍ଦ୍ଦିଷ୍ଟ ପ୍ରତିଟି ଛନ୍ଦରେ ଉଭୟ ଗାନଧର୍ମ ଓ ପାଠଧର୍ମ ଉପସ୍ଥିତ ରହିଛି। ବେଦାଶ୍ରୟୀ ଛନ୍ଦର ପରେପରେ ପ୍ରାକୃତ ବା ବ୍ୟାବହାରିକ ସଂସ୍କୃତରେ ଲୌକିକ ଛନ୍ଦର ବିକାଶ ଘଟିଛି। ଅକ୍ଷରଗଣନାମୂଳକ ଲୌକିକବୃତ୍ତ ଛନ୍ଦ ଗେୟପ୍ରଧାନ ହୋଇଥିବା ସ୍ଥଳେ ଲୌକିକ ଜାତିଛନ୍ଦ ମାତ୍ରା ଗଣନାତ୍ମକ। ଉଭୟ ଛନ୍ଦ ଗାନଧର୍ମ ଓ ପଠନଧର୍ମରେ ବ୍ୟବହୃତ ହୋଇଛି।

କାଳିଦାସ ତାଙ୍କର 'ଶ୍ରୁତିବୋଧ'ରେ କାବ୍ୟର ଆବେଦନକୁ ରସାତ୍ମକ ଆହ୍ଲାଦ ଦାୟକ ଭାବରେ ଗ୍ରହଣ କରି କାବ୍ୟର ଶବ୍ଦାର୍ଥ ବିନ୍ୟାସରେ ଶ୍ରୁତିମାଧୁର୍ଯ୍ୟ ବ୍ୟୁତ୍ପାଦକ ବୃତ୍ତିକୁ ଅନ୍ୟତମ ଶୋଭାକାରକ ଧର୍ମ ଭାବରେ ବିବେଚନା କରିଛନ୍ତି। ଶାବ୍ଦିକ ଉଚ୍ଚାରଣର ସୁଖବୋଧକୁ କାଳିଦାସ ନିର୍ମିତି-ସଂକଳ୍ପ ଭାବରେ ସମସ୍ତ କାବ୍ୟରେ ବରଣ କରିଥିବାରୁ 'କାଳିଦାସ ବାଣୀ ସ୍ଫୂର୍ତ୍ତି' ରମଣୀୟ ଆକର୍ଷଣରେ ଏଯାବତ୍ ଦୃଷ୍ଟାନ୍ତମୂଳା ହୋଇରହିଛି। କବିତାର ଶବ୍ଦାନୁଶାସନରେ କାଳିଦାସଙ୍କ ଶ୍ରୁତିବୋଧାତ୍ମକ କାବ୍ୟତା ଉଭୟ ଗାନ ବୈଶିଷ୍ଟ୍ୟ ଓ ପାଠ ବୈଶିଷ୍ଟ୍ୟକୁ ଅଙ୍ଗୀକାର କରିଛି। ଏ ଦୃଷ୍ଟିରୁ ମନ୍ଦାକ୍ରାନ୍ତ-ମେଘଦୂତ ଯେତିକି ଗାନ ନହୋଇଛି ତଦାପେକ୍ଷା ଶତାବ୍ଦୀ ଶତାବ୍ଦୀଧରି ସାଧାରଣ ଭାବୁକ ତୁଣ୍ଡରେ (କଣ୍ଠରେ ନୁହେଁ) ଆବୃତ୍ତ ହୋଇ ଆସୁଛି। ଆବୃତ୍ତି ଯୋଗ୍ୟତାର ଶବ୍ଦବସାଣ କାଳିଦାସଙ୍କ ପରେ ଦଣ୍ଡୀ, ମାଘ ଶ୍ରୀହର୍ଷ ଓ ଜୟଦେବଙ୍କୁ ଶ୍ରୁତିପସନ୍ଦ ଦେଇ ମନପସନ୍ଦର କବି ଭାବରେ ମାନ୍ୟତା ଦେଇପାରିଛି।

କାବ୍ୟ-ଖଣ୍ଡକାବ୍ୟ-ମୁକ୍ତକ ଯୋଜନାର ପ୍ରସାର ଘଟିବା ପରେ ଛନ୍ଦୋ-ମଂଜରୀକାର ଏସବୁର ଆଭିଜାତିକ ବିସ୍ତାରଣର ମୂଳକାରଣ ରୂପେ ବୃତ୍ତାତ୍ମକ ଛନ୍ଦର ଆରୋପ୍ୟ-ଆଶ୍ରୟକୁ ସଂଧାନ କରିଛନ୍ତି। ବୃତ୍ତଛନ୍ଦକୁ ଗାନ ଓ ଆବୃତ୍ତିର ଲକ୍ଷଣ ଓ ଆରୋପଣ ଦିଗରୁ ସମ, ଅର୍ଦ୍ଧସମ ଓ ବିଷମ ରୂପରେ ତ୍ରିବିଧ ବୋଲି ଦର୍ଶାଇଛନ୍ତି। ଲୌକିକ ଜାତିଛନ୍ଦକୁ ଗଣଛନ୍ଦ, ମାତ୍ରାଛନ୍ଦ ଓ ଅକ୍ଷରଛନ୍ଦ ଭାବରେ ବିଭକ୍ତ କରିଛନ୍ତି।

ଅର୍ଦ୍ଧସମ ଛନ୍ଦର ପଙ୍‌କ୍ତି ବିନ୍ୟାସକୁ ଗାଇହେବ ଓ ସରବ ପାଠ କରିହେବ। କିନ୍ତୁ ଗଣଛନ୍ଦ ଓ ମାତ୍ରାଛନ୍ଦ ମୁଖ୍ୟତଃ ଆବୃତ୍ତିଗତ ଏବଂ ଏଥିରେ ପାଠକାରୀର ଇଚ୍ଛାନୁସାରେ କାବ୍ୟିକ ଗାନଭଙ୍ଗୀ ଓ ବାଚନିକ ଉଚ୍ଚାରଣଭଙ୍ଗୀର ସ୍ୱାଧୀନତାକୁ ସ୍ୱୀକାର କରାଯାଇଛି। ଫଳରେ କାବ୍ୟଚର୍ଚ୍ଚା ଓ କାବ୍ୟଶାସ୍ତ୍ର ଅଧ୍ୟୟନ କ୍ଷେତ୍ରରେ ଛନ୍ଦାୟିତ ଗାନଧର୍ମୀ ସୂତ୍ର ସହିତ ପଠନାତ୍ମକ ବଚନସୂତ୍ରର ବିକାଶ ଘଟିଛି। ଏହି ବଚନସୂତ୍ର ହିଁ ଆବୃତ୍ତିସୂତ୍ର ଓ ପରବର୍ତ୍ତୀ କାଳରେ ଛନ୍ଦଶାସ୍ତ୍ର ବିଶାରଦ ଜୟକୀର୍ତ୍ତି ତାଙ୍କର 'ଛନ୍ଦୋଽନୁଶାସନଂ' ଗ୍ରନ୍ଥରେ ବଚନସୂତ୍ରକୁ ବୁଦ୍ଧିବାଦୀଗାନ ଭାବରେ ବିଚାର କରିଛନ୍ତି। ଏହି ବୌଦ୍ଧିକ ଗାନ ହେଉଛି କବିତାର ସଂଗୀତ ଧର୍ମ ନୁହେଁ ବରଂ ପଠନକୌଶଳ ଦ୍ୱାରା ପାଠକାରୀ ଶ୍ରୋତାଙ୍କୁ କାବ୍ୟଭାବ ପ୍ରତି ବିଶମ୍ବଦ କରି ରଖିବାର ଆବୃତ୍ତି ଧର୍ମର ଅଧିକ ନିକଟବର୍ତ୍ତୀ। ଓଡ଼ିଆରେ ଆମର ଦାଣ୍ଡୀବୃତ୍ତ ଓ ଆଧୁନିକ ବାଗଛନ୍ଦ ଏହାର ଉନ୍ନତ ରୂପ। ଏହି ଗଣଛନ୍ଦର ଆବୃତ୍ତିସୁଲଭ ଆଦରକୁ ଭିତ୍ତିକରି 'ଗାନଯୋଗ୍ୟ ପଦ୍ୟ' ସଂଗୀତ ବା ଗୀତିକାରୂପରେ ଓ 'ପାଠଯୋଗ୍ୟ ପଦ୍ୟ' କବିତା ଭାବରେ ଅଲଗା ବାରିହୋଇ ଯାଉଛନ୍ତି।

ବୈଦିକ ଶିକ୍ଷାଧାରା ଓ ପ୍ରାଚୀନ ମଧ୍ୟଯୁଗୀୟ ଭାରତୀୟ ଶିକ୍ଷାବ୍ୟବସ୍ଥାରେ ଉଚ୍ଚାରଣ ଶିକ୍ଷା ବା ଆବୃତ୍ତିମୂଳକ ପାଠଦାନର୍ ପ୍ରୟୋଜନ ଗୁଣାତ୍ମକ ରହିଛି। ପଶ୍ଚିମ ଭୂମଣ୍ଡଳୀୟ ମୁଦ୍ରାଯନ୍ତ୍ରର ସଂପର୍କରେ ଆସିବା ପୂର୍ବରୁ ବହୁପରିମାଣରେ ଲୌହଲେଖନୀ ଓ ତାଳପତ୍ର/ଭୂର୍ଜପତ୍ର ମାଧ୍ୟମରେ ଲେଖିବା, ପଢ଼ିବା ଓ ବିଦ୍ୟା ପ୍ରସାର କରିବାପାଇଁ ପାଗ ଅନୁକୂଳ ନଥିଲା। ଫଳରେ ପୁରୁଷରୁ ପୁରୁଷ, ସ୍ତରରୁ ସ୍ତର 'ଆବୃତ୍ତିକରି > ଶୁଣି > ମୁଖସ୍ଥ କରି > ମନେରଖି ବ୍ୟାଖ୍ୟାକରି ଶାସ୍ତ୍ର-କାବ୍ୟାଦି ଶିକ୍ଷା ଦିଆଯାଇଥିଲା। (ଆପଣମାନେ ମୋଠାରୁ ଅଧିକ ଜାଣିଛନ୍ତି—କେବଳ ସ୍ମରଣ କରାଇ ଦେଉଛି। ବେଳେବେଳେ ଜଣାପଡେ ମୂଳ ପ୍ରତିପାଦ୍ୟଠାରୁ ତଥ୍ୟ ବର୍ଣ୍ଣନା ଖାପଛଡ଼ା ଦେଉଛି ଓ ମାନହ୍ରାସକ ହେଉଛି। ମାତ୍ର ଖୁବ୍ ତଳେଇ ଦେଖିଲେ ଏ ପ୍ରକାର ତଥ୍ୟ ପ୍ରଦାନକୁ ନାଁ ଛାଡି ହେଉଛି, ନକଲେ କିଛି ଅଭାବ ରହିଗଲା ଭଳି ଲାଗୁଛି। ତେଣୁ ଏ ପର୍ଯ୍ୟାୟଟିକୁ ଆନୁଷଙ୍ଗିକ ବିଚାର ଭାବରେ ସୁଧୀବର୍ଗ ଧରିନେବେ। ନୂଆ ପ୍ରକାରେ ଲାଗିଲେ ଶ୍ରମ ସାର୍ଥକ ହେବ।) ଏଥିପାଇଁ ବେଦଚର୍ଚ୍ଚାର ଷଡଙ୍ଗ– ଶିକ୍ଷା, କଳ୍ପ, ନିରୁକ୍ତ, ବ୍ୟାକରଣ, ଛନ୍ଦ ଓ ଜ୍ୟୋତିଷକୁ ଅଧ୍ୟୟନଧାରାରେ ଗ୍ରହଣ କରାଯାଇଥିଲା। ଏଥିମଧ୍ୟରୁ ଆବୃତ୍ତିର ସଂପର୍କ 'ଶିକ୍ଷାଙ୍ଗ' ବ୍ୟବସ୍ଥା ସହିତ ରହିଥିଲା।

ବୈଦିକ ଶିକ୍ଷାର ଦୁଇଟି ଦିଗ – ଉଚ୍ଚାରଣ ପ୍ରବୃତ୍ତି ଓ ବ୍ୟାଖ୍ୟାବୃତ୍ତି। ଉଦାତ୍ତ, ଅନୁଦାତ୍ତ, ସ୍ୱରିତ ଓ ପ୍ରଚୟ ପଦ୍ଧତି ମାଧ୍ୟମରେ ବର୍ଣ୍ଣରାଶିର ଓ ମନ୍ତ୍ରସ୍ଥ ଶବ୍ଦମେଳିର ଅର୍ଥଦ୍ୟୋତକ ସମୁଚ୍ଚାରଣ ଥିଲା ଶିକ୍ଷାଶାସ୍ତ୍ରୀୟ ପାଠ୍ୟନିର୍ଘଣ୍ଟ। ଏଯାବତ୍ ଆମ ଆଧୁନିକ

ସାହିତ୍ୟ ଶିକ୍ଷାରେ କବିତା-ଆବୃତ୍ତି-କଳା ପାଠ୍ୟ ପ୍ରସଙ୍ଗ ଅନ୍ତର୍ଭୁକ୍ତ ହେବାକୁ ସ୍ୱପ୍ନ ବି ଦେଖୁନାହିଁ; ଯାହା ବୈଦିକ ଓ ପୁରାଣ-କାବ୍ୟଯୁଗରେ ବାସ୍ତବ ଜ୍ଞାନଧାରାର ଅନ୍ୟତମ ପରିମାପକ ଥିଲା। ଯାଜ୍ଞବଲ୍କ୍ୟ, ଶ୍ରୀନାରଦ ଓ ଭରଦ୍ୱାଜ ପ୍ରମୁଖ ଉଚ୍ଚାରଣ ଶିକ୍ଷାରେ ପାରଦର୍ଶୀ ଥିଲେ। ସେମାନଙ୍କ ନାମରେ ଆବୃତ୍ତି ବିଭାବକ ଶିକ୍ଷାର ଶାଖା (ଯାଜ୍ଞବଲ୍କ୍ୟ ଶାଖା, ନାରଦୀୟ ଶାଖା ଓ ଭରଦ୍ୱାଜୀୟ ଶାଖା) ପ୍ରସିଦ୍ଧିଲାଭ କରିଥିଲା।

ଏହି ଶାଖାଗୁଡ଼ିକ ବ୍ୟାକରଣ ଅବଲମ୍ବନରେ ଶାସ୍ତ୍ରାଦିର ଆବୃତ୍ତି ଶିକ୍ଷା ଦେଉଥିଲେ। ଆବୃତ୍ତି-ଶିକ୍ଷାଶାଖା ଅନୁସାରେ ବ୍ୟାକରଣର ଅନ୍ୟନାମ ହେଉଛି ବ୍ୟାକୃତି। ପ୍ରକୃତି ଓ ପ୍ରତ୍ୟୟର ମିଳନରେ ଅର୍ଥ ନିର୍ଣ୍ଣୟ କରି ଯେଉଁ ଶାସ୍ତ୍ର ଶବ୍ଦର ନିଷ୍ପାଦନ, ଅର୍ଥ ଉତ୍ପାଦନ ଓ ଅର୍ଥବୋଧକ ଉଚ୍ଚାରଣ ବିଧାନ ସ୍ଥିରୀକୃତ କରେ ସେହି ଶାସ୍ତ୍ର ହେଉଛି– ବ୍ୟାକୃତି। ବ୍ୟାକୃତି ଶିକ୍ଷା ମୁଖ୍ୟତଃ ବିକୃତ ଉଚ୍ଚାରଣଠାରୁ ଶିକ୍ଷାବିଧାନକୁ ଦୂରେଇ ରଖୁଥିଲା। କାରଣ ଆବୃତ୍ତିର ଶୁଦ୍ଧ ଉଚ୍ଚାରଣ ଉପରେ ତାହାକୁ ଶୁଣି ବେଦତତ୍ତ୍ୱ ବ୍ୟାଖ୍ୟା ହେଉଥିଲା। ଆବୃତ୍ତିକାରକଙ୍କୁ ବୈଦିକ ଶିକ୍ଷାବିଧାନରେ ପଦକ / କଠଚରଣ / କଠା / କଠୀ / କଠବୃନ୍ଦାରିକା ଉପାଧିରେ ପରିଚିତ କରାଯାଉଥିଲା। ଏମାନେ ମୁଖ୍ୟତଃ ଉଚ୍ଚସ୍ତରର / ବରିଷ୍ଠ ବ୍ରହ୍ମଚାରୀ / ଉପାଚାର୍ଯ୍ୟ ଥିଲେ। ଏମାନଙ୍କ ଆବୃତ୍ତି (ଏକକ ଭାବେ / ମିଳିତ ଭାବେ) ଶୁଣି ବ୍ୟାଖ୍ୟାକାରୀ (ଉପାଧିନାମ ପ୍ରବକ୍ତା ହେଉଛି ଆଚାର୍ଯ୍ୟ) ବେଦତତ୍ତ୍ୱର ବିଶ୍ଳେଷଣ କରି ପ୍ରସାର ସାଧନ କରୁଥିଲେ। ଶିକ୍ଷାଧାରାରେ ଉତ୍ତମ ବିଦ୍ୟାର୍ଥୀ ମଧ୍ୟ କଠା / କଠୀ (କଠେନ ପ୍ରୋକ୍ତଂ ଅଧୀୟତେ ଇତି କଠାଃ) ଭାବରେ ସ୍ୱତନ୍ତ୍ର ସମ୍ମାନ ପାଉଥିଲେ। ଆବୃତ୍ତିକୁ ନେଇ ଶ୍ଳୋକାନ୍ତ / ମନ୍ତ୍ରାନ୍ତ ଓ ବେଦପାଠ ପ୍ରତିଯୋଗିତା ହେଉଥିଲା। ଜଣେ ପାଠକରିଥିବା ଶ୍ଳୋକର ଶେଷ ବର୍ଣ୍ଣକୁ ଆଧାର କରି ଅନ୍ୟଜଣେ ଏକ ଭିନ୍ନ ଶ୍ଳୋକ ଆବୃତ୍ତି କରିବାର ଶ୍ଳୋକାନ୍ତ ପ୍ରତିଯୋଗିତାରେ ଯେଉଁ କଠା/ଆବୃତ୍ତିକାରକ ଶିଷ୍ୟ ଉତ୍ତମ ହେଉଥିଲା ତାଙ୍କୁ ଶ୍ଳୋକାନ୍ୱିତ/କଠବୃନ୍ଦାରିକ (ମେଧାବୀ ଯଶସ୍ୱୀ ଶ୍ଳୋକ ବିତରକ) ଭାବେ ପରିଚିତ କରାଯାଉଥିଲା। ସେହିପରି ଯେଉଁ ଶିଷ୍ୟା / କଠୀ ବେଦର ଏକ ଏକ ଅଂଶକୁ ପାରାୟଣ ସ୍ଥଳରେ ସୁଆବୃତ୍ତି କରିପାରୁଥିଲା ତାଙ୍କୁ 'କଠବୃନ୍ଦାରିକା' ସମ୍ମାନ ମିଳୁଥିଲା।

ବ୍ୟାକରଣ ଭିତ୍ତିକ ଉଚ୍ଚାରଣ ବିଧାନକୁ ମାନି ଶ୍ରୁତିସୁଖଦ ସୁସ୍ପଷ୍ଟ ଆବୃତ୍ତିକୁ ଶ୍ରୁତ୍ୟାବୃତ୍ତି ତଥା ସୁ-ଆବୃତ୍ତି ଭାବରେ ମୂଲ୍ୟାୟନ କରାଯାଉଥିଲା। ଏବେ ବି ଏ ପରିଭାଷା ଠାରୁ ସାମାନ୍ୟ ରେଖାକଳ୍ପ ଆବୃତ୍ତିକଳା ଦୂରେଇ ଯାଇନାହିଁ। ଯଦିଓ ଆମ କାଳର ଆବୃତ୍ତି କର୍ତ୍ତା ବ୍ୟାକରଣ ସୂତ୍ରୀୟ ଶାବ୍ଦିକ ଉଚ୍ଚାରଣକୁ ବାଗ୍‌ଛନ୍ଦ / ଗଦ୍ୟଛନ୍ଦ / ବ୍ୟାବହାରିକ ଶବ୍ଦକଳାର ଦୁହାଇ ଦେଇ ଆବୃତ୍ତିକୁ ଶିଥିଳ କରିଦେବାରେ କ୍ରମଶଃ ଚତୁର ହୋଇଉଠୁଛନ୍ତି; ତଥାପି ଆମ ପ୍ରାକ୍ ସାଂସ୍କୃତିକ ପରଂପରାରେ କାତ୍ୟାୟନ, ପାଣିନି, ପତଞ୍ଜଳି, ଭର୍ତ୍ତୃହରି,

ବୈୟଟାଚାର୍ଯ୍ୟ ଓ ବ୍ୟାଡି ପ୍ରମୁଖ ଶବ୍ଦଶାସ୍ତ୍ରୀମାନେ ଆବୃତ୍ତିକଳାକୁ ବ୍ୟାକରଣ ସମ୍ମତ ସୁଧାଶ୍ରୁତି ଭାବରେ ଆଦର ଓ ପ୍ରସାର କରିଛନ୍ତି।

କାତ୍ୟାୟନ ଶାସ୍ତ୍ରଶିକ୍ଷାର ସଫଳ ଅବଧାରଣା ଅର୍ଥପଦ ଗୋତ୍ରାଣି ସୂତ୍ର ଓ ଧ୍ୱନିଶୁଦ୍ଧ ପାଠ ମାଧ୍ୟମରେ ହୋଇଥାଏ ବୋଲି ମାନିଛନ୍ତି। ପାଣିନିଙ୍କ ପୂର୍ବରୁ ସ୍ଫୋଟାୟନ ଉଣିଦ ଶବ୍ଦର ଅର୍ଥ ବିଭାବନର ସ୍ୱୟଂପ୍ରଭଶକ୍ତିର ମହତ୍ତ୍ୱକୁ ଘୋଷଣା କରିଛନ୍ତି। ଶାସ୍ତ୍ରୀୟ ସୂକ୍ତି ପ୍ରଥମେ ସ୍ଫୋଟାୟିତ ହୋଇଥାଏ। ସ୍ଫୋଟ ବା ଧ୍ୱନିଶୁଦ୍ଧି ଉଚ୍ଚାରଣର ଲକ୍ଷ୍ୟ ଅର୍ଥପ୍ରୀତି ସଂପାଦନ। ଅର୍ଥପ୍ରୀତି ପୂର୍ବରୁ ସୂକ୍ତି ଉଚ୍ଚାରକ ଧ୍ୱନିଶୁଦ୍ଧ ପାଠ ଭିତ୍ତିରେ ଶ୍ରୁତିଗତ ପ୍ରୀତି ସଂପାଦନ କରେ। ଏ ପ୍ରକାର ଘୋଷଣା ଭିତରେ ଶ୍ରୁତିମଧୁର ଧ୍ୱନିମାତ୍ରିକ ଆବୃତ୍ତିର ସତ୍ତା ସମର୍ଥିତ ହେଉଅଛି। ମହାଭାଷ୍ୟକାର ପତଞ୍ଜଳିଙ୍କ ମତରେ ଶାସ୍ତ୍ରପାଠ କାଳରେ ଶବ୍ଦଟିଏ ଉଚ୍ଚାରଣ କରୁ କରୁ ବ୍ୟାକରଣ ଜ୍ଞାନ ଧୂରୀଣ ଶ୍ରୋତା ଅର୍ଥକୁ ଆଘ୍ରାଣ କରିନିଏ। ଅର୍ଥର ବି ଏକ ବାସ୍ନା ଅଛି ଯାହାକୁ ଭାବମୋଦୀ ଶ୍ରୋତା ପାଠଟିକୁ ଶୁଣିବାମାତ୍ରେ ବାରିପାରେ– ଏପ୍ରକାର ଚମତ୍କାରୀ ବିଶ୍ୱାସଟିଏ ମଧ୍ୟ ଶାସ୍ତ୍ରାବୃତ୍ତି ନିମନ୍ତେ କାତ୍ୟାୟନ ପ୍ରଦାନ କରିଛନ୍ତି। ସଂହିତାଯୁଗକୁ ସ୍ତୁତି / ପାଠର ଆଦର ବଢ଼ିଛି। ସ୍ତବକାରୀର ପାଠ ଭିତରେ ଶ୍ରୋତା ସାକ୍ଷାତ୍ ଭାବସାଦୃଶ୍ୟ ଉପଲବ୍ଧିଟିଏ ପାଇଯାଏ ଓ ସ୍ତବନୀୟଙ୍କ ମହିମା ଚିତ୍ରବତ୍ ହୋଇ ଅନ୍ତଃଚାକ୍ଷୁଷ ହୋଇଉଠେ (ସାକ୍ଷାତ୍ ସାଦୃଶ୍ୟଂ ଗ୍ରାହାକତ୍ୱଂ)। ଉଚ୍ଚାରଣ ଅନ୍ୱାଖ୍ୟାନ (ପାଠ ବା ଆବୃତ୍ତିର ପ୍ରତିଶବ୍ଦ) କାଳରେ ଶବ୍ଦ ଉଚ୍ଚାରଣର ସାଧୁତ୍ୱକୁ ବୈୟଟାଚାର୍ଯ୍ୟ ଭାସନ ଓ ପ୍ରକଥନ ଗୌରବ ଭାବରେ ବିବେଚନା କରିଛନ୍ତି। ଅନ୍ୱାଖ୍ୟାନ ଦ୍ୱାରା ଲେଖାର ଶବ୍ଦ ଶ୍ରୋତାର ସ୍ମୃତିରେ ପରିଣତ ହୋଇଥାଏ। ଆବୃତ୍ତିର ଅନ୍ୟତମ ଲକ୍ଷଣ ପ୍ରତିଶ୍ରବଣ କରାଇବା। ଆବୃତ୍ତିଗତ ପ୍ରତିଶ୍ରବଣ କାର୍ଯ୍ୟଦ୍ୱାରା ସଂପୂର୍ଣ୍ଣ ଲେଖାଟି ମଧ୍ୟ ସ୍ମୃତିରେ ରୂପାନ୍ତରିତ ହୋଇଯାଏ। ଏହି ନ୍ୟାୟରେ ଶ୍ଳୋକାବୃତ୍ତି ଶୁଣିଶୁଣି ବେଦକୁ, ସମଗ୍ର ଭାରତବର୍ଷ ଶ୍ରୁତି ରୂପରେ ଏବଂ ପୁରାଣକୁ ପାରବ୍ଧ ଲୀଳାର ସ୍ମୃତି ଭାବରେ ଯୁଗଯୁଗ ଧରି ଆତ୍ମଜ୍ଞାନରେ ବହନ କରିଆସିଛି।

ମାନବ ସଭ୍ୟତାର ଆଦି ଶବ୍ଦସଂସ୍କାରକ ପାଣିନି ଜଣେ କଠଚରକ ଥିଲେ। ଜନପଦରୁ ଜନପଦ ଚରକା/ଚାରଣ ଭାବରେ ଭ୍ରମିଭ୍ରମି କଠ/ଆବୃତ୍ତିକାରୀ ରୂପେ ବିଦ୍‌ବଦ୍ ଗୋଷ୍ଠୀଙ୍କ ପାଖରେ ଶାସ୍ତ୍ରତତ୍ତ୍ୱର ଭାବାର୍ଥ ସଂଚାର କରୁଥିଲେ। ପରବର୍ତ୍ତୀ କାଳରେ ଚାରଣ ସଂପ୍ରଦାୟ, ପୁରାଣ ପଣ୍ଡା ସଂପ୍ରଦାୟ, ଗଳ୍ପସାଗର ସଂପ୍ରଦାୟ ଭରତ ସଂପ୍ରଦାୟ ଆବୃତ୍ତି ଶକ୍ତି ବଳରେ ଶ୍ରାବ୍ୟ ଗାଥା ଓ ଦୃଶ୍ୟ ଗାଥା ବୁଲିବୁଲି ପ୍ରଚାର କରିଛନ୍ତି। ଭର୍ତ୍ତୃହରି 'ବାକ୍ୟପଦୀୟ'ରେ ଶବ୍ଦ ଶୃଦ୍ଧ ମଧ୍ୟରେ ଭାବାର୍ଥ ଉତ୍ପାଦନ ବିନ୍ୟାସ ଓ ଶ୍ରୁତିବୋଧକ ଉଚ୍ଚାରଣର ମହିମାକୁ ସ୍ୱୀକାର କରିଛନ୍ତି। ତାଙ୍କ ବିଚାରରେ ରଚନାରେ ସାପେକ୍ଷ ଶବ୍ଦ,

ଏପରିକି ଏକ ଏକ ଶବଦବି ଶ୍ରୁତିବୋଧକ ଓ ଯଥାସ୍ଥାନୀୟ ବିନ୍ୟାସଭିତ୍ତିରେ ଉଚ୍ଚାରଣ ହେବା ଉଚିତ। ସେହି ଶବ୍ଦରେ ପ୍ରସରିତ ଥିବା ଅର୍ଥ ଯଥାର୍ଥ ଉଚ୍ଚାରଣରେ ଶ୍ରୋତା ସହିତ ସମ୍ବନ୍ଧିତ ହେବାଦ୍ୱାରା ପଦକ (ପଦପ୍ରସାରକାରୀ ବା ପାଠକାରୀ), କବି, ଶ୍ରୋତା ସମସ୍ତଙ୍କର ଅଭିଳାଷ ଚରିତାର୍ଥ ହୁଏ। ପରୋକ୍ଷରେ ଆବୃତ୍ତିକାରୀଙ୍କୁ କବି-କାବ୍ୟ-କାବ୍ୟ ପାଠର ଶ୍ରୋତା ସହିତ ସମ୍ବନ୍ଧ ସଂସ୍ଥାପକ ଭାବରେ ଭାରତୀୟ ବିଚାର ସମର୍ଥନ କରିଛି।

ରଚନାର ବାକ୍ୟ ଅଥବା ପଦ ସର୍ଜନାରେ ବ୍ୟାକରଣ ନିୟମ ଓ ରଚୟିତାର ବ୍ୟାକରଣଜ୍ଞାନ ରହିବା ସଂପର୍କରେ ବଳିଷ୍ଠ ସପକ୍ଷଯୁକ୍ତି ବାଢ଼ିଥିବା ଓ ବ୍ୟାକରଣ ରହିତ କାବ୍ୟତାକୁ ଅକବି ବ୍ୟାପାର ଭାବରେ ତର୍କଣା କରିଥିବା ଶବ୍ଦଶାସ୍ତ୍ରୀ ବ୍ୟାଡ଼ି ତାଙ୍କ 'ସଂଗ୍ରହ' ଗ୍ରନ୍ଥରେ ପଠନ-ପାଠନ-ଶିଥିଳତା ଗ୍ରନ୍ଥର ତାତ୍‌ପର୍ଯ୍ୟ କଳନାରେ ପରାଙ୍‌ମୁଖ ହୁଏ ବୋଲି ଦର୍ଶାଇଛନ୍ତି। ପଠନରେ ସେ ଶବ୍ଦ ଓ ବର୍ଣ୍ଣମାନଙ୍କର ଅଭ୍ରାନ୍ତ ଉଚ୍ଚାରଣ ଉପରେ ଧ୍ୟାନ ଦେଇଛନ୍ତି। ତାଙ୍କ ମତରେ ଭାବାର୍ଥ ବୋଧର ଅଜ୍ଞାନରୁ ଓ ବର୍ଣ୍ଣମାନଙ୍କର ଯଥାସ୍ଥାନୀୟ ଉଚ୍ଚାରଣ ଅଭାବରୁ ଅଶକ୍ତ ଆବୃତ୍ତି ଘଟେ। ଅଶକ୍ତ ଆବୃତ୍ତିରୁ ନିବୃତ୍ତ ହେବାର ମାର୍ଗ ମଧ୍ୟ ସେ ଦେଖାଇଛନ୍ତି। ପାଠ ପୂର୍ବରୁ ଆବୃତ୍ତିକାରକ ଶବ୍ଦର ବ୍ୟବହାର ବିଷୟରେ ସମ୍ୟକ୍‌ଜ୍ଞାନ (ଭାବାର୍ଥମୂଳକ ଶବ୍ଦ ଓ ଶବ୍ଦର ସହାବସ୍ଥାନ) ଓ ଶବ୍ଦରେ ବର୍ଣ୍ଣମାଳାର ସୁଷ୍ଠୁ ପ୍ରଯୁକ୍ତିକୁ ପଢ଼ି, ବୁଝି ଉଚ୍ଚାରଣ କରିବାର ଅଭ୍ୟାସ ଦରକାର। ଅନ୍ୟପ୍ରକାରେ ସେ ଶବ୍ଦାନୁଶାସନ ଭିତରେ ଥିବା ସ୍ଫୋଟବିଧାନ ଅନୁସାରେ କରାଯାଉଥିବା ପ୍ରଭାବଶାଳୀ ଆବୃତ୍ତିକୁ 'ସଶକ୍ତ ଆବୃତ୍ତି' ଆଖ୍ୟା ଦେଇଛନ୍ତି। ଅର୍ଥବୋଧର ଉପଯୋଗୀ ଶକ୍ତିଶାଳୀ ବିକଶିତ ବିଧାନଟି ହେଉଛି ସ୍ଫୋଟ। ବର୍ଣ୍ଣର ବ୍ୟବହାର ଅବବୋଧକୁ ବର୍ଣ୍ଣସ୍ଫୋଟ, ପଦର ଚମତ୍କାର ଅର୍ଥ ନିଷ୍ପାଦନଧର୍ମୀ ପ୍ରଯୁକ୍ତିକୁ ପଦସ୍ଫୋଟ ଓ ସମଗ୍ର ପଙ୍‌କ୍ତିରେ ଥିବା ଶବ୍ଦ ସମଷ୍ଟିର ପାରସ୍ପରିକ ଅର୍ଥକାରୀ ବିନ୍ୟାସକୁ କାବ୍ୟସ୍ଫୋଟ କୁହାଯାଏ। ସ୍ଫୋଟାୟିତ ବର୍ଣ୍ଣ, ପଦ ଓ ବାକ୍ୟର ଶୁଦ୍ଧ ଉଚ୍ଚାରଣ ହିଁ ସଶକ୍ତ ଆବୃତ୍ତି। ଏହି ସ୍ଫୋଟ ବୈକୃତ ହେତୁ ଆବୃତ୍ତି ହାସ୍ୟାସ୍ପଦ ହେବାର କୌତୁକ-ଦୃଷ୍ଟାନ୍ତ ଗଣାଅଧିକେ ଆମ ବାର୍ତ୍ତମାନିକ କବିତା ଆସରର କାବ୍ୟାନୁରାଗୀଙ୍କର ଅନୁଭୂତିରେ ନିଶ୍ଚିତ ଥିବ।

ଭାରତୀୟ କାବ୍ୟଶାସ୍ତ୍ରୀମାନେ କବିତା ନିର୍ମାଣର ହେତୁ, କବିତାର ପ୍ରୟୋଜନ, କବିତାର ରସସୌନ୍ଦର୍ଯ୍ୟ, କବିତାର ଶବ୍ଦାର୍ଥ ସଂସ୍ଥାନ, କାବ୍ୟିକ ଅଳଙ୍କାରର ଗୌରବ ଓ ଭାବର ଧ୍ୱନ୍ୟାତ୍ମକ ସଂଚାର ଉପରେ ଯଥେଷ୍ଟ ପାରଦର୍ଶୀ ସିଦ୍ଧାନ୍ତ ନିରୂପଣ କରିଯାଇଛନ୍ତି। ମାତ୍ର କବିତାର ପରିବେଷଣ କଳା ପ୍ରତି ସବଳିତ ଧ୍ୟାନ ଦେଇ ନାହାଁନ୍ତି। ଛନ୍ଦଶାସ୍ତ୍ରୀମାନେ ଗାନବୃତ୍ତି ଚର୍ଚ୍ଚାରେ କମ୍ ନିପୁଣତା ଦେଖାଇନାହାନ୍ତି। ମାତ୍ର ପ୍ରତ୍ୟକ୍ଷ ଭାବରେ ସବିଶେଷ ଗାୟନଯୋଗ୍ୟତା ଥିବା ପାଠମୋଦୀଙ୍କ କବିତା ପଠନ ସଂପର୍କରେ ବିଚାରବ୍ୟକ୍ତ

କରିନାହାନ୍ତି । ଛନ୍ଦଶାସ୍ତ୍ରରେ ନାନା ବୃତ୍ତିର ଲକ୍ଷଣ ଓ ଯତିପାତ ନିୟମ ଅନୁସାରେ କାବ୍ୟଛାନ୍ଦର ସାଙ୍ଗୀତିକ ଗାନ ଉପରେ ଗୁରୁତ୍ୱ ଦିଆଯାଇଛି । ତଥାପି ଆବୃତ୍ତି ଦ୍ୱାରା ସକଳ ପ୍ରକାର ଶାସ୍ତ୍ରବାଣୀ ଅର୍ଥଦ୍ୟୋତନାରେ ବିସ୍ତାରିତ ହୋଇଥାଏ– ଏପ୍ରକାର ଧାରଣା ଦୃଢ଼ ରହିଛି । ଏ କାରଣରୁ ପ୍ରତ୍ୟକ୍ଷ ନହେଲେ ବି ପରୋକ୍ଷରେ କାବ୍ୟ ଲକ୍ଷଣରେ ଆବୃତ୍ତିର ଲକ୍ଷଣ ସଂଗୁପ୍ତ ହୋଇ ରହିଛି । ଆବୃତ୍ତି କାଳରେ ପାଠକାରୀ ଏସବୁ କାବ୍ୟ ଲକ୍ଷଣ ବିଷୟରେ ସଚେତନ ଥିଲେ ତା'ର ଶ୍ରୋତାଭିମୁଖୀ କବିତାପାଠର ଉଦ୍ଦେଶ୍ୟଟି ବ୍ୟର୍ଥକାମ ହୋଇନଥାଏ ।

- ଭରତ ଲୋକାବୃତ୍ତାନୁକରଣକୁ କାବ୍ୟସ୍ଫୂର୍ତ୍ତିର ବୀଜ ଭାବରେ ଗ୍ରହଣକରି କାବର ପଦବିନ୍ୟାସ ପ୍ରଣାଳୀ ବା ନିର୍ମାଣ ଉପାୟକୁ ବୃତ୍ତି କହିଛନ୍ତି । ପ୍ରତ୍ୟେକ ନାଟ୍ୟସଂଳାପ କବିତା ଭିତରେ ଥିବା ବୃତ୍ତି ବିଧାନକୁ ଜାଣିବା ଦ୍ୱାରା ଆବୃତ୍ତିକାରକ କବିତାସଂଳାପ ପାଠ କାଳରେ ବକ୍ତବ୍ୟର ମର୍ମାର୍ଥ ସଂଚାର ସହଜରେ କରିପାରିଥା'ନ୍ତି ।
- ଭାମହ ଶବ୍ଦ ଓ ଅର୍ଥର ସହ ମିଳନକୁ କାବ୍ୟ ଭାବରେ ଗ୍ରହଣକରି ଅଳଙ୍କାରକୁ କାବ୍ୟତ୍ୱର ନିୟାମକ ଭାବରେ ବିଚାର କରିଛନ୍ତି । ତାଙ୍କ ମତରେ ଶବ୍ଦାର୍ଥ ସଂଯୋଗରେ ଯେଉଁସବୁ ଅଳଙ୍କାର ଭୂମିକା ନିର୍ବାହ କରନ୍ତି ସେସବୁର ବୀଜ ହେଉଛି ବକ୍ରୋକ୍ତି (ସୈଷା ସର୍ବୈବ ବକ୍ରୋକ୍ତିରନୟାର୍ଥୋ ବିଭାବ୍ୟତେ) । ପରବର୍ତ୍ତୀ କାଳରେ କୁନ୍ତକ କାବ୍ୟତାକୁ ବିଦଗ୍ଧଭଙ୍ଗୀ ଭଣିତି ବକ୍ରୋକ୍ତି ବ୍ୟାପାର ରୂପେ ଅର୍ଥନିଷ୍ଠ କରିଛନ୍ତି । ଚମତ୍କାରିତା ସୃଷ୍ଟିକ୍ରମେ ଅର୍ଥ ବକ୍ରତା, ଭାବବକ୍ରତା ଓ ଶବ୍ଦ ବକ୍ରତା ଦେଇ କବି ସ୍ୱଚ୍ଛନ୍ଦ ସୁନ୍ଦର କାବ୍ୟ ଭଣିତି କରିଥାଏ । ତେଣୁ ପ୍ରତ୍ୟେକ କବି କର୍ମ କୌଶଳରେ ପ୍ରଚ୍ଛନ୍ନଥିବ ବକ୍ରୋକ୍ତିମୂଳା ଉକ୍ତିବୈଚିତ୍ର୍ୟ ପ୍ରତି ସତର୍କ ହୋଇ ଆବୃତ୍ତି ସଂପାଦିତ ହେଲେ କବିତାରେ ବ୍ୟବସ୍ଥିତ ଥିବା 'ବନ୍ଧୋ ବାକ୍ୟ ବିନ୍ୟାସଃ'ର ଫଳୋଦ୍ରେକ ସଂଚାର ଘଟିପାରିବ । ଏହାଦ୍ୱାରା ଶ୍ରୋତା ସମ୍ମୁଖରେ ଏକ ଭାବମୟ ଜଗତ ଉଦ୍‌ଭାସିତ ହୋଇଉଠିବ ଏବଂ କବିତାର ଅନୋଚ୍ଚାରିତ ପୂର୍ବ ଭାବକଳ୍ପ 'ସ୍ୱଚ୍ଛନ୍ଦ ସୁନ୍ଦର' ହୋଇ ଆକର୍ଷଣୀୟ ସତ୍ତାଟିଏ ଜାହିର କରିପାରିବ ।

ପ୍ରଭାବ ବିସ୍ତାରୀ କବିପଣର ନିର୍ମାଣକୌଶଳକୁ ଅବଲମ୍ବନ କରି ପ୍ରାଚ୍ୟବିଦ୍ୱାନମାନେ କମ୍ ଶାସ୍ତ୍ରୀୟ ପାଣ୍ଡିତ୍ୟର କ୍ରୀଡା ପ୍ରଦର୍ଶନ କରିନାହାଁନ୍ତି । କବିତାର ଭାବସୌନ୍ଦର୍ଯ୍ୟକୁ ମୂର୍ତ୍ତିମାନ ଓ ଗତିବାନ କରିଥାଏ ପଦବିନ୍ୟାସ ଓ ବଳିଷ୍ଠ ବଚନକରଣ । ଏହି ପରିପ୍ରେକ୍ଷାରେ ବାମନଙ୍କ 'ବିଶିଷ୍ଟ ପଦରଚନା ରୀତିଃ', ଆନନ୍ଦବର୍ଦ୍ଧନଙ୍କ 'ବିଶିଷ୍ଟ

ପଦସଂଘଟନା ରୀତିଃ', ରାଜଶେଖରଙ୍କ 'ବଚନ ବିନ୍ୟାସ କ୍ରମୋ ରୀତିଃ' ଅବନ୍ତୀସୁନ୍ଦରୀଙ୍କ 'ରସୋଚିତ ଶବ୍ଦାର୍ଥ ସୂକ୍ତି ନିବନ୍ଧନ ପାକଃ', ମମ୍ମଟଙ୍କ 'ବର୍ଣ୍ଣ ବିନ୍ୟାସ ବ୍ୟାପାର/ ବର୍ଣ୍ଣାଶ୍ରୟୀ ନିର୍ମିତି ନିର୍ମାଣ, ଏପରିକି ବିଶ୍ୱନାଥଙ୍କ 'ବାକ୍ୟଂ ରସାତ୍ମକଂ କାବ୍ୟଂ' ଓ ଜଗନ୍ନାଥଙ୍କ 'ରମଣୀୟାର୍ଥକଃ ପ୍ରତିପାଦକ ଶବ୍ଦଂ କାବ୍ୟଂ' ଇତ୍ୟାଦି ଅଭିମତକୁ ସୂକ୍ଷ୍ମଦୃଷ୍ଟିରେ ଅନୁଶୀଳନ କଲେ କବିତାର ଭାବ ସଂପ୍ରସାରଣ ପ୍ରକ୍ରିୟାରେ ବର୍ଣ୍ଣ-ପଦ-ବାକ୍ୟଗତ ଆବୃତ୍ତିର ପ୍ରୟୋଜନ ଓ ଦାୟିତ୍ୱ ବହୁଗୁଣିତ ହୋଇଉଠେ। ଏସବୁ ପରିଭାଷାରୁ ଜଣାଯାଏ– କବିତାରେ କବି ବହୁ ଶବ୍ଦ, ପଦ, ବକ୍ତବ୍ୟ ଓ ବାକ୍ୟକୁ ନେଇ ଭାବକ୍ରୀଡା କରିଥା'ନ୍ତି। କାବ୍ୟ/କବିତାର କ୍ଷୁଦ୍ର ଅଥବା ଦୀର୍ଘ ପରିସର ଭିତରେ ବିନ୍ୟସ୍ତ ସବୁ ବର୍ଣ୍ଣ, ପଦ, ବାକ୍ୟ ଓ ବଚନ ମୁଖ୍ୟ ନଥାଏ। ଅନେକ ସହକାରୀ ଉପକାରକ ବର୍ଣ୍ଣ-ପଦ-ବାକ୍ୟ-ବଚନ ମେଳିଭିତରେ ଗୋଟିଏ ବା ଦୁଇଟି ମୁଖ୍ୟ ଭୂମିକାରେ ବିନିଯୁକ୍ତ ହୋଇଥା'ନ୍ତି। ଏସବୁକୁ ଭାବଉତ୍ପାଦକ ବା ରସୋପଲବ୍ଧିର କେନ୍ଦ୍ରୀୟ ବର୍ଣ୍ଣ-ଶବ୍ଦ-ବାକ୍ୟ-ବଚନ କୁହାଯାଇପାରେ। ବିଶ୍ୱନାଥଙ୍କ ପରିଭାଷା ରସମୟ ବାକ୍ୟ ହିଁ କାବ୍ୟକୁ ଭିନ୍ନାର୍ଥକରଣ କରି କୁହାଯାଇପାରେ– **'ସମଗ୍ର ବାକ୍ୟନୁହେଁ; ବରଂ କାବ୍ୟର ଦୀର୍ଘକାୟ ଶବ୍ଦାର୍ଥ ଶରୀର ମଧ୍ୟରେ ସଂଯୋଜିତ ଗୋଟିଏ ମାତ୍ର ରସାତ୍ମକ ବାକ୍ୟ ଭିତରେ କାବ୍ୟାବେଦନର ସୌନ୍ଦର୍ଯ୍ୟାନନ୍ଦଙ୍କୁ ଅନୁଭବ କରାଯାଇପାରେ।'** ସେହିପରି ପଣ୍ଡିତରାଜ ଜଗନ୍ନାଥଙ୍କ ଅଭିମତର ପାରଂପରିକ ଅର୍ଥ 'ରମଣୀୟ ଅର୍ଥ ପ୍ରତିପାଦନକ୍ଷମ ଶବ୍ଦ ହିଁ କାବ୍ୟ' ଅଥବା 'ଚମତ୍କାର ଜନକ ଭାବନା ବିଷୟାର୍ଥ ପ୍ରତିପାଦକ ଶବ୍ଦ ହିଁ କାବ୍ୟପଣ (ଚମତ୍କାର ଜନକଭାବନା ବିଷୟାର୍ଥ ପ୍ରତିପାଦକ ଶବ୍ଦତ୍ୱଂ କାବ୍ୟତ୍ୱଂ)କୁ ଅନ୍ୟ ପ୍ରକାରେ ସିଦ୍ଧାନ୍ତନିଷ୍ଠ କରାଯାଇପାରେ– 'କାବ୍ୟର ସାମଗ୍ରିକ ଶବ୍ଦ ବିଧାନ ଅପେକ୍ଷା ଗୋଟିଏ ମାତ୍ର ରମଣୀୟ ଅଥବା ବିଷୟ ଭାବାର୍ଥ ଉଦ୍‌ଭାସନକ୍ଷମ ଶବ୍ଦ ସଂରଚନା ଭିତରେ କାବ୍ୟତାର ଅନୁପମତାକୁ ଅନୁଭବ କରିହୁଏ।'

ଏ ଦୃଷ୍ଟିରୁ ଆବୃତ୍ତିକର୍ତ୍ତା କବିତାର ସାମଗ୍ରିକ ଶବ୍ଦଶୃଙ୍ଖଳା ଭିତରେ ଯୋଜନାୟିତ ହୋଇଥିବା ରମଣୀୟ ଓ ଭାବାର୍ଥସୂଚକ କେନ୍ଦ୍ରୀୟ ବର୍ଣ୍ଣ, ଶବ୍ଦ, ବାକ୍ୟ ଓ ବଚନ (ବକ୍ତବ୍ୟଧର୍ମୀ ବାକ୍ୟାଂଶ)ଙ୍କୁ ନିର୍ବାଚନ କରି ସେସବୁର ପ୍ରାୟୋଗିକ ଚାତୁରୀକୁ ବୁଝି ସେସବୁକୁ ଗୁରୁତ୍ୱଦେଇ ତଦନୁସାରେ ସଫଳ, ସାର୍ଥକ ଓ ପ୍ରଭାବବିସ୍ତାରକ୍ଷମ ଆବୃତ୍ତିରେ ଅଭିନିବିଷ୍ଟ ହେବା ଉଚିତ। ଶବ୍ଦଟିଏ/ବର୍ଣ୍ଣଟିଏ କେଉଁ ସ୍ଥାନରେ କେଉଁ ଭାବକୁ ଆଧାର କରି କେଉଁ ଗୁଣରେ (ଲଳିତ / ଗାମ୍ଭୀର୍ଯ୍ୟ / ଶ୍ଳେଷ / ପ୍ରସାଦ / ମାଧୁର୍ଯ୍ୟ / ଗୁରୁ / ଲଘୁ ଇତ୍ୟାଦି) ପ୍ରଯୁକ୍ତ ହୋଇଛି ତାହାର ସୂକ୍ଷ୍ମତାକୁ ଯାଇ ଆବୃତ୍ତିକାରୀକୁ ନିଜ ପାଇଁ ଆବୃତ୍ତିର ସ୍ୱତନ୍ତ୍ର କୌଶଳଟିଏ ନିରୂପଣ କରିବାକୁ ପଡିଥାଏ।

ମୋଟ ଉପରେ ଏରୂପେ ଭାରତୀୟ କାବ୍ୟଚର୍ଚ୍ଚାରେ କବିତାର ସୌନ୍ଦର୍ଯ୍ୟ, କବିର ଅଭିପ୍ରାୟ ଓ କାବ୍ୟ ବିଷୟର ହିତବାଦୀ ଆବେଦନକୁ ପାଠକାଭିମୁଖୀ ସଂଚାର

ଦେବାପାଇଁ ବୃତ୍ତିଗତ ଗାୟନକଳା ସହିତ ସମାନ୍ତରାଳ ଭାବରେ ଆବୃତ୍ତିଗତ ପଠନ କଳାର ଆବଶ୍ୟକତାକୁ ସମର୍ଥନ କରାଯାଇଛି। ଛନ୍ଦକୁ ବିବେଚନା କରି ମୃଦୁଗୀତକୁ ବିଚାରକୁ ନେଇ କାବ୍ୟର ଭାବସତ୍ତା ଓ କାବ୍ୟତାକୁ ଆଗ୍ରହୀ ରସିକ ସାମ୍ନାରେ ମୂର୍ତ୍ତିମନ୍ତ କରି ଛିଡା କରାଇବା ନିମନ୍ତେ ଆବୃତ୍ତିକଳା ଏକ ପ୍ରାୟୋଗିକ ମାଧ୍ୟମ। ସବୁ କାବ୍ୟ/କବିତା କବିଙ୍କର ଆବୃତ୍ତିଯୋଗ୍ୟତା ନଥାଏ। କେତେକ କବି ନିର୍ମାଣପଟୁ; ମାତ୍ର ସଂଚାରପଟୁ ନୁହଁନ୍ତି। ସେମାନେ ଅନ୍ୟର କବିତା ତ ଦୂରର କଥା ନିଜଲେଖାର ଆଦର୍ଶଆବୃତ୍ତି କରିବାରେ ସଫଳ ହୋଇପାରୁନଥିବାର କୌତୁକ ଅନୁଭୂତି ଆମ ରସଗ୍ରାହୀକଙ୍କ ପାଖରେ କମ୍‌ନାହିଁ। ସୁତରାଂ କବିତାର ରମ୍ୟତା ଅନୁଭବ ଓ ପ୍ରସାରଣ ପାଇଁ ଆବୃତ୍ତିକଳା ଜ୍ଞାନର ଅନିବାର୍ଯ୍ୟତାକୁ ସ୍ୱୀକାର କରିନେବା ଛଡା ଅନ୍ୟପନ୍ଥା ନାହିଁ– ଏବଂବିଧ ସତର୍କ ଘଣ୍ଟିଟିଏ ଭାରତୀୟ ବିଦ୍ୱାନମାନେ ପୁରାକାଳରୁ ବଜାଇ ଆସିଛନ୍ତି; ମାତ୍ର ଏହା ଶୁଭୁଛି କେତେ ଓ ଶୁଣୁଛନ୍ତି କେତେ, ତାହାହିଁ ମହାକାଳ ପରିହାସ ଓ ପ୍ରଶଂସା ଚକ୍ଷୁରେ ଦେଖୁଛି– ଦେଖିବ ଓ ମୂଲ୍ୟାୟନ କରିବ।

(ଚାରି)

ଆରିଷ୍ଟୋଟଲ୍‌ଙ୍କଠାରୁ ପାଶ୍ଚାତ୍ୟ ପ୍ରଜ୍ଞାବିତ୍‌ଙ୍କ ଅବବୋଧ ବିଶ୍ୱାସ କରି ଆସିଛି ଯେ କବିତା ଅନୁକରଣର ଏକ ଆକୃତି। ଏ ଆକୃତି ଶବ୍ଦକ୍ରୀଡାର ଏକ ମିଥ୍ୟାଗଢ଼ଣ ହେଲେ ବି ତହିଁରେ ଲୋକବୃତ୍ତି ଓ ପ୍ରବୃତ୍ତି ପ୍ରତି କବିର ସ୍ୱତନ୍ତ୍ର ମାନସିକ ଦୃଷ୍ଟିକୋଣଟିଏ ଉପସ୍ଥିତଥାଏ। ତେଣୁ କବିତାର ପ୍ରସଙ୍ଗ ମିଛ ହୋଇବି ସତ ଓ ସତକୁ ଆଧାର କରି ମଧ୍ୟ ଏକ କଳ୍ପିତ ପ୍ରତିରୂପ। ଏହି ପ୍ରତିରୂପକରଣର ଚମତ୍କାରିତାଟି ଥାଏ ବିଷୟବସ୍ତୁ ଅପେକ୍ଷା ଏହାର ଉପସ୍ଥାପନାରେ। ଏ ଉପସ୍ଥାପନା କବିତାର ଶବ୍ଦାର୍ଥ ଓ ଭାବର ଅଭିବ୍ୟକ୍ତିକରଣରେ ଅନ୍ତର୍ନିଷ୍ଠ ହୋଇ ଯେତିକିଥାଏ କବିତା ବାହାରେ କବିତାନୁରାଗୀଙ୍କ କବିତା ପ୍ରତି ପ୍ରକାଶ ପାଉଥିବା ଆକର୍ଷଣରେ ସେତିକିଥାଏ। କାବ୍ୟବୋଧଜ୍ଞଙ୍କ ରୁଚି ଅନୁକୂଳ ଆକର୍ଷଣରେ କବିତାକୁ ଉପସ୍ଥାପନା କରିବା ନିମନ୍ତେ ଯେତେ ବାଗ ପ୍ଲାଟୋଉତ୍ତର ଯୁଗରୁ ପାଶ୍ଚାତ୍ୟ ବିଚାରଧାରାରେ ଗୃହୀତ ହୋଇଛି ତାହା ମଧ୍ୟରୁ ଅନ୍ୟତମ ସୌନ୍ଦର୍ଯ୍ୟ ପ୍ରସାରକ ମାଧ୍ୟମ ହେଉଛି ଆବୃତ୍ତି ବା ରେସିଟେଶନ୍।

ପାଶ୍ଚାତ୍ୟ ଜଗତୀୟ ଅଧିକାଂଶ ଅଭିଧାନ ଓ କୋଷଗ୍ରନ୍ଥ ଅନୁସାରେ ଆବୃତ୍ତିର ସାଧାରଣ ଅର୍ଥଟି ହେଉଛି– କୌଣସି ଲେଖାର କିଛି ଅଂଶ ବା ପଙ୍‌କ୍ତିକୁ କଣ୍ଠସ୍ଥ କରି ମନେପକାଇ ଚାହିଦା ଅନୁସାରେ ବକ୍ତବ୍ୟମୂଳକ କରି ପୁନର୍ବାର ସାର୍ବିକ ପ୍ରକାଶରେ ଉପସ୍ଥାପନା କରିବା। ଉପଯୋଗତତ୍ତ୍ୱଦର୍ଶୀ (pragmatic scholar) ହୋରେସଙ୍କ ସମୟରୁ କବିତା କଳାକ୍ଷେତ୍ରରେ (Art poetica/Art of poetry) ଆବୃତ୍ତିକୁ ଏକ ଆଳଙ୍କାରିକ

ବାଗ୍ମିତାସଂପନ୍ନ କଳା (Rhetorical speakable art) ରୂପେ ସମର୍ଥନ ଦିଆଯାଇଆସିଛି । ଉପଯୋଗୀ ତତ୍ତ୍ୱାନୁସାରେ କବିତାରଚନା ଏକ ଶ୍ରୁତିସୁଖଦ ଶାବ୍ଦିକ ବ୍ୟବସ୍ଥା । ଶବ୍ଦର ପ୍ରଯୁକ୍ତି ଓ ତଦ୍‌ଜନିତ ଅର୍ଥବୋଧ ଉପରେ କାବ୍ୟତା ନିର୍ଣ୍ଣୟ ନିର୍ଭରଶୀଳ । ଏହି ନିର୍ଣ୍ଣୟକୁ ଅଧିକ ସ୍ପଷ୍ଟ ଓ ପ୍ରଭାବଶାଳୀ କରି ତୋଳେ ଶ୍ରୁତିସ୍ୱଚ୍ଛ ଆବୃତ୍ତି । ଆବୃତ୍ତି କବିତାକୁ ସମୂହ ଆକୃତିରେ ଛିଡା କରାଇଦିଏ । କବିତାର ନିରୋଳା ପାଠ ପାଠକକୁ ଏକଦର୍ଶୀ ବୋଧାନନ୍ଦଟିଏ ପ୍ରଦାନ କରେ । ମାତ୍ର ସମୂହ ଉପସ୍ଥିତିରେ କବିତାର ଶାବ୍ଦିକ ପରିଚ୍ଛନ୍ନ ଆବୃତ୍ତି କରିବାର ସାମଗ୍ରିକ ଅର୍ଥସୌନ୍ଦର୍ଯ୍ୟକୁ ବ୍ୟାପକ ସମର୍ଥନ ଦେଇଥାଏ ଓ କବିତାଟି ମୋଟାମୋଟି ଭାବରେ ନିର୍ଦ୍ଦିଷ୍ଟ ଭାବନାର ଶ୍ରେଣୀଭୁକ୍ତ ହୋଇ ପ୍ରାମାଣିକ ଆଦର ପାଇଥାଏ ।

ପ୍ଲାଟୋ ପ୍ରମୁଖ ପୂର୍ବସ୍ୱରୀଙ୍କୁ ପଢ଼ିବା ଦ୍ୱାରା ଜ୍ଞାନଲାଭ ହେବାର ଯେଉଁ ଉତ୍ସୁକତା ହୋରେସ୍ ସୃଷ୍ଟି କରିଥିଲେ ତାହାକୁ ଉଦାତ୍ତତତ୍ତ୍ୱବିତ୍ ଲଂଜାଇନ୍‌ସଙ୍କ 'ଉଦାତ୍ତ ଭାଷା, ଉଦାତ୍ତ ସଂରଚନା ଓ ମହତ୍ତମ ବିତରଣ ସିଦ୍ଧାନ୍ତ' ସଂପ୍ରସାରିତ ଓ ଘନତ୍ୱ ପ୍ରଦାନ କରିଛି । ପ୍ରତ୍ୟକ୍ଷ ଆବୃତ୍ତିର ଧାରଣା ଦେଇନଥିଲେ ମଧ୍ୟ ପାଠ ବିତରଣ ଓ ଉଦାତ୍ତଭାବନାର ସାଧାରଣ ବିତରଣ ନିମନ୍ତେ ବିତରକ ହେବାକୁ ସେ ପ୍ରବର୍ତ୍ତାଇଛନ୍ତି । କବିତାର ଭାବଗର୍ଭରେ ଥିବା ସମୁଚ୍ଚ ବାସ୍ତବତା ଓ ଉଦାତ୍ତଚିନ୍ତାର ଆବେଗ ଅଳଙ୍କରଣସିଦ୍ଧ ଉଦାତ୍ତଭାଷାର ବ୍ୟବହାର ଦ୍ୱାରା ଦୀପ୍ତ ହୁଏ । ଏହି ଦୀପ୍ତିକୁ ସମୂହ ଉଦ୍ଦେଶ୍ୟରେ ସୌନ୍ଦର୍ଯ୍ୟ ପ୍ରତିପାଦକ କରି ବିତରଣ କରିବା ମଧ୍ୟ ଏକ ଉଦାତ୍ତ ଦାୟିତ୍ୱ । ଏହି ଦାୟିତ୍ୱ ପବିତ୍ର ଓ ମଙ୍ଗଳକର । ଭାବସଂଚାରର ନିଷ୍ଠାପରତା ଗୋଟିଏ ଜାତିକୁ ବୋଧପ୍ରସାରୀ ଜାତି କରିଦିଏ । ଭାବସଂଚାରଣକାରୀ ବିଦ୍ୱାନଙ୍କୁ ଉଦାତ୍ତପ୍ରାଣ ଆଳଙ୍କାରିକ ଆଳାପକ ଭାବରେ (Rhetorical discourser) ବିବେଚନା କରାଯାଇଛି । ଏହି ଆଳଙ୍କାରିକ ଆଳାପକ ଦାୟିତ୍ୱ ହିଁ ପରବର୍ତ୍ତୀ କାଳରେ ଆବୃତ୍ତିକାରକ (ଆମ ପରଂପରାରେ ପୋଥିପଣ୍ଡା / ପୁରାଣ ପଣ୍ଡା / ପୋଥି ନାୟକ / ଗଳ୍ପସାଗର / ଚାରଣ / କଠଚରଣ / କଠବୃନ୍ଦାରିକ) ଦାୟିତ୍ୱ ରୂପେ ପ୍ରସିଦ୍ଧି ଲାଭ କରିଛି । ଏପ୍ରକାର ଦାୟବଦ୍ଧତା ଜନ୍ ଡ୍ରାଇଡେନ୍‌ଙ୍କ ସମୟକୁ ଭାବଜାଗୃତି ଉପାୟ ରୂପେ ସମାଖ୍ୟା ପାଇଛି । ମହତ୍ତର ଭାବହିଁ ସୁନ୍ଦର । ସୁନ୍ଦରମାନେ ସମୂହ ପ୍ରସାର ଲୋଡନ୍ତି ଓ ସେମାନଙ୍କ ବ୍ୟାପକ ସଂଚାର ହିଁ ଆଲୋକିତ ଚେତନା ଖେଳାଇଦିଏ । କାବ୍ୟ କବିତାର ଆଲୋକିତ ସଂଚାରର ବଳିଷ୍ଠ ହେତୁ ହେଉଛି ଆବୃତ୍ତି । କ୍ଲାସିକଗୁଡ଼ିକ ଆବୃତ୍ତିଯୋଗ୍ୟ ଓ ଆବୃତ୍ତି ଆଧାରିତ । ଚତୁର୍ଦ୍ଦିଗ ଶତାବ୍ଦୀରେ ପେଟ୍ରାକ୍‌ଙ୍କ ସନେଟ୍‌ର (ଚତୁର୍ଦ୍ଦଶପାଦୀ କବିତା) ରୋମାଣ୍ଟିକ୍ ଭାବବୋଧ ଜଣଠାରୁ ଗଣ ପର୍ଯ୍ୟନ୍ତ ସର୍ବତ୍ର ଆବୃତ୍ତ ହୋଇଛି । ସିଡିନ୍, ହର୍ଡେ ଓ ଜନସନ୍‌ଙ୍କ ସମୟକୁ ଶବ୍ଦ ପ୍ରଯତ୍ନମୂଳକ କାବ୍ୟରୀତିକୁ ଆବୃତ୍ତି ହିଁ ବାକ୍‌ପଦ୍ଧତିରେ ସବାକ୍‌ଚିତ୍ରରେ ରୂପାନ୍ତରିତ କରିଦେଇ ରଚନାର

ଭାବକଳ୍ପକୁ ଉପଯୋଗୀକାରକ କରିନିଏ– ଏପ୍ରକାର ଦୃଢ଼ତା ଆସିଯାଇଛି। ସମୂହ ମେଳିରେ କବିତାକୁ ଆବୃତ୍ତିକରି ପ୍ରକାଶ୍ୟରୂପ ଦେଉଥିବା ଆବୃତ୍ତିକାରକ (Soloist) ସହକର୍ତ୍ତାର ମର୍ଯ୍ୟାଦା ପାଇଛନ୍ତି।

ଆବୃତ୍ତି ବାକ୍ ପ୍ରକାଶର ବହୁରୂପିକ ଚାତୁରୀ କେବଳ ନୁହେଁ, ଏହା କବିତାର ଭାବପକ୍ଷ ଓ ଶିଳ୍ପପକ୍ଷର ଆଟୋପରେ ଥିବା ନିଶ୍ଚିତ ଲୁକାୟିତ ସୌନ୍ଦର୍ଯ୍ୟକୁ ଭାଙ୍ଗି ତହିଁରେ ପ୍ରଭେଦ ସୃଷ୍ଟି କରି ପାଠକକୁ ବହୁପାକ୍ଷିକ ଆନନ୍ଦ ଅନୁଭବ କରିବାର ସୂତ୍ର ଯୋଗାଇଦିଏ। 'ଆବୃତ୍ତି ଏକ ଯୋଜନାବଦ୍ଧ ପ୍ରକ୍ଷେପଣ' (well-schemed projection) ଏ ପ୍ରକାର ନବବୌଦ୍ଧିକବାଦୀ ସିଦ୍ଧାନ୍ତକ ଆଲେକ୍‌ଜାଣ୍ଡାର ପୋପ୍‌ଙ୍କ ସହିତ ଏକମତ ହୋଇଯାଇ ପାଶ୍ଚାତ୍ୟ ବୋଧବାଦୀମାନସ ଆବୃତ୍ତିକୁ ଏକ ଜାଗୃତୀକରଣ ପ୍ରକ୍ରିୟା ଭାବରେ ଉପଯୋଗ କରିଛି। ମୂଳକୃତିରେ ଶବ୍ଦ ଯେତେ ମହତ୍ତମ / ଉଦାତ୍ତ / ବଳିଷ୍ଠ / କୋମଳ / ସ୍ନିଗ୍ଧ ହେଲେ ବି ସୁପ୍ତଥାଏ। ନୀରବ ପାଠକଟିଏ ତା'ର ନିଦକୁ ଭାଙ୍ଗି ଦେଇପାରେ; ମାତ୍ର ସବଳ ସଂଚାରୀ କରିବାରେ ନାହିଁ, ଯାହା ଆବୃତ୍ତି କରିପାରେ। ଯଥାର୍ଥରେ ଆବୃତ୍ତିକାରୀ ତା' ବାଗରେ ସୁପ୍ତଶବ୍ଦର କୁମ୍ଭକର୍ଣ୍ଣୀୟ ଜଡତାକୁ ଭାଙ୍ଗି ଜାଗ୍ରତକରେ। ଶବ୍ଦର ଅନ୍ତରୀଣ ଶକ୍ତିମତ୍ତା ବିସ୍ଫାରିତ ଓ ସ୍ଫୁଲିଙ୍ଗାୟିତ ହୋଇଉଠେ। ବେଳେବେଳେ ଛାୟାନିଦ୍ରିତା ଶବ୍ଦରମଣୀକୁ ସଚେତ କରାଇ ଆବୃତ୍ତିକାରକ ତାଂକୁ କମୋଳସଂଚାରୀ କରିଦିଏ। ଆବୃତ୍ତି କର୍ତ୍ତୃକ ଏ ଉଭୟ ପ୍ରକାର ଶବ୍ଦଜାଗୃତି ଶ୍ରୋତାଠାରେ କାବ୍ୟିକଭାବ ଓ କାବ୍ୟପଣ ପ୍ରତି ପ୍ରତ୍ୟୟ ଜନ୍ମାଇ ତାକୁ ପ୍ରରୋଚିତ କରେ। ଆବୃତ୍ତି କାବ୍ୟଶୈଳୀକୁ ସିଦ୍ଧ ଓ କବିତାର ଭାଷାକୁ ଭାବୋତ୍ତଳନଧର୍ମୀ ଶୈଳ୍ପିକ ପରାକାଷ୍ଠାର ମର୍ଯ୍ୟାଦା ଦେଇଥାଏ। ଶବ୍ଦ ଜାଗୃତୀକରଣର ମୂଳହେତୁଟି ହେଉଛି– କବିତାର ଶବ୍ଦକୁ ଭାବ ଅନୁସାରେ ଉଦାତ୍ତ ଅନୁଦାତ୍ତ, ଗୁରୁଲଘୁ, କୋମଳଗମ୍ଭୀର, ଉଚ୍ଚନୀଚ ଓ ହାସ୍ୟସମ୍ବେଦ୍ୟ କରି ଉଚ୍ଚାରଣ କରିବା। ଏ ଉଚ୍ଚାରଣ ଅସ୍ପଷ୍ଟ, ସ୍ୱରଭଙ୍ଗୀୟ, ବିକୃତ, ଅନାକର୍ଷଣୀୟ, ଶ୍ରୁତିକ୍ଲିଷ୍ଟ, ସାଧାରଣ, ନିରର୍ଥକ ଓ କଂପନରହିତ ନହୋଇ ବିଶ୍ୱସ୍ତ ଓ ଚିତ୍ରଉତ୍ପାଦକଧର୍ମୀ ହେବା ଉଚିତ। ଏହାଦ୍ୱାରା କବିତାର ଭାବ ବୁଝାପଡ଼ିବା ଅପେକ୍ଷା ଶବ୍ଦ ଉଚ୍ଚାରଣ ତାଳେତାଳେ ପାଠକ ସାମ୍ନାରେ ଭାବ ଅଧିମାତ୍ରାରେ ଦେଖି ହୋଇଯାଏ। ତେଣୁ ଭଲ କବିତା ପାଠ-ପରୋକ୍ଷରେ ଏକ ଦୃଶ୍ୟମାନ ଓ ସଶକ୍ତ ଉଚ୍ଚାରଣ (forthful viusual uttering). ଏ ଦୃଷ୍ଟିରୁ ସୁଶ୍ରାବ୍ୟ ଓ ଆଖିଦୃଶିଆ।

କବିତାର ସ୍ୱୟଂସଂପୂର୍ଣ୍ଣ ଓ ଉଜ୍ଜ୍ୱଳ ବୋଧକରଣ ନିମନ୍ତେ ଆବୃତ୍ତି ଏକ ଭାସ୍କରୀୟ/ ସୁଦର୍ଶନବୋଧକ (ଆପୋଲୋନିଆନ୍) ପ୍ରକ୍ରିୟା। ଶବ୍ଦର ଧ୍ୱନିମାତ୍ରିକ ଘୋଡ଼ଣୀ ଭିତରେ ଅନ୍ଧାରୁଆ ହୋଇ ରହିଥିବା ଭାବାର୍ଥକୁ ଆବୃତ୍ତି ଆଲୋକିତ କରିଦିଏ। ଆବୃତ୍ତିକାରୀ

(ନିଜେ କବି ଅଥବା ଆଦିଷ୍ଟ ଆବୃତ୍ତିକାରୀ) କବିତାର ଉଭୟ ଭାବପକ୍ଷ ଓ ଶିଳ୍ପପକ୍ଷରେ ବାରମ୍ବାର ବିଚରଣ କରେ। ଭାବର ବିବିଧତା କିପରି ଶବ୍ଦର ଚିତ୍ରାକୃତି (figures), ସ୍ୱରମେଳ (rhythms) ଓ ବର୍ଣ୍ଣବିନ୍ୟାସ (ଶବ୍ଦସ୍ଥ ସ୍ୱର, ବ୍ୟଂଜନ, ଯୁକ୍ତାକ୍ଷର, ଦୀର୍ଘ-ହ୍ରସ୍ୱଧ୍ୱନି, ଦ୍ୱିତ୍ୱବର୍ଣ୍ଣ, ଆନୁନାସିକତା, ସଘୋଷତା, ଅଘୋଷତା, ତାଡିତ, ଲୋଳିତ ଆଦି ଧ୍ୱନିକଂପନ ସୃଷ୍ଟି ଭିତ୍ତିରେ ପ୍ରଯୁକ୍ତ) ମଧ୍ୟରେ ଆଶ୍ରିତ ହୋଇ ରହିଛି ଓ ସେସବୁକୁ କିପରି ଉଚ୍ଚାରଣ କଲେ ତାହା ଭାବାର୍ଥକୁ ଆଲୋକିତ ଆକୃତିରେ ପ୍ରତ୍ୟକ୍ଷୀଭୂତ କରିପାରିବ ତାହା ଆବୃତ୍ତିକାରୀ ପୂର୍ବରୁ ନିର୍ଦ୍ଦିଷ୍ଟ କରିଥାଏ। ପ୍ରଯୁକ୍ତ ଶବ୍ଦର ଅର୍ଥକରଣକୁ ନିୟନ୍ତ୍ରଣ ଓ ନିର୍ମାଣ କରୁଥିବା ବର୍ଣ୍ଣ ଉପରେ ଆବୃତ୍ତିକାରୀର ବଳାଘାତ ଦ୍ୱାରା ନିରୂପିତ ଅଭ୍ରାନ୍ତ ଉଚ୍ଚାରଣ ହିଁ ଶବ୍ଦ ଓ ଶବ୍ଦମେଳିର କାବ୍ୟିକ ଅର୍ଥବୋଧକୁ ସହଜସରଳ କରିଦିଏ। ଉଚ୍ଚାରଣରେ ସ୍ୱରଭଙ୍ଗୀ, ସ୍ୱରଭକ୍ତି, ବ୍ୟଙ୍ଗତା, କାକୁ, ବକ୍ରୋକ୍ତି, ଅସ୍ପଷ୍ଟତା, ବିରୋଧାଭାସୀୟ ଉଦ୍ଦେଶ୍ୟ, ବୈପରୀତ୍ୟ, ବୈରସ୍ୟ, ବୈଲକ୍ଷଣ୍ୟ, ବୈରୂପ୍ୟ ଓ ଅସ୍ଥିର ବୈଫଲ୍ୟ ଆଦି କଣ୍ଠସ୍ୱର ଦ୍ୱାରା ଶବ୍ଦର ଅର୍ଥକରଣରେ ବାଧା ସୃଷ୍ଟି ହୋଇଥାଏ। କବିତାର ଆଲୋକ-ଆଳାପ୍ୟ-ଉଦ୍ଦେଶ୍ୟ ଏ ପ୍ରକାର ଦୋଷଯୁକ୍ତ ଆବୃତ୍ତି ଦ୍ୱାରା ନିମ୍ନମାନର, ଅସଫଳ ଓ ପ୍ରଭାବହୀନ ହୋଇଯାଏ। ଭାଷାତତ୍ତ୍ୱବିତ୍ ସୁସୁରୋ, ଡାନିଏଲ୍ ଓ ପ୍ରୟୋଗିକ ସାହିତ୍ୟ ସମୀକ୍ଷାଶାସ୍ତ୍ରୀ ଆଇ.ଏ.ରିଚାର୍ଡସଙ୍କ ଭଳି ବିଦ୍ୱାନ୍‌ମାନେ କଳାମାତ୍ରିକ ଆବୃତ୍ତିକୁ ପ୍ରଶଂସା କରିଛନ୍ତି। ପାଉଣ୍ଡଙ୍କ କବିତା ଆବୃତ୍ତି ଲୋଡ଼େ। ରିଚାର୍ଡସଙ୍କ ବିଶ୍ୱାସ ଆବୃତ୍ତି କାଳରେ କଣ୍ଠସ୍ୱର ମାଧ୍ୟମରେ ଆବୃତ୍ତିକାରୀର ବିହ୍ୱଳିତ ଓ ସଚେତନ ମନୋଭାବ ଦେଇ କାବ୍ୟସୌନ୍ଦର୍ଯ୍ୟ ଶ୍ରୋତା ପାଖରେ ପ୍ରତିବିମ୍ବିତ ହୋଇ ଉଠିଥାଏ। ଆମେ ଦେଖିଥାଉ ଆବୃତ୍ତିକାରୀର ଉଚ୍ଚାରଣ ଭଙ୍ଗୀର ଆରୋହ– ଅବରୋହ ଓ ଗୁରୁ-ଲଘୁ ତାନତରଙ୍ଗ ଦେଇ କବିତାରେ ପ୍ରତିସରିତ କବିର ମନୋଭାବ, ସର୍ଜନାତ୍ମକ ଅନୁଭୂତି, ବିଶ୍ୱାସ, ଦର୍ଶନ ଓ ଅଭିପ୍ରାୟ ପାଠକର ପ୍ରତ୍ୟୟ ସହିତ ଯୋଡି ହୋଇଯାଏ। କବିର ମନୋଭାବ ସହିତ ଆବୃତ୍ତିକର୍ତ୍ତାର ମନୋଭାବ ମିଶିଯିବା ପରେ ତାହା ସ୍ୱତଃ ଆବୃତ୍ତିକୁ ଶ୍ରୋତାଭିମୁଖୀ କରାଇନିଏ। ନିରୋଳାପଠନ ପାଠକକୁ ଏକାକୀ ଅବସରବିନୋଦନର ଆଶ୍ୱସ୍ତିଟିଏ ଯୋଗାଇଦିଏ। ମାତ୍ର ବହୁରୁଚିସଂପନ୍ନ ଶ୍ରୋତାଙ୍କ ଉପସ୍ଥିତିରେ କବିତା ଆବୃତ୍ତି ଶୁଣିବା ଦ୍ୱାରା ଭାବାନୁରାଗୀ ଶ୍ରୋତାର ଜୀବନ ବହୁପାକ୍ଷିକ ହୋଇଉଠେ। ବିବିଧ ଧରଣର କବିତା ଆବୃତ୍ତି ଶୁଣିବା ପରେ ବଂଚିବାର ଉପାୟ ବହୁଦିଗିକ ହୋଇଉଠେ। କବିର କବିତା ଆଲୋକବିଳାସୀ ଧର୍ମରେ ପାଠକର କବିତାରେ ରୂପାନ୍ତରିତ ହୋଇଯାଏ। କବିତା ଶୁଣିବା ମଧ୍ୟରେ ଭାରାକ୍ରାନ୍ତମନ ହାଲୁକା ହୋଇଯାଏ। ତା'ର ପ୍ରଭାବ ଦୀର୍ଘ ସମୟ ଧରି ଅବସାଦଗୁଡ଼ିକୁ ବାଟ ଭୁଲେଇ ଅନ୍ୟବାଗରେ ଚଳେଇନିଏ। ସକଳ ପ୍ରକାରର କ୍ରୋଧ, କଠୋରତା, ଅନ୍ୟମନସ୍କତା

ଶାନ୍ତିରେ, କୋମଳତାରେ ଓ ସ୍ଥିତପ୍ରଜ୍ଞତାରେ ପରିଣତ ହୋଇଯାଏ। ଆବୃତ୍ତି କବିତାର ସ୍ୱରକୁ କାବ୍ୟରସଗ୍ରାହୀର ଆତ୍ମୀୟସ୍ୱରରେ ସୁଲଭ କରିଦିଏ। ଏକଦା କବିତା ଆସରରୁ ଫେରିବା ମାର୍ଗରେ ନିଜର ମାନସିକ ଅବସ୍ଥା ସଂପର୍କରେ ଆଣ୍ଡ୍ରୁ ମୋସନ୍ ସାକ୍ଷାତ୍କାର ଅବକାଶରେ କହିଥିଲେ– 'ନିରଳଙ୍କୃତ ଓ ପରିଶୁଦ୍ଧ କବିତା ଆସରର ଆବୃତ୍ତି ପ୍ରଭାବ ଶ୍ରୋତା ଚାରିପାଖରେ କେବଳ ଆଲୋକ ହିଁ ବିଛେଇ ଦିଏ। ଏକ ଆଲୋକିତ ଶିହରଣ ଖେଳରେ ସମଭାଗୀ ହୋଇ ଶ୍ରୋତା ସ୍ୱଚ୍ଛତା, ମୁକ୍ତି, ପ୍ରେମ, ଦୟା, କ୍ଷମା, ଉଦାରତା, ଅନୁପମତା, ସରଳତା, ସୁହୃଦୟତା ଓ ସଦ୍‌ଚିନ୍ତା ଦିଗରେ ବାଟଚାଲିବାକୁ ପାଦ ବଢ଼ାଇଦିଏ। ତା'ପରେ ଆବୃତ୍ତିର ଶବ୍ଦଗୁଡ଼ିକ ଅକ୍ଷର ପ୍ରତିମା ଭାବରେ ଆଗରେ ଡେଇଁ ଡେଇଁ ଚାଲନ୍ତି। ଆବୃତ୍ତି ମଧ୍ୟରେ ମଜ୍ଜିରହି କବିତା ସହିତ ସମୟ କଟାଇଥିବାରୁ, ପରିଣାମ ସ୍ୱରୂପ ଚାରିଆଡ଼େ କେବଳ ବିଶ୍ୱାସର ସୂର୍ଯ୍ୟକିରଣକୁ ଛୁଇଁବାକୁ ହୁଏ। ଯେମିତି ପାବ୍‌ଲୋ ନେରୁଦାଙ୍କ କବିତା ଆବୃତ୍ତି ଶୁଣି ଇଲିୟଟ, ରବୀନ୍ଦ୍ରଙ୍କ ଆବୃତ୍ତି ଶୁଣି ମହାତ୍ମାଗାନ୍ଧି, କାଜି ନଜରୁଲ୍‌ଙ୍କ କବିତା ତାନରେ ତରୁଣଭାରତ ଏବଂ ମନମୋହନ ମିଶ୍ରଙ୍କ କବିତା ବୃତ୍ତିରେ ଉତ୍କଳର ତରୁଣପିଢ଼ି... କାବ୍ୟକିରଣର ଅଲଂଘନ ପ୍ରଭାବକୁ ଅଙ୍ଗୀକାର କରି ତଟସ୍ଥ ହୋଇଯାଉଥିଲେ। ସୁତରାଂ ଭଲ କବିତା ମାତ୍ରେ ହିଁ ସୂର୍ଯ୍ୟାଂଶୀ। ଆବୃତ୍ତି ହେବାମାତ୍ରେ ତାହା ଶ୍ରୋତାର ବାହାରୁ ଓ ଭିତରୁ ଅଂଧାରକୁ ଅପସାରିତ କରିଦେଇଥାଏ।

ଶ୍ରୋତାଙ୍କୁ ଭଲଲାଗୁଥିବା ସ୍ୱାଦକର କବିତାଗୁଡ଼ିକରେ ଅନେକ ଛିଦ୍ରଥାଏ। ତେଣୁ ଆଦୃତ ଓ ମନକୁ ଛୁଇଁଥିବା ଭଲ କବିତାଗୁଡ଼ିକ ସବୁବେଳେ ଅଧାଗଢ଼ା, ଖଣ୍ଡିଆ, ଛିଦ୍ରଯୁକ୍ତ। ଆବୃତ୍ତି କାରକ ଏହିପରି ଅଧାଗଢ଼ା ଅଥଚ ବିଚିତ୍ର ଗଢ଼ଣର ରହସ୍ୟାତ୍ମକ ଛିଦ୍ରଥିବା କବିତାକୁ ଆବୃତ୍ତିପାଇଁ ପସନ୍ଦ କରେ। ଆବୃତ୍ତିକାରକ ତାନର ଆରୋହଣ ଅବରୋହଣ, ମାତ୍ରାର ଗୁରୁ ଲଘୁ ନିୟମମାନି ପଢ଼ିଲାବେଳେ ଏ ଛିଦ୍ର ତା'ର ସରବ ଉଚ୍ଚାରଣ ସହିତ ସମତାଳ ଦେଇ ଶ୍ରୋତାପାଖରେ ଦୈର୍ଘ୍ୟ-ପ୍ରସ୍ଥ-ଉଚ୍ଚତା କ୍ରମେ ଆଖିଦୃଶିଆ ହୋଇଯାଏ ଏବଂ ସେସବୁ ଛିଦ୍ରକୁ ଶ୍ରୋତା ନିଜ ଅନୁଭବରୁ ଯଥାର୍ଥ ଅନୁଭାବମାନ ଯୋଡି ପୂରଣ କରେ। କବିତାର ଛିଦ୍ରଗୁଡ଼ିକ ସହିତ ଆବୃତ୍ତି ଶ୍ରବଣ କାଳରେ ଶ୍ରୋତାମିଶି ତାକୁ ସଜାଡି, ଅର୍ଥକରି ପୂର୍ଣ୍ଣରୂପ ଦେଇଥାଏ। ଏ ଦୃଷ୍ଟିରୁ କବି ପାଖରୁ ଆରମ୍ଭ କବିତା ଆବୃତ୍ତିକାର ବାଟଦେଇ ଯୋଗ୍ୟ ଶ୍ରବଣପ୍ରିୟ କାବ୍ୟାନନ୍ଦ ଅନୁଗ୍ରାହୀ ପାଖରେ ପୂର୍ଣ୍ଣାଙ୍ଗ ରୂପ ପାଇଥାଏ। କବିତାକୁ ସର୍ବୋତ୍କୃଷ୍ଟ କରିବାରେ ସବୁବେଳେ ଶ୍ରବଣ ଶ୍ରଦ୍ଧାବାନ ସହୃଦୟର ଅବଦାନ ଗୁରୁତ୍ୱପୂର୍ଣ୍ଣ। କବି ପାଖରେ ନିର୍ମିତ କବିତାଟିର ଏକ ନିର୍ଦ୍ଦିଷ୍ଟ ଆବେଦନ ଓ ଅର୍ଥକେନ୍ଦ୍ର ଥାଇପାରେ; ଯେମିତି ଅମକ ଗୋତ୍ରୀଙ୍କ କନ୍ୟା। ମାତ୍ର ଗୋତ୍ରାଶ୍ରମ ଡେଇଁଲେ କନ୍ୟା ଯେପରି ପତ୍ନୀ, ବଧୂ, ଶିଷ୍ୟା, ଭଗ୍ନୀ, ପ୍ରେମିକା, ପ୍ରିୟମ୍ବଦା, ସେବିକା ଭାବରେ

ବହୁପାକ୍ଷୀ ହୋଇଯାଏ ସେହିପରି ରୋମାଣ୍ଟିକ୍, ରହସ୍ୟବାଦୀ, ସୌନ୍ଦର୍ଯ୍ୟବାଦୀ, ସ୍ଥିତିବାଦୀ ଶୀର୍ଷକ କବିପାଖରୁ କବିତା ଡେଇଁଯିବା ପରେ ତା'ର ଅର୍ଥକେନ୍ଦ୍ର ନିର୍ଦ୍ଦିଷ୍ଟ ନଥାଏ। ସେ ବହୁକେନ୍ଦ୍ରୀ ଅର୍ଥ ଦ୍ୟୋତନାରେ ପ୍ରସରିଯାଏ। ଏହି ସଂଚାର ପ୍ରକ୍ରିୟାରେ ଆବୃତ୍ତିନିଷ୍ଠ ସଶକ୍ତ ପରିବେଷଣ ଜଣାଇଦିଏ କବିପ୍ରଦତ୍ତ ଅନୁଭୂତି ଆଂଶିକ ଓ ସୂଚନାତ୍ମକ। ଏହାର ସବଳ ରୂପ ଆମେ ପାଠକଆଗରୁ ଆଖିରେ ଦେଖିଛୁ, ଶୁଣିଛୁ ଓ ସ୍ମୃତିଗୋଚର କରିସାରିଛୁ। ଫଳରେ କବିତାର ଛିଦ୍ରଦେଇ ଆବୃତ୍ତି ସହିତ ତାଳଦେଇ ଭାବଗ୍ରହଣକାରୀ ଉପଭୋକ୍ତା ତହିଁରେ ପ୍ରବେଶ କରି ବିଚାର କରେ କବିତାର କେଉଁ ଅଂଶରେ କେଉଁ ଭାବଟି ଆମର, ଆମ ପଠନଯୋଗ୍ୟ, ଗ୍ରହଣଯୋଗ୍ୟ, ବର୍ଜନୀୟ ଓ ବୋଧନୀୟ। ଆଦର୍ଶ ଆବୃତ୍ତି କବିତାର ଅର୍ଥବୃତ୍ତକୁ ବିସ୍ତାରିତ କରି ଜଣାଇଦିଏ ଏଇ ଉପାଦେୟ କବିତାଟିରେ ବହୁ ଅର୍ଥର ସଂଭାବନା ସଞ୍ଚିତ ହୋଇରହିଛି, ଶ୍ରୋତା ନିଜ ଗ୍ରାହାକୀୟ ସାମର୍ଥ୍ୟରେ ତା' ଚାହିଦା ମୁତାବକ ବାଛିନେଉ। ମୂଳତଃ କବିତାର ସ୍ଥିତି ପଢ଼ା ବା ଆବୃତ୍ତି ନହେବା ଯାଏ ନାହିଁ। ପାଠ ବା ଆବୃତ୍ତି ହେବାପରେ କବିତାର ସବାକ୍ ଉପସ୍ଥିତି ସହୃଦୟ ଅନୁଭବ କରେ ଓ ତହିଁରୁ ନିଜକୁ ସୁହାଇଲା ଭଳି ଭାବସୌନ୍ଦର୍ଯ୍ୟ ବାଛିନିଏ। କବି ଓ ଶ୍ରୋତା ମଧ୍ୟରେ ଭାବର ଆଦାନପ୍ରଦାନ ନିମନ୍ତେ ଆବୃତ୍ତି ସକ୍ରିୟ ବିତରକର ଭୂମିକା ସଂପାଦନ କରେ। ଆବୃତ୍ତିକର୍ତ୍ତାର ସଂଯମ, ଲକ୍ଷ୍ୟନିଷ୍ଠ ଓ ଭାବୋଦ୍ରେକ ଧର୍ମୀ ଉପସ୍ଥାପନାରେ କାବ୍ୟ ନିର୍ମିତର ସୂକ୍ଷ୍ମଭାବ/ଭାବସମୂହ କବିତାମୋଦୀର ପ୍ରତ୍ୟୟ ଓ ସ୍ପନ୍ଦନ ସହିତ ଏକଗୋତ୍ରୀ ହୋଇଯାଏ।

କବିତାରେ ଥିବା ନାରୀଭାବାପନ୍ନ ଅଥବା ପୁରୁଷଭାବସଂପନ୍ନ କାବ୍ୟାନୁଭୂତି ଏବଂ ଶ୍ରୋତା ହୃଦୟରେ ଥିବା ଆତ୍ମାନୁଭୂତି, ଜୀବାନୁଭୂତି ଓ ସମୟାନୁଭୂତି ମଧ୍ୟରେ ଆବୃତ୍ତି ମିଳନସାଧନ କରି କବିତାପାଠର ମଂଚଟିକୁ ପରିଣୟ ପୀଠରେ ପରିଣତ କରିଦିଏ। ଊନବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ରୋମାଣ୍ଟିକ୍ ଚିନ୍ତାଧାରା ଓ ଭାବବାଦୀ କାବ୍ୟଚେତନାରେ ଆବେଗାତ୍ମକ ଅନୁଭୂତି ଓ ତା'ର ସାମାଜିକ ଯୋଗାଯୋଗକୁ କବିତା ଭାବରେ ପରିଭାଷିତ କରାଯାଇଛି (ସ୍କଟ)। କବିତାର ସ୍ୱଚ୍ଛନ୍ଦ ପରିପ୍ରକାଶ ପାଇଁ ପ୍ରଗୀତାତ୍ମକ ବ୍ୟାବହାରିକ ଶବ୍ଦଶୃଙ୍ଖଳାକୁ ସମର୍ଥନ କରାଯାଇଛି। ସକଳ ଆବେଗକୁ ସତ୍ୟ ଭାବରେ ବିବେଚନା କରାଯାଇଛି ଓ ତାହାର ବାଙ୍ମୟ ଅଭିବ୍ୟକ୍ତି ପାଇଁ କଳ୍ପନାକୁ ସଂଶ୍ଳେଷଣାତ୍ମକ ଯାଦୁଶକ୍ତି ଭାବରେ ଅବଲମ୍ବନ କରାଯାଇଛି। ଶବ୍ଦର ଆରୋହତାନ, ଅବରୋହାତ୍ମକ ସାରଲ୍ୟ। ବର୍ଣ୍ଣର ଆଦ୍ୟ-ମଧ୍ୟ-ପ୍ରାନ୍ତ ମେଳି ଓ ଶବ୍ଦର ତାନଯୁକ୍ତ ଛାନ୍ଦସିକ ଅନ୍ତର୍ପବାହୀ ବିନ୍ୟାସ ପ୍ରତି ସଚେତନ ରହି ରୋମାଣ୍ଟିକ୍ ଚେତନାର ପୁନରୁଭ୍ୟୁଦୟ ସମୟର କବିତାର ଆବୃତ୍ତି ମଧ୍ୟରେ ଶ୍ରୋତା ଇନ୍ଦ୍ରିୟ ପ୍ରଲୁବ୍ଧ ଶିହରଣ ଅନୁଭବ କରିଛି। ରୋମାଣ୍ଟିକ୍ କବିତା ପ୍ରଜାତିଗୁଡ଼ିକୁ (ଚତୁର୍ଦ୍ଦଶପାଦୀ କବିତା, ସମ୍ବୋଧ ଗୀତିକା, ଶୋକଗୀତିକା, ପ୍ରକୃତିମୂଳକ

ଗୀତିକା, ଦେଶପ୍ରେମମୂଳକ ଗୀତିକା, ବିଦ୍ରୂପାତ୍ମକ କବିତା, ଆବେଗିକ ବକ୍ତୃତାମୂଳକ କବିତା ଇତ୍ୟାଦି) ଆବୃତ୍ତି କରିବା ବେଳେ ପଙ୍କ୍ତିର ଗୁରୁତ୍ୱପୂର୍ଣ୍ଣ ବର୍ଣ୍ଣ ଉପରେ ତାନ (pitch) ବୃଦ୍ଧି ବା ହ୍ରାସ କରିବାର କୌଶଳ ଅବଲମ୍ବନ କରାଯାଇଛି। ପୁନଶ୍ଚ ହସ, କାନ୍ଦ, ବିସ୍ମୟ, ପ୍ରଶ୍ନ,ସ୍ନେହ, ଅଭିଯୋଗ, ଉପଦେଶ, ଆଳାପ, ଘୃଣା, ସୁଦୂରମୋହ, ସ୍ମୃତିଚାରଣ, ଶୈଶବ ସ୍ମରଣ, ରହସ୍ୟ ପ୍ରବଣ ଆଦି ଭାବ ଅନୁସାରେ ଧ୍ୱନିତରଙ୍ଗର ମାତ୍ରାବୃତ୍ତିକ ଉଚ୍ଚାରଣ କବିତାର ଭାବାର୍ଥକୁ ସୁନିର୍ଦ୍ଦିଷ୍ଟ କରିପାରିଛି।

କବିତା ଆବୃତ୍ତିର ବଳିଷ୍ଠ ବୋଧବାଦୀ ଓ ମୁକ୍ତିକୌଶଳର ପ୍ରସାର ପ୍ରତୀକବାଦୀ ଓ ପରବର୍ତ୍ତୀ ଚିତ୍ରକଳ୍ପବାଦୀ କାବ୍ୟାନ୍ଦୋଳନ ମଧ୍ୟରେ ସଂଭବ ହୋଇଛି। ପ୍ରତୀକବାଦୀ କବିତାରେ ଭାବର ପ୍ରତିନିଧିତ୍ୱ କରୁଥିବା ପ୍ରତୀକର ଅର୍ଥଦ୍ୟୋତନାକୁ ପାଠକଠାରେ ଉଦିତ କରାଇବା ପାଇଁ ଆବୃତ୍ତିକୁ ବିଶ୍ଳେଷଣାତ୍ମକ ଓ ଅଭିନବଶବ୍ଦ ଯୋଜନାବାଦୀ (Neological) ବାଚନିକ ସଂଭାଷଣ (Oratorical address) ରୂପେ ପ୍ରସାରର ଅପରିହାର୍ଯ୍ୟ ଅଙ୍ଗରୂପେ ବିବେଚନା କରାଯାଇଛି। ପ୍ରତୀକବାଦୀ କବିମାନେ କବିତାରେ ଅନ୍ତର୍ଚ୍ଛନ୍ଦର ଉପସ୍ଥିତିକୁ ସମର୍ଥନ କରିଛନ୍ତି। କବିତା ଗାନ ଅପେକ୍ଷା ଆନୁବୃତ୍ତିକ ହେବାଦ୍ୱାରା ପ୍ରଭାବବିସ୍ତାରଧର୍ମୀ ହୋଇଥାଏ। ଆବୃତ୍ତି ପ୍ରତୀକକୁ ପଦର୍ଶନମୂଳକ କରି ତୋଳେ। ଛନ୍ଦ ପ୍ରତୀକ ଓ ପ୍ରତୀକସାପେକ୍ଷ ଶବ୍ଦକୁ ଯେତେବେଳେ କହିବାର ଚାତୁରୀ ମଧ୍ୟରେ ଚଳାଇନିଏ ସେତେବେଳେ ତାହା ଆବୃତ୍ତିରେ ରୂପାନ୍ତରିତ ହୁଏ। ଭର୍ଲେନଙ୍କ ମତରେ ପ୍ରତୀକବାଦୀ କବିତାର ଆବୃତ୍ତିରେ କାବ୍ୟିକଭାଷା ବାଷ୍ପାୟିତ ଭଙ୍ଗୀରେ ଅନ୍ତର୍ଜଗତରୁ ବହିର୍ଜଗତ ଦିଗରେ ଉର୍ଦ୍ଧ୍ୱମୁଖା ହୋଇଯାଏ ଓ ତହିଁରେ ଏକ ସଂଗୀତଗୁଣ ସର୍ବଦା ସଂଚରିତ ହୋଇଚାଲିଥାଏ। ଗଦ୍ୟଛନ୍ଦର ପୁରୋଧା ପ୍ରତୀକବାଦୀ ରାମ୍ବୋଙ୍କ ବିଚାରରେ ଆବୃତ୍ତିରେ କବିତାର ଶବ୍ଦଗୁଡ଼ିକ ଉତ୍‌କଣ୍ଠା ଉତ୍ପାଦକ ଓ ଅଭୀପ୍‌ସା ପ୍ରବୋଧକ ହୋଇ ଉଚ୍ଚାରିତ ହେବା ଉଚିତ। ଫଳରେ କବିତାର ସାଧାରଣ ଶବ୍ଦଟିଏ ଭାବର ପ୍ରତିନିଧି ରୂପେ ସ୍ୱୟଂ ଦଣ୍ଡାୟମାନ ହୋଇଉଠିବ। ୧୯୧୧ରୁ ୧୯୩୦ ଭିତରେ ପାଶ୍ଚାତ୍ୟ ଜଗତର ଚିତ୍ରକଳ୍ପବାଦୀ କବିତା ଆନ୍ଦୋଳନ (ପ୍ରାଚ୍ୟ ଜାପାନ ଓ ଚୀନର ହାଇକୁ କବିତାକୁ ଆଧାର କରିଥିଲେ ମଧ୍ୟ) ଶୈଳିକ ଗଢ଼ଣରେ କଥିତ ଶବ୍ଦର ପ୍ରୟୋଗ, ଋବାଡମ୍ବର ଶବ୍ଦର ପରିହାର, ସାଦୃଶ୍ୟ ଓ ବୈପରୀତ୍ୟ ଶବ୍ଦର ସମଷ୍ଟି ଓ ମୁକ୍ତଛନ୍ଦର ପ୍ରଚଳନକୁ ଅବଲମ୍ବନ କରି ଘୋଷଣା କରିଛି– କବିତା ପଢ଼ାଯାଏ ନାହିଁ, ଶ୍ରୁତି-ସୁଖକର ଓ ଇନ୍ଦ୍ରିୟଗ୍ରାହୀ ପ୍ରଭାବସଂଚାର କ୍ରମେ ଆବୃତ୍ତ ହୋଇ ଦେଖି ହୋଇଯାଏ। ଅନ୍ତଃ ଛାନ୍ଦସିକ ପ୍ରବାହ, ଉପାନ୍ତ ସ୍ୱରମେଳ ଓ ମାତ୍ରାମେଳ ମଧ୍ୟରେ ମୁକ୍ତ/ଶ୍ଳଥବଦ୍ଧ ହୋଇ ଏକ ଆରୋହ ଅବରୋହାତ୍ମକ ତାନଗତ ସ୍ଥାପତ୍ୟ ସାନ୍ଦ୍ରତାରେ କବିତା ଆବୃତ୍ତି ପାଠକ ସମ୍ମୁଖରେ ସମଗ୍ର କବିତାକୁ ଚିତ୍ରପ୍ରତିମାବତ୍ ଉଦ୍‌ଭାସିତ

କରାଇଦିଏ। ଡବ୍‌ଲ୍ୟୁ. ଏ. କେ. ଓ୍ୱିମ୍‌ସଟଙ୍କ ମତରେ ଶବ୍ଦର ତାନଗତ ସ୍ଥାପତ୍ୟ ଆବୃତ୍ତିଦ୍ୱାରା ଭାବମୟ ହୋଇଉଠେ। ଆବୃତ୍ତିଗଠନ ସ୍ଥାପତ୍ୟରେ ଥିବା ଅନାପେକ୍ଷ ଓ ବିରୋଧ ଶବ୍ଦକୁବି ଚିତ୍ରଧର୍ମରେ ସାପେକ୍ଷ ଓ ବ୍ୟାଖ୍ୟାଯୋଗ୍ୟ କରିଦିଏ।

୧୯୨୦ରୁ ୧୯୬୦ ମସିହା ମଧ୍ୟରେ (ଏଜ୍‌ରା ପାଉଣ୍ଡ୍, ଟି.ଏସ୍.ଇଲିୟଟ୍‌ଙ୍କ ଠାରୁ ପାବ୍‌ଲୋ ନେରୁଦାଙ୍କ ପର୍ଯ୍ୟନ୍ତ) ପାଶ୍ଚାତ୍ୟ କାବ୍ୟମଣ୍ଡଳରେ ଚିତ୍ରକଳ୍ପ-ମିଥ୍-ପ୍ରତୀକ > ଦର୍ଶନ-ମନନ-ଜୀବନନିଷ୍ଠ ବାସ୍ତବତା ମିଶ୍ରଣରେ ଯେଉଁ ଆଧୁନିକ ପ୍ରତିଫଳନାତ୍ମକ କବିତାଧାରା ବିକାଶଲାଭ କରିଛି ତହିଁରେ କବିତା କଳ୍ପନା କରିବା ଅପେକ୍ଷା କବିତା ଗଢ଼ଣ ଉପରେ କବିସତ୍ତା ଅଧିକ ଆସ୍ଥାବାନ ହୋଇଛି। ବହୁ ବିଚିତ୍ର ଭଙ୍ଗୀରେ କାବ୍ୟିକ ଶବ୍ଦର ଶବଳିତ ନିୟୋଜନ ଘଟିଛି। ଆଧୁନିକ କବିତା ଗଢ଼ଣର କେତୋଟି ଦୃଶ୍ୟମାନ ବିଶେଷତ୍ୱ ହେଉଛି–

- ସମାନ୍ତରାଳ ଭାବରେ ଗୋଟିଏ ଗୋଟିଏ ପଙ୍‌କ୍ତି ବିନ୍ୟାସରେ ଶବ୍ଦଗୁଡ଼ିକ ବୈପରୀତ୍ୟଭଙ୍ଗୀରେ (reversal order) ସଂଯୁକ୍ତ ହୋଇରହିବା।
- କ୍ରିୟାହୀନ, କ୍ରିୟା ସଶକ୍ତ ଓ ସହାୟକ କ୍ରିୟା ପ୍ରାଧାନ୍ୟ ବାକ୍ୟାଂଶ କବିତାର ପାଦଯୋଜନାରେ ଛନ୍ଦି ହୋଇରହିବା।
- ଧ୍ୱନ୍ୟାତ୍ମକ ଶବ୍ଦଯୋଜନା ଓ ସ୍ୱରବର୍ଣ୍ଣମାନଙ୍କର ତାନଯୁକ୍ତ ଉତ୍‌ଥାନପତନ ଧର୍ମୀ ବସାଣରେ ଅନ୍ତର୍ଛନ୍ଦ ନିର୍ମାଣ କରିବା।
- ସ୍ୱରମୂର୍ଚ୍ଛନା ଓ ତାନିକ ଶ୍ରୁତିମାଧୁର୍ଯ୍ୟ ନିମନ୍ତେ ଉପାନ୍ତସ୍ୱରମେଳ (Terminal rhyme) ମଧ୍ୟସ୍ୱରମେଳ (Internal rhyme) ପର୍ଯ୍ୟାୟ କ୍ରମିକ ସ୍ୱରମେଳ (rhyme of sequency), ସମଶ୍ରୁତିକ ରବଡମ୍ବରୀୟ ସ୍ୱରମେଳ (masculine rhyme) ନାରୀଭାବାତ୍ମକ ଲଳିତ ଇଙ୍ଗିତାତ୍ମକ ଶବ୍ଦ-ସ୍ୱରମେଳ (feminine rhyme), ଦ୍ୱୈତ ଓ ତ୍ରିପାକ୍ଷିକ ପୁରୁଷ ପ୍ରଧାନ ମିତ୍ରାକ୍ଷର ମେଳ (double or triple stressed rhyme) ଓ ଅବରୋହଣାତ୍ମକ ସ୍ୱରମେଳ (Slant rhyme) ଇତ୍ୟାଦି ଛନ୍ଦାସିକ ଓ ଅନ୍ତରୀଣ ସାଙ୍ଗୀତିକ ପ୍ରକରଣ ଧର୍ମରେ ନିର୍ବାଚିତ ଶବ୍ଦବସାଣ।
- ବିରୋଧାଭାସୀ, ଚାତୁର୍ଯ୍ୟୋକ୍ତିମୂଳକ, ଅସମ୍ବନ୍ଧତା, ଲକ୍ଷଣା ଭାବ ଉତ୍ପାଦକ, ମିତ୍ର ଦୃଷ୍ଟୀୟ, ବୈପରୀତ୍ୟ ଗୁଣରେ ଶବ୍ଦମେଳି ସଂପାଦନ କରିବା।
- ଶବ୍ଦର ଏକକସତ୍ତା (ପ୍ରତୀକାତ୍ମକ ଅଥବା ପୁରାକଳ୍ପୀୟ ବା ମିଥିକ୍) ଭିତରେ ବହୁପ୍ରସ୍ଥୀୟ ଭାବକୁ ସୁପ୍ତ ରଖିବାର ସଯତ୍ନ କାରିଗରୀ କୌଶଳ।
- ବସ୍ତୁକୁ ଭାବରେ, ଭାବକୁ ବସ୍ତୁରେ, ଭାବ ଓ ବସ୍ତୁକୁ ବ୍ୟକ୍ତିତ୍ୱ ସତ୍ତାରେ ରୂପାନ୍ତରିତ କରିବାର ବିମ୍ବାତ୍ମକ ନିର୍ମାଣ କୌଶଳରେ ଶବ୍ଦଯୋଜନା କରିବା।

- ନାସ୍ତିବାଚକ ଶବ୍ଦକୁ ଆସ୍ତିବାଚକ ଆବେଦନର ଆଧାରକଳ୍ପ ଭାବରେ ଗ୍ରହଣ କରିବା।
- ଆତ୍ମଭାଷଣ ଓ ଅନ୍ୟଭାଷଣ ଭିତ୍ତିରେ ବକ୍ତବ୍ୟକୁ ଇଙ୍ଗିତାତ୍ମକ କରି ରୂପାୟିତ କରିବା।
- ଲେଖାହେବା ପୂର୍ବରୁ କବି ଶବ୍ଦକୁ ପ୍ରୟୋଗ କରିବାପାଇଁ ଛନ୍ଦମୁକ୍ତି ଲୋଡେ ଓ ଲେଖାହେବା ପରେ ସତେଜ ସଜୀବ କବିତା ସ୍ରଷ୍ଟାର କଳ୍ପବଳୟରୁ ମୁକ୍ତି ଖୋଜେ। ଆବୃତ୍ତିଯୋଗ୍ୟ ଶାବ୍ଦିକ ଶୃଙ୍ଖଳା କବିଠାରୁ କବିତାକୁ ମୁକ୍ତି ଦେବାକୁ ବାଟ ଦେଖାଇଦିଏ। ଆବୃତ୍ତିକାର କବିତା ପାଠକରିବାବେଳେ ଶ୍ରୋତା ମାନସଚକ୍ଷୁରେ ଦେଖେ– କବିର ଭାବଲୋକରୁ ନାଚି ନାଚି ଆସି କିଛି ଗୋଟେ ତା' ମନର ଉପର ମହଲାରେ ନାଚଆରମ୍ଭ (something dancing in the upstair – Gotthe) କରିଦେଇଛି।

ଏବଂବିଧ ଶବ୍ଦକାଳରେ କବିତା ନିର୍ମାଣଧର୍ମୀ କବିତା। ଶବ୍ଦର ଅନୁରଣନାତ୍ମକ ଗୁଣର ଉପସ୍ଥିତି ଥାଇ ବି ଏହା ଗାନଯୋଗ୍ୟତା ଅପେକ୍ଷା ଆବୃତ୍ତିଯୋଗ୍ୟତା ରଖିଛି। ଉଭୟ ନାନାତ୍ୱବାଦୀ ଓ ସାପେକ୍ଷବାଦୀ କବି (poet of pluralism and relativism) କବିତାକୁ ଶବ୍ଦ-ସଯତ୍ନ-ବର୍ଦ୍ଧିତ ଭାବରେ ଗ୍ରହଣ କରି ନିର୍ମାଣ କରିଛନ୍ତି। ଏପ୍ରକାର ନିର୍ମିତ କବିତାର ସଂଚାର ପ୍ରକ୍ରିୟାଟି ଆବୃତ୍ତି ଉପରେ ନିର୍ଭରଶୀଳ। କବିତା ଏକ ତ୍ରିତଳବିଶିଷ୍ଟ ପ୍ରାସାଦ। ପ୍ରାରମ୍ଭ > ପ୍ରବାହ > ପରିଣାମ-ପ୍ରତ୍ୟେକ ସ୍ତରରେ କବିର ସର୍ଜନାନୁଭୂତି ସ୍ୱତନ୍ତ୍ର ଭାବଭୂମି ଉପରେ ଛିଡା ହୋଇଥାଏ। ପୁନଶ୍ଚ ପ୍ରତିଟି ସ୍ତରର ଭାବଭୂମି ମଧ୍ୟରେ ସୂକ୍ଷ୍ମ ସମ୍ବନ୍ଧଟିଏ ଥାଏ। ଗୋଟିଏ ସ୍ତରରୁ କବିତା ଅନ୍ୟସ୍ତରକୁ ଉର୍ଦ୍ଧ୍ୱତାନୀୟ ଗତି କରିଥାଏ। ମାତ୍ର ଅନ୍ତର୍ଦୃଷ୍ଟିରେ ବିଚାର କଲେ କବିତାର ଗୋଟିଏ ସ୍ତରର ଭାବ ତାର ପୂର୍ବବର୍ତ୍ତୀ ସ୍ତରକୁ ବିହଙ୍ଗାବଲୋକନ କରିବା ବେଳେ ପରବର୍ତ୍ତୀ ସ୍ତରକୁ ସହସଂପର୍କ ପ୍ରତିଷ୍ଠା ନିମନ୍ତେ ହାତ ବଢ଼ାଇଥାଏ। ତେଣୁ କବିତାର ଭାବାତ୍ମକ ଗତି ଉର୍ଦ୍ଧ୍ୱତାନରୁ ନିମ୍ନତାନ ଓ ନିମ୍ନତାନରୁ ଉର୍ଦ୍ଧ୍ୱତାନ ହୋଇଥାଏ। କବିତାର ଏହି ତ୍ରିସ୍ତରୀୟ ସଂରଚନା ଭିତରେ କାବ୍ୟିକ ସୌନ୍ଦର୍ଯ୍ୟ ଉପଲବ୍ଧି ପାଇଁ ପାଠକକୁ ଚଢ଼ା ଉତ୍ତରା କରାଇବାରେ ଆବୃତ୍ତି ଏକ ନିଶୁଣି ଭାବରେ ଭୂମିକା ସଂପାଦନ କରେ। ଭଲ ଆବୃତ୍ତିଟିଏ ଅନୁରାଗୀଙ୍କଠାରୁ କବିତାର ବିଷୟରସ ପାଇଁ ଏକ ବ୍ୟାପକ ବିଚାରନିଷ୍ଠ ଅଙ୍ଗୀକାର ସଂପନ୍ନ ପ୍ରତିଶ୍ରୁତି ଆଦାୟ କରିଆଣେ। କାବ୍ୟ ଭାବନାର ବିବିଧ ପାଣିପାଗ ଓ କାବ୍ୟିକ ସତ୍ୟ ସହିତ ଶ୍ରୋତା-କବି-ସମୟର ନିବିଡ ସଂପର୍କ ଏହା ମାଧ୍ୟମରେ ତିଆରି ହୋଇଥାଏ। କବିର କଳ୍ପଚିତ୍ର କ୍ରମଶଃ ଭାବମୟ ଦୃଶ୍ୟଚିତ୍ରରେ ରୂପାନ୍ତରିତ ହୋଇଉଠେ। ଭଲ କବିତାମାନେ ସୃଷ୍ଟିଲେଖ ହେବାର ପ୍ରାଥମିକ

ଅବସ୍ଥାରେ କବିର ସ୍ୱଗତାବୃତ୍ତି ମଧ୍ୟରେ ଶାବ୍ଦିକ କଳେବର ଧାରଣ କରିଥା'ନ୍ତି। କବି କବିତା ସର୍ଜନ ଅବସ୍ଥାରେ ଆବୃତ୍ତିର ସରଣୀରେ (Track) ଭାବାନୁସାରୀ ଶବ୍ଦକୁ ଦୌଡାଇଥାଏ। ଏ ଦୃଷ୍ଟିରୁ ଆବୃତ୍ତି ସରଣୀରେ ଦୌଡୁଥିବା ପ୍ରସଙ୍ଗାନୁସାରୀ ଧ୍ୱନି ଓ ଶବ୍ଦଚିତ୍ର ଅନୁରାଗୀଙ୍କ ଆଗେ ଆଗେ ସାର୍ବଜନୀନ ଉପଲବ୍ଧି ସହିତ ସାଦୃଶ୍ୟକଳ୍ପ ହୋଇ ଗତିକରେ। ଫଳତଃ ଆବୃତ୍ତି ଦ୍ୱାରା କବିତାରେ ପ୍ରତିସରିତ ଉପଲବ୍ଧି, ବିଶ୍ୱାସ ଓ ଧାରଣା ଅନୁରାଗୀ ଶ୍ରୋତା ପାଖରେ ବିଗଠିତ ଓ ସତେଜିତ ହୋଇଉଠେ। ଆବୃତ୍ତି କାବ୍ୟବୋଧକୁ ଇନ୍ଦ୍ରିୟାନୁଭୂତି ସ୍ତରକୁ ନେଇଆସେ। ଏହାର ପ୍ରଭାବ ଦ୍ୱାରା କବିତାର ଭାବକୁ ଏହାର ତାଳେତାଳେ ଦେଖିହୁଏ, ରଖିହୁଏ, ଛୁଇଁହୁଏ, ଆଘ୍ରାଣ କରିହୁଏ ଏବଂ ଶୁଣିବା ତ ସାଧାରଣ ପ୍ରସଙ୍ଗ ହୋଇଥାଏ। ଏହା ପ୍ରମାଣ କରିଦିଏ ଯେ କବିତାରେ ପ୍ରଯୁକ୍ତ ଶବ୍ଦ ଘଷରା ଅର୍ଥକୁ ପରିହାର କରି ନିର୍ବାର୍ଥରେ ବିକଶିତ ହୋଇଉଠିଛି ଏବଂ କବିତା ସଂଯୁକ୍ତ ଶବ୍ଦର ସକ୍ରିୟତା ଅଛି, ଉତ୍ତାପ ଅଛି ଓ ଏକ ସଶକ୍ତପ୍ରାଣ ବି ଅଛି।

ଚିତ୍ରକଳ୍ପୀୟ କବିତାର ଭାବାନୁଭୂତିକୁ ଉଦ୍‌ଭାସନଗୁଣବତ୍ତାର ଆବୃତ୍ତି ଇନ୍ଦ୍ରିୟାନୁଭୂତି ସ୍ତରକୁ ଆଣୁଥିବାରୁ ଚିତ୍ରକଳ୍ପବାଦୀ କବିମାନେ ଏହାକୁ ପଦ୍ଧତିବଦ୍ଧ ପ୍ରଦର୍ଶନୀ କଳା (performing and formulative art) ଭାବରେ ପରିଭାଷିତ କରିଛନ୍ତି। କାବ୍ୟଭାବନାର ସକଳ ପ୍ରକାର ଭେଦକୁ ଭାଙ୍ଗିଦେଇ ଯଥାର୍ଥ ଆବୃତ୍ତି ସାର୍ବଜନୀନ ସାଦୃଶ୍ୟବୋଧ ଭିତ୍ତିରେ କବିତାର ବୈଷମ୍ୟରହିତ ନିଷ୍କର୍ଷଟିଏ ସୃଷ୍ଟି କରିପାରେ ଓ କବିର ବ୍ୟକ୍ତିଗତ କବିତା ସାମୂହିକ ଅବଚେତନର କବିତା ହୋଇଯାଏ। ଚିତ୍ରକଳ୍ପବାଦ ଦ୍ୱିମାତ୍ରିକ ଗେୟଧର୍ମର କାବ୍ୟବୃତ୍ତିକୁ ଭାଙ୍ଗିଦେଇ କାବ୍ୟିକ ଭାଷାକୁ ଆବୃତ୍ତିଯୋଗ୍ୟ ଭାଷାର ପରିଚିତି ଦେଇଛି। ଭାବ+ତାନ+ତାଳ ସଂଯୁକ୍ତ ଆବୃତ୍ତିଦ୍ୱାରା ଶବ୍ଦ ଚିତ୍ରଧର୍ମରେ ଚହଲିଉଠେ। ଏପରିକି ଅଳିଆ, ଧୂସର, ଅପ୍ରଚଳିତ ଓ ଗ୍ରାମ୍ୟ ଶବ୍ଦବି କାବ୍ୟିକ ବିହ୍ୱଳପଣରେ ନାଚିଉଠନ୍ତି। ଭଲ କବିତା ଭଲ ଆବୃତ୍ତ ହୁଏ। ଭଲଭାବରେ ଆବୃତ୍ତ କବିତାର ଶବ୍ଦଶୃଙ୍ଖଳା ଗୀତିଧର୍ମିତା, ଚିତ୍ରଧର୍ମିତା ଓ ଭାବସଂଯୋଜନଧର୍ମିତା (melopoeia/phorropoeia/logopocia-ezera pownd) ଉପରେ ପର୍ଯ୍ୟବସିତ। ଅନୁରୂପଭାବରେ ନଥ୍ରୋପ ଫ୍ରେଙ୍କ୍‌ଙ୍କ ଭଳି ଶବ୍ଦବିକଳ୍ପବାଦୀ ସମାଲୋଚକ ଭଲକବିତାର ତିନୋଟି ବିଶେଷତ୍ୱ ଉପରେ ଗୁରୁତ୍ୱ ଦେଇଛନ୍ତି– ଶ୍ରୁତିପ୍ରିୟ ଶାବ୍ଦିକତା (melos), ଚିତ୍ରବିଧାନର୍ ଶାବ୍ଦିକତା (opsis) ଓ ଭାବପ୍ରବୋଧନକାରୀ ଶାବ୍ଦିକତା (lexis)। ଆବୃତ୍ତିକାର ଏହି ତ୍ରିପାକ୍ଷିକ ଲକ୍ଷଣକୁ ବୁଝି କବିତା ପାଠ କରିବାଦ୍ୱାରା ନିର୍ଦ୍ଦିଷ୍ଟ କବିତାଟି ଶ୍ରବଣେନ୍ଦ୍ରିୟ ପ୍ରୀତିକର କବିତା (poetry of the ear), ଦର୍ଶନେନ୍ଦ୍ରିୟ ଚମତ୍କାରୀ କବିତା (poetry of the eye) ଓ ବଚନପ୍ରିୟ କବିତା (poetry of language)ରେ ରୂପାନ୍ତରିତ ହୋଇଉଠେ। ପାଠକ ପାଇଁ

ସାମଗ୍ରିକଭାବରେ କବିତାଟି ଆବୃତ୍ତିଦ୍ୱାରା ଦୃଷ୍ଟାନ୍ତଧର୍ମୀ ଏକ ଅନିଃଶେଷଭାବର ସୃଜନସ୍ଥାପତ୍ୟ ହୋଇରହିଯାଏ। ଆବୃତ୍ତି ଜଣେଇଦିଏ କବିତାଟି କବି ଦ୍ୱାରା ଯେଉଁ ଦୈର୍ଘ୍ୟ-ପ୍ରସ୍ଥ-ଉଚ୍ଚତାରେ ଲେଖାଯାଇଛି ତାହା ପାଠକରୁ ପାଠକ ଦେଇ ବର୍ଦ୍ଧିତକ୍ଷମ। ନିଃସ୍ୱଳା ଆବୃତ୍ତି କବିତାର ଅଧୁରା ଜୀବନ ଘୋଷଣା କରେ। ମିଥିକ୍ ସମୀକ୍ଷାତତ୍ତ୍ୱ ବିଶ୍ୱାସ କରେ ପୁରାକଳ୍ପୀୟ କବିତାରେ ଆରୋପିତ ମିଥ୍‌ଟି କବିର ବ୍ୟକ୍ତିଗତ ଅବଚେତନର ଆଧେୟ ହୋଇ ରୂପପାଇଥାଏ। ମାତ୍ର ସଫଳ ଆବୃତ୍ତି ମିଥ୍‌ର ପ୍ରାୟୋଗିକ ରହସ୍ୟକୁ ଉନ୍ମୋଚନ କରି ସାମୂହିକ ଅବଚେତନର ପ୍ରତ୍ୟୟ ସହିତ ଯୋଡିଦିଏ। କବିତା ମୂଳରେ ଥାଏ କବିର ମନ। ଆବୃତ୍ତି କବିମନକୁ ନିରପେକ୍ଷ ସମ୍ମାନ ଦେଇ ପାଠକର ମନ ଜଗତ ସହିତ କବିତାକୁ ଯୋଡିଦିଏ। କବିତା ଆବୃତ୍ତି ଶୁଣି ଶ୍ରୋତା କବିତାର ମୂଳ ଅଭିଜ୍ଞତାର ପରିବେଷ୍ଟନୀଠାରୁ ଦୂରେଇ ଯାଇ ତଦନୁରୂପ ଅଭିଜ୍ଞତାକୁ ନିଜର ପାରିପାର୍ଶ୍ୱିକ ଭାବ ଓ ଘଟଣା ମଧ୍ୟରେ ଦେଖିବସେ।

ମନସ୍ତାତ୍ତ୍ୱିକ ସମୀକ୍ଷାଶାସ୍ତ୍ରୀମାନେ କାବ୍ୟରସ ଅଭିବ୍ୟକ୍ତି ଓ ଉପଲବ୍ଧି କ୍ଷେତ୍ରରେ ଆବୃତ୍ତିକୁ ଏକ ଅନୁବନ୍ଧିତ ଉଦ୍ଦୀପକ ପ୍ରତିକ୍ରିୟା (conditioned and stimulus response) ସଂଜାତକାରୀ ପ୍ରକ୍ରିୟା ଭାବରେ ଗ୍ରହଣ କରିଛନ୍ତି। କବିତା ରଚନାକାଳରେ କବି ଯେଉଁ ପ୍ରତିକ୍ରିୟାକୁ ରୂପ ଦେଇଥା'ନ୍ତି ତାହା ମୂଳ ପ୍ରତିକ୍ରିୟା। ଏହି ପ୍ରକୃତ ପ୍ରତିକ୍ରିୟାକୁ ନିର୍ଭୁଲ ଆବୃତ୍ତିଟିଏ ପାଠକ ପାଖରେ ସଦୃଶ ବା ଅନୁବନ୍ଧିତ ପ୍ରତିକ୍ରିୟା ରୂପେ ଉପସ୍ଥାପନ କରିଦିଏ। ଉପସ୍ଥାପନା କାଳରେ ଶବ୍ଦଗୁଡ଼ିକ ବିବିଧ ଭାବାନ୍ତରର କୋଣ ସୃଷ୍ଟି କରି ବହୁଅର୍ଥରେ ପାଠକ ପାଖକୁ ପ୍ରସରିଯା'ନ୍ତି। ମୂଳ ପ୍ରତିକ୍ରିୟା ଶ୍ରୋତା ନିମନ୍ତେ ନୂଆ ଉଦ୍ଦୀପକ ପ୍ରତିକ୍ରିୟାରେ ନୂତନ ବସ୍ତୁବିଶିଷ୍ଟ ଭାବରୂପଟିଏ ସୃଷ୍ଟିକରେ। ଟି.ଏସ.ଇଲିୟଟଙ୍କ ନୈର୍ବ୍ୟକ୍ତିକତାର ମୂଳସୂତ୍ର ସହିତ ଏହା ସଂଯୋଗିତ ହୋଇପାରେ। କବିର ମନରେ ଭାବନାର ଗର୍ଭସଂଚାର ହେବାବେଳେ ଏହା ବ୍ୟକ୍ତିନିଷ୍ଠ ଓ ଏକ କେନ୍ଦ୍ରୀୟ ହୋଇ ରହିଥାଏ। ମାତ୍ର ଉଭୟ ଭାବଦ୍ୟୋତକ ଓ ମନୋରଂଜନ ଗୁଣରେ ପରିପୁଷ୍ଟ ଆବୃତ୍ତି କବିଠାରୁ କବିତାକୁ ଦୂରେଇ ନେଇ ଶ୍ରୋତାଭିମୁଖୀ କରିବାବେଳେ ମୂଳଭାବନା ସମକେନ୍ଦ୍ରରୁ ବିଚ୍ୟୁତ ହୋଇ ଭିନ୍ନଭିନ୍ନ ସ୍ଥୂଳଆକାର ବିଶିଷ୍ଟ ହୋଇ ସଂଚରିଯାଏ।

ଆବୃତ୍ତି ପ୍ରଥମେ କବିତାର ଶବ୍ଦଶୃଙ୍ଖଳାକୁ ନିୟନ୍ତ୍ରଣ କରେ। ତା'ପରେ କବିତାର ସବୁପ୍ରକାର ଉପାଦାନ ସକ୍ରିୟ ଓ ଜୀବନ୍ତ ହୋଇ ଆବୃତ୍ତି ମାଧ୍ୟମରେ ଶ୍ରୋତାର ଭାବାନୁଭୂତିରେ ଅନୁକୃତ ହୋଇଉଠନ୍ତି। ଆବୃତ୍ତି କାଳରେ ବସ୍ତୁର ପ୍ରତିଭାସନ ଗୁରୁତ୍ୱପୂର୍ଣ୍ଣ ହୋଇଉଠେ। ଏହାଦ୍ୱାରା ଭାବାନୁଭୂତିକୁ ଅବୟବତ୍ୱ ପ୍ରଦାନ କରିହୁଏ। ଆଧୁନିକ କବିତା ବ୍ୟାଖ୍ୟାହୀନ ଅନ୍ତଃଦର୍ଶନର କବିତା। ଟି.ଏସ. ଇଲିୟଟ୍ ଏପ୍ରକାର କବିତାରୁ କବିକୁ

ନଖୋଜି ବସ୍ତୁପ୍ରତୀକାତ୍ମକ ହୋଇ ରହିଥିବା ଭାବ୍‌ସଂବେଗର ଘନତ୍ୱ-ରୂପକୁ ଲୋଡିନେବାକୁ ପାଠକୀୟ ଉଦ୍‌ବୋଧନ ଦେଇଅଛନ୍ତି। ଆବୃତ୍ତିର କାର୍ଯ୍ୟ ଭାବସଂବେଗକୁ ବସ୍ତୁପ୍ରତୀକରେ ରୂପାନ୍ତରିତ କରି ପରିବେଷଣ କରିବା। ମନେ ରଖିବାକୁ ହେବ ଆବୃତ୍ତି କବିତାକୁ ଅନ୍ୱୟ କରେ ନାହିଁ ଏକ ଚିତ୍ର ପ୍ରତୀତି ପ୍ରଦାନ କରେ। ଏ ଦିଗରୁ ଆବୃତ୍ତି ଏକପ୍ରକାର ଭାବର ବସ୍ତୁକରଣ (objectification) ପ୍ରକ୍ରିୟା। ଶବ୍ଦ ଉଚ୍ଚାରଣର ନିର୍ଦ୍ଦିଷ୍ଟତା, ଶୁଦ୍ଧତା ଓ ସ୍ପଷ୍ଟତା ଦ୍ୱାରା ସହଜରେ ଉତ୍ତମ ଆବୃତ୍ତିକାର କାବ୍ୟାନୁଭୂତିକୁ ବସ୍ତୁକରଣରେ ପ୍ରମୂର୍ତ୍ତ କରିପାରିଥାଏ। ସୁତରାଂ ଆଧୁନିକ କବିତା ଗତିପାଇଁ ଯେଉଁ ଆବୃତ୍ତିକଳାର ସାହାଯ୍ୟ ଲୋଡେ ତାହାର କୌଶଳଟି ଏହିପରି–

- ଆତ୍ମବିହ୍ୱଳତା, ମନ୍ମୟତା, ବ୍ୟକ୍ତିନିଷ୍ଠ ଆବେଗକୁ ଛାଡି ସମୂହ ତନ୍ମୟତାର ଆବେଦନ ପ୍ରତି ସଚେତନ ହୋଇ କବିତା ଆବୃତ୍ତି କରାଯିବା ଉଚିତ।
- ଶବ୍ଦ ବିନ୍ୟାସରେ ଥିବା ଚିତ୍ରକଳ୍ପାଦିକୁ ନିର୍ବାଚନ ଓ ନିର୍ଦ୍ଦିଷ୍ଟ କରି ଶ୍ରୋତା ନିକଟରେ ବସ୍ତୁ ସାରୂପ୍ୟରେ ପ୍ରକାଶ କରିବା ଉଚିତ।
- ସମଗ୍ର କବିତାର ଭାବ ଏକ ନୈର୍ବ୍ୟକ୍ତିକ ପ୍ରଭାବ ବିସ୍ତାରରେ ଯେପରି ସମର୍ଥ ହେବ ସେଥିପ୍ରତି ଧ୍ୟାନ ଦେଇ ଶବ୍ଦ ଉଚ୍ଚାରଣ ପ୍ରକ୍ରିୟାଟି ଚିତ୍ରାତ୍ମକ (ideographical) ଓ ରୂପାତ୍ମକ (morphological) ହେବା ଉଚିତ।
- ଉଚ୍ଚାରଣରେ ଗୁରୁଲଘୁ ମାତ୍ରାପ୍ରତି ସତର୍କ ରହି ଶବ୍ଦର ବିଶେଷାତ୍ମକ ଓ ସାମାନ୍ୟାତ୍ମକ ଗୁଣ ଜାଣି ଭାବକୁ ବସ୍ତୁରେ ଓ ବସ୍ତୁ ମଧ୍ୟରେ ସତ୍ୟ ଓ ତାତ୍‌ପର୍ଯ୍ୟକୁ (truth and significance) ଦେଖାଇଦେବା ଭଳି ପ୍ରଯତ୍ନରେ ଆବୃତ୍ତି କରିବାର ଧାରା ନିର୍ଣ୍ଣୟ ହେବା ଉଚିତ।
- ଆବୃତ୍ତିକୁ ପ୍ରତିମା ନିର୍ମାଣ କଳାରେ ପରିଣତ କରିବାପାଇଁ ପୂର୍ବ ପ୍ରସ୍ତୁତି ଓ ବାଗ୍‌ଯନ୍ତ୍ରୀୟ ଅଭ୍ୟାସ ଅପରିହାର୍ଯ୍ୟ।
- ଆବୃତ୍ତିକାର ଏକକ ଆବୃତ୍ତି କରୁଥିଲେ ଉଦ୍‌ବୋଧନତା ଓ ସମ୍ମୋହନତା ଉପରେ ଗୁରୁତ୍ୱ ଦେବା ଉଚିତ। ମିଳିତ ଆବୃତ୍ତି (accompanied recitative) ବହୁ ଆବୃତ୍ତିକାର, ସଂଗୀତ, ବାଦ୍ୟ ମେଳକ ହୋଇ ଦୃଶ୍ୟ-ଶ୍ରାବ୍ୟ ଉତ୍ପାଦନଧର୍ମୀ ହେବା ଉଚିତ।

ଆଇ.ଏ. ରିଚାର୍ଡ୍‌ସ ଦୃଷ୍ଟିରୁ ଆବୃତ୍ତିସୁଲଭ ପଠନକ୍ରିୟାକୁ ଏକ ଅଭିଜ୍ଞତାସିଦ୍ଧ ବିତରଣାତ୍ମକ ବିବେଚନା ପ୍ରସଙ୍ଗ (Transformative empirical accounts)। କବିତାର ସାମଗ୍ରିକ ସତ୍ତାରେ ଥିବା ସାମଞ୍ଜସ୍ୟ ଓ ଅସାମଞ୍ଜସ୍ୟ ବହୁଧାଗୁଡିକୁ ଏକୀକୃତ କରିବାର ପଠନପ୍ରଣାଳୀ (totaly unified reading) ହେଉଛି ଆବୃତ୍ତି। ଏକ

କେନ୍ଦ୍ରାଭିମୁଖୀ ନୀରବପଠନକୁ (convergent reading/ପାଠକ କେବଳ ନିରୋଳାରେ ଅକ୍ଷରଦେଖି ପଢ଼େ) ଅସ୍ୱୀକାର କରି ଆବୃତ୍ତି ଏକ ବିକେନ୍ଦ୍ରୀକରଣ ପଠନାଭିମୁଖ୍ୟକୁ (divergence purport) ଅଙ୍ଗୀକାର କରିଥାଏ। ଭାବସଂଚାରୀ ଆବୃତ୍ତିରେ ଅନ୍ୟକୁ ସମ୍ବନ୍ଧିତ ଓ ସ୍ୱୀକାର କରିବାର ସୌନ୍ଦର୍ଯ୍ୟବୋଧ (reception and attachment aesthetics) କାର୍ଯ୍ୟକରେ। ଶବ୍ଦକୁ ନୁହେଁ ଶବ୍ଦ ଭିତରେ ଥିବା ଫଳୋତ୍ପାଦକଧର୍ମୀ କାବ୍ୟସୌନ୍ଦର୍ଯ୍ୟକୁ (potential poetic aesthetic) ଅବିକଳ ଭାବରେ ଗ୍ରାହକ ସଂପୃକ୍ତ କରିଦେବା ଆବୃତ୍ତିର କାର୍ଯ୍ୟ।

ପାଶ୍ଚାତ୍ୟ ଭୂଭାଗରେ ବଡବଡ ବିଳାସୀ ଅଭିଜାତ-ସହରରେ କବିତା ପାଠର ବୈଠକୀଘର ବା ଆସର କ୍ଲବ୍ ତିଆରି ହୋଇଛି। ଆସରରେ (recitation stage) ଛନ୍ଦ ଓ ଭାବ ଇତ୍ୟାଦି କାବ୍ୟିକ ଉପାଦାନ ବ୍ୟଂଜନାତ୍ମକ ଭଙ୍ଗୀରେ ପାଠ (recited/repeated reading) କରାଯାଇଥାଏ। ଆବୃତ୍ତି ଆସର ସମଧର୍ମା କାବ୍ୟାନୁରାଗୀକୁ ନେଇ ପରିଚାଳିତ ହୋଇଥାଏ। ବିହ୍ୱଳତା (passion) ଆସକ୍ତି (attachment) ଓ ଉଜ୍ଜୀବନ (resuscitation) ମଧ୍ୟରେ ଆବୃତ୍ତି କବିତାର ସର୍ଜନଶୀଳ ନୂଆପଣ ଓ ଶାଶ୍ୱତ ସତ୍ୟକୁ (eternal truth) ବ୍ୟକ୍ତିନିଷ୍ଠତାର ଊର୍ଦ୍ଧ୍ୱକୁ ନେଇଯାଇ ସାମାଜିକୀକରଣ/ସାଧାରଣୀକରଣ କରିଦିଏ। ସଫଳ ଆବୃତ୍ତି କବିତାକୁ ଅବିକଳ ଦେଖାଇ ଦେଇପାରେ, ପୁନର୍ଗଠିତ କରିପାରେ ଓ ବିଗଠିତ ବି କରିପାରେ। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ମାର୍କିନ କବିତା ଆବୃତ୍ତିଧର୍ମ ବିଚ୍ୟୁତ ହୋଇ ସାମାଜିକ ସଂପର୍କହୀନତା ହେତୁ କ୍ରମଶଃ ପାଠକ ବିଚ୍ଛିନ୍ନ ଓ ଦୁର୍ବୋଧ୍ୟ ହୋଇଯାଉଥିବାର କବି ରନ୍‌ଡଲ ଜାରେଲ୍ ଲକ୍ଷ୍ୟ କରିଛନ୍ତି। କବିତା ରଚନାର ସାମାଜିକ ଅପରିହାର୍ଯ୍ୟତା ଏବଂ ତା'ର ଆବୃତ୍ତିକ ମହତ୍ତ୍ୱକୁ ଏକ ସମୟୋଚିତ ଆହ୍ୱାନ ଭାବରେ ଗ୍ରହଣ କରିବାକୁ ଆବେଦନ କରି ସେ ଦର୍ଶାଛନ୍ତି– 'ଆବୃତ୍ତି ଦ୍ୱାରା ସାମୂହିକ ସ୍ତରରେ ଓ ଜୀବନଚର୍ଯ୍ୟାରେ ଗୋଟିଏ ଗୋଟିଏ କବିତା ଏତେ ବ୍ୟାପକ ଅର୍ଥରେ ବିସ୍ତାରିତ ପ୍ରେରଣା ଯୋଗାଇ ଦିଅନ୍ତି ଯେ ଆବୃତ୍ତି ସ୍ଥଳରେ ବସିଥିବା ସ୍ୱୟଂ କବି ବି ଚିନ୍ତା କରିପାରନ୍ତିନି ତାଙ୍କ କବିତା କିପରି ଏପ୍ରକାର ଚମତ୍କାରିତା ଦେଖାଇପାରିଲା ଓ ସାମାଜିକ ପ୍ରାସଙ୍ଗିକତାକୁ ଏତେ ବଳିଷ୍ଠ ଭାବେ ଉତ୍ପାଦନ କରି ସଂଚାରଣ କରିପାରୁଛି। ସଂକ୍ଷେପରେ ମୂଳ କବିତାଟି ରସାଳ ଆବୃତ୍ତିଶକ୍ତି ଦ୍ୱାରା ପରିପ୍ରୋକ୍ଷିତ ହୋଇ ସାମାଜିକ ଆଭିମୁଖ୍ୟ ଅନୁସାରେ ବହୁରଙ୍ଗରେ ପୁନର୍ଲିଖିତ ହୋଇଉଠୁଛି– ଏହାହିଁ ବିସ୍ମୟ।' କବିର ସ୍ୱର, ତର୍କ, ବିଶ୍ୱାସ, ମନୋଭାବ, ସହଜାତପ୍ରବୃତ୍ତି, ଦୃଷ୍ଟିଭଙ୍ଗୀ, ଅଭିପ୍ରାୟ ଓ ଅଙ୍ଗୀକାର (voice, argument, faith, tone, pre-existential tendency, attitude, intention and commitment) ଇତ୍ୟାଦିକୁ ବ୍ୟକ୍ତିନିଷ୍ଠ ପରିଧିରୁ ଡିଆଁଇ ଆବୃତ୍ତି ସମକାଳର ସମୂହ ଚିନ୍ତାଜଗତର କରିଦିଏ। କବିତାର ଶବ୍ଦ ସାଧାରଣ ନୁହେଁ। ନିରୋଳା ଓ ନିରୁତା ପାଠକ

କବିତାକୁ ପାଠ କରିବା ସମୟରେ ନିଜ ବିଚାରକୁ ନେଇ ଏକଦେଶଦର୍ଶୀ ସିଦ୍ଧାନ୍ତଟିଏ ନେଇଥାଏ ଓ ଶବ୍ଦର ଅଭିଧାଶ୍ରିତ ଚମତ୍କାରିତା ମଧ୍ୟରେ ମଜ୍ଜିରହେ। ମାତ୍ର ଆବୃତ୍ତିସୁଲଭ ହେବାପରେ କବିତାର ଶବ୍ଦର ଲକ୍ଷଣା ଓ ବ୍ୟଂଜନାତ୍ମକ ବ୍ୟାପକତା ଜଣାପଡେ। ସାଧାରଣ ବ୍ୟାବହାରିକ ସ୍ତରରୁ ଶବ୍ଦକୁ ଉତ୍ତରିତ କରିନେଇ ଆବୃତ୍ତିଶବ୍ଦାର୍ଥ ଉପରେ ହାତୀ ସୁନାକଳସ ଢାଳିବା ପରି ନବନ୍ୟାୟିକ ଅର୍ଥରେ ଅନସଂଯୁକ୍ତପୂର୍ବ ରାଜକୀୟ ମର୍ଯ୍ୟାଦାରେ ଗୁଦ୍ଧିମନ୍ତ କରିଦିଏ।

ନବସମୀକ୍ଷାବାଦୀଙ୍କ ମତରେ କବିତା ଏକ ନିର୍ମାଣ। ଏ ନିର୍ମାଣ ସର୍ବତୋଭାବେ ଶବ୍ଦ ଯୋଜନା ସର୍ବସ୍ୱ ହେଲେ ବି କବି କବିତାରୂପକ ଶବ୍ଦଘରଟିଏ ନିର୍ମାଣ ପାଇଁ ତ୍ରିସ୍ତରୀୟ ସ୍ଥାପତ୍ୟସୌନ୍ଦର୍ଯ୍ୟର ବିନିଯୋଗ କରିଥାଏ। ନିର୍ମାଣର ପ୍ରାରମ୍ଭରେ ଥାଏ– ପ୍ରକାଶଜନିତ ବ୍ୟାକୁଳତା, ମଧ୍ୟଭାଗରେ ଥାଏ ଭାବନିର୍ଣ୍ଣୟ ଓ ଭାବକରଣର ଆଗ୍ରହ ଓ ଶେଷରେ ଥାଏ ନିଷ୍କର୍ଷଧର୍ମୀ ବକ୍ତବ୍ୟର ବାଣୀସ୍ଫୂର୍ତ୍ତି। ଏ ତ୍ରିସ୍ତରକୁ ସୌନ୍ଦର୍ଯ୍ୟମଣ୍ଡନ ସମର୍ଥ ସୁବର୍ଣ୍ଣଗଠିତ ପଦ ସଂଘଟନା ମୂଳକ ବାକ୍ୟବିନ୍ୟାସ ସ୍ୱଚ୍ଛନ୍ଦ ଗତି ପ୍ରଦାନ କରିଥାଏ। ସୁବର୍ଣ୍ଣାୟିତ (ଅନୁପ୍ରାସ, ଯମକ ଓ ଧ୍ୱନ୍ୟାତ୍ମକ ଗୁଣବିଶିଷ୍ଟ) ପଦବିନ୍ୟାସର ତାନ, ମାତ୍ରା, ଅକ୍ଷରାନୁବନ୍ଧକୁ ଜାଣି ଶବ୍ଦାର୍ଥର ମର୍ମକୁ ବୁଝି ସଂଚାରଣ କରିପାରୁଥିବା ସମ୍ମୋହନକାରୀ ଘୋଷକ ବା ଆବୃତ୍ତିକାରକ ହିଁ ସାମଗ୍ରିକ ଭାବରେ କବିତାଟିକୁ ପାଠକ ଚିତ୍ତାନୁମୋଦିତ କରିଦେଇଥାଏ। ଆବୃତ୍ତି ଏକ ଶିକ୍ଷଣପ୍ରକ୍ରିୟାତ୍ମକ ତାଲିମନିଷ୍ଠ କଳାବିଦ୍ୟା; ଯାହାକୁ ସାଧନ କରି କବିତାପାଠ କାଳରେ ଆବୃତ୍ତିକାରକ ପ୍ରଥମେ ଶ୍ରୋତାର ଶ୍ରୁତି ହରଣ କରେ > ତାପରେ ଚିତ୍ତହରଣ କରେ > ଭାବସତ୍ତା ହରଣ କରେ > ଶେଷରେ ହୃଦୟ ହରଣ କରେ। କବି ରିଲ୍‌କେଙ୍କ ପାଇଁ ଶବ୍ଦ ପଂଜୁରୀ ଭିତରେ ବନ୍ଦୀ ହୋଇ ରହିଥିବା ଚିତ୍ତୋଲ୍ଲାସକ ପକ୍ଷୀମାନେ ଆବୃତ୍ତି ଦ୍ୱାରା ମୁକ୍ତି ପାଇଁ କଳରବ କରି ଅନୁରାଗୀଙ୍କ ସାମ୍ନାରେ ନାନା ଭାବରଙ୍ଗ ପ୍ରଦର୍ଶନ କରି ବହୁବର୍ଣ୍ଣିଳ ଦୀପ୍ତିରେ ଉଡ଼ିବୁଲନ୍ତି।

ଆବୃତ୍ତି ଜଣାଇଦିଏ କବିତାର ପଙ୍‌କ୍ତିରେ ସାପେକ୍ଷଧର୍ମରେ ପ୍ରବନ୍ଧିତ ହୋଇ ରହିଥିବା ଶବ୍ଦମେଳି ଯେଉଁ ଭାବସୌନ୍ଦର୍ଯ୍ୟାତ୍ମକ ପ୍ରଭାବ ସୃଷ୍ଟି କରୁଛି ସେଥିରୁ ଗୋଟିଏ ଶବ୍ଦ ଏପଟସେପଟ କରିଦେଲେ ଅଥବା ଶବ୍ଦଟିଏ କାଢ଼ିନେଇ ବିକଳ୍ପଟିଏ ଖଂଜି ଦେଲେ ବି ସମଗ୍ର କବିତାର ଭାବମାତ୍ରିକ ଅନୁପମତା କ୍ଷୀଣ ଓ ଖର୍ବିତ ହୋଇଯିବ! ମୋଟ ଉପରେ ପାଶ୍ଚାତ୍ୟବିଚାର ବିଶ୍ୱାସ କରିଆସିଛି ଯେ ସଂପାଠ କବିତାର ଭାବୋଦ୍ରେକାତ୍ମକ ପ୍ରକ୍ରିୟାର ପରିବେଷଣାତ୍ମକ ବାକ୍‌ଭଙ୍ଗୀ। ଆବୃତ୍ତି ଏକ କଳା। ଏ କଳାର ବିଜ୍ଞାନ ସମ୍ମତ ପ୍ରୟୋଗ ଅମୂର୍ତ୍ତ କାବ୍ୟଭାବନାକୁ ମୂର୍ତ୍ତିମାନ ଦୃଷ୍ଟାନ୍ତରେ ରୂପାନ୍ତରିତ କରିଦିଏ ଏବଂ ଶବ୍ଦମାନଙ୍କୁ ପ୍ରାଣବନ୍ତ କରି ସହୃଦୟ ସାମ୍ନାରେ ଚଳପ୍ରଚଳ କରାଇଦିଏ। ଆବୃତ୍ତି ଦେଇ କବିର ଦୃଷ୍ଟିକୋଣ ପାଠକର ଇଚ୍ଛାଶକ୍ତି ସହିତ ମିତ୍ରତା ସ୍ଥାପନ କରେ।

(ପାଞ୍ଚ)

ଯଥାଯଥ ଆବୃତ୍ତିର ପରିସର କବିତା ରଚନାଠାରୁ କବିତାର ରସ ଆସ୍ୱାଦନକାରୀ ଶ୍ରୋତା ପର୍ଯ୍ୟନ୍ତ ବିସ୍ତୃତ। କବିର ମନୋଭାବ, କବିତାର ଶବ୍ଦବିଧାନ, ଶବ୍ଦର ଭାବକରଣ, ଶବ୍ଦଶୃଙ୍ଖଳାରେ ବର୍ଣ୍ଣ ଓ ବର୍ଣ୍ଣସମଷ୍ଟିର ତାନିକ ଉଚ୍ଚାରଣ, ଆବୃତ୍ତିକାରର କଣ୍ଠସ୍ୱର ଓ ଦୃଢ଼ ଉପସ୍ଥାପନାଚାତୁରୀ ଏବଂ ଶ୍ରୋତାର ସ୍ୱୀକାର ଓ ଗ୍ରହଣ କରିବାର ଉତ୍ସାହୀ ମାନସିକତାର ଏକ ସନ୍ତୁଳିତ ପ୍ରକ୍ରିୟା ଉପରେ ଆବୃତ୍ତିର ସଫଳତା ନିର୍ଭରଶୀଳ। ସାଙ୍ଗୀତିକ ଆବୃତ୍ତି ହେଉ, ନାଟକୀୟ ଆବୃତ୍ତି ହେଉ ଅଥବା ଧ୍ୱନ୍ୟାତ୍ମକ/ପୌନଃପୌନିକ/ଗମ୍ଭୀର/ଲଳିତ/ସ୍ୱଚ୍ଛନ୍ଦ/ଏକକ/ମିଳିତ/ଲୟଯୁକ୍ତ/ଆଶୁ ବା ଚାରଣଶୀଳ ଆବୃତ୍ତି ହେଉ ପ୍ରତ୍ୟେକ ଆବୃତ୍ତିର ଭଙ୍ଗୀରେ ସ୍ୱାତନ୍ତ୍ର ବାରି ହୋଇ ପଡୁଥିଲେ ବି ପ୍ରତ୍ୟେକକୁ ଗୋଟିଏ ମୌଳଲକ୍ଷ୍ୟରେ ବନ୍ଧାଯାଇପାରେ; ତାହା ହେଉଛି– 'କବିତାର ବୁଦ୍ଧିବାଦୀ ଭାବନାକୁ ବାକ୍‌ଧର୍ମୀ ସଂଚାରଣ କ୍ଷମତା ବଳରେ ଲୋକାୟତ କରିବା।' ବୃହତ୍ତର ଗଣବୋଧ ପାଇଁ ଗଭୀରତମ କାବ୍ୟିକ ଅଭିଜ୍ଞତାକୁ ପରିବେଷଣ କରିବାର ଧ୍ୱନ୍ୟାୟିତ କଳା ଆବୃତ୍ତି ଆଧୁନିକ ତଥା ସାଂପ୍ରତିକ କବିତା ପାଇଁ ଏକାନ୍ତ ପ୍ରୟୋଜନ। ବାକ୍‌ରୀତ ସହିତ କାବ୍ୟିକରୀତି, ମୁକ୍ତଛାନ୍ଦସିକ ଶବ୍ଦ ଶୃଙ୍ଖଳା ସହିତ ଗଦ୍ୟାତ୍ମକ ବକ୍ତବ୍ୟଧର୍ମିତା ଆଧୁନିକ କବିତା କଳାର ଲକ୍ଷଣ; ଯାହା ପ୍ରାଚୀନ ମଧ୍ୟଯୁଗୀୟ ସାଙ୍ଗୀତିକ ଗାନବିଧାନ ଦ୍ୱାରା ସଂଚରିତ ହେବାର ସଂଭାବନା ରଖେନାହିଁ। ଏଥିପାଇଁ ଯତିମୁକ୍ତ, ଅନ୍ତଃଛନ୍ଦସଂପନ୍ନ, ବକ୍ତବ୍ୟଧର୍ମୀ, ମୁକ୍ତ ଓ ଗଦ୍ୟଛନ୍ଦ ମିଶ୍ରିତ ଅମେଳବର୍ଣ୍ଣମାତ୍ରିକ ଆଧୁନିକ କବିତା ଆବୃତ୍ତିକୁହିଁ ଆଶ୍ରୟ କରିଛି। ଆବୃତ୍ତିରେ ପଦ୍ୟର ଆବେଗିକ ସମ୍ମୋହନ ଓ ଗଦ୍ୟର ପ୍ରଭାବ ଉତ୍ପାଦନଧର୍ମୀ ଗାମ୍ଭୀର୍ଯ୍ୟ ଉଭୟ ଗୁଣଥିବାରୁ କବିତା ଏହାଦ୍ୱାରା କେବଳ ହୃଦୟଗ୍ରାହୀ ହେଉନାହିଁ ଦୃଷ୍ଟାନ୍ତଧର୍ମୀ ବି ହୋଇପାରୁଛି।

ଲୀଳାବାଦର (play theory of art) ପ୍ରବକ୍ତା ଜର୍ମାନ ଦାର୍ଶନିକ ଶିଲାରଙ୍କ ତର୍କଣାକୁ ଲକ୍ଷ୍ୟ କରାଯାଉ। କବି କଳ୍ପନା ଓ ବାସ୍ତବତା ବଳରେ କବିତାସର୍ଜନ ନାଁରେ ଶବ୍ଦ ସ୍ଥାପତ୍ୟର ଲୀଳା କରେ। କବିତାପାଠୀ ବାକ୍‌ଚାତୁରୀ ବଳରେ ସଂଚାରଣ ଲୀଳା ସାଧନ କରେ। ଶ୍ରୋତା ଉପଭୋଗର ଲୀଳା ସାଧନ କରେ। ସବୁଲୀଳାର ମୂଳଲକ୍ଷ୍ୟ ଜୀବନନିଷ୍ଠ ଅନୁଭବକୁ ରୂପମୟ କରି ଦୃଷ୍ଟାନ୍ତ ଭାବରେ ଖେଳେଇ ଦେବା। ଭାରତୀୟ କାବ୍ୟଶାସ୍ତ୍ରୀ ରାଜଶେଖରଙ୍କ ବିଚାରକୁ ଲକ୍ଷ୍ୟ କରାଯାଉ। କବିତାର ବୀଜ ଦ୍ୱିଶ୍ରେଣୀୟ ପ୍ରତିଭାକୁ ଆଧାର କରି ପରିବର୍ଦ୍ଧିତ ହୋଇଥାଏ। ଗୋଟିଏ– କାରୟିତ୍ରୀ ପ୍ରତିଭା; ଯିଏ ଶବ୍ଦାର୍ଥର– ପାକକରି ରସମୟ କବିତାର ରୂପଟିଏ ପ୍ରସ୍ତୁତ କରେ। ଅନ୍ୟଟି ଭାବୟିତ୍ରୀ ପ୍ରତିଭା; ଯିଏ କବିତାର ଶାଶ୍ୱତତାକୁ ଗ୍ରହଣ କରି ତା'ର ରୂପରସକୁ ଆସ୍ୱାଦନ କରେ।

ତେଣୁ ଭାବନିର୍ମାଣ ଓ ଭାବ ଆସ୍ୱାଦନ ମଝିରେ ମଧ୍ୟସ୍ଥି ରୂପରେ ପଠନକ୍ରୀଡା ସ୍ୱତଃ ଆମନ୍ତ୍ରିତ ହୋଇଆସେ। କାବ୍ୟାନୁଭୂତି ଭିତରେଥିବା ରସନିଷ୍ଠ ଦୃଷ୍ଟିକୋଣ ଆବୃତି଼ ଦ୍ୱାରା ଅବାଧରେ ଧ୍ୱନିତ ହୁଏ।

ଭଲକବିଏ ଆତ୍ମରତିକ ନୁହଁନ୍ତି। ସେମାନେ ସହୃଦୟ ସଚେତନ। ସହୃଦୟ ହୃଦୟରେ କାବ୍ୟ ସମ୍ବାଦର ଅବାଧ ସଂଚାରଣ ଉପରେ ସେମାନେ ଅଭିନିବିଷ୍ଟ ରୁହନ୍ତି। ପଠନଯୋଗ୍ୟ ବଚନବିନ୍ୟାସ ହିଁ ସେମାନଙ୍କ ନିମନ୍ତେ ନିର୍ମିତି ନିର୍ମାଣର ଉପାୟ। ଭାବନିର୍ମାଣ ସମର୍ଥ ଶବ୍ଦ ସଂଯୋଜନା କାଳରେ ତାହା କେତେଦୂର ଘଷରା, ପ୍ରଚଳିତ, ଆଭିଧାନିକ ଓ ସାଧାରଣ ଅର୍ଥକୁ ଟପି ଚାତୁର୍ଯ୍ୟୋକ୍ତି ବଳୟ ସୃଷ୍ଟି କରିପାରୁଛି ତାହା ପ୍ରତି ପ୍ରକୃତକବି ଯେତିକି ସତର୍କ ହୁଏ ଶବ୍ଦର ନାଦବଳୟ ନିର୍ମାଣ ପ୍ରତି ସେତିକି ସଚେତନ ଥାଏ। ନାଦ ସୃଷ୍ଟିରେ ଅସଫଳ ଶବ୍ଦର ବିକଳ୍ପ ଶବ୍ଦ ସଂଯୋଗ କରି କବିତା ଲେଖିବା ପରେ ପୁନଶ୍ଚ କବିତାର ପ୍ରତିଭରଣାତ୍ମକ ନିର୍ମାଣ କରିଥାଏ। ଆବୃତ୍ତିକାରକ ଶବ୍ଦର ଚଢ଼ା ଉତ୍ତରା ନାଦମୟତାକୁ ବୁଝି ତାହାର ଯଥାଯଥ ସରବ ଉପସ୍ଥାପନା ମଧ୍ୟରେ କାବ୍ୟାନୁଭୂତିକୁ ସହୃଦୟ ପାଖରେ ବିନିର୍ମାଣକ୍ଷମ କରି ଛିଡା କରାଇଦିଏ। ଶବ୍ଦ ଓ ଅର୍ଥର ଆଳଙ୍କାରିକ ବିନ୍ୟାସ ଏବଂ ତାହାର ନାଦତାନିକ ପାଠ ଏକ ପ୍ରକାର ଚିତ୍ର ମୀମାଂସା। ଆବୃତ୍ତିର ଲୀଳାୟିତ ଭଙ୍ଗୀ, ଛନ୍ଦାୟିତ ଗତି ଓ ଅର୍ଥକାରୀ ପରିବେଷଣଚାତୁରୀ କବିତାର ଭାବ ଓ ଶ୍ରୋତାର ଗ୍ରାହ୍ୟଶକ୍ତି ମଧ୍ୟରେ ଥିବା ସକଳ ବିରୋଧର ସମାଧାନ କରି ଚିତ୍ରମୀମାଂସା ନ୍ୟାୟରେ କବିତାକୁ ଆକାର ପ୍ରଦାନ କରିଥାଏ। ସଫଳ କବିତାଆବୃତ୍ତିରେ ବଂଧୁର ପାରମାର୍ଶିକ ଠାଣିଥାଏ, ଗୁରୁର ଉପଦେଶାତ୍ମକ ଗାମ୍ଭୀର୍ଯ୍ୟ ଥାଏ ଓ ପତ୍ନୀର ପ୍ରବୋଧିତ ସାରଲ୍ୟ ଓ କୋମଳ ଇଙ୍ଗିତର ଚାହାଁଣୀ ଥାଏ। କବିତାର ପ୍ରାଣଶକ୍ତିକୁ ଆବୃତ୍ତି ସୁଭଟ ଗତି ପ୍ରଦାନ କରେ।

କବି ଆବୃତ୍ତି ପ୍ରତି ସଚେତନ ହୋଇ କବିତା ଲେଖେନାହିଁ। କବିତାର ପ୍ରାଣଶକ୍ତିକୁ ପ୍ରକାଶ କରିବାର ଉନ୍ମାଦନାରେ ନିଜ ପାଇଁ କବି ଆବୃତ୍ତିର ସ୍ୱତନ୍ତ୍ରଭଙ୍ଗୀ ବାଛି ନେଇଥାଏ। ତେଣୁ ଜଣେ କବି ନିଜର ଭିନ୍ନଭିନ୍ନ କବିତାପାଇଁ ବିଭିନ୍ନ ଆବୃତ୍ତିର ତରିକା ଗ୍ରହଣ କରିଥାଏ। ଅନେକ କବିଙ୍କ କ୍ଷେତ୍ରରେ କବିତା ଲେଖିବା ଓ ଆବୃତ୍ତିନିଷ୍ଠ ହେବା ଉଭୟକାର୍ଯ୍ୟ ସମାନ୍ତରାଳ ଭାବରେ ଚାଲିଥାଏ। ଭାବାନୁକୂଳ ଶବ୍ଦ ମେଳି ସାଧନ କରିବା ବେଳେ ଶବ୍ଦର ଭାବଦ୍ୟୋତକ ଆବୃତ୍ତିଟିଏ କବି ଅନ୍ତର୍ମନରେ ଗୁଣୁଗୁଣାଉଥାଏ। ନିଜ କବିତାପାଠ ସଂପର୍କରେ ପ୍ରୀତିପ୍ରଦ ଆବୃତ୍ତି–ଧ୍ୱରୀଣ କବି ନେରୁଦାଙ୍କ ସ୍ୱୀକାରୋକ୍ତି ଏଠାରେ ଉଲ୍ଲେଖଯୋଗ୍ୟ। ନେରୁଦାଙ୍କ ମତରେ ପ୍ରତିଟି କବିତା ଲେଖିଲାବେଳେ ହିଁ ତା'ର ଆବୃତ୍ତି ସେ ସାରିଦେଇଥା'ନ୍ତି। ଆବୃତ୍ତିରେ ତାଙ୍କର ଭାବନିର୍ମାଣକାରୀ ଆତ୍ମ ବିଶ୍ୱସ୍ତହେବା ପରେ କବିତାକୁ ସାଧାରଣମେଳିକୁ ସେ ପଠାଇଥା'ନ୍ତି ଏବଂ

ସର୍ବସାଧାରଣଙ୍କ ପାଖରେ ଭାବୋଚିତ ଆବୃତ୍ତି ଦ୍ୱାରା ତାହା ଆଲୋକୋପମ ଓ ଜୀବିତୋପମ ହୋଇଉଠେ। ବହୁପୂର୍ବରୁ ଅଳଙ୍କାରବାଦୀ ଭାମହ ଶ୍ରୁତିଦୁଷ୍ଟ ଓ ଶ୍ରୁତିକଷ୍ଟକୁ ବାଣୀର ଅନ୍ୟତମ ପାଠଦୋଷ ଭାବରେ ବିଚାର କରିଛନ୍ତି। ଶୁଣିବାରେ ଯାହା କର୍ଣ୍ଣକଟୁ ଓ ଶୁଣିବାମାତ୍ରେ ଶ୍ଳୀଳତା ଓ ଶିବତାର ସୀମାଡେଇଁଯାଏ ତାହା କାବ୍ୟରସାସ୍ୱାଦନର ବାଧକ ଅଟେ। ଏହି ସିଦ୍ଧାନ୍ତ ଆବୃତ୍ତି କ୍ଷେତ୍ରରେ ଏକ ସତର୍କଘଣ୍ଟି ଭାବରେ କାର୍ଯ୍ୟ କରିବା ଦ୍ୱାରା କବିର ଉଦ୍ଦେଶ୍ୟ ଅନାୟାସରେ ପରିସ୍ଫୁଟ ହୋଇଥାଏ। ଆବୃତ୍ତିକାରୀ ସର୍ବଦା ସ୍ମରଣ ରଖିବା ଉଚିତ ଏହା ଏକ ପେଷାଦାରୀ ବୃତ୍ତି ନୁହେଁ। ଏହା ଏକ ବିଲକ୍ଷଣାତ୍ମକ ଆବେଗିକ ସଂପୃକ୍ତିର କଳାବୃତ୍ତି। କବିତା ଭିତରେ ଗୁପ୍ତଲୀଳା କରୁଥିବା ଅନେକ ଭାବକୁ ଠିକ୍‌ଭାବରେ ଦେଖି ଯୋଡ଼ି-ଚିହ୍ନାଇ ନପାରିଲେ ସେମାନେ ଆବୃତ୍ତିମଂଚରେ ବିରୋଧପ୍ରବଣ, ଅର୍ଥହୀନ, ଶକ୍ତିହୀନ ଓ ନିଷ୍ପ୍ରଭ ହୋଇ ରୂପପାଆନ୍ତି। କବିତା ପାଠର ଶେଷକୁ ସେମାନଙ୍କ ଜ୍ୱଳନସତ୍ତା ଲିଭିଯାଇଥାଏ।

ଏହେତୁ ବିଲକ୍ଷଣାତ୍ମକ ଆବୃତ୍ତିରେ ସ୍ୱରତରଙ୍ଗ ବା ଧ୍ୱନିମୂଳକ ତାନ ଲହରର (Intonation) ଭୂମିକା ଗୁରୁତ୍ୱପୂର୍ଣ୍ଣ। ଧ୍ୱନିବିଜ୍ଞାନ ଦିଗରୁ ସ୍ୱରଯନ୍ତ୍ରରେ ଉତ୍ପନ୍ନ ଓ ବାକ୍‌ଯନ୍ତ୍ରରେ ବାୟୁଶକ୍ତିର ଗୁରୁଲଘୁ ଘୋଷର ଆରୋହ > ଅବରୋହକୁ (ଚଢ଼ା ଉତୁରା) ସ୍ୱରାୟିତ ତାନ ଲହର ଭାବରେ ଗ୍ରହଣ କରାଯାଏ। ପ୍ରଶ୍ନ, ଆଦେଶ, ଆପଦ, ଶୋକ, ବୀର, ହାସ୍ୟ, ପରାମର୍ଶ, ଯୁକ୍ତି, ନିର୍ଦ୍ଦିଷ୍ଟ, ଅନିର୍ଦ୍ଦିଷ୍ଟ, ଆଦର, ଆପତ୍ତି, ପ୍ରତିକ୍ରିୟା, ବିପ୍ଳବ, ପୁଲକ, ବିସ୍ମୟ ଓ ବିବୃତି ଆଦି ଯେକୌଣସି ପ୍ରକାରର ଭାବ ପ୍ରକାଶ କରିବା ବେଳେ ସ୍ୱରମେଳର (tune) ସ୍ୱତନ୍ତ୍ରରୂପଟି ଯେପରି ଆବୃତ୍ତି ହୁଏ ତଦନୁସାରେ ଅର୍ଥ ନିରୂପିତ ହୋଇଥାଏ। ଉଦାହରଣ ସ୍ୱରୂପ :

''ପିଙ୍ଗଳା ଦେଖୁଛି / ଆତ୍ମ ଅଭିଜ୍ଞାରେ
ତା' ପିଣ୍ଡରେ ଜାଗରିତ / କୁଣ୍ଡଳିନୀ ପରି...।'
(ପିଙ୍ଗଳାରସୂର୍ଯ୍ୟ/ବେଣୁଧର)

—ଅଥବା—

''ଫୁଲ ଭାରରେ / ନଦି / ହୋଇଗଲା / ମୋ ମନର ଶୂନ୍ୟ
ଗଛଡାଳ।''—(ସ୍ୱର୍ଣ୍ଣକାତର/ସରୋଜରଂଜନ ମହାନ୍ତି)

ପ୍ରଥମ ପଙ୍‌କ୍ତିରେ 'ପିଙ୍ଗଳା ଦେଖୁଛି'— ଏହି ଶବ୍ଦଦ୍ୱୟର ସାପେକ୍ଷ ସମ୍ମେଳନକୁ ଆଶ୍ରୟ କରି ଆବୃତ୍ତିଗତ ଉଚ୍ଚାରଣରେ 'ପିଙ୍ଗଳା' ଶବ୍ଦଟିରେ 'ପି'କୁ ପ୍ରଥମେ ସ୍ୱରାୟିତ କରି (ପ୍+ଇ) କ୍ରମଶଃ ଅନ୍ୟ ଅକ୍ଷର ଦ୍ୱୟକୁ (ଙ୍ଗ/ଳା) ଲଘୁଭଙ୍ଗୀରେ ନିମ୍ନତାନିକ (falling pitched) କରି ପରବର୍ତ୍ତୀ ଶବ୍ଦ ଦେଖୁଛି ଅକ୍ଷର ତ୍ରୟୀକୁ ଧୀରେ ଧୀରେ ଅବରୋହଣ

ଭଙ୍ଗୀରେ 'ଦେ > ଖୁ > ଛି' ପ୍ରକାରେ ଉଚ୍ଚାରଣ କଲେ ଶ୍ରୋତା ସାଧାରଣ ଅର୍ଥଟିଏ ପାଇଥାଏ– 'ପିଙ୍ଗଳା ସହଜ ଭାବରେ ଦେଖିପାରୁଛି। ଯଦି ଆବୃତ୍ତି କାଳରେ ପ୍ରଥମ ଶବ୍ଦ ପିଙ୍ଗଳା ସମତାଳରେ ଗୁରୁଭଙ୍ଗୀରେ (ପି॥ ଙ୍ଗ॥ ଳା) ଉଚ୍ଚାରିତ ହୋଇ 'ଦେଖୁଛି' ଶବ୍ଦଟି ଦେ' (ଦୀର୍ଘ) > ଖୁଛି କ୍ରମଶଃ ଦୀର୍ଘ ଓ ଉର୍ଦ୍ଧ୍ୱତାନୀୟ ହୁଏ ତେବେ ଆବୃତ୍ତିଭଙ୍ଗୀର ସ୍ୱତନ୍ତ୍ର ବିଲକ୍ଷଣ ଦ୍ୱାରା ଅର୍ଥକରଣ ଏମନ୍ତ ଭିନ୍ନ ପ୍ରକାର ହୋଇଥାଏ– 'ଯାହା ହେଉ ପିଙ୍ଗଳା ଏଣିକି ଦେଖିପାରୁଛି।' ଏପ୍ରକାର ଉଚ୍ଚାରଣ ଆଶ୍ରିତ ଅର୍ଥରେ 'ଦେଖିବା' କାର୍ଯ୍ୟର ନିଶ୍ଚିତତା ପ୍ରକାଶ ପାଉଛି। ଯଦି ଆବୃତ୍ତିରେ ପି > ଙ୍ଗ > ଳା ॥ ଦେ > ଖୁ > ଛି– ଏପ୍ରକାର ଉର୍ଦ୍ଧ୍ୱତାନୀୟ ଉଚ୍ଚାରଣରେ ସମସ୍ତ ଅକ୍ଷରର ଅନ୍ତର୍ନିହିତ ସଂସ୍ୱର ଓ ସ୍ୱରଧ୍ୱନି ପ୍ରଲମ୍ବିତ ଓ ଗୁରୁଧର୍ମୀ ହୋଇ ଉଠୁଛି, ତେବେ ଅର୍ଥଟି ବିସ୍ମୟସୂଚକ ହେଉଛି, ଏହିପରି– 'ଯାହା ଅସମ୍ଭବ ଥିଲା ତାହାକୁ ପିଙ୍ଗଳା ସଂଭବ କରି ଦେଖିପାରୁଛି।' ଆବୃତ୍ତି କାଳରେ ଉଭୟ ଶବ୍ଦର ଶେଷ ଅକ୍ଷରରେ ('ଳା'/ଛି) ତାନ ସ୍ୱରଲହର ସୃଷ୍ଟି କରି ଉଚ୍ଚାରିତ ହୁଏ ତେବେ ପିଙ୍ଗଳା ? ଦେଖୁଛି ?– ସତରେ କ'ଣ ପିଙ୍ଗଳା ଦେଖୁଛି, କିମିତି ଦେଖୁଛି– ଏପରି ପ୍ରଶ୍ନ ଅର୍ଥକରଣ ପରିସରକୁ ଆସିଯାଏ। ସେହିପରି ଦ୍ୱିତୀୟ ଦୃଷ୍ଟାନ୍ତରେ 'ନଦି ହୋଇଗଲା' ସହସମ୍ବନ୍ଧିତ ଶବ୍ଦ ଦ୍ୱୟକୁ ଆବୃତ୍ତି କରିବା ସମୟରେ କ'ଣ, କେଉଁଠି, କିପରି, କାହିଁକି ନଦିହେଲା ଏପ୍ରକାର ପ୍ରଶ୍ନାନୁସାରୀ ଉତ୍ତରଜିଜ୍ଞାସା ଓ ଉତ୍‌କଣ୍ଠା ନେଇ ନିମ୍ନତାନିକ ଓ ଉଚ୍ଚତାନିକ କରି ଉଚ୍ଚାରଣ କରିବା ଦ୍ୱାରାଅର୍ଥର ବିବିଧ ଆକୃତି ଅନୁରାଗୀ ଶ୍ରୋତାଙ୍କ ପାଖରେ ପ୍ରତିଭାସିତ ହୋଇଉଠିବା ସ୍ୱାଭାବିକ। ମାତ୍ର ନିର୍ଭୁଲ ଆବୃତ୍ତି 'ପିଙ୍ଗଳା ଦେଖୁଛି' ଶବ୍ଦଦ୍ୱୟକୁ ବିସ୍ମୟ-ସମ୍ମୋହନ ଭାବାର୍ଥରେ ଗୁରୁଧର୍ମରେ ପ୍ରଲମ୍ବିତ କରିବା ଦ୍ୱାରା ସଂସାଧିତ ହେବ। ସେହିପରି ନିଶ୍ଚିତାର୍ଥିକ ପୁଲକ ଭାବ ଉତ୍ପାଦନ ଭିତ୍ତିରେ 'ନଦି ହୋଇଗଲା' ଶବ୍ଦଦ୍ୱୟ 'ନ'-ନିମ୍ନତାନ > 'ଦି'- ଉର୍ଦ୍ଧ୍ୱତାନ > 'ହୋଇ'– ଗୁରୁମାତ୍ରିକ ଉଚ୍ଚାରଣ > 'ଗଲା' (ନିର୍ଦ୍ଦିଷ୍ଟ ଅର୍ଥକାରକ) ଲଘୁତାନୀୟ ହୋଇ ଆବୃତ୍ତ ହେବା ମାତ୍ରକେ ହଠାତ୍ ସୁନିଶ୍ଚିତ ଭାବରେ ସବୁ ସଂଭାବନାକୁ ତ୍ୟାଗକରି ଚମତ୍କାର ଆଶାରେ ପରିପୂର୍ଣ୍ଣ ହେବାର ଏକ ଚିତ୍ର ମୀମାଂସାତ୍ମକ ଅର୍ଥ ପ୍ରକାଶ ପାଇପାରୁଛି।

କବିତାରେ ସ୍ୱରଲହରକୁ ଭାବାନୁସାରେ ଆବୃତ୍ତିଯୋଗ୍ୟ ଓ ଦୃଶ୍ୟରୂପ ଦେବା ନିମନ୍ତେ ଧ୍ୱନି ଅନୁସାରୀ ରେଖା ବା ସଙ୍କେତ ଚିହ୍ନ ବ୍ୟବହାର ହୋଇଥାଏ। ଅନୁରୂପତା, ସାଦୃଶ୍ୟ ଓ ତୁଳନା କ୍ଷେତ୍ରରେ ବକ୍ରରେଖାର ସଙ୍କେତ ଦେଖି ଶବ୍ଦର ଉଚ୍ଚାରଣରେ ଆରୋହୀ ଓ ଅବରୋହୀ ବିଧାନ ଘଟିଥାଏ। ସାର୍ବନାମିକ ଓ ପ୍ରଶ୍ନୋଚିତ ଶବ୍ଦପୁଂଜି ପାଇଁ ତ୍ରିବିଧାନୀ ରେଖଚିତ୍ର (⧺, ///) ଆଗ୍ରହ/କୌତୁହଳ/ଶାନ୍ତ୍ୱନା, ପ୍ରବୋଧନା, ବିସ୍ମୟସୂଚକ ଭାବାର୍ଥ ପ୍ରକାଶ ପାଇଁ ଚତୁର୍ବିଧାନୀ ରେଖଚିତ୍ର (#,⋕,⧻), ଦୁଃଖ, ବିଷାଦ, ବିରହ, ଆବେଗିକ

ବିଷଣ୍ଣତା ଓ ଅନୁଜ୍ଞାବାଚକ ଭାବ ପ୍ରବୋଧନଶୀଳ ଶବ୍ଦର ଉଚ୍ଚାରଣ ପାଇଁ ପ୍ରତ୍ୟକ୍ଷ ତ୍ରିବିଧାନୀ ରେଖଚିତ୍ର ( ୭ ) ବ୍ୟବହାର କରି ଆବୃତ୍ତିକୁ ସୁଖକର ଓ ଅର୍ଥବାହୀ କରାଯାଇଥାଏ। ସେହିପରି କେଉଁ ପଙ୍‌କ୍ତିରେ, ପଙ୍‌କ୍ତିର କେଉଁ ଶବ୍ଦରେ ସ୍ୱରଲହର କେଉଁପ୍ରକାର ହେବ ତାହାକୁ ମଧ୍ୟ ଆବୃତ୍ତି ପୂର୍ବରୁ ଆବୃତ୍ତିକାର ଚିତ୍ରରେଖର ସାହାଯ୍ୟରେ ନିର୍ଦ୍ଦିଷ୍ଟ କରିବା ଉଚିତ। ସ୍ୱରବିତ୍ ଓ ଧ୍ୱନିବିଶାରଦ ଡାନିଏଲ୍ ଜୋନସ୍‌ଙ୍କ ମତକୁ ଆଧାର କରି ତିନୋଟି ସମାନ୍ତରାଳ ସରଳରେଖା ମଧ୍ୟରେ ବକ୍ରଚ୍ଛେଦ/ବକ୍ରରେଖା/ବିନ୍ଦୁସଙ୍କେତ ଦେଇ ତାନର ଗୁରୁଲଘୁ ଓ ଉର୍ଦ୍ଧ୍ୱନିମ୍ନ ସୀମା ନିରୂପିତ କରାଯାଇପାରେ। ସମାନ୍ତରାଳ ସରଳରେଖା ମଧ୍ୟରେ ବିନ୍ଦୁ ସ୍ଥାପନକରି ଆନୁଭୂମିକ ତାନର (Level intonation) ଓ ବକ୍ରରେଖା ସଂସ୍ଥାନ କରି ଆରୋହ > ଅବରୋହ /ଉର୍ଦ୍ଧ୍ୱ > ନିମ୍ନ / ଲଘୁ > ଗୁରୁ / ଚଢ଼ା > ଉତରା / ଉଦାତ୍ତ > ଅନୁଦାତ୍ତ > ସ୍ୱରିତ ଆଦି ବଳାଘାତଜନିତ ସ୍ୱରଲହର ମାତ୍ରା ନିର୍ଣ୍ଣୟ କରି ଆବୃତ୍ତିକୁ ଭାବୋଚିତ କରାଯାଇପାରେ। ପଦବିନ୍ୟାସ ନିମନ୍ତେ କଥିତ ଶବ୍ଦର ଆଶ୍ରୟ ନିଆଯାଇଥିଲେ, ନିରବଚ୍ଛିନ୍ନ ଭାବରେ ଶବ୍ଦ ସମତାନୀୟ ଉଚ୍ଚାରଣ ଲୋଡୁଥିଲେ, ଶବ୍ଦମେଳିରେ ଏକ ଏକ ନିର୍ଦ୍ଦିଷ୍ଟ ବର୍ଣ୍ଣ ଓ ତାହାର ଧ୍ୱନି ଉର୍ଦ୍ଧ୍ୱ ଓ ନିମ୍ନତାନର ବା ଉତ୍‌ଥାନ-ପତନ ମାତ୍ରାରେ ଆବୃତ୍ତ ହେବାକୁ ଥିଲେ ସ୍ୱରରେଖାରେ ବଡବିନ୍ଦୁ, ଛୋଟବିନ୍ଦୁ ଓ ବଡଛୋଟ ବିନ୍ଦୁର ନିର୍ଦ୍ଦେଶ କରାଯାଇ ସ୍ୱରଲହର ସୂଚିତ କରାଯାଇପାରେ। ଅନେକ କ୍ଷେତ୍ରରେ ଏକମାତ୍ରିକ ଲଘୁବର୍ଣ୍ଣ, ଦ୍ୱିମାତ୍ରିକ ଗୁରୁବର୍ଣ୍ଣ ଓ ତ୍ରିମାତ୍ରିକ ପ୍ଳୁତବର୍ଣ୍ଣ ଅଥବା ଅର୍ଦ୍ଧମାତ୍ରିକ ବ୍ୟଂଜନବର୍ଣ୍ଣ ଉପରେ ବିଶେଷ ଗୁରୁତ୍ୱ ଦେଇ ଆବୃତ୍ତି କରାଯାଏ। ଏଥିପାଇଁ ସ୍ୱର ଲହରକୁ ଦୃଶ୍ୟାୟିତ କରି ପ୍ରକାଶ କରିବା ନିମନ୍ତେ ସ୍ୱରସ୍ତରୀୟ ସରଳରେଖା ଓ ଚଢ଼ାଉତରା ପାଇଁ ବକ୍ରରେଖାର ସାହାଯ୍ୟ ନିଆଯାଇପାରେ।

ନୃତତ୍ତ୍ୱବିତ୍ ମାଲିନସ୍କି, ଭାଷାବିତ୍ ଡବ୍‌ଲ୍ୟୁ.ବି. ସ୍ନୋ, ଧ୍ୱନିବିଜ୍ଞାନୀ ମେଲଭିଲ୍ ବେଲ୍ ଓ କେ.ଏଲ୍.ପିକ୍‌ଙ୍କ ପରି ପ୍ରମୁଖ ବିଦ୍ୱାନଗଣ କଥନ, ପଠନ ଓ ଭାଷଣ ଆଦି ଉଚ୍ଚାରଣ କ୍ରିୟାରେ ସ୍ୱରଲହର ଓ ଅକ୍ଷରର ମାତ୍ରିକତାନ ଉପରେ ଗୁରୁତ୍ୱ ଦେଇ ଆସିଛନ୍ତି। ମାଲିନସ୍କିଙ୍କ ମତରେ ପ୍ରତ୍ୟେକ ଭାଷାର ସାଂସ୍କୃତିକ ସଂରଚନା ଓ ସାମାଜିକ ବ୍ୟବସ୍ଥାରେ ଭାଷାର ବ୍ୟବହାରଭଙ୍ଗୀ ଓ ତାହାର ଉଚ୍ଚାରଣାତ୍ମକ ସ୍ୱରଲହର ସ୍ୱତନ୍ତ୍ର। ଅନ୍ୟ ଭାଷାର ବାଚନିକ ବା ଆବୃତ୍ତିକର ଢ଼ଙ୍ଗକୁ ଆୟତ୍ତ କରିବା ବଡ଼ କଠିନ। ସ୍ନୋଙ୍କ ବିଚାରରେ ଯେକୌଣସି ବ୍ୟକ୍ତି ଯେତେ ବ୍ୟାକରଣ ଓ ଭାଷାଜ୍ଞାନରେ ଧୁରୀଣ ହେଲେ ବି ନିଜ ଭାଷାର ବିବିଧ ସ୍ୱରଲହରର ବିଶେଷତ୍ୱକୁ ଆୟତ୍ତ କରିବା ସହଜ ନୁହେଁ। ଏହାର ଅର୍ଥ ନୁହେଁ ଆୟତ୍ତ କରିବା ଦୁଃସାଧ୍ୟ ବୋଲି ଉଚ୍ଚାରଣକୁ ଦୋଷମୁକ୍ତ କରିବା ନାହିଁ। ବେଲ୍‌ଙ୍କ ଯୁକ୍ତି ଭିନ୍ନ ସ୍ୱାଦର। ସ୍ୱରଲହରକୁ ଶିକ୍ଷା କରାଯାଏ। ସଚେତନ ଭାବରେ ସ୍ମରଣ ରଖି ଓ

ଅଭ୍ୟାସ କରି ସ୍ୱରବିଧାନରେ ତ୍ରୁଟିଶୂନ୍ୟ ଉଚ୍ଚାରଣ କରାଯାଇଥାଏ। ବିଧିବଦ୍ଧ ଭାବରେ ସାମାଜିକ ଚଳଣିଭିତରେ ସ୍ୱରଲହରକୁ ଶିକ୍ଷଣ ପ୍ରକ୍ରିୟାରେ ଅର୍ଜନ କରାଯାଏ।' ଫ୍ରାଙ୍କ୍‌ଗେନର ଓ କେ.ପିକ୍ ପ୍ରାୟ ପାଖାପାଖି ଏକପ୍ରକାର ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ ସ୍ୱରାଘାତ ସଂପର୍କରେ ନିର୍ଭୁଲ୍ ଧାରଣା ନଥିଲେ ସ୍ୱର ଓ ଶବ୍ଦସ୍ଥ ବର୍ଣ୍ଣ/ଅକ୍ଷରରେ ପରିବର୍ତ୍ତନ ଘଟେ। ଚାଇନା, ଜାପାନ, ଥାଇ, ବର୍ମା ଓ ଆଫ୍ରିକା ପରି ଅନେକ ସ୍ୱରାତ୍ମକ ଭାଷାରେ ସ୍ୱରାଘାତ ଓ ସ୍ୱରଲହରର ସ୍ଖଳନ ଭାବ ବିତରଣରେ ବାଧା ସୃଷ୍ଟିକରେ। ଏପ୍ରକାର ଭାବାର୍ଥ ବିତରଣ ବାଧା ଆମର ସ୍ୱରପ୍ରଧାନ ଓଡ଼ିଆ ଭାଷାରେ ଯଥେଷ୍ଟ ଉପୁଜୁଥିବାରୁ ଲହରର ବିଶେଷତ୍ୱ ଓ ତରିକାକୁ ଆବୃତ୍ତିକାର ଅତିବିଶ୍ୱସ୍ତ ପଣରେ ଜାଣିବା ଉଚିତ। ସଫଳ ଆବୃତ୍ତି ଭାବାନୁସାରୀ ହେବା ଯେତିକି ଜରୁରୀ ଉଚ୍ଚାରଣରେ ଧ୍ୱନିତାନିକ ସ୍ୱରଲହରର ନିଶ୍ଚିତତା ଓ ନିର୍ଦ୍ଦିଷ୍ଟତା ରକ୍ଷାକରିବା ସେତିକି ଗୁରୁତ୍ୱପୂର୍ଣ୍ଣ। ଭଲ କବିତାର ଲକ୍ଷଣ ଭାବାନୁସାରେ ଉପଯୁକ୍ତ ଶବ୍ଦର ଉପଯୁକ୍ତ ସ୍ଥାନରେ ବସାଣ। ଭାବୋଚିତ ପଦବିନ୍ୟାସରେ ଧ୍ୱନିତାନିକ ବର୍ଣ୍ଣମେଳର କ୍ରମ ରହିଥାଏ। ଆବୃତ୍ତି ଏହି ବର୍ଣ୍ଣବିନ୍ୟାସ କ୍ରମ ପ୍ରତି ଧ୍ୟାନନିଷ୍ଠ ହେବାଦ୍ୱାରା ତାହାର କଳାତ୍ମକ ମାଧୁରୀ ବୃଦ୍ଧିପାଏ। ବର୍ଣ୍ଣବିନ୍ୟାସର ଅନ୍ୟତମ ବୈଶିଷ୍ଟ୍ୟ ଦୀର୍ଘତା, ସ୍ୱରାଘାତ ଓ ଦ୍ୱିତ୍ୱ। ଧ୍ୱନିର ଦୀର୍ଘ ଉଚ୍ଚାରଣ ଦୀର୍ଘତା। ଦୀର୍ଘତା ଦ୍ୱାରା ପଦ ଶ୍ରୁତିମଧୁର ଓ ନିଶ୍ଚିତ ଅର୍ଥକାରକ ହୋଇଥାଏ। ଅନ୍ୟ ପକ୍ଷରେ ଉଚ୍ଚାରଣରେ ଦୀର୍ଘତା ଥାଇ ବି ଭାବର ନିଶ୍ଚିତ-ଅନିଶ୍ଚିତ ଅର୍ଥସ୍ଥିତି ଆବୃତ୍ତିକୁ ଦୀର୍ଘାର୍ଦ୍ଧ କରିତୋଳେ। ଆମ ଭାଷାରେ ସାଧାରଣତଃ ହ୍ରସ୍ୱ ଓ ଦୀର୍ଘ ଉଚ୍ଚାରଣ କରାଯାଏ। ମାତ୍ର କବିତା ବୃତ୍ତି କ୍ଷେତ୍ରରେ ଦୀର୍ଘସ୍ୱରର ଉଚ୍ଚାରଣ ଗୁରୁତ୍ୱ ରଖେ। କାରଣ ଦୀର୍ଘସ୍ୱରୀୟ ତରଙ୍ଗ ସୃଷ୍ଟି ମାଧ୍ୟମରେ ଶ୍ରୋତା ପାଖରେ ଅର୍ଥଗତ ଭିନ୍ନତା ସ୍ପଷ୍ଟ ହୋଇଯାଏ। ଏ କାରଣରୁ 'ନୀତିର ଦୁଆଭେ ପୋଷାକ ବଦାଳେ/ନକଲି ଯତି'–ରେ 'ନୀତି' ଶବ୍ଦଟି ଦୀର୍ଘସ୍ୱରରେ ଉଚ୍ଚାରିତ ନହେଲେ ତାହା 'ନିୟମ' ଅର୍ଥ ବଦଳରେ ପ୍ରତିଦିନ ବା ନିତି ଅର୍ଥ ପ୍ରତିପାଦନ କରିବାର ବିକୃତିଟିଏ ନିଶ୍ଚିତ ସୃଷ୍ଟି କରିବ। ପଦବିନ୍ୟାସକୁ ଶ୍ରୁତିଗ୍ରାହ୍ୟ, ବଳଶାଳୀ ଓ ନିଶ୍ଚିତ ଅର୍ଥକାରକ କରିବାରେ 'ସ୍ୱରାଘାତ'ର ଭୂମିକା କମ୍‌ନୁହେଁ। ଆବୃତ୍ତି ସମୟରେ ଯେଉଁ ଅକ୍ଷର ଅଧିକ ପ୍ରାଣଶକ୍ତି ଲୋଡେ ସେଠାରେ ସ୍ୱରାଘାତ ଦିଆଯାଇଥାଏ। ଯେଉଁ ଅକ୍ଷର/ଯେଉଁ ଧ୍ୱନି ଉପରେ ଜୋର ଦିଆଯାଇଥାଏ ତା'ର ପାର୍ଶ୍ୱବର୍ତ୍ତୀ ଅନ୍ୟ ଧ୍ୱନିଠାରୁ ତାହା ଅଧିକ ସ୍ପଷ୍ଟ ଶୁଣାଯାଇଥାଏ। ଏଥିପ୍ରତି ସଚେତନ ହେବା ଦ୍ୱାରା ଆର୍ତ୍ତ < ଆତ, ଗର୍ତ୍ତ < ଗତ ଓ ଉତ୍ତାରେ < ଉତାରେ ହେବାର ବିକଳ ସଂଭାବନା ନଥାଏ। ପୁନଶ୍ଚ ସ୍ୱରାଘାତ ଓ ଦୀର୍ଘତାର ସମବାୟରେ ବର୍ଣ୍ଣ ଯୋଜନାକୁ ଉତ୍‌ଥାନ ପତନମୁଖୀ କରାଯାଇ ଭାବ ସଂଚାରଣରେ ସ୍ପଷ୍ଟତା ଅଣାଯାଇଥାଏ। ଏ କ୍ଷେତ୍ରରେ ପ୍ରଥମ ଓ ଶେଷ ଅକ୍ଷର ଉଚ୍ଚାରଣ ଅଧିକ ମୁଖର ଓ ମଝିଭାଗ ସ୍ୱଳ୍ପମୁଖର ହୋଇଥାଏ।

ଆମ ଓଡ଼ିଆ ଭାଷା ପରି ଅନେକ ଭାଷାରେ ଧ୍ୱନିର ପୌନଃପୁନିକ ରୂପ ବା ଦ୍ୱିତ୍ୱ ଆବୃତ୍ତି ରହିଛି। ନିର୍ଦ୍ଦିଷ୍ଟ ଧ୍ୱନିର ପୁନଃ ଅନୁରଣନ ଘଟି ଅକ୍ଷରଟି ଦ୍ୱିତ୍ୱ ହେବାଦ୍ୱାରା ଶ୍ରୁତିଗାମ୍ଭୀର୍ଯ୍ୟ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଅର୍ଥରେ ମଧ୍ୟ ଭେଦ ସ୍ପଷ୍ଟ ବାରି ହୋଇପଡ଼େ। ଏକଥା ସତ୍ୟ ଆମ ଭାଷାରେ ଉଚ୍ଚାରଣରେ ଦ୍ୱିତ୍ୱ ବର୍ଣ୍ଣର ଗୁରୁତ୍ୱ ନାହିଁ। ମାତ୍ର ଲିଖନଧାରାରେ ଅର୍ଥ ନିର୍ଦ୍ଧାରଣ ପାଇଁ ଦ୍ୱିତ୍ୱବର୍ଣ୍ଣର ପ୍ରୟୋଜନ ରହିଛି। କବିତା ଆବୃତ୍ତି କାଳରେ ଅର୍ଥ ସାର୍ଥକତା ପାଇଁ ଦ୍ୱିତ୍ୱବର୍ଣ୍ଣର ଉଚ୍ଚାରଣ ଅନିବାର୍ଯ୍ୟ। ଦ୍ୱିତ୍ୱାବୃତ୍ତି ପ୍ରତି ଅସତର୍କ ଓ ଅଯତ୍ନ ରହିଲେ ମତ୍ତ– ମତ ରୂପରେ ଓ ବୁଦ୍ଧ-ବୁଧ ରୂପରେ (ଏପରି ଅନେକ ଶବ୍ଦ) କୌତୁକ ଅର୍ଥ ନିଷ୍ପାଦନ ହେବାର ଅବକାଶ ରହିଛି। ପୁନଶ୍ଚ ସ୍ୱରାତ୍ମକ ଭାଷାରେ ଭାବ ବିନିମୟ କାଳରେ ସ୍ୱରତାନିକ ଶୃଙ୍ଖଳାରେ ଧ୍ୱନି ଓ ଅକ୍ଷରର ପରିବର୍ତ୍ତନ ଓ ବିକୃତୀକରଣ ନାନା ବିପର୍ଯ୍ୟୟ ସୃଷ୍ଟିକରେ। ଗୋଟିଏ ଶବ୍ଦ ଶୃଙ୍ଖଳାରୁ ଗୋଟିଏ ସ୍ୱର ବା ଅକ୍ଷର ମହାପ୍ରାଣରୁ ଅଳ୍ପପ୍ରାଣ/ସଘୋଷରୁ ଅଘୋଷ ହୋଇଗଲେ ଭାବ ପ୍ରସାରଣରେ ପଙ୍ଗୁତା ଆସିଯାଏ। ଝର < ଜରରେ, ଗରଗର < ଘରଘରରେ, ଛକ ଛକ < ଚକଚକରେ ଓ ବାର < ଭାରରେ ନାହିଁ ନଥିବା ଅଭାବବୋଧର ଓଲଟପାଲଟ ଘଟି ଆବୃତ୍ତି ଭାବବିକୃତୀକରଣର ମାଧ୍ୟମ ହୋଇଯାଏ। ଫ୍ରାଙ୍କ୍‌ଗେନରଙ୍କ ବିଚାରରେ ବକ୍ତାର (ଏଠାରେ ଆବୃତ୍ତିକାରୀ ଅର୍ଥରେ ପ୍ରଯୁକ୍ତ) ଅପ ସ୍ୱରାଘାତୀୟ ଉଚ୍ଚାରଣ ଭାବର ସଂଚାରଣକୁ ଥଟ୍ଟାଳିଆ ଓ ହର୍ଷୋତ୍ସବର କୌତୁକରେ ପରିଣତ କରିଦିଏ ଓ ଲେଖକର ଦୃଷ୍ଟିକୋଣ ଓଲଟିଯାଏ।

ଏହି ମର୍ମରେ ଆବୃତ୍ତିର ସଫଳତା ପାଇଁ ଆବୃତ୍ତିକାରୀ କବିତାର ପଦବିନ୍ୟାସ ଓ ତାହାର ଭାବଗତ ପ୍ରାଧାନ୍ୟକୁ ବୁଝି ନିମ୍ନ ପ୍ରଦତ୍ତ ସଙ୍କେତ ସୂଚୀ ଅନୁସାରେ ସ୍ୱରଲହର ନିର୍ଦ୍ଦିଷ୍ଟ କରି ସାମାଜିକ ପରିସରର (public domain) ସମ୍ମୁଖ ହେବା ଉଚିତ।

- ସ୍ୱରର ଆରୋହ > ଅବରୋହ [–, ⁀, ⌒\]
- ସ୍ୱରଦୀର୍ଘତା [ : ] ଦ୍ୱିବିନ୍ଦୁ।
- ଦୀର୍ଘାର୍ଦ୍ଧ ଉଚ୍ଚାରଣ [•] ଏକବିନ୍ଦୁ।
- ନିଶ୍ଚିତ ଭାବ ପ୍ରକାଶଯୋଗ୍ୟ ଦୀର୍ଘତା [ :◡]
- ଧ୍ୱନିର ଦ୍ୱିତ୍ୱ ବା ଅକ୍ଷରଦ୍ୱିତ୍ୱ ଉଚ୍ଚାରଣ [^^]
- କେବଳ ଅକ୍ଷରର ଦୀର୍ଘଈକାରନ୍ତ ସୂଚନା [·⌒\]
- ଶବ୍ଦର ପ୍ରଥମ ଓ ଶେଷ ଅକ୍ଷର ଉଚ୍ଚତାନିକ ଓ ମଧ୍ୟଭାଗ ସ୍ୱଳ୍ପତାନିକ ହେବାର ସୂଚନା [/\/\] '
- ଗୋଟିଏ ନିର୍ଦ୍ଦିଷ୍ଟ ବର୍ଣ୍ଣ ଉପରେ ବିଶେଷ ଗୁରୁତ୍ୱ [–], ଡାସ୍ ବା ଦୀର୍ଘରେଖା।
- ଗୋଟିଏ ପଦ ବା ଅକ୍ଷରର ବିଶେଷ ଗୁରୁତ୍ୱ ପାଇବା ବେଳେ ଅନ୍ୟ ପଦ ବା ଅକ୍ଷରର ସ୍ୱଳ୍ପତାନିକ ହେବାର ସୂଚନା [–•], ଡାସ୍ ପରେ ଡଟ୍ ବା ଦୀର୍ଘରେଖା ଯୁକ୍ତ ବିନ୍ଦୁ।

- ତାନର ଉଚ୍ଚତମ ସୀମା [___↘] ସରଳରେଖାରେ ବକ୍ରଛେଦ।
- ତାନର ମଧ୍ୟମସୀମା _–_ ସରଳରେଖା ଉପରେ ଡାସ୍।
- ତାନର ଉଚ୍ଚତମରୁ ନିମ୍ନତମକୁ ଗତି ଦୁଇ ═╲═ ସମାନ୍ତରାଳ ସରଳରେଖା ଉପରେ ବକ୍ରଛେଦ।
- ସ୍ୱରାଘାତ ଚିହ୍ନ ଅକ୍ଷର ଉପରେ [ | ] ଛେଦଚିହ୍ନ। ଅନେକ କ୍ଷେତ୍ରରେ ଅପସ୍ୱରାଘାତ ହେବାର ସଂଭାବନାଥିଲେ ବା ଦୀର୍ଘଇକାରାନ୍ତ ହ୍ରସ୍ୱଇ କାରାନ୍ତ ଓ ଦ୍ୱିତ୍ୱ ବର୍ଣ୍ଣ ଏକବର୍ଣ୍ଣ ଉଚ୍ଚାରିତ ହେବାର ସଂଭାବନା ଥିଲେ ଅକ୍ଷର ତଳେ ଡାସ୍ ଚିହ୍ନ ଦିଆଯାଇ ଅକ୍ଷର ଉପରେ କମା ବା ଲଘୁଛେଦ ଦିଆଯାଇପାରେ। ଯଥା– ମତ୍ତ'ଗଜ।
- ଏକପ୍ରକାର ଆବୃତ୍ତିରେ ଭିନ୍ନ କୌଶଳ ଅବଲମ୍ବିତ ହୋଇଥାଏ। ଯେଉଁଠି ଆବୃତ୍ତିକାର କବିତାର ପ୍ରତିପଦପର୍ଯ୍ୟାୟ ପରେ ଗୋଟିଏ ନିର୍ଦ୍ଦିଷ୍ଟ ଭାବ ଉତ୍ପାଦକ ପଙ୍କ୍ତି ବା ବାକ୍ୟାଂଶକୁ ପୁନର୍ବାର ଆବୃତ୍ତି କରିଥା'ନ୍ତି। ବାରମ୍ବାର ଆବୃତ୍ତିଯୋଗ୍ୟ ଏହି ପଙ୍କ୍ତିଟିକୁ ଏପ୍ରକାରେ ସୂଚିତ କରାଯାଇପାରେ [ | |••]
- କେବଳ କଣ୍ଠସ୍ୱରର ଆରୋହଣ ତାନ [△△△]
- କେବଳ କଣ୍ଠସ୍ୱରର ଅବରୋହୀ ତାନ [▽▽▽]
- ଆରୋହ ଓ ଅବରୋହଣ ତାନ [△△△▽▽▽ / –, ◡, ↘,]

ଆବୃତ୍ତିକଳାର ଅନ୍ୟତମ ଉତ୍ସକ୍ଷେତ୍ର ଫ୍ରାନ୍ସ। ଶୋକ ସଂଗୀତ ବା ଲୋକ ବିଳାପ ଗୀତିକା (Monody) ଏକକ ଭାବେ ଆବୃତ୍ତ ହେଉଥିବା ସଂଗୀତ ରୂପେ (Solo song) ପ୍ରାଚୀନ ଫ୍ରେଞ୍ଚରେ ପ୍ରଚଳିତ ଥିଲା। ଲୋକକାନ୍ଦଣାର ମୌଖିକ ଆବୃତ୍ତି କ୍ରମଶଃ ବାଚନିକ ସ୍ୱରାଘାତ ଓ ତାଳମେଳ ଦ୍ୱାରା ନିୟମିତ ହୋଇ ୧୫୦୦ ମସିହା ବେଳକୁ ସର୍ବସାଧାରଣ ମେଳିଗୀତର ଆବୃତ୍ତିରେ ପରିଣତ ହୋଇଛି। ୧୭ଶ ଶତାବ୍ଦୀ ବେଳକୁ ସାଧାରଣ ମେଳିଆବୃତ୍ତି ଅଭିଜାତ କବିଜନମାନଙ୍କ ସାମନ୍ତୀୟ ଆଚରଣ ହୋଇଛି। ଗାନଧର୍ମୀ ଆବୃତ୍ତି ଅପେକ୍ଷା ଏକ ମୁକ୍ତ – ଅଣହିସାବୀ – ବାକ୍‌ଭଙ୍ଗୀରେ କବିତା ବାରମ୍ବାର ଉଚ୍ଚ ସ୍ୱରରେ ମିଳିତ ହୋଇ ଆବୃତ୍ତି କରିବାର ଶୈଳୀ (polyphonic style) ବିକଶିତ ହୋଇଛି, ଯାହା ଭିତରେ ଆଧୁନିକ ସ୍ୱରାଘାତୀୟ ତାନମେଳିକ ଶବ୍ଦର ମୁକ୍ତଛାନ୍ଦିକ ଉଚ୍ଚାରଣ ପଦ୍ଧତିର (dry recitative) ଆଦିସୂତ୍ରକୁ ଲକ୍ଷ୍ୟ କରାଯାଇପାରେ। ବାଦ୍ୟ, ସଂଗୀତ ଓ ନାଟକୀୟ ଭଙ୍ଗୀର ମିଶ୍ରଣରେ ଗୀତିକବିତାର ଉପସ୍ଥାପନା ନିମନ୍ତେ ଏକ ସମ୍ମିଳିତ ଆବୃତ୍ତିର (stromentato recitative) ପ୍ରସାର ବିଲକ୍ଷଣଭଙ୍ଗୀରେ ସାଧିତ ହୋଇଛି। ସମ୍ବୋଧନଗୀତିକା ଓ ଚତୁର୍ଦ୍ଦଶପାଦୀ କବିତାର ବିକାଶ ମୁଖ୍ୟତଃ ପଦ୍ୟଧାରାରେ ଆବୃତ୍ତିର ଚମତ୍କାରିତାର ଖେଳ ଖେଳିବାକୁ ସୁଯୋଗ ଆଣିଛି।

ଅନୁରୂପ ଭାବରେ ମଧ୍ୟଯୁଗୀୟ ସାମନ୍ତବାଦୀ ପରଂପରାରେ ଅବସର ବିନୋଦନ ପାଇଁ କବିତା ଓ ସଂଗୀତର ମିଶ୍ରଣରେ ପଦ୍ୟାବୃତ୍ତି ଅନ୍ୟତମ ଅବଲମ୍ବନ ହୋଇଛି। ପଦର ଗଣନାତ୍ମକ/ଗଣାତ୍ମକ ସଂଯୋଗ ହିଁ ହୋଇଛି ପଦ୍ୟର ପରିଭାଷା (ପଦୈଃ ସଂଯୋଗାତ୍ ପଦ୍ୟଂ)। ପଦର ଗଣନାତ୍ମକ ସଂଯୋଗ ହେଉଛି ଜ, ତ, ନ, ଭ, ମ, ଯ, ର ଓ ସ ଆଦି ବର୍ଣ୍ଣଗଣାଦିର ତାନିକ ଉଚ୍ଚାରଣ ଚାତୁରୀର ଶୃଙ୍ଖଳା ଓ ନିୟମ। ଭାରତୀୟ ଭାଷା ପରିବାରରେ ଏହି ଗଣାଦି-ଉଚ୍ଚାରଣ ବିଧାନ ଅନୁସାରେ ପଦ୍ୟାବୃତ୍ତିର ନିକଟ ସଂପର୍କ ସ୍ଥାପିତ ହୋଇଛି। ଗଣଗୁଡ଼ିକର ତାନିକ ସଂଯୋଗ ଓ ଆବୃତ୍ତିକାଳରେ ଶବ୍ଦର ସ୍ୱରଲହରରେ ଉଚ୍ଚାରଣଗତ ମାତ୍ରିକ ଭ୍ରମ ଘଟିଲେ କାବ୍ୟାଭିପ୍ରାୟର ପ୍ରସାରରେ ଓ ମର୍ମାର୍ଥବୋଧକରଣରେ ଭିନ୍ନତା, ବୈପରୀତ୍ୟ, ବିକୃତି ଓ ଅସଂଗତି ପ୍ରକାଶ ପାଇଥାଏ। ଗଣବିଧାନରେ ଆବୃତ୍ତି ସ୍ୱରଲହରର ଆନୁଭୂତିକ ତାନମେଳ କବିତାକୁ ଶ୍ରାବ୍ୟରୁ ସ୍ୱାଦ୍ୟ, ସ୍ୱାଦ୍ୟରୁ ହୃଦ୍ୟ ଓ ସହୃଦୟ ହୃଦ୍ୟରୁ ଅନ୍ୟ ସହୃଦୟ ହୃଦୟକୁ ସ୍ଫୋଟାୟିତ ଭଙ୍ଗୀରେ ସଂଚାରୀନିଏ। ଏଥିନିମନ୍ତେ କବିତା ବା ମୁକ୍ତକ ପଦ୍ୟଗୁଡ଼ିକ ଆବୃତ୍ତିକାଳରେ ଆବୃତ୍ତିକାରକର ତାନିକ ଉଚ୍ଚାରଣ ଜ୍ଞାନ ଓ ତାହାପାଇଁ ପୂର୍ବ ଅଭ୍ୟାସ ଏକାନ୍ତ ଜରୁରୀ। ସଫଳ ଓ ଅଭିଜ୍ଞ ଆବୃତ୍ତିକାରକ କବିତାର ଅନ୍ତଃ ସୌନ୍ଦର୍ଯ୍ୟକୁ ପ୍ରଥମେ ଚିହ୍ନଟ କରେ, ତା' ସହିତ ସମୀଭୂତ ହୁଏ। ତା'ର ଯଥାର୍ଥ ପରିସ୍ଫୁଟନକାରୀ ଶବ୍ଦଶକ୍ତି ସହିତ ନିଜକୁ ସଂଯୁକ୍ତ କରେ ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ଭାବ ଅନୁସାରେ ଶବ୍ଦର ସ୍ୱରାଘାତୀୟ ଉଚ୍ଚାରଣ ବଳରେ ଶବ୍ଦାବୃତ୍ତିକୁ ଶ୍ରୁତିରସାୟନମୂଳକ କରିତୋଳେ। ଶବ୍ଦର ଗଣତାନିକ ଆବୃତ୍ତି ଶ୍ରୋତାର ଅବାଧ ରସବୋଧରେ ସାହାଯ୍ୟ କରେ ଓ କବିତା ସୌନ୍ଦର୍ଯ୍ୟକୁ ବସ୍ତୁ ଆକୃତିରେ ରୂପାନ୍ତରିତ କରେ। ତେଣୁ ଆବୃତ୍ତିକାରର ମନ୍ତ୍ର ହେଉଛି– 'ମୁଁ ପ୍ରତିଜ୍ଞା କରୁଛି ଶବ୍ଦନିତ୍ୟ' (ନିତ୍ୟଃ ଶବ୍ଦୋ ଭବିତୁ ମର୍ହତି)। ଗୁରୁଲଘୁ ଆବୃତ୍ତି ନିୟମରେ ବର୍ଣ୍ଣଗଣଙ୍କ ଉଚ୍ଚାରଣ ବା ସ୍ୱରାଘାତ ନିମ୍ନ ମତେ ହୋଇଥାଏ।

୧- ମ'ଗଣ– ସର୍ବତ୍ର ଗୁରୁ ବା ଦୀର୍ଘ ଉଚ୍ଚାରଣ ହୁଅନ୍ତି। ଉଚ୍ଚାରଣ ସଙ୍କେତ ହେଉଛି– SSS, ଯଥା- ମହିମା।

୨- ଯ'ଗଣ– ପ୍ରଥମ ଅକ୍ଷର ଲଘୁ ଓ ଅନ୍ୟ ବର୍ଣ୍ଣ ଗୁରୁ ବା ଦୀର୍ଘ ଉଚ୍ଚାରଣ ହୁଅନ୍ତି। ଉଚ୍ଚାରଣ ସଙ୍କେତ–ISS ଯଥା– ଯଶସ୍ୱୀ।

୩- ର'ଗଣ– ପ୍ରଥମ ଓ ଶେଷବର୍ଣ୍ଣ ଦୀର୍ଘ ବା ଗୁରୁ ଏବଂ ମଧ୍ୟବର୍ଣ୍ଣ ହ୍ରସ୍ୱ ବା ଲଘୁ ଉଚ୍ଚାରିତ ହୁଅନ୍ତି। ସଙ୍କେତ–SIS, ଯଥା– ରଙ୍ଗିଲା।

୪- ସ'ଗଣ– ପ୍ରଥମ ଓ ମଧ୍ୟମ ବର୍ଣ୍ଣ ଲଘୁ ଏବଂ ଶେଷବର୍ଣ୍ଣ ଗୁରୁ ସଙ୍କେତ–ISS ଯଥା- ସମାସୀନ।

୫- ତ'ଗଣ– ପ୍ରଥମ ଦୁଇଟି ବର୍ଣ୍ଣ ଦୀର୍ଘ ଓ ପରବର୍ଣ୍ଣ ଲଘୁ-ସଙ୍କେତ ଚିହ୍ନ–SSI, ଯଥା– ମନ୍ଦାକ୍ରାନ୍ତା, ମଧୁର।

୬- ଜ'ଗଣ–ପ୍ରଥମ ଓ ଶେଷବର୍ଣ୍ଣଟି ଲଘୁ, ମଧ୍ୟବର୍ଣ୍ଣ ଗୁରୁ, ସଙ୍କେତ ଚିହ୍ନ–ISI, ଯଥା- ବିଦାୟ, ଜାଗର।

୭- ଭ'ଗଣ–ପ୍ରଥମବର୍ଣ୍ଣ ଦୀର୍ଘ, ଅନ୍ୟ ବର୍ଣ୍ଣ ଲଘୁ, ସଙ୍କେତ SII, ଯଥା, ଭାସ୍କର, ଭାଷଣ, ଭଳିବା।

୮- ନ'ଗଣ–ସବୁକ୍ଷେତ୍ରରେ ଲଘୁ, ସଙ୍କେତ–III ଯଥା-ନିଦାନ, ନିପୁଣ, ନଳିନୀ।

ଏତତ୍ ବ୍ୟତୀତ ଅନୁସ୍ୱାରଯୁକ୍ତ ବର୍ଣ୍ଣ, ଦୀର୍ଘସ୍ୱର ଯୁକ୍ତ ବର୍ଣ୍ଣ, ଦୀର୍ଘସ୍ୱରୀୟ ବ୍ୟଂଜନ ବର୍ଣ୍ଣ, ବିସର୍ଗଯୁକ୍ତ ବର୍ଣ୍ଣ, ଦ୍ୱି-ତ୍ରି ସଂଯୁକ୍ତ ବର୍ଣ୍ଣ ଓ ଦ୍ୱିତ୍ୱବର୍ଣ୍ଣ ସର୍ବତ୍ର ଗୁରୁତାନରେ ଉଚ୍ଚାରିତ ହୋଇଥାଏ। ଏପରିକି 'ତ' ଓ 'ନ' ଗଣମାତ୍ରିକ ବର୍ଣ୍ଣ ସର୍ବତ୍ର ଲଘୁ ଉଚ୍ଚାରିତ ହେଉଥିଲେ ମଧ୍ୟ ଏଗୁଡ଼ିକ ଅନୁସ୍ୱାର ଓ ବିସର୍ଗ ଯୁକ୍ତ ହେଲେ ଏବଂ ଦ୍ୱିତ୍ୱ - ସଂଯୁକ୍ତ - ଚନ୍ଦ୍ରବିନ୍ଦୁଯୁକ୍ତ ହେଲେ ଗୁରୁତାନିକ ହୋଇ ଉଚ୍ଚାରିତ ହୁଅନ୍ତି। ଯଥା– ପ୍ରାୟତଃ (ତଃ-ଗୁରୁତାନିକ), ସଂପନ୍ନ (ସଂ-ନ୍ନ-ଗୁରୁତାନିକ), ମୁଗ୍ଧ (ଗ୍+ଧ = ଗ୍ଧ- ଗୁରୁତାନିକ), କର୍ତ୍ତୃତ୍ୱ (ର୍ତ୍ତୃ- ଗୁରୁତାନିକ) ଓ ଅଇଁଠା (ଇଁ-ଗୁରୁତାନିକ)।

ପାଶ୍ଚାତ୍ୟ ସାହିତ୍ୟରେ ଯଥାର୍ଥ ଆଧୁନିକତାର ପ୍ରସାର ଅମିତ୍ରାକ୍ଷର ଛନ୍ଦ ଓ ମୁକ୍ତଛନ୍ଦର ପ୍ରଚଳନ ଦେଇ ସଂଭବ ହୋଇଛି। କଣ୍ଠସ୍ୱରର ବଳାଘାତୀୟ ବା ସ୍ୱରାଘାତୀୟ ଗୁରୁଲଘୁ ତାନିକ ଆବୃତ୍ତି କବିତା ଚର୍ଚ୍ଚାର ଅନୁଷଙ୍ଗ ହୋଇଛି। ଆବୃତ୍ତି କ୍ଷେତ୍ରରେ ଆବୃତ୍ତିକାରକ ଉଚ୍ଚାରଣ ଓ କଣ୍ଠସ୍ୱରର ଉତ୍ଥାନପତନ କବିତାର ସୌନ୍ଦର୍ଯ୍ୟକୁ ପରିବହନ କରିନେବା ଓ ବିତରଣ କରିବାରେ ସହାୟକ ହୋଇଥାଏ। ଶ୍ରୁତିପ୍ରିୟତା କବିତାର ଆବେଦନଗତ ବିଶେଷତ୍ୱ କେବଳ ନୁହେଁ; ଶବ୍ଦର ବକ୍ତବ୍ୟଧର୍ମୀ, ସାଦୃଶ୍ୟଧର୍ମୀ ଓ ବିଶ୍ୱସ୍ତ ଚିତ୍ରଧର୍ମୀ ସାଙ୍ଗୀତିକ ପ୍ରତିରୂପର ଗ୍ରନ୍ଥନ (musical pattern) ଦେଇ ଭାବ ଉଦ୍‌ଭାସନକରିବା କବିତାନିର୍ମାଣର ମୁଖ୍ୟ ବିଷୟ। ଏପ୍ରକାର ଭାବ ଉଦ୍‌ଭାସନୀକରଣରେ ଗ୍ରନ୍ଥିତ ଶବ୍ଦର ଛାନ୍ଦସିକ ଆରୋହଣ ଓ ଅବରୋହଣ ନିର୍ଣ୍ଣୟ କରି କବିତା ଆବୃତ୍ତି କରିବା ପ୍ରସଙ୍ଗର ପକ୍ଷପାତୀ କବି ଏଜ୍ରାପାଉଣ୍ଡଙ୍କ ବିଚାରରେ ନୀରବରେ ଦର୍ଶନେନ୍ଦ୍ରିୟ ଶକ୍ତି ଘଟାଇ କବିତା ପାଠକରିବା ଦ୍ୱାରା ଏହାର ମହତ୍ତ୍ୱ ବୁଝାପଡ଼େନାହିଁ। କାରଣ କବିତା ପଢ଼ାଯାଏନି ବରଂ କଥିତ ସ୍ୱରର ଅନୁପାତରେ କବିତାକୁ ଦେଖାଯାଏ ଓ ଅନୁଭବ କରାଯାଏ। ଆବୃତ୍ତିର ଗୁରୁ ଲଘୁ ଉଚ୍ଚାରଣ କବିତାକୁ କାବ୍ୟତାକୁ ଦେଖାଇଦିଏ। ପାଉଣ୍ଡ କବିତା ନିର୍ମାଣରେ ପୂର୍ବକଳ୍ପିତ ଛନ୍ଦପାଠକୁ ଅସ୍ୱୀକାର କରି ବାକ୍‌ଭଙ୍ଗୀର ଆବୃତ୍ତିକୁ ସମର୍ଥନ କରିଛନ୍ତି। ପରବର୍ତ୍ତୀ କାଳରେ ଏଲିୟଟ ପ୍ରଚଳିତ ଯତିପାତୀୟ ଗୁରୁଲଘୁ ନିୟମ ସହିତ

ଯତିହୀନ ମୁକ୍ତ ବାକ୍‌ଭଙ୍ଗୀକୁ ମିଶାଇ 'ଭର୍ସ ଲିବ୍ରେ'ର ମହତ୍ତ୍ୱ ଘୋଷଣା କରିଛନ୍ତି, ଯାହା କବିତାକୁ ବାଚନିକ ସୁଶ୍ରାବ୍ୟ ଆବୃତ୍ତି ଶୃଙ୍ଖଳା ସଙ୍ଗେ ସଂଯୁକ୍ତ କରିଦେଇଛି। ଏଲିୟଟ କଲଂବିୟା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ପାଟରସନଙ୍କ ସହିତ ମିଶି ନିଜେ ହିଲ୍‌ଡାଡ୍ ଲିଟରଙ୍କ 'Oread' କବିତା ଦୁଇଟିକୁ ଆବୃତ୍ତି କରି ଶବ୍ଦ-ଚିତ୍ର ଉତ୍ତୋଳକ ମେସିନ୍‌ରେ ଥିବା ଧ୍ୱନିତାନିକ ଗତିକୁ ପରୀକ୍ଷା କରି ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ କବିତାର ଏକ ଏକ ଚରଣ ବା ନିର୍ଦ୍ଦିଷ୍ଟ ଶବ୍ଦପୁଂଜି ଏକ ନିର୍ଦ୍ଦିଷ୍ଟ ଉଚ୍ଚତାକୁ ଆରୋହଣ କରି ପୁନଶ୍ଚ ନିମ୍ନ ପାଦଦେଶକୁ ଅବରୋହଣ କରିଥାଏ। କଫ୍‌ମାନ୍ ବାକ୍‌ରୀତି ବିଧାନକୁ ଆବୃତ୍ତିର ପରିମାପକ ଭାବରେ ବିଚାର କରିଛନ୍ତି। ମୋଟ ଉପରେ ଉଭୟ ଏକମତ ଯେ କବିତା ବୋଲିବାର ଭଙ୍ଗୀରେ ପଦଗୁଡ଼ିକ ଅନାୟାସରେ ହ୍ରସ୍ୱ ଓ ଦୀର୍ଘ ହୋଇଥା'ନ୍ତି। କବି ରିଲ୍‌କେ କବିତା ତିଆରିରେ ପାଦର ମଝିରେ ଅନ୍ତର୍ଚ୍ଛାନ୍ଦୀୟ ମାଧୁର୍ଯ୍ୟ ସୃଷ୍ଟିକାରୀ ଶବ୍ଦ (word of interim rhyme) ବସାଣ ଉପରେ ଗୁରୁତ୍ୱ ଦେଇ ଏହାଦ୍ୱାରା କବିତା ଆବୃତ୍ତିରେ ଗୁରୁ ଲଘୁ ସ୍ପନ୍ଦନ ଅଣାଯାଇପାରେ ବୋଲି ଦର୍ଶାଇଛନ୍ତି।

ଭଲକବି ଯେତିକି ଭାବବିଦୁଷ ତଦାପେକ୍ଷା ଅଧିକ ମୁକ୍ତମନା ଛନ୍ଦକୁଶଳୀ (versifier)। ଆଲୋଚକ ଆମି ଲୋୟେଲ୍ ଭଲକବିତାର ଛାନ୍ଦସିକତାକୁ ଆବୃତ୍ତି ଆନୁପାତିକ ଶବ୍ଦଯୋଚନା ଭାବରେ ଅଭିହିତ କରିଛନ୍ତି (unrhymed cadence ବା rhythm of the reciting voice)। ମୁକ୍ତ ଛନ୍ଦ (verse Libre) ଉଦ୍‌ଭାବକ ଗୁସ୍ତେଭି କାହଁ (Gustave Kahn) ପଦ୍ୟ ସଂଗୀତ ନୁହେଁ ଏକ ମୁକ୍ତମନର ବିବୃତି ଓ ଏହାର ନିର୍ମାଣ ଆବୃତ୍ତିଯୋଗ୍ୟ ନମନୀୟ ଅନ୍ତର୍ଚ୍ଛାନ୍ଦୀୟ ଭାଷା ପ୍ରକରଣ ଦ୍ୱାରା ସଂଭବ ବୋଲି ଦର୍ଶାଇଛନ୍ତି। ପାଶ୍ଚାତ୍ୟ କବିଏ ଫ୍ରେଞ୍ଚ୍ ନବଜାଗୃତ ଅଧ୍ୟାୟରୁ ମୁକ୍ତଛନ୍ଦ/ବାଗଛନ୍ଦ/ଗଦ୍ୟଛନ୍ଦ ମାର୍ଗରେ ଗତି କରିବାବେଳେ କବିତା ଗଢ଼ଣ ଓ ଆବୃତ୍ତିଗତ ପ୍ରସାରଣରେ ଶବ୍ଦର ଗୁରୁଲଘୁ ତାନିକ ଶୃଙ୍ଖଳାକୁ (pitched principles of stress, unstressed and accented syllable) ସଯତ୍ନରେ ପ୍ରୟୋଗ କରିଆସିଛନ୍ତି।

- ଗୁରୁତାନୀୟ ଶବ୍ଦ ବିନ୍ୟାସର ପାଦ (iambic foot)– ପ୍ରତ୍ୟେକ ଶବ୍ଦର ପ୍ରତ୍ୟେକ ଅକ୍ଷର ଦୀର୍ଘତାକୁ ମାନି ଉଚ୍ଚାରିତ ହେବ।
- ଲଘୁ ତାନୀୟ ଶବ୍ଦ ବିନ୍ୟାସର ପାଦ (trahaic foot)– ପ୍ରତ୍ୟେକ ଅକ୍ଷର ସ୍ୱରାୟିତ ହୋଇ ଉଚ୍ଚାରିତ ହେବ ଅଥବା ପ୍ରଥମେ ଲଘୁ'ତାନରେ ଶବ୍ଦ ଉଚ୍ଚାରିତ ହେବା ପରେପରେ ଗୁରୁତାନରେ ଆବୃତ୍ତି ଆରୋହଣଧର୍ମୀ ହେବ।
- ଗୁରୁଲଘୁତାନୀୟ ଶବ୍ଦ ବିନ୍ୟାସର ପାଦ (dacty foot line)– ଗୋଟିଏ ଗୁରୁତାନିକ ବର୍ଣ୍ଣ ଦୁଇଟି ଲଘୁତାନିକ ବର୍ଣ୍ଣର ଅନୁଧାବନ କରି ଉଚ୍ଚାରିତ ହେବ।

- ଲଘୁଗୁରୁତାନୀୟ ଶବ୍ଦ ବିନ୍ୟାସର ପାଦ (ana paestic feet)– ଦୁଇଟି ହ୍ରସ୍ୱ ବା ଲଘୁ ତାନିକ ବର୍ଣ୍ଣ ଗୋଟିଏ ଗୁରୁତାନିକ ବର୍ଣ୍ଣ ଅନୁଗାମୀ ହୋଇ ଉଚ୍ଚାରିତ ହେବ ।
- ଧ୍ୱନିମାତ୍ରିକ ଅକ୍ଷର ବିନ୍ୟାସ ପାଦ (accented syllable foot)– ସ୍ୱରାଘାତୀୟ ବର୍ଣ୍ଣବିନ୍ୟାସ ମଧ୍ୟରୁ ଗୋଟିଏ ବର୍ଣ୍ଣ ବା ଅକ୍ଷରର ସ୍ଥିତିକୁ ଗୁରୁତ୍ୱ ଦିଆଯାଇ ଏହାର ଧ୍ୱନିମାତ୍ରିକ ଉଚ୍ଚାରଣ କରାଯିବ। କେତେକ କ୍ଷେତ୍ରରେ ଅକ୍ଷର ଅକ୍ଷର ମଧ୍ୟରେ ସାପେକ୍ଷ ଧ୍ୱନିବିନିମୟ ଧାରା ସୃଷ୍ଟିହୋଇ ଆବୃତ୍ତିର ସୁଶ୍ରାବ୍ୟ-ସାଧନ କରାଯାଏ। ଏପ୍ରକାର ଧ୍ୱନିସାପେକ୍ଷ ବର୍ଣ୍ଣବିନ୍ୟାସରେ ଏକପ୍ରକାର ଅନ୍ତଃରୀଣ ଛନ୍ଦପ୍ରବାହ ବର୍ତ୍ତମାନ ରହିଥାଏ।

ଏରୂପେ ଉଭୟ ପ୍ରାଚ୍ୟ-ପାଶ୍ଚାତ୍ୟ ବିଚାରରେ ଆବୃତ୍ତିକୁ ଏକ ଆଭିତାନିକ ସଂଘ ସମନ୍ୱବାଦୀ କଳା (art of associationism) ଭାବରେ ପ୍ରଗୀତାତ୍ମକ ବା ଅନ୍ତର୍ଗୀତିଧର୍ମୀ କବିତାର ସଂଚାରଣ କ୍ଷେତ୍ରରେ ଗ୍ରହଣ କରାଯାଇଛି। ଆଇ.ଏ. ରିଚାର୍ଡସ୍‌ଙ୍କ ଅନୁସାରେ ନବସମୀକ୍ଷାବାଦ ବିଶ୍ୱାସ କରେ ଯେ ବିରୋଧାଭାସ, ଲକ୍ଷଣା, ଶ୍ଳେଷ, ବକ୍ରୋକ୍ତି ଆଦି ଶବ୍ଦଯୋଜନା ଦେଇ କବି ଭାବର ନିର୍ଦ୍ଦିଷ୍ଟୀକରଣ କରିଥାଏ। ମାତ୍ର ଆବୃତ୍ତି ଶବ୍ଦଯୋଜନାର ଅନ୍ତର୍ନିହିତ ଉଦ୍ଦେଶ୍ୟ ଓ ବିଶେଷତ୍ୱକୁ ଚିତ୍ରାତ୍ମକ ଭଙ୍ଗୀରେ ଉନ୍ମୋଚନ କରି ସାଧାରଣୀକରଣ କରିଦିଏ। ଆବୃତ୍ତି କବିତା ପାଠକୁ କବିର ଏକାଗ୍ରତା ଓ ନୀରବ ପାଠକର ନିର୍ଜନତାରୁ ମୁକ୍ତ କରି ଲୋକାଭିମୁଖୀ ସାଧନରେ ପରିଣତ କରେ। ଆମ କାଳରେ ବହୁ ଆଦୃତ ଭାବବାଦୀ ଆଂଗ୍ଲୋ-ଇଂରେଜୀ କବି ଡୋମ୍‌ମେରା ଚିଲିର ନୀଳାଭହ୍ରଦରେ ନାଉରୀ ତୁଣ୍ଡରୁ ଗୁଣୁଗୁଣୁ ସ୍ୱରରେ ନେରୁଦାଙ୍କ ମାନବଦରଦୀ କବିତା ପଙ୍‌କ୍ତିର ଗୋଟିଏ ମାତ୍ର ଆବୃତ୍ତ ପଙ୍‌କ୍ତି ଶୁଣୁଶୁଣୁ କହିପକାଇଲେ– ସାମାଜିକ ଅପରିହାର୍ଯ୍ୟତାରେ ବିଶ୍ୱାସୀ କବିର ଉନ୍ନୀକରଣରେ କ୍ଷମ କବିତା ମୁଗ୍ଧକର ଆବୃତ୍ତି ଲୋଡିଥାଏ ଓ ସବୁକାଳକୁ ସୁଶ୍ରାବ୍ୟ ଆବୃତ୍ତିରେ ଆଲୋକୋପମ ହୋଇ ନୌକାବିହାର କରି ଚାଲିଥାଏ। ଏଥିରୁ ଗୋଟିଏ କଥା ସ୍ପଷ୍ଟହୁଏ ଦିନଜୀବୀ ନାଉରୀ ପରି ଆବୃତ୍ତିକାର ଭଲ କବିତାର ଭଲ ବିଶେଷତ୍ୱକୁ ବୁଝି ଅନ୍ୟକୁ ଭଲଲାଗିବା ଭଳି ପରିବେଷଣ କରିବା ଭିତରେ ଆବୃତ୍ତି କବିତାକୁ କବିଠାରୁ କାବ୍ୟଗ୍ରାହୀଙ୍କ ପର୍ଯ୍ୟନ୍ତ ବିସ୍ତୃତ କରିଦିଏ। ସାଧାସିଧା ଓ ଅବିକଳ ସନ୍ତସନ୍ତିଆ ଜୀବନକୁ କେନ୍ଦ୍ରକରି କବିତାକୁ ଏକ ଖିଆଁଲିପଣରେ ଲେଖୁଥିବା ବିଟ୍ ସଂପ୍ରଦାୟର କବିଗଣ (ବୋରେଜ୍, ଜିନିସ୍‌ବର୍ଗ ଓ କେରୁଆକ୍ ପ୍ରମୁଖ) କବିତା ଆବୃତ୍ତିର ଚମତ୍କାରିତା ବଳରେ ଗୋଟାଏ ବ୍ୟାପକ ପରିସରର ବିଭୋର ଶ୍ରୋତାମହଲ ସୃଷ୍ଟି କରିପାରିଛନ୍ତି। କବିତାରେ ଥିବା ମନଃସ୍ଥିତି ହିଁ ଅବିକଳ ବଂଚୁଥିବା ଜୀବନସ୍ଥିତି–

ଏହାକୁ ପ୍ରତ୍ୟକ୍ଷ ପ୍ରତିମା ରୂପରେ ଦୃଶ୍ୟଶୀଳ କରାଇ ଦେବାପାଇଁ ସେମାନେ ଆବୃତ୍ତିକୁ ଶ୍ରେୟସ୍କର ଉପାୟ ରୂପେ ବ୍ୟବହାର କରିଛନ୍ତି। ଶବ୍ଦଗୁଡ଼ିକ ଯେତେ ଦୁର୍ବଳ, କଂଚା, ତଳତଳିଆ ସ୍ତରର ବ୍ୟାବହାରିକ ହେଲେବି ସେମାନେ ତାତ୍ପର୍ଯ୍ୟାର୍ଥକ ହୋଇ ଚେତନାକୁ ପ୍ରବୋଧିତ କରିପାରନ୍ତି– ଏହା ବିଟ୍‌କବିଙ୍କ ଆବୃତ୍ତି ପ୍ରମାଣ କରିଦେଇଛି। ଅପାଙ୍ଗ ନୈତିକତା ବିରୁଦ୍ଧରେ ମଣିଷ ପଣିଆର ପ୍ରତିବାଦ ସ୍ୱରକୁ ଚୁମ୍ବକୀୟ ପ୍ରଭାବସୂତ୍ରରେ ଉଚ୍ଚାରଣ କରିବାରେ ଅଣଓଜନିଆ, ଆଲୋଡ଼ା, ଅସନା ଶବ୍ଦଗୁଡ଼ିକ ଅପେକ୍ଷା ଅଭିଜାତ ପ୍ରସିଦ୍ଧିର ଅନ୍ୟପ୍ରକାରର ଶବ୍ଦ ସମପରିମାଣରେ ସମର୍ଥ ହୋଇନପାରନ୍ତି; ଏହା ବିଟ୍-କବିତା-ଆବୃତ୍ତି ପରଂପରାରୁ ସ୍ପଷ୍ଟ ହୋଇଯାଇଛି।

ଆମ ଓଡ଼ିଆ କବିତାରେ ଭାବ ବିଟ୍‌ସଂପ୍ରଦାୟଭିତ୍ତିକ ନହୋଇଥିଲେ ବି ଭଲକବିଙ୍କ ଶବ୍ଦଯୋଜନା ଉତ୍ତର ଅଶୀପରେ ବିଟ୍‌ଙ୍କ ପରି ନିହାତି ନିରୁତାପଣର ଓ ସାଧାରଣ ଚଳଣିର ହୋଇଉଠିଛି। ସାଧାରଣ ଶବ୍ଦଗୁଡ଼ିକ ଭାବାନୁସାରୀ ବିରାମ ଓ ତାନିକ ବିଧାନ ରକ୍ଷାକରି ଯଥାର୍ଥ ଉଚ୍ଚାରଣର ଶାଣିତ ଧ୍ୱନିତରଙ୍ଗରେ ଉଦ୍‌ବୋଧନଧର୍ମରେ ଚହଲି ଉଠନ୍ତି ଓ ଶ୍ରୋତାଙ୍କୁ ଦୋଳାୟିତ କରିଦେଇପାରନ୍ତି, ଶ୍ରୋତା ପାଖରେ ଅଭିଧା ଅର୍ଥ ବ୍ୟତିରେକୀ ଏକ ଶ୍ଳେଷାତ୍ମକ ଅର୍ଥ ପରଶିଦେଇପାରନ୍ତି– ଏପ୍ରକାର ଅନୁଭବଟିଏ ଅଶୀପର କବିଙ୍କ କବିତା ଆବୃତ୍ତିରୁ ସହଜଲବ୍ଧ ହୋଇପାରିଛି। ହୁସେନରବି ଗାନ୍ଧୀ, ଦେବୀଦାସ ମିଶ୍ର, ହୃଷିକେଶ ମଲ୍ଲିକ, ଅସୀମବସୁ ରକ୍ଷକ ନାଏକ, ବାସୁଦେବ ସୁନାନୀ ମନୁଆଦାସ, ମନୋଜ, ମେହେର ଓ କୃଷ୍ଣ ମିଶ୍ରଙ୍କ କବିତାଆବୃତ୍ତି ଭିତରେ ଏପ୍ରକାର ନିଆରା ଆକର୍ଷଣକୁ ଲକ୍ଷ୍ୟ କରାଯାଇପାରେ।

(ଛଅ)

ସବୁ କବି ଆବୃତ୍ତି କରିପାରନ୍ତି ନାହିଁ। ଆବୃତ୍ତି କରିପାରୁନଥିବାରୁ ସେମାନେ ଯେ ବାଧ୍ୟକବି ବା ଭଲକବି ନୁହଁନ୍ତି ଓ ସେମାନଙ୍କ କବିତାର ଆବୃତ୍ତିଯୋଗ୍ୟତା ନାହିଁ ଏକଥା କୁହାଯାଇନପାରେ। ସମୂହ କବିତା ପାଠ ମଂଚରେ କବି ନିଜେ ଆବୃତ୍ତିକାର ହୋଇ ନିଜ କାବ୍ୟାନୁଭୂତିକୁ ପରିବେଷଣ କରିବା ବାଧ୍ୟପ୍ରସଙ୍ଗ ନୁହେଁ। ଅନେକ ଆବୃତ୍ତି-ଅକ୍ଷମ କବିଙ୍କ କବିତା କୁଶଳୀ ଆବୃତ୍ତିକର୍ତ୍ତାର କଣ୍ଠସ୍ୱର ଓ ତାନଯୋଗ୍ୟ ପରିବେଷଣରେ ସର୍ବୋତ୍କୃଷ୍ଟ ହେବାର ନଜିର୍ ବି କମ୍ ନାହିଁ। ଅସଲକଥା ହେଉଛି ବାଧ୍ୟ ନୁହେଁ, ବରାଦୀ ନୁହେଁ, କବିତାର ଭାବ ପ୍ରତି ବିଶ୍ୱସ୍ତ ଆବୃତ୍ତି କବିତାର ଶବ୍ଦକୁ ରମଣୀୟ ଓ ଭାବକୁ ଲୋକୋତ୍ତର ଚମତ୍କାରିତାରେ ଆସ୍ୱାଦନୀୟ କରିତୋଳେ।

ପଡ଼ୋଶୀ ବଙ୍ଗଳା ସାହିତ୍ୟ ଓ ସାହିତ୍ୟାନୁସାରୀ ଅସ୍ମିତାରେ ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିପାରିଥିବା ବାଂଲାଦେଶରେ କବିତା ଆବୃତ୍ତିର ବଳିଷ୍ଠ ପରଂପରା ରହିଛି।

ରବୀନ୍ଦ୍ରନାଥ ଓ କାଜି ନଜରୁଲ୍ ନିଜ କବିତାର ଭାବୋତ୍ପାଦକଧର୍ମୀ ଆବୃତ୍ତି କରିପାରୁଥିଲେ ଏବଂ ନିଜନିଜର କବିତା ଆବୃତ୍ତିର ତାନ-କୌଶଳ ନିରୂପଣ କରିଯାଇଛନ୍ତି। ଆବୃତ୍ତିକୁ କବିତାର ଚଳନଶକ୍ତି ଭାବରେ ରବୀନ୍ଦ୍ରନାଥ ମାନ୍ୟତା ଦେଇ ଏହାକୁ ଅନ୍ୟତମ ପ୍ରଭାବ ସୃଷ୍ଟିକାରୀ କଳାଭାବରେ ନିଜେ ପ୍ରୟୋଗ କରିଛନ୍ତି। କବିତାର ଅକ୍ଷର ପ୍ରତିମାକୁ ଭାବମୟୀ କଳ୍ପନାରମଣୀରେ ପରିଣତ କରିବାର ଅସମ୍ଭବ କଳାମାତ୍ରିକ ଆବୃତ୍ତି ସାମର୍ଥ୍ୟ ବିଶ୍ୱକବିଙ୍କର ଥିଲା। ଏହି ସାମର୍ଥ୍ୟ ଶାନ୍ତିନିକେତନର ମାଟିଛାତର ଘର ଭିତରେ ମହାତ୍ମାଗାନ୍ଧିଙ୍କୁ ସମ୍ମୋହିତ କରିଦେଇଥିଲା ଏବଂ କବିତାବୃତ୍ତିର ଯାଦୁ ବଳୟରୁ ମୁକ୍ତ ହେବାପରେ ମହାତ୍ମାଗାନ୍ଧି ରବୀନ୍ଦ୍ରଙ୍କ ଆବୃତ୍ତିକଳ୍ପା କବିପଣ ଭିତରେ ବିଶ୍ୱକୁ ବିହ୍ୱଳିତ କରିପାରିବାର ଓ ମାନବ ସମାଜକୁ ମୈତ୍ରୀସୂତ୍ରରେ ବାଂଧିରଖିପାରିବାର ଏକ ଉଦାତ୍ତ ଋଷି-ସଂକଳ୍ପକୁ ଦେଖି ଭାବତଟସ୍ଥ ହୋଇ 'କବିଗୁରୁ' ସମ୍ବୋଧନ କରିବା ବ୍ୟତୀତ ଅନ୍ୟ ବିକଳ୍ପ ଶବ୍ଦ ପାଇନଥିଲେ। ଏହାହିଁ ଆବୃତ୍ତି କଳାର ଚମତ୍କାରିତା; ଯାହାକୁ କବି ମାର୍ଲାମେ ପ୍ରତ୍ୟକ୍ଷ ଓ ଆଶୁ ପ୍ରଭାବବିସ୍ତାରୀ କ୍ଷମତା ଭାବରେ ଅଭିହିତ କରିଛନ୍ତି। କବିତା ଆବୃତ୍ତିକୁ ଜାତୀୟ ଜାଗୃତିର ଅସ୍ତ୍ର ଭାବରେ ବ୍ୟବହାର କରିବାର ଦୃଷ୍ଟାନ୍ତ ବି ଯଥେଷ୍ଟ ରହିଛି। ଜାତୀୟ ମୁକ୍ତି ଆନ୍ଦୋଳନ କାଳରେ ଓଡ଼ିଶାର ବହୁ ଜାତୀୟତାବାଦୀ ବିପ୍ଳବୀ କବି (ବାଞ୍ଛାନିଧି, ବୀରକିଶୋର, କୃଷ୍ଣଚନ୍ଦ୍ର, ମନମୋହନ ପ୍ରମୁଖ) ଜାଗୃତି ଭାବଦ୍ୟୋତକ କବିତା ରଚନା କରି ଗୁରୁତାନିକ ଉଦ୍‌ବୋଧନ ପ୍ରବଣ ଆବୃତ୍ତିରେ ଏହାକୁ ଗାନକରି ସୁପ୍ତ ଜନତା ପ୍ରାଣରେ ଉତିଷ୍ଠ ଭାବନା ଜଗାଇପାରିଛନ୍ତି। ଅନୁରୂପ ଭାବରେ ବାଂଲାଦେଶୀୟ ମୁକ୍ତିସଂଗ୍ରାମ ଓ ଆଫ୍ରିକୀୟ ମୁକ୍ତି ଆନ୍ଦୋଳନରେ ଜାତୀୟତା ଭାବବର୍ଦ୍ଧକ କବିତାର ଆବୃତ୍ତି ଚମତ୍କାର ପ୍ରେରଣାର ଖେଳ ଖେଳିଛି। ବାଂଲାଦେଶର ପ୍ରସିଦ୍ଧ କବିତା ଆବୃତ୍ତିକାର ନାସିମ୍ ଆହମ୍ମଦ ସାମାଜିକ ଜାଗୃତିକରଣରେ ଆବୃତ୍ତିକୁ ଏକ ସାଧନା ବୋଲି ଗ୍ରହଣ କରିଛନ୍ତି। ଆବୃତ୍ତି ପ୍ରସଙ୍ଗ ଓ ଆବୃତ୍ତିର ଅନୁଷଙ୍ଗ ସଂପର୍କରେ ତାଙ୍କ ବିଚାର ଆମକୁ ଏହି ନିଷ୍କର୍ଷରେ ପହଞ୍ଚାଏ ଯେ– ଶବ୍ଦର ଭାବାନୁସାରୀ ଉଚ୍ଚାରଣ, ଉଚ୍ଚାରଣରେ ସ୍ୱରବୈଚିତ୍ର୍ୟ ଓ ଉପସ୍ଥାପନା ବୈଚିତ୍ର୍ୟ ସଂପାଦନ କରିବା ଆବୃତ୍ତି କଳାର ବୈଶିଷ୍ଟ୍ୟ। କବିତାର ଭାବ ସହିତ ଆବୃତ୍ତିକାର ଶ୍ରୋତାର ବିଶ୍ୱାସ ଓ ନିଜର ବିଶ୍ୱାସକୁ ଏକୀଭୂତ କରିପାରିଲେ ଆବୃତ୍ତି ପ୍ରଭାବଶାଳୀ ହୋଇଥାଏ।

ସଂପ୍ରତି ଜ୍ଞାନଜଗତରେ ଆନ୍ତର୍ବିଦ୍ୟାଧ୍ୟୟନ (Inter-disciplinary study) ଭିତ୍ତିରେ ସତ୍ୟର ଆକଳନ କରିବା ଅଧିକ ଯୁକ୍ତିସଂଗତ ହୋଇଉଠିଛି। ଏହି ଦୃଷ୍ଟିରୁ ନୃତାତ୍ତ୍ୱିକ ସିଦ୍ଧାନ୍ତ ସହିତ କବିତା ରଚନା ଓ କବିତା ଆବୃତ୍ତିର ଏକ ପ୍ରତ୍ୟୟାତ୍ମକ ସମ୍ବନ୍ଧ ଥିବା ପ୍ରସଙ୍ଗକୁ ମାନିନେବାକୁ ହୁଏ। ନୃତତ୍ତ୍ୱ କୁହେ ଭୌଗୋଳିକ ଜଳବାୟୁ ଓ ପ୍ରାକୃତିକ ବିନ୍ୟାସ ସହିତ ତାଳଦେଇ ଗୋଟିଏ ଭୂଖଣ୍ଡର ମୌଖିକ ବା ବାଚନିକ ଧ୍ୱନି ସଙ୍କେତ,

ଶବ୍ଦଇଙ୍ଗିତ ଓ ବାକ୍ୟରୂପର ପରଂପରା ସ୍ୱତନ୍ତ୍ର ଭଙ୍ଗୀରେ ପଦ୍ଧତିବଦ୍ଧରୂପ ପାଇଥାଏ। ପରଂପରା ସୂତ୍ରରେ ବଚନଭଙ୍ଗୀରେ ପାଶ୍ଚାତ୍ୟ ଭୂଖଣ୍ଡ ଅପେକ୍ଷା ଭାରତୀୟ ଭୂଖଣ୍ଡରେ କୋମଳତାକୁ ଅଧିକ ଗୁରୁତ୍ୱ ଦିଆଯାଇଛି। ଦେହ, ଜାଗତିକ ବାସ୍ତବତା ଓ ମାନସିକ ବାସ୍ତବତା ମଧ୍ୟରେ ସତ୍ୟକୁ କଳନା କରିଥିବା ପାଶ୍ଚାତ୍ୟ ଜଗତର ଯୁକ୍ତିନିଷ୍ଠ ବାଚନିକତା ଗମ୍ଭୀର ବସ୍ତୁଗୁଣକୁ ଆଧାର କରିଥିବା ବେଳେ ପାର୍ଥିବତାରୁ ଅପାର୍ଥିବ ରହସ୍ୟମୟ ଜଗତ ସହିତ ସମ୍ବନ୍ଧିତ ଭାରତୀୟ ଜୀବନନିଷ୍ଠ ଭାବନା ସକଳପ୍ରକାର ଗାମ୍ଭୀର୍ଯ୍ୟକୁ କୋମଳ ବାଚନିକତାରେ ପ୍ରକାଶ କରିବାର ଔଚିତ୍ୟକୁ ସ୍ୱୀକାର କରିଛି। ତେଣୁ ଆମ ପରଂପରାରେ ସାତମ୍ବର ପ୍ରଦର୍ଶନ କରିବା ଅଥବା ନିଜ ଭିତରେ ସୀମାବଦ୍ଧ ରହି ନୀରବରେ ପାଠ କରିବାର ଅଭ୍ୟାସ ବିଶେଷଭାବେ ପ୍ରସାର ଲାଭ କରି ନାହିଁ। ବରଂ ସତ୍ୟ-ଶିବ-ସୁନ୍ଦରର ଭାବ ଆଦାନପ୍ରଦାନ ଧର୍ମକୁ ଅଙ୍ଗୀକାର କରି ସକଳଙ୍କୁ ନେଇ ଆବୃତ୍ତି ବା ସରବପାଠ କରିବା ମଧ୍ୟରେ ଶାସ୍ତ୍ରର ପ୍ରସାର ସାଧନ ଆମ ନୃତାତ୍ତ୍ୱିକ ସଂସ୍କାରରେ ଅଧିକ ଆଦୃତ ହୋଇଛି। ଏ କାରଣରୁ ଏବେବି ପ୍ରାରବ୍ଧ ସଂସ୍କାର ଭିତ୍ତିରେ କବିତାକୁ ସଭିଙ୍କ ମେଳରେ ପାଠକରି ତାହାଙ୍କୁ ସଭିଙ୍କ ବିଶ୍ୱାସରେ ଉପଲକ୍ଷ୍ୟ କାରକ କରିବାରେ ଆମ ପାଠକୀୟତା ବେଶ୍ ଆଗ୍ରହୀ ରହିଛି। ଆମ ସାହିତ୍ୟ ଓ ଆମ କବିତା ନିମନ୍ତେ ଆମ ପାଠକପଣ ଲୋକାଚାରୀୟ ଅଭ୍ୟାସ ଅନୁସାରେ ନିର୍ଜନପାଠ ଅପେକ୍ଷା ସହପାଠର ଗୁରୁତ୍ୱକୁ ମାନିନେଇଛି। କବିର ବ୍ୟକ୍ତିକ ଅବବୋଧ ଓ ପାଠକର ସମୂହ ଅବବୋଧ ମିଶି ଏକ ସାଧାରଣ ସର୍ତ୍ତମୂଳକ ଅର୍ଥକରଣ କରି ମୂଳପାଠର ମହତ୍ତ୍ୱ ନିର୍ଣ୍ଣୟ କରିବା ଭାରତୀୟ ମାନସିକତାର ବିଶେଷତ୍ୱ। ବିଂଶ ଶତକର ପଞ୍ଚମ-ଷଷ୍ଠ ଦଶଂଧି ବେଳକୁ ଭାରତୀୟ କବିତା ପଠନରୁଚି ବିଶ୍ୱାୟିତ ହୋଇଛି। ଭାରତୀୟମାନଙ୍କ ସହିତ ପାଶ୍ଚାତ୍ୟ କବି ଓ ପାଠକ ସମ୍ମତ ହୋଇଛନ୍ତି ଯେ କବିତା ଅଧ୍ୟୟନ/ପଠନ/ଆବୃତ୍ତିରେ ଏକ ଲୋକୋତ୍ତର ଚମତ୍କାର ଭାବାବେଦନର ଯାଦୁଥାଏ। ଏକଦା ଫେଦେରିକୋ ମାର୍ସିଆ ଲର୍କ କବିତା ଆବୃତ୍ତି ପାଇଁ ପାବ୍‌ଲୋ ନେରୁଦାଙ୍କୁ ଅନୁରୋଧ କରନ୍ତି। ନେରୁଦାଙ୍କ ଆବୃତ୍ତି ସହିତ ଆବୃତ୍ତିରେ ପାଳିଧରନ୍ତି। ଫେଦେରିକୋ ଆବୃତ୍ତି ଆସରରେ ପାଳିଧରିବା ଛାଡିଦେଇ ବିଚଳିତ କଣ୍ଠରେ କହିଲେ– ବନ୍ଦକର, ବନ୍ଦକର, ଆଉ ଆଗକୁ ବଢ଼ନି, ମୁଁ ଓ ମୋ ପରି ଅନେକ ଥରିଲେଣି। ଏଣିକି ଆମେ ଆମ ଭିତରେ ତୁମକୁ ରଖିଦେବାର ସଂଭାବନା ପ୍ରଖର ହେଲାଣି। ନିଜ କବିତାର ଭାବକୁ ଆବୃତ୍ତି ହିଁ ଏପ୍ରକାର ଯାଦୁକରୀ ସଫଳତା ଓ ସଂଚାରଣ ଦେଇଥିଲା ବୋଲି ନେରୁଦା ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି। ଆବୃତ୍ତି ସଂପର୍କରେ ନେରୁଦାଙ୍କର ସ୍ମରଣୀୟ ମନ୍ତବ୍ୟଟି ହେଉଛି– 'ସମୟ ସହିତ ବଂଧା ଜୀବନର ସତ୍ୟକୁ ନିଜକୁ ଶୁଣାଇ ଅନ୍ୟକୁ ଶୁଣାଇବାରେ ଯେଉଁ ଆନନ୍ଦ ତାହା ମୁକ୍ତଛନ୍ଦରେ ଗଦ୍ୟାୟିତ

ପଦ୍ୟରେ ରଚିତ କବିତାର ଆବୃତ୍ତିରୁ ହିଁ ମିଳିଥାଏ। ଜୀବନସାରା କବି ନିଜକୁ, ନିଜ ସମୟକୁ ଓ ନିଜ ଚାରିପାଖର ଜୀବନ ବଂଚିବାର ପଦ୍ଧତିକୁ ଲେଖୁଥାଏ ଓ ଆବୃତ୍ତି କରି ଶୁଣାଉଥାଏ।'

ଗଦ୍ୟଛନ୍ଦର ପ୍ରବର୍ତ୍ତକ ମାର୍କିନ କବି ହୁଇଟ୍‌ମାନ ଭାଷଣ ଛଳରେ କବିତା ଆବୃତ୍ତି ଦେଇ ସାମାଜିକ ଅଙ୍ଗୀକାରବଦ୍ଧତାରେ ସମକାଳକୁ ନିର୍ମାଣ କରିବା ନିମନ୍ତେ ଆହ୍ୱାନ ଜଣାଇଥିଲେ। ତାଙ୍କ ଅଭିମତର ସାରାଂଶ ହେଉଛି– 'ବିଦ୍ୟା ଜଗତରେ କବିତା ସର୍ଜନାର ଇତିହାସ ଓ ପ୍ରୟୋଜନ ପ୍ରାଣୀଜଗତ ମଧ୍ୟରେ ମଣିଷ ସଂପ୍ରଦାୟର ଆମ୍‌ପନ୍ ବିକାଶ ଭଳି ଗୁରୁତ୍ୱପୂର୍ଣ୍ଣ; ଏକଥା ଯେଉଁ ଜାତି ବୁଝୁଛି ସେ ସମୟ ପାଇଲା ମାତ୍ରେ ନିଜପାଇଁ ନିଜ ପ୍ରିୟଜନଙ୍କ ପାଇଁ କେବଳ ଉଦାର ମାନବିକତାର କବିତା ଆବୃତ୍ତି କରିବ।

ବିଶ୍ୱର ଯାବତୀୟ ଜ୍ଞାନଧାରାକୁ ତୁଳନା କରି ଦେଖିଲେ ଦୁଇଟି ସତ୍ୟ ସାମ୍ନାକୁ ଆସେ। ଗୋଟିଏ ସତ୍ୟ କେବଳ ପଦ୍ୟକୁ ଛାଡିଦେଲେ ଅନ୍ୟ ସକଳ ଜ୍ଞାନ ପାଇଁ ମଣିଷ ବଚନ ବା ଗଦ୍ୟ ଭାଷା ବ୍ୟବହାର କରିଆସିଛି। ସେସବୁ ଜ୍ଞାନକୁ ନୀରବରେ ପଢ଼ି ଅଭିଧାରେ ବୁଝି ଆବଶ୍ୟକ ଥିବା ଯାଏ ମନେରଖି ଚାଲିଛି। ପ୍ରୟୋଜନର ତରିକା ବଦଳିବା ମାତ୍ରେ ଗଦ୍ୟପାଠର ଜ୍ଞାନ କ୍ରମଶଃ ବିସ୍ତୃତ ହୋଇଯାଉଛି। ଅନ୍ୟ ସତ୍ୟଟି ହେଉଛି– ସାର୍ବକାଳିକ ମାନବହିତୈଷୀ ଆବଶ୍ୟକତାକୁ ଦେଖି ବିଶ୍ୱମାନବ ହିତିହାସରେ ସର୍ବତ୍ର କତିପୟ ବିଭାବନଶୀଳ ବିଦ୍ୱାନ ବଚନଭଙ୍ଗୀକୁ ତ୍ୟାଗ କରି ବ୍ୟଂଜନା ଶକ୍ତିବଳରେ ପଦ୍ୟରୀତିରେ ସୁଭଗଜୀବନର ଶବ୍ଦଚିତ୍ର ନିର୍ମାଣ କରିଯାଇଛନ୍ତି। ସେଗୁଡ଼ିକୁ ଖୋଜି ବାଛି ସଯତ୍ନରେ ଦୃଷ୍ଟାନ୍ତ ରୂପରେ ସ୍ମରଣପିଣ୍ଡରେ ସାଇତି ରଖି ଅନ୍ୟ ଅଧିକାଂଶ ଜୀବନ ପରିସରରେ (life domain) ଦରକାର ପଡ଼ିବା ମାତ୍ରେ ସ୍ମୃତିରୁ ବାହାର କରି ଆବୃତ୍ତି କରିଚାଲିଛନ୍ତି। ପକ୍ରିୟାଟି ଏହିପରି– କବିଏ ପଦ୍ୟଭାବକୁ ମୂର୍ତ୍ତ ଉଦାହରଣଯୋଗ୍ୟ କରି ନିର୍ମାଣ କରନ୍ତି। ବଚନାଶ୍ରିତ ଗାନ ବା ଆବୃତ୍ତି ପଦ୍ୟର ମୂର୍ତ୍ତିମାନଭାବକୁ ସାଧାରଣ ଅନୁରାଗୀଙ୍କ ଜୀବନଚାହିଦା ସହିତ ଖଂଜିଦିଏ। ତେଣୁ କାବ୍ୟାବେଦନର ଉତ୍ତମ ସଂଚରଣ ମାଧ୍ୟମ ହେଉଛି ଆବୃତ୍ତି।

ଆବୃତ୍ତି ବିପକ୍ଷବାଦୀମାନେ ଏସବୁରେ ଏକମତ ହୋଇ ନ ପାରନ୍ତି। ସେମାନଙ୍କର ମନ୍ତବ୍ୟ କବିତା ସର୍ଜନ ଏକ ଦିବ୍ୟ ଉନ୍ମତ୍ତ ମାନ୍‌ସିକ ପ୍ରକ୍ରିୟା। ନୀରବତା ଓ ନିରୋଳା ଭିତରେ କବିତା ରଚନା ଋଷିବତ୍ ସାଧନା କରି କରାଯାଏ। କବିତାର ମହାନୁଭବ ସତ୍ୟକୁ ହାଟରେ ବ୍ରହ୍ମଜ୍ଞାନ ପରି ବଣ୍ଟାଯିବାର ସଂଭାବନା ନାହିଁ। କବିତା ପଢ଼ିବାପାଇଁ ଏକ ଶୀତଳ ଉଦ୍ଦୀପନ୍ନଶୀଳ ମୁହୂର୍ତ୍ତ ଓ ପରିସର ଲୋଡ଼ା; ଯାହା ପାଠକର ଏକାନ୍ତ ନିଜସ୍ୱ। ଭଲ ପାଠକୀୟତା ହେଉଛି ଯେଉଁଠି ପାଠକ ନିଜେ ଆବୃତ୍ତିକାରୀ,

ନିଜେ ଶ୍ରୋତା ଓ ନିଜେ ବ୍ୟାଖ୍ୟାକାରୀ। ଏହାଯେ ସଂପୂର୍ଣ୍ଣ ସତ୍ୟ ବା ମିଥ୍ୟା ଏକଥା କୁହାଯାଉନାହିଁ। ମାତ୍ର ଏକଥା ସତ୍ୟ ନିଜକୁ ଏକାକୀ ପାଠ ସହିତ ଜଡ଼ିତ କରି ପାଠର ଭାବଜଗତରେ ସ୍ୱାଧୀନ ଭାବରେ ମନସ୍‌ତେଣାକୁ ଦୋହଲାଇ ବୁଲିବାର ସ୍ୱତନ୍ତ୍ର ଆନନ୍ଦ ପାଠକର ନିଶ୍ଚିତ ରହିଛି ଯାହା ବହୁମେଳିର କବିତାପାଠ ଆସରରେ ଦୁର୍ମିଳ। କିନ୍ତୁ ନିଜ କବିତାକୁ ଅଥବା ଅନ୍ୟର କବିତାକୁ ଆବୃତ୍ତି କରି ବ୍ୟାପକ ଅର୍ଥଦ୍ୟୋତନା ଓ ବହୁପାକ୍ଷିକ ସୌନ୍ଦର୍ଯ୍ୟାବେଦନ ଦିଗରୁ ଚମତ୍କାରିତା ସୃଷ୍ଟି କରିବାରେ ସମର୍ଥ ନଥିବା କବିର କବିତା ପାଠକର ଆବୃତ୍ତିରେ ନିହାତି ଖାରିଆଖଡାର ସ୍ୱାଦକୁ ବାରିବା ସାର– ଏକଥାକୁ ମଧ୍ୟ ଅସ୍ୱୀକାର କରାନଯାଇପାରେ। ଏଠାରେ ଋଷୀୟ କବି ମାୟସ୍କୋଭସ୍କିଙ୍କ ମନ୍ତବ୍ୟଙ୍କୁ ସ୍ମରଣ କରାଯାଇପାରେ– ତୁମେ ଭଲ କବିତାକୁ ବୁଝ ବା ନ ବୁଝ ଅଥବା ଏକ ଭାଷାରୁ ଅନୁଦିତ ହୋଇ ଅନ୍ୟ ଭାଷାରେ ରୂପାନ୍ତର ହୋଇଥିବା କବିତାକୁ ପଢ଼ ବା ନ ପଢ଼, ଏପରିକି ଗୋଟିଏ ଧାଡି ସହିତ ମିଶିଥାଅ ବା ନଥାଅ ତଥାପି ଆକସ୍ମିକ ଭାବରେ କବିତାଟିର ଗୋଟିଏ ଅଂଶକୁ ସଫଳ ଆବୃତ୍ତି ହେଉଥିବାର ଶୁଣିବା ମାତ୍ରେ ତୁମ ମନ ସମସ୍ତ ସଦ୍ୟତମ ପ୍ରୟୋଜନକୁ ଛାଡି ତା' ଆଡକୁ ସବିହ୍ୱଳ ଢଳି ପଡିବ ହିଁ ପଡ଼ିବ। ଏଦୃଷ୍ଟିରୁ କବିତାର ଅସଲ ପ୍ରଭାବ ଆବୃତ୍ତିରେ ଥାଏ।

କବି ଅଡେନ୍‌ଙ୍କୁ ସମ୍ମାନ ଦେଇ ମାନିନେବାକୁ ହେବ ଯେ କବିତା ଆବୃତ୍ତି ଏକ ଭାବୋଦୟକ୍ଷମ ମୁଗ୍ଧକରଣ (fascination) ଯାଦୁକଳା। ଭାବ ସମ୍ମୋହନଶୀଳ ଏ ଯାଦୁକଳାକୁ ଆଶ୍ରୟକରି ମନପସନ୍ଦର କବିତାକୁ ପାଠକରି ପାରୁନାହଁ, ତେବେ ପାଠ ନ କର, ତାହାହିଁ ଭଲ। ମାତ୍ର ତାଙ୍କୁ ଆଘାତ ଦେଇ ତା'ର ରୂପାତ୍ମକତାକୁ ଖଣ୍ଡିଆ ଖାବରା କରି ପଢ଼ନାହିଁ। ଏପରିକି ଘରେ ନିରୋଳାରେ ଲାଜକୁଳାଟେ ପରି ମନେମନେ ପଢ଼ିପାର, କିନ୍ତୁ ତାଙ୍କୁ ଯାଦୃଚ୍ଛିକ ଭାବରେ ପଢ଼ି ଅବମାନନା କର ନାହିଁ। କାରଣ ଭଲ କବିତାର ଆବୃତ୍ତି ମାନସିକତା ଭାଙ୍ଗିଗଲେ ଜାତିର ବର୍ତ୍ତମାନ ଓ ଆଗାମୀ ପିଢ଼ି ଅମୂଲ୍ୟ ଜୀବନନିଷ୍ଠ ଉଦାହରଣମାନ ହରେଇ ବସନ୍ତି।

ଶ୍ରୋତାନୁକୂଳ ଓ ଭାବାନୁକୂଳ ଉତ୍ତମ ଆବୃତ୍ତିର କେତୋଟି ଆନୁଷଙ୍ଗିକ ଦିଗ :

- ଗୁରୁତ୍ୱ ନଥାଇ ଓ ଭାବସଂପୃକ୍ତ ନଥାଇ ବେଳେବେଳେ ଗୋଟିଏ ପଙ୍‌କ୍ତିକୁ ବାରମ୍ବାର ଆବୃତ୍ତି କରିବାଦ୍ୱାରା ଅତ୍ୟଧିକ ଚର୍ବଣା ହେତୁ କବିତାର ସ୍ୱପ୍ରକାଶ ସିଦ୍ଧିନଷ୍ଟ ହୋଇଯାଏ।
- ଆବୃତ୍ତି ଜଣାଇଦିଏ କବିର ଭାବପ୍ରକାଶରେ ପଦଦାରିଦ୍ର୍ୟ ରହିଛି ଅଥବା ପଦସଂଘଟନାର ଚମତ୍କାରିତା ଅନକଳ୍ପିତପୂର୍ବ ହୋଇପାରିଛି।
- ଶବ୍ଦମାନେ ଧ୍ୱନିତାନିକ ସଂଯୋଜନାରେ କେତେଦୂର ଚିତ୍ତପ୍ରଲୁବ୍ଧକାରକ ଓ ଭାବ ଉତ୍ପାଦନଶୀଳ ଏହା ଯଥାର୍ଥ ଆବୃତ୍ତିରୁ ଧରାପଡ଼ିଯାଏ।

- ଆବୃତ୍ତି ଜଣାଇଦିଏ କବିର ସର୍ଜନାନୁଭବର ଶବଳତା କେତେ ନୂତନ ଓ ଭାବ ସବଳତା କେତେ ଗଭୀର।
- ଆବୃତ୍ତି କାବ୍ୟିକ ଶବ୍ଦକୁ ରସମଧୁର ଗୁଣରେ ଶ୍ରୋତା ପାଖରେ ବିନିବିଷ୍ଟ ବାସନାରୂପ କରି ତୋଳେ।
- ଆବୃତ୍ତି କବିତା ଭିତରେ ଥିବା ବାକ୍‌ଭଙ୍ଗୀ– କାବ୍ୟଭଙ୍ଗୀ ଓ ପ୍ରଧାନ- ଅପ୍ରଧାନ ଶବ୍ଦଯୋଜନାକୁ ଚିହ୍ନାଇ ଦିଏ ଓ ପରିଷ୍କାର କରି ସେମାନଙ୍କ ବ୍ରହ୍ମତେଜସ୍ ଶକ୍ତିକୁ ଶ୍ରୋତା ନିକଟସ୍ଥ କରିଦିଏ।
- ଭଲ କବିତା ଗଦ୍ୟ ପରି ବଚନ ଯୋଗ୍ୟ ନୁହେଁ; ତା’ ଠାରୁ ଅଧିକ ବଚନାଶ୍ରିତ ଗାନଧର୍ମୀ ଆବୃତ୍ତିଯୋଗ୍ୟ ଓ ଏପ୍ରକାର ବଚନାୟିତ ଆବୃତ୍ତି ପଦ୍ୟାତ୍ମକ ଭାବକୁ ମୂର୍ତ୍ତ ଉଦାହରଣ କରିଦିଏ। ଭାବମୂର୍ତ୍ତିକରଣ ହିଁ ଯଥାର୍ଥ ଆବୃତ୍ତିର ଧର୍ମ।
- ଆବୃତ୍ତି କବିର ହୃଦୟ ସ୍ପନ୍ଦନକୁ ନିଖିଳ ଜନତାର ସ୍ପନ୍ଦନ ସହିତ ମିଶାଇ ଦେବାର ଅବକାଶ ସୃଷ୍ଟି କରେ।
- ଆବୃତ୍ତି ପ୍ରମାଣ କରିଦିଏ କବିର ଶବ୍ଦ କେତେ ନିଅଣ୍ଟିଆ ଏବଂ କେତେ ବିନିର୍ମାଣଧର୍ମୀ ଓ ଭାବୋଚିତ ରମଣୀୟତାରେ ମୁଗ୍ଧକର।
- ଆବୃତ୍ତି ନିର୍ଦ୍ଦିଷ୍ଟ କରିଦିଏ କବିତାରେ ବ୍ୟବହୃତ ଶବ୍ଦ ବାହାରକୁ ନିତିଦିନିଆ ବଚନଭଙ୍ଗୀର ମନେ ହେଉଥିଲେ ବି ପ୍ରକୃତରେ ତାହାର ନବାର୍ଥକରଣର ବିସ୍ମୟକର କାଉଂରୀ ଶକ୍ତି ରହିଛି।

(ସାତ)

ଏବେ ଓଡ଼ିଆ କବିତାର ଆବୃତ୍ତିଧାରା ସହିତ ସଂପୃକ୍ତ ହେବା। ଆମେ ଏବକାଳକୁ ଚାରିଦଶଂଧି ଧରି ପ୍ରବଳ ମାତ୍ରାରେ ବିଶ୍ୱାସ ସ୍ଥାପନ କରିଛୁ ଯେ କବିତା ପ୍ରସାର ପାଇଁ ଆସର ବା କବିତା ପାଠର ମଂଚଟିଏ ଲୋଡା। ଆନୁଷ୍ଠାନିକ ମଂଚ, ସାହିତ୍ୟ ସାଙ୍ଗଠନିକ ମଂଚ, ପତ୍ରିକା ପୃଷ୍ଠପୋଷକତାର ମଂଚ, ବ୍ୟକ୍ତିଗତ କବି ବା ଅନୁରାଗୀଙ୍କ ଆୟୋଜିତ ମଂଚ, ସ୍ମାରକୀ ମଂଚ ଓ ବିଶେଷ ଉତ୍ସବ-ଜୟନ୍ତୀ-ମେଳା-ପ୍ରଦର୍ଶନୀ ଅବକାଶରେ ସୁନିରୂପିତ ମଂଚ କବିତା ଆସର ପାଇଁ ଯଥାସମ୍ଭବ ପ୍ରୋତ୍ସାହନ ଯୋଗାଇଦିଅନ୍ତି। କବିତା ଆସରଗୁଡ଼ିକ ନିମ୍ନପ୍ରକାରେ ପରିଚାଳିତ ହୋଇଥାଏ–

(i) ନିମନ୍ତ୍ରିତ ଓ ପୂର୍ବରୁ ସ୍ଥିରୀକୃତ କବିତା ଆବୃତ୍ତି ଆସର। (ଏଠାରେ କବି ଓ କବିତା ସଂଖ୍ୟା ନିର୍ଦ୍ଦିଷ୍ଟ।)

(ii) ମୁକ୍ତ କବିତା ଆବୃତ୍ତିର ଆସର। (ଆଗ୍ରହୀ କବି କବିତା ପାଠ କରିପାରିବେ)

(iii) ଏକକ କବିସନ୍ଧିକ କବିତା ଆସର। (ନିର୍ଦ୍ଦିଷ୍ଟ ଜଣେ ବା ଖୁବ୍ ବେଶୀରେ ତିନିଜଣ କବିଙ୍କ କବିତା ଆବୃତ୍ତି। ଆବୃତ୍ତିକାର ସ୍ୱୟଂକବି ବା ଅନ୍ୟ ଆବୃତ୍ତିକାରୀ ହୋଇପାରନ୍ତି।)

(iv) ପ୍ରମୁଖ କବି/କବୀଙ୍କ କବିତା ଆବୃତ୍ତି ଆସର– (ପ୍ରତିଷ୍ଠିତ ଓ ପସନ୍ଦ ଅନୁସାରେ ଆମନ୍ତ୍ରିତ କବି କତିପୟଙ୍କ ଦ୍ୱାରା କବିତା ପାଠ ଅଥବା ସେମାନଙ୍କ ନିର୍ବାଚିତ କବିତା ଅନ୍ୟ ଆବୃତ୍ତିକାରଙ୍କ ଦ୍ୱାରା ପାଠ।)

(v) ସ୍ମାରକୀ କବିତା ଆସର– (ନିର୍ଦ୍ଦିଷ୍ଟ କବିଙ୍କ ସ୍ମୃତିରେ, ନିର୍ଦ୍ଦିଷ୍ଟ ପର୍ବପର୍ବାଣୀ, ତିଥି, ଋତୁ, ସ୍ମରଣୀୟ ଘଟଣା ଅବକାଶରେ ଆୟୋଜିତ କବିତା ଆସର।)

ଏକକ କବିତା ଆସରରେ କବି ପୂର୍ବ ସ୍ଥିରୀକୃତ ହୋଇ କବିତା ଆବୃତ୍ତି କରିଥା'ନ୍ତି। କବିତାଟି ରଚନା କରିବାର ଗୋପନ ସନ୍ଧିଟି କବିଙ୍କୁ ଜଣା। କାବ୍ୟ ଉପଲବ୍ଧି ଓ ଅଭିପ୍ରାୟ ଅନୁସାରେ କବି ଶବ୍ଦ ଯୋଜନା କରିଛନ୍ତି। କବିତା ନିର୍ମାଣ କୂଟ ନିଜେ କବି ଜାଣନ୍ତି। କେଉଁ ପ୍ରକାର ପ୍ରୟୋଜନବୋଧ, ଜୀବନ ଘନିଷ୍ଠ ଉପଲବ୍ଧି, ବିସ୍ମୟୋତ୍ପାଦକ ସୌନ୍ଦର୍ଯ୍ୟବୋଧର ସମ୍ମିଳନରୁ ତାଙ୍କ କବିତାଟି ଶ୍ରେଷ୍ଠତମ ବାଙ୍‌ମୟ ଅନୁଭୂତିରେ ପରିଣତ ହେଲା ତାହାକୁ ସେ ହିଁ ଜାଣନ୍ତି। ଅନୁଭୂତିର ସୌନ୍ଦର୍ଯ୍ୟ ଇଙ୍ଗିତଟି ଯାହା କବିର ଏକାନ୍ତ ନିଜସ୍ୱ ତାହାକୁ ସକଳୀକରଣ ଓ ସମୂହର ମୁଗ୍ଧକରଣ ବସ୍ତୁ ପ୍ରତିମାରେ ରୂପାନ୍ତରିତ ଓ ବିତରିତ କରିଦେବାର ଆଗ୍ରହ ପ୍ରବଣତା ଭିତରେ କବି ନିଜର କବିତାକୁ ସ୍ୱରତାନିକ କରି ଆବୃତ୍ତି କରିଥା'ନ୍ତି। ଏ କ୍ଷେତ୍ରରେ କବିଙ୍କ ବଚନ ଅନୁରୂପତାରେ ଆବୃତ୍ତିର ଆରୋହଣ ଓ ଅବରୋହଣ ଯଦି ପାଠକ ଅନ୍ତରରେ ସଂଘଠିତ ନ ହୋଇପାରିଲା ତେବେ କବିତା ଆବୃତ୍ତି କବିସନ୍ଧିର ଉଦ୍ଦେଶ୍ୟକୁ ହାସ୍ୟୋଦ୍‌ଦୀପକ କରି ତୋଳିବାର ସଂଭାବନାକୁ ଏଡାଇ ଦିଆଯାଇନପାରେ।

ବହୁପାଠୀୟ କବିତା ଆସରରେ ଭାବସମଗୋତ୍ରୀ ଓ ଭାବବିଷମଗୋତ୍ରୀ ବହୁ ନିୟତିନିୟମ ବିରୁଦ୍ଧ ସୃଜନକଳ୍ପା କବିସମ୍ମାନସ୍ପଦ ଦ୍ୱିତୀୟ ଈଶ୍ୱରମାନଙ୍କୁ ମେଳିକରି ସେମାନଙ୍କ ସୂକ୍ଷ୍ମ ଐନ୍ଦ୍ରଜାଲିକ ଭାବୁକପଣ ସହିତ ପ୍ରତ୍ୟକ୍ଷ ସମୀଭୂତ ହୋଇ ଶ୍ରୋତାର ଅହୋଭାଗ୍ୟର ଅଭିପ୍ରାୟ ଚରିତାର୍ଥ ହୋଇଥାଏ। ବେଳେବେଳେ ଏପ୍ରକାର କବିତା ଆସରରେ ଅନୁରାଗୀଙ୍କୁ ଲଘୁଆବେଗରେ ଚଳଚଞ୍ଚଳ କରିଦେବାକୁ ଯାଇ କବିଏ ଭାବ ଅପେକ୍ଷା ଶାବ୍ଦିକ ଯାଦୁଖେଳର ଆଶୁ ଭାବବିସ୍ତାର ଧର୍ମୀ ଚମତ୍କାରିତା ଦେଖାଇ କବିତା ଆବୃତ୍ତି କରନ୍ତି। ଆବୃତ୍ତିରେ କଥନିକା, ସଂଳାପଧର୍ମିତା, ସଂଗୀତ ପ୍ରବଣତା ଓ ସଂଭାଷଣଧର୍ମିତା ଅତିମାତ୍ରାରେ ଦେଖାଇଥା'ନ୍ତି। ଏହାଦ୍ୱାରା କବି-କବିତା-ଆବୃତ୍ତି-ଆସର ସବୁ ହାସ୍ୟୋଦୀପକ ଓ ଅତିସାମାନ୍ୟ ହୋଇଉଠେ। ଏଠାରେ ସ୍ମରଣ ରଖିବାକୁ ହେବ ଯେ ଉପରୋକ୍ତ ଅତିମାତ୍ରିକ କବିତା ପାଠଠାରୁ ଆବୃତ୍ତି ଏକ ସ୍ୱତନ୍ତ୍ର ବ୍ୟାଖ୍ୟାନ ସଂକ୍ରିୟା; ଯାହା କବିଠାରୁ କବିର ଭାବସତ୍ତା ଓ ନିର୍ମିତ ସୌନ୍ଦର୍ଯ୍ୟକୁ ବିନିର୍ମାଣ କରି ପାଠକର ହୃଦୟବିତ୍ତରେ ପରିଣତ କରିଦିଏ।

କବିତା କଳ୍ପନାର ଆଦ୍ୟ ସ୍ପନ୍ଦନଟି ସଂପୂର୍ଣ୍ଣ ଭାବରେ କବିର ନିଜସ୍ୱ। ମାତ୍ର କବିତାର ଶୋଭାତିଶାୟୀ କଳେବର ନିର୍ମାଣ ଓ ଏ ନିର୍ମାଣର ଶେଷ ଶବ୍ଦକରଣ ପର୍ଯ୍ୟନ୍ତ ସବୁପ୍ରକାର ଭଙ୍ଗାଗଢ଼ାର ଖେଳ ସାମାଜିକ ଅପରିହାର୍ଯ୍ୟତା, ସାଂସ୍କୃତିକ ବାସନାପଣ, ପାରଂପରିକ ପ୍ରସିଦ୍ଧିର ନବନ୍ୟାୟିକ ରୂପାୟଣ ଓ ମୂଲ୍ୟବୋଧାତ୍ମକ ପ୍ରାସଙ୍ଗିକତା ଅନୁସାରେ ନିର୍ଦ୍ଧାରିତ ହୋଇଥାଏ। ରଚନାର ପ୍ରଥମ ଶୁଭଗବେଳାରେ କବିଙ୍କୁ ଯେଉଁ କମୋଳତମ ଭାବଟି ତରଙ୍ଗାୟିତ କରିଛି, ପ୍ରକାଶରୂପ ଦେବାକୁ ବ୍ୟାକୁଳ କରିଛି ତାହାକୁ ଅଲିଖିତ ପୂର୍ବ ଓ ଅନଦୃଶିତ ପୂର୍ବ କରି କବିତାମୋଦୀଙ୍କୁ ବିନିମୟ ସୂତ୍ରରେ ବାଣ୍ଟିଦେବାର ଏକ ସଶ୍ରଦ୍ଧ ଓ ଶିବ ସଂକଳ୍ପନିଷ୍ଠ ଆଗ୍ରହ କବିର ଥିଲେ ଯାଇ କବିତା ଆବୃତ୍ତି ଭାବ-ସାର୍ବଭୌମତ୍ୱ ସୃଷ୍ଟି କରିପାରିଥାଏ।

ସହଜେ କବିଏ ସ୍ୱାଭିମାନୀ ଓ ପ୍ରଖର ଆତ୍ମାଭିମାନୀ ବ୍ୟକ୍ତିପଣଟିଏ ତାଙ୍କୁ ଆବୋରି ଧରିଥାଏ। ଏମିତି ସତ୍ତାଟିଏ ନ ଥିଲେ ଅସାଧାରଣ ଦୃଷ୍ଟିଭଙ୍ଗୀର କବିମଣିଷଟି ସାଧାରଣ ବସ୍ତୁକାମୀ ମଣିଷଟିଏ ହୋଇ ରହିଥାଏ। ଉଲ୍ଲାସୀ ଊର୍ଦ୍ଧ୍ୱଦର୍ଶୀ କବି ସ୍ୱାଭିମାନବୋଧକୁ ଆବୃତ୍ତି ଆସରରେ ଅନୁରାଗୀଏ ଯେମିତି ସଂଭ୍ରମ ପ୍ରଦର୍ଶନ କରିବା ଉଚିତ ସେହିପରି କବି ସଂଭ୍ରାନ୍ତ ସ୍ୱାଭିମାନରୁ କୋମଳ ସ୍ୱାଭିମାନ ସ୍ତରକୁ ଖସି କବିତା ପାଠକରିବା ଉଚିତ। କାରଣ କବିତାଟିକୁ ରୂପାୟଣ କରିବାରେ କବି ମାନସିକ ସ୍ତରରେ ଯେଉଁ ସୃଷ୍ଟିଶୀଳ ଆନନ୍ଦ ଲାଭ କରିଥିଲେ ତାହାକୁ କବିତାପ୍ରାଣ ଉପଭୋକ୍ତା ଆବୃତ୍ତି ଦ୍ୱାରା ଶୁଣି ଅନୁରୂପ ଆନନ୍ଦ ପାଉ – ଏହି ଉଦ୍ଦେଶ୍ୟର ସଫଳ ସାଧନ ପାଇଁ କବି କୋମଳ ଆବଣ୍ଟନ ସ୍ୱାଭିମାନରେ (ମୋର ସମସ୍ତ ଅନୁଭବ ମୋର ନୁହେଁ, ତମର, ଏଇଦେଲି, ସାଦରେ ଗ୍ରହଣ କର) କବିତା ଆବୃତ୍ତି କରିବା ଉଚିତ। କୋମଳ ବିତରଣର ଆବୃତ୍ତି କବିତା ଅନୁରାଗୀ, କବି ଓ କବିତା ମଧ୍ୟରେ ଏକ ଶିଖରୋନ୍ନିତ ଯୁଗନଦ୍ଧ ଅବସ୍ଥାଟିଏ ସୃଷ୍ଟି କରିଦିଏ। ଏପ୍ରକାର ମିଳନାତ୍ମକ ଗଢ଼ଣ ପ୍ରକ୍ରିୟାରେ ବାଧା ହେଲେ ଆବୃତ୍ତି ନିରର୍ଥକ ହୁଏ। କବିତାର ଭାବପକ୍ଷ ଯେତେ ଉଦାତ୍ତ, ଅନନ୍ୟ/ମହତ୍ତମ/ଆଦି ବିଶେଷଣର ହେଲେ ମଧ୍ୟ ଗ୍ରାହକୀୟ ଶ୍ରଦ୍ଧାଭାଜନ ହେବାରେ ବିଫଳ ହୁଏ। ରମଣୀୟ ଓ ମାନବୀୟ ଆକାଂକ୍ଷା ଚରିତାର୍ଥରେ ସଫଳ କବିତାର ଏକ ଦର୍ଶନଭୂମି–ମନନଭୂମି–ନବନ୍ୟାୟ ବିତରଣର ଭାବଭୂମି ଥାଏ। ସେଥିପାଇଁ ଗୋଟିଏ କବିତା ସମକାଳକୁ ପ୍ରସିଦ୍ଧି ହୋଇ ରହିଥିବା କବିତାକୁ ପୁରୁଣା ଓ ଘଷରା ଘୋଷଣା କରି ପୂର୍ବ କବିତାର ଭାବଦର୍ଶନକୁ ଭାଙ୍ଗି ନୂଆ ନ୍ୟାୟରେ ସମକାଳ ଓ ଆଗାମୀକାଳକୁ ଚେତନାର ଆଲୋକୋପମ ଖିଅଟିଏ ବଢ଼ାଇଦେଇ ନିଜର ଉପାଦେୟତାକୁ ଜାହିର କରେ। ଉପସ୍ଥିତ ଅନୁରାଗୀମାନେ ପୂର୍ବରୁ କବିକଳ୍ପିତ ଓ ସିଦ୍ଧାନ୍ତନିଷ୍ଠ ନବନ୍ୟାୟିକ ଦୃଷ୍ଟିଭଙ୍ଗୀ ସହିତ ଜଡିତ ନୁହଁନ୍ତି। କବିତାର

ନବନ୍ୟାୟ ସହିତ ପାଠଗ୍ରାହକମାନଙ୍କୁ ଯୋଡିଦେବା ପାଇଁ କବିଙ୍କୁ ଶବ୍ଦଶୃଙ୍ଖଳାର ଶୁଦ୍ଧ ସ୍ୱରତାନିକ ଆବୃତ୍ତି କରିବାକୁ ପଡ଼ିଥାଏ। ଆବୃତ୍ତିରେ ଶବ୍ଦ ଉଚ୍ଚାରଣ ଭଙ୍ଗୀ ପରିଚ୍ଛନ୍ନ ସ୍ପଷ୍ଟ ଶ୍ରୁତିଗତ ହେବା ସଙ୍ଗେ ସଙ୍ଗେ ଜଡେଇ ଧରିବାର ଧ୍ୱନିମାତ୍ରିକ ଆରୋହ ଅବରୋହାତ୍ମକ ଉପସ୍ଥାପନା ଚାତୁରୀ ରହିବା ଜରୁରୀ। ଆବୃତ୍ତିକାରୀର ପ୍ରକୃତି ଶାନ୍ତ, ଚାହାଁଣୀ ମିତ୍ରଦୃଷ୍ଟୀୟ, ଅଙ୍ଗଭଙ୍ଗୀ ସଂଯତ, ଓଷ୍ଠ ଶବ୍ଦପ୍ରେରଣରେ ସୁଗଠିତ ଓ ଭାବ ପରିବେଷଣରେ ମୁଖମଣ୍ଡଳ ବିନୀତ ଓ ସଂଯମସଂପନ୍ନ ପରିଦୃଶ୍ୟ ହେବା ଉଚିତ। ଆବୃତ୍ତି କବି, କବିତାଗ୍ରାହକ ଓ କବିତାର ନିତ୍ୟ ଆବେଦନକୁ ପରସ୍ପରର ସନ୍ନିକଟ କରିଦିଏ। ଏଥିପାଇଁ ମରାଠୀକବି ବିନ୍ଦା କରନ୍ଦିକରଙ୍କ କବିତା ଆବୃତ୍ତି ଶୁଣି ତତ୍‌କାଳୀନ ରାଷ୍ଟ୍ରପତି ଅବଦୁଲ୍ କାଲାମ ଅଭିଭାଷଣ ଛଳରେ କହିଥିଲେ ମୁଁ ମରାଠୀ ଭାଷା ଶିଖିପାରିଲେ କରନ୍ଦିକରଙ୍କ ପରି ଆବୃତ୍ତି କେବଳ କରନ୍ତି।

କବିତା ଆସର ଏକ ପରିଶୁଦ୍ଧାତ୍ମକ ନିରବତାର ମଣ୍ଡଳ। ତେଣୁ କବିତା ଆସରରେ ହାସ୍ୟ-ପରିହାସ-କୌତୁକର ସ୍ଥାନନାହିଁ। ଆମ ସମୟର କବିତା ଆସର ଆୟୋଜନ ଅଭିପ୍ରାୟରେ ଶୁଦ୍ଧାତ୍ମକ; ମାତ୍ର ଆବୃତ୍ତି ଅବକାଶରେ ସଂପୂର୍ଣ୍ଣ ନିରବତା ପାଇବାର ସୌଭାଗ୍ୟ ଏଯାବତ୍ ଲାଭ କରିପାରିନାହିଁ। ବିକୃତ, ଅସଙ୍ଗତ, ହାସ୍ୟ ସଂଚାରବିମଳକ ବ୍ୟର୍ଥ-ଆବୃତ୍ତି ଏବେବି କମ୍ ଦେଖିବାକୁ ମିଳେନି। ଏକ ପବିତ୍ର ଶ୍ରୋତାପ୍ରାଣ ଧରି ଆସର-ସମାପ୍ତିକୁ ଅପେକ୍ଷା କରିବା ଓ ନିଜଂଜାଳୀ ମାନସିକ ରୁଚି ନେଇ କବିତାବୃତ୍ତିକୁ ଅନ୍ତରସ୍ଥ କରିବାର ପ୍ରବଣତା ଏବେବି ଆମ କବିତା ଆସରରେ ଏକ ଅଭାବମୟ ଦୃଶ୍ୟ ହୋଇରହିଛି। ଆବୃତ୍ତିରେ ପଠନ ଥାଏ, ଶ୍ରୁତି ସୁଖଦ ଉଚ୍ଚାରଣ ଥାଏ, ଗାନଯୋଗ୍ୟ ଛାନ୍ଦସିକତାର ସ୍ପର୍ଶଥାଏ ଓ ଆଳାପଧର୍ମୀ ବାଚନିକତା ସହିତ ମୂର୍ତ୍ତିମାନ କରିବାର ଚାତୁରୀଥାଏ– ଏପ୍ରକାର ଆବୃତ୍ତି ଐଶ୍ୱର୍ଯ୍ୟ ଆମର ଯେକୌଣସି କବିତା ଆସରରେ ଦଶ ଶତାଂଶରୁ ଊଣା ହୋଇରହିଛି। ପୁନଶ୍ଚ ସାମାଜିକ-ବୃତ୍ତିଗତ-ରାଜନୀତିକ-ପ୍ରଶାସନିକ-ମାନ୍ୟତାରେ କବିତ୍ୱର ପରିମାପ ଘଟି ପ୍ରମୁଖ କବିପଣ ତଦନୁସାରେ କବିତା ଆସରରେ ନିରୂପିତ ହେବାର ଅଭାବିତ ଅବସ୍ଥା ଯେ ଆମ ଆସରୀୟ ଆବୃତ୍ତି ପରଂପରାରେ ବେଶ୍ ଲବ୍ଧକର ଏଥିରେ ଭିନ୍ନମତ କମ୍ ରହିବ। ଅଧିକାଂଶ ଆସରରେ ତଥାକଥିତ ଲବ୍ଧପ୍ରତିଷ୍ଠିତ ମାନ୍ୟତାଧିକାରୀ କବିମାନଙ୍କ ଆବୃତ୍ତିରେ ଏକ ପ୍ରଦର୍ଶନମୁଖୀ ପଣ୍ଡିତମ୍ମନ୍ୟ ବ୍ୟର୍ଥତା ଅଥବା ବାଧ୍ୟ ଆବୃତ୍ତିର ବ୍ୟାକୁଳତା ଗ୍ରାହକୀୟ ଶୀତଳ ଭ୍ରୂକୁଞ୍ଚନ ସୃଷ୍ଟି କରିବାର ଅନିବାରଣୀୟ ଅନୁଭୂତି ଅଚ୍ଛେବହୁତେ ଆମ ଆସରୀଶ୍ରୋତାଙ୍କର ରହିଛି।

ଏସବୁ ଅସଜ ଅନୁଭୂତି ସତ୍ତ୍ୱେ ଆବୃତ୍ତି କବିତାକୁ ସ୍ୱୟଂ ସଂପୂର୍ଣ୍ଣ ସର୍ଜନସିଦ୍ଧି ଦିଏ, ଶ୍ରୋତାଙ୍କୁ ଭାବତରଙ୍ଗରେ ପାର୍ଥିବତାରୁ ଅପାର୍ଥିବ ଦିଗରେ ଭସେଇ ନେଇପାରେ

ଓ କାବ୍ୟିକ ନ୍ୟାୟ ପ୍ରତି ବିଶ୍ୱସ୍ତ କରିଦିଏ ଏପ୍ରକାର ଏକ ଅହିଅ-ଆବୃତ୍ତିର ପରଂପରା ଆମ ଆଧୁନିକ ପଦ୍ୟଧାରାରେ ପ୍ରଗତିଶୀଳ ନହେଲେ ବି ଗତିଶୀଳ ରହିଛି ।

(ଆଠ)

ଆମ ଆବୃତ୍ତି ପରଂପରାର ବିଶେଷତ୍ୱ ସଂପର୍କରେ ଅନୁଶୀଳନ କରିବା ଅବକାଶରେ ନୂତନ ସମୟ ବ୍ୟବସ୍ଥାର ଦାବୀ ଅନୁସାରେ ଆତ୍ମପ୍ରକାଶ କରିଥିବା ନୂତନ କବିତାର ଲକ୍ଷଣ ସଂପର୍କରେ ଆଧୁନିକ କବିତାର ଦ୍ରୋଣାଚାର୍ଯ୍ୟ ସଚ୍ଚିଦାନନ୍ଦଙ୍କ ମନ୍ତବ୍ୟକୁ ଉଦ୍ଧାର କରିବାକୁ ଉଚିତ୍‌ବୋଧ କରାଯାଉଛି । ମନ୍ତବ୍ୟଟି ଏହିପରି– ''ବାକ୍‌ରୀତି ସଙ୍ଗେ କାବ୍ୟିକ ରୀତିର ସମନ୍ୱୟ ଘଟାଇବା ଏବଂ ନୂତନ ଜୀବନର ପ୍ରତିନିଧିତ୍ୱ କରିବା - ଏହାହିଁ ହେଉଛି ନୂତନ କବିତାର ମୂଳମନ୍ତ୍ର । xxx ପଦ୍ୟର ଆବେଗ ସଂଗେ ଗଦ୍ୟର ସୋଜା, ସରଳ, ସାବଲୀଳ ପ୍ରକାଶର ସମ୍ମିଶ୍ରଣ, ଏହାହିଁ ହେଉଚି ଗଦ୍ୟଧର୍ମୀ ନୂତନ କବିତାର ବୈଶିଷ୍ଟ୍ୟ ଓ ଉପଯୋଗର ପ୍ରଧାନ ହେତୁ ।'' ଆଧୁନିକତାର ନୂଆ ନୂଆ ଭାବସୋପାନ ଚଢ଼ି ଆମ ନୂତନ କବିତା ରାଧାନାଥଙ୍କ ଅମିତ୍ରାକ୍ଷରୀ ଛନ୍ଦ ଯୋଜନାଠାରୁ ସବୁଜ ସମକାଳୀନ ମାତ୍ରାବୃତ୍ତିକ ଛାନ୍ଦସିକତା ଦେଇ କ୍ରମଶଃ ମୁକ୍ତଛନ୍ଦ ଓ ଗଦ୍ୟଛନ୍ଦର ଯତିମୁକ୍ତ ମେଳହୀନ ଗଢ଼ଣରେ ଆବିର୍ଭୂତ ହୋଇଆସିଛି । ଧ୍ୱନିମେଳ ବା ଅଂତ୍ୟବର୍ଣ୍ଣର ସ୍ୱରସାମ୍ୟ ଓ ଅକ୍ଷର ମାତ୍ରିକ ଛନ୍ଦଶ୍ରୁତିକୁ ପରିହାର ପରି ସ୍ୱାଧୀନତୋତ୍ତର ପର୍ଯ୍ୟାୟରେ ଅନ୍ତର୍ଛନ୍ଦର ଦ୍ୟୋତନାରେ ଇଙ୍ଗିତ-ଲାଳିତ୍ୟ-ସଂବେଦ୍ୟ-ସ୍ୱଚ୍ଛନ୍ଦର ମିଶ୍ରଛଟାରେ ନୂତନ କବିତା ବିଚକ୍ଷଣ ହୋଇଉଠିଛି । ଶବ୍ଦ ଅଭିଧାରେ ନୁହେଁ ଭାବର ସ୍ୱୟଂ ପ୍ରତୀକାତ୍ମକ ପ୍ରତିନିଧିତ୍ୱ କରୁଛି । ଶବ୍ଦ ବାକ୍‌ଭଙ୍ଗୀକୁ ଅବଲମ୍ବନ କରି ମୂର୍ତ୍ତିବନ୍ତ ଚିତ୍ରରୂପରେ କାବ୍ୟାନୁଭୂତିକୁ ଆକାର ଦେଇ ଛିଡା କରାଇବାରେ ବିନିଯୋଗ ହୋଇଛି । ସକଳ ପ୍ରକାର ଅଭିଧା ଅର୍ଥକାରୀ ସାଧୁ ଓ ପ୍ରସିଦ୍ଧିମୂଳା ଶବ୍ଦ କଥିତ ଶବ୍ଦର କେନ୍ଦ୍ରୀୟ ଶକ୍ତି ଅଧୀନରେ ରହି ବିଭାବନ ଅର୍ଥକାରକ ହୋଇ ନୂତନ କବିତାର ସ୍ଥାପତ୍ୟ ଗଢ଼ଣରେ କେବଳ ସହାୟକ ଭୂମିକା ଗ୍ରହଣ କରିଛି । ଅମେଳ ଶାବ୍ଦିକ ବିନ୍ୟାସ ଭିତରେ ଆଧୁନିକତାର ସମସ୍ତ ବୈପରୀତ୍ୟ, ପରୋକ୍ଷତା (allusion), ପ୍ରତୀକାତ୍ମକ ଭାବାନୁଷଙ୍ଗ (symbolic association of ideas) ଓ ବିରୋଧାଭାସକୁ (paradox) ମିଳାଇ ଦେଉଥିବା କବିତ୍ୱ ଗଦ୍ୟାୟିତ ପଦ୍ୟାବେଦନକୁ କବିତା ସର୍ଜନର ସୂତ୍ର ଭାବରେ ସ୍ୱୀକାର କରିଛି ।

'କାବ୍ୟତା ଧ୍ୱନ୍ୟାତ୍ମକ ପଦମିଳନ ନୁହେଁ, ବରଂ ବଳିଷ୍ଠ ଜୀବନନିଷ୍ଠ ଅନୁଭୂତିର ଉତ୍‌ଥାନ-ପତନଧର୍ମୀ ତାନିକ ଉଚ୍ଚାରଣ'– ଏପ୍ରକାର ବିଶ୍ୱାସ କବିଙ୍କୁ ମୁକ୍ତମନା କରିଦେଇଛି । ମୁକ୍ତଛନ୍ଦ (free-verse) ଅନିୟମିତ ମିତ୍ରାକ୍ଷରୀୟ ତାନିକବୃତ୍ତ (irregular-pitched-metre) ଏବଂ ମିଶ୍ରଛନ୍ଦ (mixed rhythm), ବାଗ୍‌ଛନ୍ଦ (speech rhythm),

ଭାବଛନ୍ଦ (sense rhythm), ବିରତିଛନ୍ଦ (pause rhythm) ଓ ଲୋକଛନ୍ଦ (folk rhythm) ଇତ୍ୟାଦି ପ୍ରଜାତିକ ଗଦ୍ୟଛନ୍ଦର (prose-verse) ସମ୍ମିଶ୍ରଣରେ ଶ୍ରୁତିପ୍ରିୟତା + ଭାବସଂଚାଳନଯୋଗ୍ୟତା + ସାଦୃଶ୍ୟ ପ୍ରଦର୍ଶନକ୍ଷମ ଗମ୍ଭୀରତା + ଆବେଗ ଘନିଷ୍ଠତାର ଏକ ମିଳିତ ବାକ୍‌ଛନ୍ଦ (ଗୀତିଛନ୍ଦନୁହେଁ) କାବ୍ୟସୌଷ୍ଠବର ମୁଖ୍ୟ ଆଧାର ହୋଇପାରିଛି। ଏପ୍ରକାର ବାକ୍‌ଚାତୁରୀ ଗାନ ନହୋଇ ଆବୃତ୍ତିକୁ ସମର୍ଥନ କରିଛି। ଶ୍ରୋତା/କାବ୍ୟ ଭାବଗ୍ରାହକ ପାଖରେ ଏକ ପରିଚ୍ଛନ୍ନ ଓ ପ୍ରବୋଧିତ ବସ୍ତୁରୂପକଳ୍ପୀୟ ଆବେଦନ ଆବୃତ୍ତି ସୃଷ୍ଟି କରିପାରିଛି। ଆବୃତ୍ତି କାବ୍ୟାଗ୍ରାହୀ ଶ୍ରୋତାଠାରେ ଦୈହିକ ଅନୁଭବ > ମାନସିକ ଅନୁଭବ > ରୂପାତ୍ମକ ଅନୁଭବ <physical sense> psychic sence > objective sense) ଦେଇ କାବ୍ୟାଭିପ୍ରାୟକୁ ବିସ୍ତାରିତ କରୁଛି। ଏ କାରଣରୁ ମାତ୍ରିକ ବୃତ୍ତ, ପୟାରାଶ୍ରିତ ଛନ୍ଦ, ବାକ୍‌ଛନ୍ଦ, ମିଶ୍ରିତ ବାକ୍‌ଛନ୍ଦ, ଗଦ୍ୟଛନ୍ଦବୃତ୍ତି ଓ ଗଦ୍ୟାୟିତ ମୁକ୍ତଛନ୍ଦ ମଧ୍ୟରେ ଭୀମ-ରାଧାନାଥ-ମଧୁସୂଦନ-ଗଙ୍ଗାଧରଙ୍କ ସମୟରୁ ଏଯାବତ୍ ଓଡ଼ିଆ କବିତା ଗାନ ବା ପାଠ ଅପେକ୍ଷା ଆବୃତ୍ତିଗତ ସୌଭାଗ୍ୟ କାମନା କରି ଆସିଛି। ଆବୃତ୍ତି ଦେଇ ଆଧୁନିକ କବିଏ ଭାବବୈଚିତ୍ର୍ୟର ଅବତାରଣା ଓ ପାଠମୋଦୀଙ୍କ ହୃଦୟରେ କାବ୍ୟାନୁଭୂତିର ଅବତରଣ କରାଇ ପାରିଛନ୍ତି।

ଭୀମଭୋଇଙ୍କ ସ୍ତୁତି ଚିନ୍ତାମଣିର ୧୦୦ଟି ବୋଲି ଅଲେଖ ସଂପ୍ରଦାୟୀଙ୍କ ପାଠ ଗୀତ ଭାବରେ ଗାନ ହୋଇ ଆସୁଥିଲେବି ଏସବୁର ଅନ୍ତଃରୀଣ ଭାବଦ୍ୟୋତନାର ରହସ୍ୟ ଯଥାର୍ଥରେ ଆବୃତ୍ତି ଦ୍ୱାରା ଉନ୍ମୋଚିତ ହୋଇପାରୁଛି– ଏହାକୁ ବିଗତ ୮୦ବର୍ଷ ଧରି ଆମର ଭାଷଣ ସାହିତ୍ୟ-ପରଂପରା ପ୍ରମାଣିତ କରିଛି। 'ମହାଯାତ୍ରା'ରେ ରାଧାନାଥଙ୍କ ଅମିତ୍ରାକ୍ଷରୀଛନ୍ଦ, କୃଷକସଂଗୀତାରେ ଗଙ୍ଗାଧରଙ୍କ କଥିତ ଶବ୍ଦ ସ୍ୱଚ୍ଛନ୍ଦତା ଓ ଅର୍ଘ୍ୟଥାଳୀରେ ମିତ୍ରାକ୍ଷରୀମେଳ ସହିତ ମଧୁସୂଦନ-ଫକୀରମୋହନଙ୍କ ସନେଟ୍‌ଗୁଡିକରେ ଅନୁସୃତ ଏକାନ୍ତର ମିତ୍ରାକ୍ଷର (ପ୍ରଥମ ସହିତ ତୃତୀୟ ଓ ଦ୍ୱିତୀୟ ସହିତ ଚତୁର୍ଥ ପାଦର ପ୍ରାନ୍ତମେଳ) ଯୋଜନା ଓଡିଆ କବିତାକୁ ସାଂଗୀତିକ ପାଠଧାରା ଠାରୁ ବିଚ୍ୟୁତ କରି କ୍ରମଶଃ ଆବୃତ୍ତିମୁଖୀ କରିଛି। ଅନୁରୂପ ଭାବରେ ରାଧାନାଥଙ୍କ ଚିଲିକା ଓ ଦରବାରରେ ପାରଂପରିକ ଛନ୍ଦ ବ୍ୟବହୃତ ହୋଇଥିଲେ ବି ଏହାର ପଦ୍ୟାତ୍ମକ ବିନ୍ୟାସରେ ଥିବା ଉପଧାମିଳନ ଓ ବକ୍ତବ୍ୟଧର୍ମୀ ପଦଶୃଙ୍ଖଳା ପାଠକକୁ ଗାଇବା ଅପେକ୍ଷା ଶୀତଳତା–ମଧୁରତା–ଉଷ୍ମତା ଗୁଣରେ ଆବୃତ୍ତି କରିବାକୁ ଉସ୍କାଇଥାଏ। ଲକ୍ଷ୍ମୀକାନ୍ତଙ୍କ 'ଶାନ୍ତିଧାମନିବାସୀ' କବିତାରୁ (୧୯୦୯) ଗୁରୁଲଘୁ ସ୍ୱର ସମ୍ବଳିତ ଆଧୁନିକ ମାତ୍ରାବୃତ୍ତିକ ଛନ୍ଦର ବ୍ୟବହାର ଓଡିଆ କବିତାକୁ ନୂତନ ଶିଳ୍ପକୌଶଳ ମଣ୍ଡିତ କରିଦେଇଛି। କବିତାର ପ୍ରତିଟି ପଙ୍‌କ୍ତି ଅମିତ୍ରାକ୍ଷରୀୟ, ମାତ୍ର ପ୍ରତିପାଦରେ ଅନ୍ତର୍ଯତି ବା ପର୍ବଗଠନ ଏହି ଶିଳ୍ପକୌଶଳର ବିଶେଷତ୍ୱ।

ଚତୁର୍ମାତ୍ରିକ, ପଞ୍ଚମାତ୍ରିକ, ଷାଣ୍ମାତ୍ରିକ ଓ ସପ୍ତମାତ୍ରିକ ପର୍ବବିଧାନକୁ ମାନି ପଙ୍‌କ୍ତିଗତ ଅକ୍ଷରରେ (ଅମେଳ/ସମେଳ) ଗୁରୁଲଘୁ ତାନିକ ସ୍ୱରାଘାତ କରି ସଂଗୀତର ଏକ ଅନ୍ତର୍ପ୍ରବାହମାନତା ସୃଷ୍ଟି କରିବା ମାତ୍ରାବୃତ୍ତ ଛନ୍ଦର ବିଶେଷତ୍ୱ। ଏହି ପର୍ବବିନ୍ୟାସ କବିତାକୁ ଗାନ କରିବାର ଧାରାରୁ ବିଚ୍ଛିନ୍ନ କରି ଆବୃତ୍ତି-ଆବେଗିକ-ତୀବ୍ରତା ପ୍ରଦାନ କରିଛି। ପର୍ବବିନ୍ୟାସ ହେତୁ ଅସମପଙ୍‌କ୍ତିକ ହୋଇ ବି ମାତ୍ରାବୃତ୍ତୀୟ କବିତା ଆବୃତ୍ତି ଯୋଗ୍ୟତାରୁ ଶ୍ରୋତା ଅନ୍ତରରେ ଢ଼େଉ ଉଠାଏ ଓ ଭାବର ନାନ୍ଦନିକ ଅଭିନିବେଶରେ ଶ୍ରୋତାକୁ ବାଂଧିରଖେ। ପଦ୍ମଚରଣ, ନାରାୟଣ ମୋହନ, ନନ୍ଦକିଶୋର, ସଚୀନ୍ଦ୍ରନାଥ, ଗୋପବଂଧୁ, ଗୋଦାବରୀଶ, କୃଷ୍ଣମୋହନ, କୁନ୍ତଳାକୁମାରୀ, ଅନ୍ନଦାଶଙ୍କର, କାଳିନ୍ଦୀଚରଣ, ବୈକୁଣ୍ଠନାଥ, ମାୟାଧର, ରାଧାମୋହନ, କୃଷ୍ଣଚନ୍ଦ୍ର, ବିନୋଦ, ହରିଶ୍ଚନ୍ଦ୍ର; ଏପରିକି ପଲ୍ଲିଶ୍ରୀ ଓ ବାଜିରାଉତର କବି ସଚ୍ଚିଦାନନ୍ଦ ପ୍ରମୁଖ କବିତାର ଅନ୍ତସ୍ୱରୀୟ ପାର୍ବିକ ଶୃଙ୍ଖଳା ପାଇଁ ଆବୃତ୍ତି ସୌନ୍ଦର୍ଯ୍ୟ ସଂପାଦନଧର୍ମୀ ମାତ୍ରାବୃତ୍ତଛନ୍ଦର ବ୍ୟବହାର କରିଛନ୍ତି। ମାୟାଧରରେ ଶ୍ଳଥବନ୍ଧ ସନେଟ୍ ଆବୃତ୍ତିକୁ ବିଲକ୍ଷଣ ବୈଶିଷ୍ଟ୍ୟରେ ବିମଣ୍ଡିତ କରିଛନ୍ତି। ଲକ୍ଷ୍ମୀକାନ୍ତ ବିଶ୍ୱାସ କରୁଥିଲେ– ସଫଳ ଆବୃତ୍ତିଦ୍ୱାରା ମାତ୍ରାବୃତ୍ତିକ କବିତାର ବାହ୍ୟସୌନ୍ଦର୍ଯ୍ୟ ଯେତିକି ଚକଚକ ହୁଏ, ତାହାର ଅନ୍ତଃସୌନ୍ଦର୍ଯ୍ୟ ସେତିକି ତୀବ୍ରତାର ସହିତ ପାଠକର ହୃଦୟକୁ ସ୍ପନ୍ଦନମୁଖର କରିଦିଏ।

୧୯୧୬ ମସିହାରେ ରବୀନ୍ଦ୍ରନାଥ ମାତ୍ରିକଛନ୍ଦର ବନ୍ଧନରୁ କବିତାକୁ ବିମୁକ୍ତି ଦେଇ ମୁକ୍ତଛନ୍ଦର ପ୍ରୟୋଗ ପ୍ରଥମେ କରିଛନ୍ତି। ମୁକ୍ତଛନ୍ଦରେ କବିତା ରଚନା କରିବା ଓ ତା'ର କଳାମାତ୍ରିକ ଆବୃତ୍ତି କରିବା ମଧ୍ୟରେ କବିତାର ସଫଳ ସଂଚାର ସାଧନ ହୋଇଥାଏ। ତାନିକ ଆବୃତ୍ତି ଶ୍ରୋତା ହୃଦୟରେ ଭାବସ୍ପନ୍ଦନ ସୃଷ୍ଟି କରିଥାଏ। ଏଥିପାଇଁ ମୁକ୍ତଛନ୍ଦର ଆଦି ପ୍ରବର୍ତ୍ତକ ଜର୍ମାନୀ କବି କ୍ଲପଷ୍ଟକ୍ ଆବୃତ୍ତିକୁ ଦୋଳନ ପ୍ରକ୍ରିୟା ଭାବରେ ଅଭିହିତ କରିଛନ୍ତି। ମୁକ୍ତଛନ୍ଦ ପ୍ରୟୋଗ ଦ୍ୱାରା ଅକ୍ଷରମାତ୍ରିକ ଗାନଧର୍ମ କବିତାରୁ ବିଦାୟ ନେଇଛି ଓ କବିତାର ପଦବୃତ୍ତି ଧ୍ୱନି ବିନ୍ୟାସର କଳାବୃତ୍ତି ମଧ୍ୟରେ (moric style) ଆରୋହ > ଅବରୋହ ଧର୍ମରେ 'ଗତି' କରିଛି। ଆବୃତ୍ତି କବିତାର ଗତିଧର୍ମ ସହିତ ଜଡିତ। ରବୀନ୍ଦ୍ର କବିତାର ସଂସ୍ପର୍ଶରେ ଆସି ଓ ଇଂରେଜୀ ରୋମାଣ୍ଟିକ୍, ପ୍ରତୀକବାଦୀ ଓ ଚିତ୍ରକଳ୍ପବାଦୀ କବିଙ୍କୁ ପାଠକରି ଓଡ଼ିଆ କବିଏ ପ୍ରଥମେ ମାତ୍ରାବୃତ୍ତ ଛନ୍ଦ, ପରେ ମୁକ୍ତଛନ୍ଦ ଓ ବାକ୍‌ଛନ୍ଦ ବା ଗଦ୍ୟଛନ୍ଦ ପ୍ରୟୋଗରେ ଉନ୍ମନା ହୋଇଉଠିଛନ୍ତି। ଫଳତଃ ଆଧୁନିକ ଓଡ଼ିଆ କବିତାରେ ପଦବୃତ୍ତ (syllabic verse), ରୁଦ୍ଧ ଓ ଯୁକ୍ତ ପଦସଂପନ୍ନ ସରଳ ଓ ମିଶ୍ର କଳାମାତ୍ରିକ ମୁକ୍ତ ଛନ୍ଦ (simple and mixed moric free verse) ପ୍ରଚୁର ପ୍ରଚଳନ ଘଟିଛି। ଏପ୍ରକାର ଛନ୍ଦ ବ୍ୟବସ୍ଥାରେ ଗେୟଧର୍ମୀ ସ୍ପନ୍ଦନ ଓ ଧ୍ୱନିମୂର୍ଚ୍ଛନା ସୃଷ୍ଟିକରି

କବିତାର ବିତରଣକୁ ଭାବ ଉତ୍ତେଜକଧର୍ମୀ ଆବୃତ୍ତି ଅବଲମ୍ବିତ କରିଦିଆଯାଇଛି । ୧୯୨୫ ପର୍ଯ୍ୟନ୍ତ ମାତାବୃତ୍ତ ଛନ୍ଦର ପ୍ରସାର ଓ ପରେ ମୁକ୍ତଛନ୍ଦର ଆଦର ଘଟିଛି ଓ ୧୯୩୧ ମସିହା ବେଳକୁ ଏହି ନବୀନ ମୁକ୍ତ ଛନ୍ଦରୁ ଗଦ୍ୟଛନ୍ଦର ଜନ୍ମଜାତକ ସଂଭବ ହୋଇଛି । ୧୯୪୫ ପରେ ପରେ ଆମ କବିତା ମୁକ୍ତପଦର ଗଦ୍ୟଛନ୍ଦରେ ବିସ୍ତାରିତ ହୋଇଉଠିଛି ଏବଂ କବିତାପୂର୍ଣ୍ଣ ଆବୃତ୍ତିକକ୍ଷ ହୋଇଉଠିଛି । ଓଡ଼ିଆ କବିତାରେ ନାରାୟଣ ମୋହନ ଓ କାଳିନ୍ଦୀଚରଣ 'ପୁନଃ ତାଜମହଲ' ଓ 'ପୁରୀ ମନ୍ଦିର' କବିତାରେ (ଉତ୍କଳସାହିତ୍ୟ-୨୯/୧୧, ୩୦/୧୨-୧୯୨୬-୨୭) ମୁକ୍ତଛନ୍ଦର ବ୍ୟବହାର ପ୍ରଥମେ କରିଛନ୍ତି । ଏ ଦୁଇଟି କବିତା ଓଡ଼ିଆ କବିତାଧାରାରେ ତଥାପି ଗେୟାତ୍ମକ ତାରଲ୍ୟକୁ ମାନିରଖିଥିବା ମାନସିକତାକୁ ନିଶ୍ଚିହ୍ନ କରିଦେଇଛନ୍ତି । କବିତାରେ ଅନ୍ତସଂଚାରୀ ବାକ୍‌ଭଙ୍ଗୀର (oratory-pattern) ଗୁରୁତ୍ୱ ବଢ଼ିଛି । ଆବୃତ୍ତି ହୋଇଛି କବିତାପାଠର ଅବଲମ୍ବନ । ୧୯୩୦ରୁ ୧୯୫୦ ମସିହା ମଧ୍ୟରେ କବିତା ଆବୃତ୍ତି ଦ୍ୱିବିଧ ପ୍ରଭାବ ସଂଚାରୀ ଗୁଣରେ ପ୍ରସାର ଲାଭ କରିଛି । ସଚ୍ଚିଦାନନ୍ଦଙ୍କ 'ଛୋଟ ମୋ ଗାଁଟି', 'ପ୍ରତିମାନାୟକ', ବୈକୁଣ୍ଠଙ୍କ 'ଅମ୍ୱାପାଳୀର ଉତ୍କଣ୍ଠା', 'କିସାଗୌତମୀ', 'ଯାତ୍ରାସଂଗୀତ', କାଳିନ୍ଦୀଙ୍କ 'ମନେନାହିଁ', 'ପ୍ରତିମା', ଗୋଦାବରୀଶ ମହାପାତ୍ରଙ୍କ 'ସେ କେତେଦୂର' ମାୟାଧରଙ୍କ 'ଦେବପୂଜା, ମହାନଦୀରେ ଜ୍ୟୋସ୍ନାବିହାର, ଧରାବତରଣ, ଏଇ ସହକାର ତଳେ' ରାଧାମୋହନଙ୍କ ଅପଥଗାମୀ, କବିହେବା ପାଇଁ ବାସନାମୋର, ମାଟି, ମୌସୁମୀ, ଅଗ୍ନିପୃଥ୍ୱୀ ଆଦି କବିତାର ତାନମାତ୍ରିକ ମୁକ୍ତଯୋଜନା ଆମ କବିତାର ଆବୃତ୍ତିଧାରାକୁ ଅହିଅ ରମଣୀର କୋମଳ ତାଗିଦ୍‌ର ବାଚନିକ ମାଧୁର୍ଯ୍ୟ ପରି ପ୍ରଭାବ ସଂଚାରୀ କରିଦେଇଛି । ଅନ୍ୟପକ୍ଷରେ ଗୋଦାବରୀଶ ମହାପାତ୍ର, ମନମୋହନ ମିଶ୍ର, ଅନନ୍ତ ପଟ୍ଟନାୟକ, ବୀରକିଶୋର, କୃଷ୍ଣଚନ୍ଦ୍ର ଓ ସଚ୍ଚିଦାନନ୍ଦ ପ୍ରମୁଖ କବି (ଉଠକଙ୍କାଳ, ଝରରେ ରୁଧିର, ବାଜିରାଉତ, ବାର୍ତ୍ତା, ମାଟିର ମଣିଷ ଇତ୍ୟାଦି କବିତା) ଗୁରୁତାନିକ ଓ ଦୀର୍ଘତାନିକ ପୁରୁଷାକାରୀୟ ଶାବ୍ଦିକ ବ୍ୟବସ୍ଥା ଭିତରେ କବିତା ରଚନା କରି ଏହିସବୁ ଆବୃତ୍ତିରେ ଉଦ୍‌ବୋଧନ ପ୍ରବଣ ଗାମ୍ଭୀର୍ଯ୍ୟ ସୃଷ୍ଟିପାଇଁ ଅନୁକୂଳ ପରିବେଶ ନିର୍ମାଣ କରିଦେଇଛନ୍ତି । ୧୯୫୦ ମସିହା ଭିତରେ ଯେଉଁ କବିମାନେ ଶ୍ରୋତା ମାନସରେ ଯଥାଯଥ ଆବୃତ୍ତି ପାଇଁ ସ୍ୱତନ୍ତ୍ର ଆଦରର ଆସନ ଜମେଇ ପାରିଥିଲେ ସେମାନଙ୍କ ମଧ୍ୟରେ ଲକ୍ଷ୍ମୀକାନ୍ତ, ମନମୋହନ, ଗୋଦାବରୀଶ ଓ ଅନନ୍ତଙ୍କ ନାମ ପ୍ରଥମେ ସ୍ମରଣକୁ ଆସିଯାଏ । ମନମୋହନଙ୍କ କବିତା ଆବୃତ୍ତି ସଂପର୍କରେଏକ ଦୂରଦର୍ଶନ ସାକ୍ଷାତ୍‌କାରରେ ଜନୈକ ୮୦ ବର୍ଷର ବୃଦ୍ଧ ସ୍ମରଣ କରି କହିଥିବା ବକ୍ତବ୍ୟଟିକୁ ଅବିକଳ ଏଠାରେ ଉଦ୍ଧାର କରାଗଲା- ''ତାଙ୍କ ତୁଣ୍ଡରୁ ତାଙ୍କ କବିତାର (ମନମୋହନଙ୍କ ତୁଣ୍ଡର କବିତା) ଗୁରୁଗମ୍ଭୀର ଧାଡିଗୁଡ଼ିକ ବୋଲା ହେବାର (ଆବୃତ୍ତି ଅର୍ଥରେ) ଶୁଣିବାମାତ୍ରେ

ଆମପରି ସେକାଳର ଯୁବକ ତ ଛାର, ସତୁରୀବର୍ଷର ବୁଢ଼ା ବି ଗଜାଟୋକାଙ୍କ ପରି ବିପ୍ଳବୀଙ୍କ ଧାଡି ଆଗରେ ଗୀତର ପାଳିଧରି ଚାଲୁଥିଲେ। ଲୋକେ କୁହନ୍ତି ମିଶ୍ରଙ୍କ କବିତା ଶୁଣି ହଡା ବଳଦ ବି ଦାମୁଡି ପରି ଗାଡି ଟାଣିବ।'' ଏଥିରୁ ଗୋଟିଏ କଥା ସ୍ପଷ୍ଟ ମାନିନେବା ଯେ ସଂଗୀତ ପ୍ରବଣ ଓଡ଼ିଆ ଜାତି ସମୟ ସହିତ ତାଳଦେଇ ୧୯୪୦ ବେଳକୁ କବିତା ଆବୃତ୍ତିକୁ ଆଦର କରିଛି। ସାମ୍ରାଜ୍ୟବାଦୀ ଜୁଆଳିରେ ଯୋଚା ଯାଇଥିବା ଏକ ବିଶାଳ ଐତିହ୍ୟବାଦୀ ଅଥଚ ନିରସ୍ତ୍ର ଅସହାୟ ହୋଇଥିବା ଜାତିଟିକୁ ମନମୋହନଙ୍କ କବିତା ଆବୃତ୍ତି ମହାଜାଗୃତିର ମନ୍ତ୍ର ଶୁଣାଇଛି।

୧୯୪୦ ପରେ ପାଣ୍ଡୁଲିପି ଓ ନୂତନ କବିତା (ସଚ୍ଚିଦାନନ୍ଦ/ଗୁରୁପ୍ରସାଦ+ଭାନୁଜୀ ଲିଖିତ କବିତା ଗ୍ରନ୍ଥ) ଆତ୍ମ ପ୍ରକାଶ କରିବା ବେଳକୁ ଅନ୍ତଃରୀଣ ଛାନ୍ଦସିକ ଶୈଳୀରେ ଆବୃତ୍ତିଯୋଗ୍ୟ କବିତା ତିଆରି ଆରମ୍ଭ ହୋଇଯାଇଛି। ସଚ୍ଚିଦାନନ୍ଦଙ୍କ ଦ୍ୱାରା ପ୍ରବର୍ତ୍ତିତ ଓଡ଼ିଆ ବାଗ୍‌ଛନ୍ଦ କ୍ରମଶଃ ଗୁରୁପ୍ରସାଦଙ୍କ ଶବ୍ଦବିନ୍ୟାସର ଅନ୍ତର୍ଛନ୍ଦୀୟ ଧାବମାନତାଗୁଣକୁ ଆଶ୍ରୟକରି ୧୯୫୫ରୁ ୧୯୭୫ ମସିହା ମଧ୍ୟରେ ଗଦ୍ୟଛନ୍ଦର ପ୍ରସାର ସାଧନ କରାଇଛି। ପ୍ରାନ୍ତମିଳନ ବିଚ୍ୟୁତ ଗଦ୍ୟାତ୍ମକ ପଦ୍ୟ, ଉପାନ୍ତ୍ୟ ଧ୍ୱନିମିଳନାତ୍ମକ ବିଷମ ଅକ୍ଷରବିଶିଷ୍ଟ ବାର୍ଣ୍ଣିକଯୋଜନା ସମତାନୀୟ, ସମତାଳୀୟ ଓ ସମରୀତିକ ଶବ୍ଦର ଧ୍ୱନ୍ୟାତ୍ମକ ମଧ୍ୟବର୍ତ୍ତୀ ମିଳନ ଓ ଲୋକ ଉପାଦାନୀୟ (ରୂଢ଼ି, ପ୍ରବାଦ, ପ୍ରବଚନ, ଲକ୍ଷଣାବଚନ, ଲୋକଗୀତାଂଶ) ବଚନବିନ୍ୟାସ ଭିତ୍ତିରେ ସଚ୍ଚିଦାନନ୍ଦ, ଗୁରୁପ୍ରସାଦ, ଭାନୁଜୀ, ରମାକାନ୍ତ, ସୀତାକାନ୍ତ, ସୌଭାଗ୍ୟ, ଦୀପକ, କମଳାକାନ୍ତ, ବିବେକ, ରାଜେନ୍ଦ୍ର, ପ୍ରସନ୍ନ, ହରପ୍ରସାଦ, ପ୍ରତିଭା, ମମତା, ନିତ୍ୟାନନ୍ଦ, ପ୍ରମୋଦ, ବଂଶୀଧର, ଉମାଶଙ୍କର, ହୃଷିକେଶ, ଆଶୁତୋଷ ଓ ଶତ୍ରୁଘ୍ନ ପ୍ରମୁଖଙ୍କ କାବ୍ୟତାର ଅନ୍ତରୀଣ ଛନ୍ଦଗତି ମୁଖ୍ୟତଃ ଗଦ୍ୟାୟିତ ଛନ୍ଦର ନିଦର୍ଶନ। ଏ ଗଦ୍ୟାୟିତ ଛନ୍ଦ ସଂପୂର୍ଣ୍ଣ ଆବୃତ୍ତି ଲୋଡେ। ଏପରିକି ସବୁଜଧାରା ପର୍ଯ୍ୟନ୍ତ ଅନୁସୃତ ଆମ ମାତ୍ରାବୃତ୍ତିକ ଓ କଳାମାତ୍ରିକ ଛନ୍ଦର କବିତାବୃତ୍ତିଠାରୁ ଅଲଗା ହୋଇ ଏହା ସ୍ୱତନ୍ତ୍ର ରୀତିରେ ଗୁରୁ ଲଘୁ ବାଚନିକତାରେ ଉଚ୍ଚାରଣ ହେବାକୁ ଦାବୀକରେ। ପ୍ରାଚୀନ ମଧ୍ୟଯୁଗୀୟ କବିତାଠାରୁ ସବୁଜଧାରାର କବିତା ପର୍ଯ୍ୟନ୍ତ କଳାମାତ୍ରିକ ବୃତ୍ତିଛନ୍ଦ/ମୁକ୍ତଛନ୍ଦ/ମାତ୍ରାବୃତ୍ତଛନ୍ଦ ପ୍ରତ୍ୟେକ ଶ୍ରୁତିପ୍ରିୟତା ଆଶାରେ ଗାନ ହୋଇଥା'ନ୍ତି। ଗାନବୃତ୍ତିରେ ଯତିପାତ ଶବ୍ଦର ଆଦ୍ୟରେ ମଧ୍ୟରେ ବି ବିଶ୍ରାମ ଖୋଜୁଥିବାରୁ ଶବ୍ଦ ସ୍ପଷ୍ଟ ହୁଅନ୍ତି ନାହିଁ। ଗୀତାତ୍ମକ ଗାନ ପରେ ବାଚନିକ ଆବୃତ୍ତି କରାଯାଇ କବିତାର ଗଦ୍ୟାନ୍ୱୟ ଦେଇ ଭାବାର୍ଥବୋଧକରଣ ଘଟିଥାଏ। ଇଂରେଜୀ କବିତାରେ ମଧ୍ୟ ଗେୟପ୍ରଧାନ ବର୍ଣ୍ଣମାତ୍ରିକ କବିତାର ଶବ୍ଦାର୍ଥ ଅସ୍ପଷ୍ଟତାକୁ ଲକ୍ଷ୍ୟକରି ଆଇଜାକ୍ ସିଙ୍ଗର ଅନ୍ତଃଧର୍ମୀ ଗୀତିଗୁଣର ଗଦ୍ୟଛନ୍ଦକୁ ସମ୍ବେଦନଶୀଳ କାବ୍ୟାନୁଭୂତିର ସରସ-ସୁନ୍ଦର ଅଭିବ୍ୟକ୍ତି ପାଇଁ ଉତ୍ତମ ମାଧ୍ୟମ ଭାବରେ ଗ୍ରହଣ କରିଛନ୍ତି।

ତାଙ୍କ ମତରେ ଗଦ୍ୟଛନ୍ଦ ଦ୍ୱାରା କବିତାର ଆବୃତ୍ତିଗତ ସଂଚାର (Soloistic communication) ଘଟିଥାଏ। ଜୀବନାନନ୍ଦ ଓ ରାମପ୍ରସାଦ ଯେପରି ବଙ୍ଗଳା କବିତାର ପ୍ରକରଣକୁ ପ୍ରାତ୍ୟହିକ ବାଚନିକ ଭାଷାର ଆଟୋପରେ ଋଦ୍ଧିମନ୍ତ କରିଛନ୍ତି ସେହିପରି ସଚ୍ଚିଦାନନ୍ଦ ଓ ସଚ୍ଚିଦାନନ୍ଦ ଅନୁଗାମୀ କବିବୃନ୍ଦ ଆମ କାବ୍ୟତାରେ ଗଣବଚନକୁ ପ୍ରାଧାନ୍ୟ ଦେଇଛନ୍ତି। ଓଡ଼ିଆ କଥିତ ଭାଷାର କ୍ରିୟାପଦ, ଅବ୍ୟୟ, ବିଶେଷ୍ୟ, ବିଶେଷଣ ଓ ସର୍ବନାମାଦି ଗଣପଦଗୁଡ଼ିକ ଭିତରେ ଲୁଚି ରହିଥିବା ରୂପକ- ବିକୀର୍ଣ୍ଣ-ଶକ୍ତିମତ୍ତାକୁ କ୍ରମଶଃ କାବ୍ୟ ଗଢ଼ଣରେ ବିନିଯୋଗ କରାଯାଇଛି। ଏସବୁ ସତ୍ତ୍ୱେ ୧୯୫୦ ପରେ ଆବୃତ୍ତି ଆସର ବଢ଼ିଛି, ଆବୃତ୍ତିପାଇଁ କବିତା ମଂଚରେ କୋଳାହଳ ଓ ଆଗ୍ରହ ବଢ଼ିଛି; କିନ୍ତୁ ଆବୃତ୍ତିର ସଂଚାରିତ ବଳ ଯେପରି ଶ୍ରୋତାକୁ ପ୍ରଣୋଦିତ କରିବା କଥା ସେପରି କରିପାରି ନାହିଁ। ଏହାର କାରଣ ଓଡ଼ିଆ କବିଏ ଗୋଟାପଣେ ସଫଳ ବୁଦ୍ଧିଜୀବୀ ଭାବରେ ଶିକ୍ଷିତ ଅନୁକାରୀ ଗୁଣରେ ପ୍ରତିବେଶୀ ସାହିତ୍ୟ ଓ ପାଶ୍ଚାତ୍ୟ କବିତା ଅନୁରୂପ ମୁକ୍ତଛନ୍ଦୀୟ/ ଗଦ୍ୟଛନ୍ଦୀୟ/ଅନ୍ତର୍ଛନ୍ଦୀୟ (Interim rhyme) କବିତା ଲେଖିପାରିଲେ; ମାତ୍ର ବଚନପ୍ରବଣ ହୋଇ ଆବୃତ୍ତି କରିବାର କୌଶଳ ଓ ତାଲିମ ପାଇପାରିଲେ ନାହିଁ। ଓଡ଼ିଆ ପାଠକ ଓ ପେଷାଦାର ଆବୃତ୍ତିକାରୀ ଏପରି ସ୍ଥଳରେ ସର୍ବନିମ୍ନ ସଂଖ୍ୟାଲଘୁ ହେବା ହିଁ ସାର। ଫଳରେ ଗଦ୍ୟାୟିତ ଛନ୍ଦପ୍ରବଣ କବିତା ଆବୃତ୍ତିର ସୁପରିକଳ୍ପିତ ଆସରଗୁଡ଼ିକ ମୁଷ୍ଟିମେୟ ବୁଦ୍ଧିବାଦୀ ସ୍ତରରେ ସୀମାବଦ୍ଧ ରହିଛି। ଗଦ୍ୟାୟିତ ବାକ୍‌ଛନ୍ଦରେ କବିତାର ପରିପ୍ରକାଶ ଓ ତାହାର ଆବୃତ୍ତିଜନିତ ପ୍ରସାର ସାଧାରଣଙ୍କ ଆସରକୁ ଆସିପାରି ନାହିଁ। ଏମିତି ବି କୁହାଯାଇପାରେ ଗଦ୍ୟମିଶ୍ରିତ ବାକ୍‌ଛନ୍ଦର କବିତା ଆବୃତ୍ତି ଆସରର ବୌଦ୍ଧିକ ନିରାଡମ୍ବର (ପ୍ରଦର୍ଶନମୁଖୀ ଏକ ପ୍ରକାର ପ୍ରଚ୍ଛନ୍ନ ଆଡମ୍ବର) ପରିସରକୁ ସାଧାରଣମାନେ ଶ୍ରୋତା ହୋଇ ପହଞ୍ଚିବାକୁ ଇଚ୍ଛିନାହାଁନ୍ତି। ତଥାପି ୧୯୮୦-୮୫ ପରେ କବିତା ରଚନାର ତରିକା ଓ ତା'ର ପ୍ରଗୀତାତ୍ମକ ବାଚନିକ ଭଙ୍ଗୀ ଆଡକୁ ସାଧାରଣ ଶ୍ରୋତା ବାହାରୁ କାନ ଡେରିବାକୁ କ୍ରମଶଃ ପସନ୍ଦ କଲେଣି। ସାମାନ୍ୟ କଟୁ ଅଥବା କଷା ଲାଗିଲେ ବି ଏହା ଅନୁଭବର ପ୍ରସଙ୍ଗ ଯେ ସ୍ୱାଧୀନତୋତ୍ତର ଓଡ଼ିଆ କବିତା କ୍ଷେତରେ ରମାକାନ୍ତଙ୍କ ଶୀତଳ ଦାର୍ଶନିକ ଭାବପ୍ରବୋଧିତ ଆବୃତ୍ତି, ସୀତାକାନ୍ତଙ୍କ ବକ୍ତବ୍ୟ ଉପସ୍ଥାପନାଧର୍ମୀ ଆବୃତ୍ତି, ସୌଭାଗ୍ୟଙ୍କ ନିରୁତା ଆଳାପଧର୍ମୀ ଆବୃତ୍ତି ଏଯାବତ୍ ସେମାନଙ୍କ କଣ୍ଠରୁ ସେମାନଙ୍କ କବିତା ଭିତରେ ଥିବା ତାନିକ ସ୍ୱରଲହରୀର ଅନ୍ତର୍ପ୍ରବାହୀ ଗୁଣର ମହିମାକୁ ମହତ୍ତମ ଚିନ୍ତାକୁ ଶ୍ରୋତା ନିକଟରେ ପ୍ରଭାବଶାଳୀ ସଂଚାର ଧର୍ମରେ ତରଙ୍ଗାୟିତକରି ପହଞ୍ଚାଇପାରିନାହିଁ। ସୌରୀନ୍ଦ୍ର ଦୀପକ, ଅମରେଶ, ଗୋପାଳକୃଷ୍ଣ, ପ୍ରମୋଦ, ହରପ୍ରସାଦ, ଜଗନ୍ନାଥ ପ୍ରସାଦ, ଆଶୁତୋଷ' ପ୍ରମୁଖ କବିଙ୍କ କବିତାରେ ଜୀବନନିଷ୍ଠତା ଓ ସାଂସ୍କୃତିକ ଅଭିଳାଷପଣର ଯେଉଁ ପ୍ରତିନିର୍ମାଣ

ଦୃଷ୍ଟି ପ୍ରଖର ହୋଇ ରହିଛି ତାହା ସେମାନଙ୍କ ଆବୃତ୍ତି ଦ୍ୱାରା ଏଯାବତ୍ ସେହି ଅନୁପାତରେ ପାଠକ ହୃଦୟକୁ ଧସେଇ ପଶିପାରିନାହିଁ। ଏଠାରେ ଉଲ୍ଲେଖଯୋଗ୍ୟ ସଫଳ ଆବୃତ୍ତିକାରଙ୍କ ଆବୃତ୍ତି ଦ୍ୱାରା ଏମାନଙ୍କ କବିତାର ସକଳ ସୌନ୍ଦର୍ଯ୍ୟ ଓ ତା'ର ତୀବ୍ରତା, ଘନତ୍ୱ ଓ ସାନ୍ଦ୍ରତା ଯେଉଁ ପରିମାଣରେ ପାଠକକୁ ଜଡେଇ ଧରିପାରିବ ସେମନ୍ତ ପ୍ରକାର ସଂଭାବନା ଆମ କବିତା ଆସରର ସଂସ୍କାରରେ ଏଯାଏ ଘଟିନାହିଁ। ବଙ୍ଗଳା, କନ୍ନଡ, ଅହମୀୟା, ହିନ୍ଦୀ ଓ ପଂଜାବୀ ସାହିତ୍ୟରେ ଏକ ଏକ ପ୍ରଗତିଶୀଳ ସୋପାନ ଭାବରେ କବିତା ଆସର କ୍ଲବ୍, ପେଷାଦାରୀ କବିତା ଆବୃତ୍ତିର ତାଲିମ ଓ କବିର ଆବୃତ୍ତିକୁ ଏକ ପ୍ରେରଣାତ୍ମକ ଉତ୍ସଶକ୍ତି ଭାବରେ ସାଇତି କରି ରଖିବାର ମାନସିକତା ଦେଖାଦେଇସାରିଛି। ଏ ଧରଣର ଇଚ୍ଛାଶକ୍ତି ଆମ ପରଂପରାରେ ଏବେ ବି ଉଧେଇନାହିଁ। ଏ ହେତୁ ଉପରୋକ୍ତ କବିଙ୍କ କବିତାଙ୍କୁ ଆବୃତ୍ତି କରି ମହନୀୟ ଭାବ ଐଶ୍ୱର୍ଯ୍ୟର ନମୁନା ଭାବରେ ଲୋକ ଦୃଷ୍ଟାନ୍ତ କରି ପ୍ରସାର କରିବା ଓ ଆଗକାଳକୁ ସଂରକ୍ଷଣ କରି ରଖିବାର ଅପରିହାର୍ଯ୍ୟତା ଆମ ବୋଧସ୍ତରକୁ ଛୁଇଁ ନାହିଁ। ଏପରି ଯୋଜନା ଯଦିବା ଛୁଏଁ ତେବେ ତାହା ଯେ ଆଭିଜାତ୍ୟବାଦୀ କବିଙ୍କ ବୌଦ୍ଧିକ କସରତ ମଧ୍ୟରେ ଦୃଶ୍ୟମାନ ଓ ଫଳପ୍ରସୂ ନହେବ – ଏକଥା କୁହାଯାଇ ନପାରେ।

ଅପରପକ୍ଷରେ ଜୀବନାନନ୍ଦ, ବେଣୁଧର, ବିବେକ, ଚିନ୍ତାମଣି (ବେହେରା), ବ୍ରଜନାଥ, ପ୍ରସନ୍ନକୁମାର ମିଶ୍ର, ଶରତଚନ୍ଦ୍ର (ପ୍ରଧାନ) ହରିହର, ଫନୀ, ପ୍ରତିଭା ଓ ହରପ୍ରସାଦ (ଦାସ) ପ୍ରମୁଖ ନିଜ କବିତାକୁ ବାକ୍‌ଛନ୍ଦ + ଗଦ୍ୟ ଛନ୍ଦ + ଲୋକଛନ୍ଦ + ପ୍ରଗୀତାତ୍ମକ ଅନ୍ତର୍ଛନ୍ଦୀୟ ତାନଧର୍ମରେ ଆବୃତ୍ତିକରି ନିଜସ୍ୱ ସ୍ୱତନ୍ତ୍ର ସ୍ୱତନ୍ତ୍ର ବାକ୍‌ଛଟା ପ୍ରସ୍ତୁତ କରି ପାରିଛନ୍ତି। ଶରତଚନ୍ଦ୍ରଙ୍କ ଲୋକାୟିତ ବାଣୀଭଙ୍ଗୀର ଆବୃତ୍ତି ପ୍ରମାଣ କରିଦିଏ ଯେ ଆମ ଗଣପଦମାନଙ୍କର ସାଦୃଶ୍ୟାତ୍ମକ ଅର୍ଥ ପ୍ରତିମା ନିର୍ମାଣ କରିବାର ପାରଗତା କମ୍ ନୁହେଁ। କବିତା ପାଠର ସକଳୀକରଣ କ୍ରମୋନ୍ନତିରେ ଆବୃତ୍ତି ବାଗ୍‌ମିତାର ବୈଚିତ୍ର୍ୟ ଓ ପାରିଲାପଣିଆ ପ୍ରଦର୍ଶନରେ ଯେଉଁ କେତେଜଣ କବି ସଫଳ ପ୍ରସିଦ୍ଧି ଓ ଆଦର ପାଇଛନ୍ତି ସେମାନଙ୍କ ମଧ୍ୟରେ ରାଧାମୋହନ-ଅନନ୍ତ– ଲକ୍ଷ୍ମୀଧର– ରବିସିଂ– ବିଭୁଦତ୍ତ– ମନୋରମା (ମହାପାତ୍ର)– ବ୍ରଜନାଥ– ରାଜେନ୍ଦ୍ର, ମନୋରମା ମହାପାତ୍ର ବିଶ୍ୱାଳ, ପ୍ରସନ୍ନ, ମିଶ୍ର, ଅସୀମ, ପ୍ରଦୀପ, ହୃଷିକେଶ, ରାମକୃଷ୍ଣ, ସ୍ୱରୂପ, ରୋହିଣୀକାନ୍ତ, କୃଷ୍ଣ(ମିଶ୍ର), ଦିଲ୍ଲୀପ, ହୃଦାନନ୍ଦ, ଗିରିବାଳା, ବସନ୍ତ, ସୁନୀଲ, ଗୌତମ, ଅଜୟ, ସେନାପତି ପ୍ରଦ୍ୟୁମ୍ନକେଶରୀ ମନୋରଂଜନ ଦାଶ(ମନୁଆ) ଦାମୋଦର ପଣ୍ଡା, ଦେବୀ ଦାସମିଶ୍ର, ଜ୍ୟୋତିମିଶ୍ର, ରକ୍ଷକନାୟକ, କେଦାର ମିଶ୍ର ଓ ପ୍ରଦୀପ୍ତ ବିଶ୍ୱାଳଙ୍କ ସମ୍ମେତ ନିରୁତା ତରୁଣ ପିଢ଼ିର କବି ଲେଲିନ୍, ମନୋଜ, ଉମାକାନ୍ତ ଓ ନାରାୟଣ ପ୍ରମୁଖ ଉଲ୍ଲେଖଯୋଗ୍ୟ।

ଅନ୍ୟ କବି ଯେ ନଥିବେ ତାହା ନୁହେଁ, ମାତ୍ର ମୋ ପରି ବିଚରା ସେମାନଙ୍କ ଆବୃତ୍ତି ସଂପର୍କରେ ଆସି ପାରିନଥିବାରୁ ଏଠାରେ ଉଲ୍ଲେଖ କରିବାର ଅବକାଶ ନପାଇ ନିଜକୁ ସୀମିତ ତଥ୍ୟ ସଂଗ୍ରହକାରୀ ଭାବେ ମାନିନେଉଛି। କଥନର ଅତିରଂଜନ ନୁହେଁ ପ୍ରାୟଶଃ ୧୫୦ ଶ୍ରୋତାଙ୍କ ପାଖରୁ ଏ ପ୍ରବଂଧ ପ୍ରସ୍ତୁତି ଅବକାଶରେ ସଂଗ୍ରହ କରିଥିବା ଧାରଣା ଓ ମତ ଅନୁସାରେ ଆମ କବିତା ଆବୃତ୍ତି ପରଂପରାରେ ମାତ୍ର ସାତଜଣ ପ୍ରଭାବ ବିସ୍ତାରକ୍ଷମ ଆବୃତ୍ତିକାରୀ କବିଙ୍କୁ ଆବୃତ୍ତିକଳାର ପୁରୋଧା ରୂପେ ଆମେ ମାନ୍ୟତା ଦେଇପାରିବା। ସେମାନେ ହେଲେ– ରାଧାମୋହନ-ଅନନ୍ତ > ଲକ୍ଷ୍ମୀଧର > ରବିସିଂ > ବିଭୁଦତ୍ତ > ବ୍ରଜନାଥ ରାଜେନ୍ଦ୍ର।

୧୯୩୦ରୁ ୧୯୭୫ ମସିହା ମଧ୍ୟରେ ଓଡ଼ିଆ କବିତାକୁ ନୂତନ ଆଭିମୁଖ୍ୟରେ ଅତୀତ-ବର୍ତ୍ତମାନ-ଭବିଷ୍ୟତର ମାନବିକ ଉଦାର ଭାବନା, ସ୍ୱପ୍ନ, ସତ୍ୟ, ଆଶା ଓ ଦାୟବଦ୍ଧତାକୁ କବିତାକଳାରେ ଗୁଂଫିତ କରି ରାଧାମୋହନ ଆଧୁନିକ ଓ ପାରଂପରିକ ଆଲୋକର ମଧୁର ସମନ୍ୱୟ ସାଧନ କରିଛନ୍ତି। ଛନ୍ଦଧୂରୀଣ ରାଧାମୋହନଙ୍କ କବିତ୍ୱ ଆବୃତ୍ତିନିଷ୍ଠ ସଂଚାର ଧର୍ମରେ ଶବ୍ଦର ବିନିଯୋଗ କରି କବିତାକୁ ଐତିହ୍ୟବାଦୀ ପୁଲକ, ଆଦର୍ଶବାଦୀ ତାତ୍‌ପର୍ଯ୍ୟ ଓ ଚିତ୍ତପ୍ରସାରୀ ମାନବିକତା ଗୁଣରେ ଅର୍ଥାନ୍ୱିତ କରିଦେଇଛନ୍ତି। ନିଜକୁ ପାଠକ ନିକଟରେ ସହଜାତ କବିତ୍ୱପଣରେ ଐତିହ୍ୟଭିଳାଷର ଚାରଣ କବି ଭାବରେ ଉଭା କରାଇ ପାରିଥିବା ଗଡନାୟକ ଆବୃତ୍ତିକଳାର କବି ବ୍ୟାପାର ଓ ବାଣୀଭଙ୍ଗୀକୁ କବିତାର ସଂଚାରଣ ଶକ୍ତି ଭାବରେ ଗ୍ରହଣ କରିଛନ୍ତି। ଅଭିବ୍ୟକ୍ତିରେ ଶାବ୍ଦିକ ସରଳତା, ଶବ୍ଦ ବସାଣରେ ଛାନ୍ଦସିକ କଳାମାତ୍ରିକ ଚଢ଼ା ଉତ୍ତରା ତାନିକତା (rhythmic) ଓ ତାନଯୁକ୍ତ ଶବ୍ଦର ଆବୃତ୍ତିଗତ ମଧୁରତା ଗଡନାୟକଙ୍କ ପ୍ରତ୍ୟେକ କବିତାର ପଙ୍‌କ୍ତିକୁ ଅନୁସରଣାତ୍ମକ ଧର୍ମରେ ମର୍ମସ୍ପର୍ଶୀ କରିତୋଳିଛି। ନିଜ କବିତାକୁ ରାଧାମୋହନ ଭାବ ସଂକ୍ରମଣଧର୍ମି କଣ୍ଠରେ ଗୀତିମୟ ଓ ଛନ୍ଦତାଳିକ କରି ଆବୃତ୍ତି କରିବା ବେଳେ ପାଠକ ନିଜକୁ ବିସ୍ମରି ତାଙ୍କ କବିତାର ଭାବଗଡ଼ରେ ଆପଣାକୁ ନା୍‌ଏକ ଭାବରେ ବିଚରଣ କରାଏ। ଲାଳିତ୍ୟ ଓ ଗାମ୍ଭୀର୍ଯ୍ୟ ମିଳନିକା ଭିତରେ ଗଡ଼ନାୟକଙ୍କ କବିତାବୃତ୍ତି ମାନ୍ତ୍ରିକ ଶକ୍ତିରେ ଶ୍ରୋତାପାଖରୁ ତା'ର ଅସ୍ତିତ୍ୱକୁ କବିତାର ଭାବବଳୟ ଭିତରକୁ ଆକର୍ଷି ଆଣିବାରେ ସମର୍ଥ ହୋଇଥାଏ। ତାଙ୍କ ଆବୃତ୍ତିକଳାର ଯାଦୁଶକ୍ତି ପାଖରେ ଶବ୍ଦମାନେ ବୋଲିମାନି ଆଗପଛ ଚଢ଼ାଉତ୍ତରା ଭଙ୍ଗୀରେ ପାଠକ ସାମ୍ନାରେ ଭାବବ୍ରହ୍ମଙ୍କୁ ପହଣ୍ଡି ବିଜୟ କରାଇଥା'ନ୍ତି।

ଆବୃତ୍ତିକାରୀ କବି ଅନନ୍ତଙ୍କ କବିତାରେ ଶବ୍ଦଗୁଡ଼ିକ ଆବେଗ ସ୍ତରରୁ ଯାତ୍ରା ଆରମ୍ଭ କରି ଜାଗୃତୀକରଣର ଉନ୍ମାଦନା ସ୍ତରରେ ପହଞ୍ଚିଥାନ୍ତି। ଲଘୁ ତାନରୁ ଗୁରୁତାନୀୟ

ସ୍ତରର ଆବେଦନରେ କବିତାକୁ ପହଞ୍ଚାଇବାର କଳାଚାତୁରୀ ଦିଗରୁ ଅନନ୍ତ ପଟ୍ଟନାୟକଙ୍କ ଆବୃତ୍ତିପୁରୁଷ ବହୁକବିଙ୍କୁ ପ୍ରେରଣା ଯୋଗାଇ ପାରିଛି। ପରବର୍ତ୍ତୀ କାଳରେ ରବିସିଂ ଅନନ୍ତଙ୍କ କବିତା ଆବୃତ୍ତିରେ ଥିବା ଉଚ୍ଚାରଣ ଲାଳିତ୍ୟର ଆରୋହ ବିନ୍ଦୁଟିକୁ ଅସ୍ୱୀକାର କରିଥିଲେ ବି ନିଜର ସ୍ୱତନ୍ତ୍ର ଶୈଳୀରେ ସମଗ୍ର କବିତାଟିକୁ ସ୍ଫୁଲିଙ୍ଗାୟିତ ଛନ୍ଦସ୍ପନ୍ଦନରେ ଗୁରୁତାନୀୟ କରି ଉଦ୍‌ବୋଧନ ପ୍ରବଣ କରିଦେବାରେ ସମର୍ଥ ହୋଇଛନ୍ତି। ତାଙ୍କ ଆବୃତ୍ତିରେ ଶ୍ରୋତା ଶବ୍ଦକୁ କେବଳ ଶୁଣେ ନାହିଁ; ଶବ୍ଦ ତାନେତାନେ ଅର୍ଥର ଦାୟବଦ୍ଧତାକୁ ସ୍ୱୀକାର କରି ନାକାରାତ୍ମକ ବ୍ୟବସ୍ଥା ବିପକ୍ଷରେ ପ୍ରତିକ୍ରିୟାଶୀଳ ହୋଇଉଠେ। ଏକଥା ସତ୍ୟ ରବିସିଂଙ୍କ ଆବୃତ୍ତିରେ ସମୟାନୁସାରୀ ପ୍ରଭାବ ପ୍ରଖର; ମାତ୍ର କବିତାର ସୁଦୂର ପ୍ରସାରୀ ପ୍ରଭାବକୁ ମହାକାଳ ବିଚାର କରିବ। ପରବର୍ତ୍ତୀ ପର୍ଯ୍ୟାୟରେ ଲକ୍ଷ୍ମୀଧରଙ୍କ କବିତା ଆବୃତ୍ତିରେ ଲାଳିତ୍ୟ-ଇଙ୍ଗିତ-ଗାମ୍ଭୀର୍ଯ୍ୟ ଓ ଆବେଗର ମଧୁର ସମନ୍ୱୟ ସଂପାଦିତ ହୋଇଛି- ଯାହାକୁ ତାଙ୍କ ପରବର୍ତ୍ତୀ ତରୁଣପୀଢ଼ି ଆନ୍ତରିକତା ସହିତ ଆଦର କରିଛନ୍ତି। ଏ ସମସ୍ତଙ୍କ ଅପେକ୍ଷା ବିଭୁଦତ୍ତଙ୍କ ଆବୃତ୍ତି ଅଧିକ ଗୁଣାତ୍ମକ ଓ ରମଣୀୟ ଭାବପ୍ରବୋଧନଶୀଳ। ନିଜର ଅଥବା ଯେକୌଣସି କବିଙ୍କର ଯେକୌଣସି କବିତା ବିଭୁଦତ୍ତଙ୍କ ଆବୃତ୍ତିରେ ଶବ୍ଦପୁଷ୍ପମଣ୍ଡନା ରମଣୀବତ୍ ଶ୍ରୋତା ସାମ୍ନାରେ ପୁଲକର ସନ୍ଦେହ୍ୟପାତ୍ର ଧରି ଛିଡ଼ା ହୋଇଯାଏ। ତାଙ୍କ ଆବୃତ୍ତି ମୁକ୍ତମନା ଭାବୁକର ଆବୃତ୍ତି, ଭାବସଶକ୍ତ ରସିକର ଆବୃତ୍ତି, ଲାଳିତ୍ୟ ଓ ଇଙ୍ଗିତର ମିଳନରେ ରୂପନିର୍ମାଣକ୍ଷମ ଜପକବାଗ୍ମୀର ଆବୃତ୍ତି। ତାଙ୍କ ଆବୃତ୍ତି ହୃଦୟକୁ ତରଳାଇ ଦିଏ, ଚିତ୍ତକୁ ବିସ୍ତାରିତ କରିଦିଏ ଓ ମସ୍ତିଷ୍କକୁ କୋମଳ ବିଚାରରେ ଭାବକୁ ଆପଣାର କରିନେବାକୁ ପ୍ରରୋଚିତ କରେ। କବିତାର ଅନ୍ତର୍ଲୋକରେ ଲୁଚି ରହିଥିବା କୌଣସି ପ୍ରକାର ଭାବ ତାଙ୍କ ଆବୃତ୍ତିରେ ଅସ୍ପଷ୍ଟ ହୋଇ ଆଢୁଆଳରେ ରହିଯିବାର ସଂଭାବନା ନଥାଏ। ଆମର ସୌଭାଗ୍ୟ ଆମ କବିତା ସୁନ୍ଦରୀଙ୍କୁ ଆବୃତ୍ତି-ଦୋଳିରେ ବସାଇ ବିଭୁଦତ୍ତଙ୍କ ଭଳି ଆବୃତ୍ତିକାର ଆମ ଆବୃତ୍ତିକଳାର ମାର୍ଗଦର୍ଶକ ଥିଲେ।

ସଚ୍ଚିଦାନନ୍ଦ ଯଦି ଆଧୁନିକ କାବ୍ୟଧାରାର ପ୍ରୟୋଗବାଦୀ ଦ୍ରୋଣାଚାର୍ଯ୍ୟ ତେବେ ରାଜେନ୍ଦ୍ର ହିଁ ଆମ କବିତା ଆବୃତ୍ତି ପରଂପରାର ହଳାୟୁଧ। ଭାବଦୃଷ୍ଟି ଜୀବନନିଷ୍ଠ, ସତ୍ତାନିଷ୍ଠ, ମୃତ୍ୟୁଚେତନାନିଷ୍ଠ ଐତିହ୍ୟ ଉତ୍ପାଦନକ୍ଷମ, ପୁରାକଳ୍ପୀୟ, ମାନସିକ ବାସ୍ତବତାକୈନ୍ଦ୍ରିକ, ଉଦାର ମାନବବାଦୀ ଚେତନାଶ୍ରିତ, ଉଦାତ୍ତ ବଂଚିବାପଣର ଅନୁଭବରେ ପ୍ରଗାଢ଼, ଦୁର୍ଭାଗ୍ୟକୁ ଟପିବାର ବୀଜମାନ୍ତ୍ରିକ ପ୍ରେରଣା, ନବନ୍ୟାୟିକ ମୂଲ୍ୟବୋଧରେ ବିବେକପଣିଆକୁ ଜାଗୃତି କରିବାର ମାନ୍ତ୍ରିକ ଉଚ୍ଚାରଣ– ଯେକୌଣସି ପ୍ରସଙ୍ଗର କବିତା ହେଉ ତାହାର ଶବ୍ଦମୟ ଦେହରେ ଆସ୍ପର୍ଦ୍ଧା ଓ ଶାନ୍ତ୍ୱନାର ତରଙ୍ଗ ଖେଳାଇ ଶ୍ରୋତାର ବାହ୍ୟଚକ୍ଷୁ ଓ ଅନ୍ତଶ୍ଚକ୍ଷୁ ସାମ୍ନାରେ ନିଷ୍କପଟ ଭାବରେ ଭାବକୁ ଅବିକଳ

କରି ଛିଡା କରାଇଦେବାର ଅଦମନୀୟ ଶକ୍ତି ରାଜେନ୍ଦ୍ରଙ୍କ ଆବୃତ୍ତିରେ ରହିଛି– ଏହାକୁ ଶତ୍ରୁ ଭାବାପନ୍ନ ଶ୍ରୋତାବି ସ୍ୱୀକାର କରିବ। ଅପ୍ରାଣୀବାଚକରେ ପ୍ରାଣୀବାଚକ ପ୍ରତ୍ୟୟ, ପ୍ରାଣୀବାଚକରେ ବସ୍ତୁବାଚକ ଅଭିଜ୍ଞତା, ବସ୍ତୁବାଚକରେ ଭାବବାଚକ ସୌନ୍ଦର୍ଯ୍ୟ, ଭାବବାଚକରେ ବସ୍ତୁନିର୍ମାଣକ୍ଷମ ରୂପକତା ଆରୋପଣ କରି ରାଜେନ୍ଦ୍ରଙ୍କ କବିସତ୍ତା ବିଗତ ଚାରିଦଶନ୍ଧି ଧରି ବିଭାବନଶୀଳ ଶାବ୍ଦିକ ଉପାଦାନରେ ନୂଆ କଳେବର ଗଠନ କରି ତହିଁରେ ପ୍ରାଣପ୍ରାଚୁର୍ଯ୍ୟକାରକ ଶିବସଂକଳ୍ପକୁ ଆତ୍ମାଭାବରେ ସଂସ୍ଥାପନ କରିଛି। ରାଜେନ୍ଦ୍ରଙ୍କ କବିତା ଓ ତାହାର ବସ୍ତୁନିର୍ମାଣକ୍ଷମ ଆବୃତ୍ତି ଶ୍ରୋତାଙ୍କୁ ଜଣାଇ ଦେଇଥାଏ–

- ଅନୁପମ କବିତାର ସ୍ୱର ମଣିଷ ଦୁଃଖକୁ, ଦୁର୍ଭାଗ୍ୟକୁ, ଅଂଧାରକୁ ଦେଖାଇଦିଏ ଓ ତହିଁରୁ ମୁକ୍ତହୋଇ ଆଗକୁ ଲଂଘିଯିବାକୁ ପ୍ରଣୋଦିତ କରେ।
- ଅସମୟ ଓ ଅସହାୟ ଅବସ୍ଥାରେ ଶୀତଳ ଶାନ୍ତ୍ୱନା ଦେବା ଅପେକ୍ଷା ତାହାକୁ ଅତିକ୍ରମ କରି ସମସ୍ତ ନାଂତ୍ୱକୁ ହଁତ୍ୱରେ ରୂପାନ୍ତରିତ କରିବାକୁ ଭଲକବିତା ଆହ୍ୱାନ ଜଣାଏ।
- ଭଲ କବିତାର କବିପଣ ଗୋଲାମଦାସ ହୋଇ ଅଧମଦାସଙ୍କ ପାଇଁ ନେତୃତ୍ୱ ନେଇ ପ୍ରଥମ ଗୁଳିକୁ ଆପେ ଆମନ୍ତ୍ରଣ କରି ଅଧମଦାସଙ୍କ ସୁପ୍ତ ପାରିଲା ପଣିଆଙ୍କୁ ଜାଗ୍ରତ କରିବାର ମନ୍ତ୍ର ଉଚ୍ଚାରଣ କରେ।
- ଭଲ କବିତାର ନୂଆପଣଟି ହେଉଛି ପୁରାକଳ୍ପକୁ (ମିଥ୍‌କ୍ ସଂରଚନାକୁ) ସଦ୍ୟତମ ଜୀବନଚର୍ଯ୍ୟାର ସଂଘଟିତ ଅନ୍ତଃବାସ୍ତବତା ସହିତ ଯୋଡି ନୂଆ ନ୍ୟାୟର ରୂପକଳ୍ପ ନିର୍ମାଣ କରିବା ଏବଂ ଭାଙ୍ଗିପଡ଼ିଥିବା ଆତ୍ମାକୁ ପ୍ରତିକୂଳରେ ସଦମ୍ଭରେ ବଂଚିବାକୁ ଆସ୍ୱାଦାୟିତ ଶାନ୍ତ୍ୱନାଦେବା।

ରାଜେନ୍ଦ୍ରଙ୍କ ଆବୃତ୍ତି ଆସର ଭିତରେ ଓ ଆସର ବାହାରେ ଶ୍ରୋତାକୁ ବିବେକାନୁମୋଦିତ ହେବାକୁ ଆକ୍ରାନ୍ତ କରେ। ରାଜେନ୍ଦ୍ରଙ୍କ ଯେ କୌଣସି କବିତା (ହୋଇପାରେ ଆତ୍ମ ଭରସା ଉତ୍ପାଦନକ୍ଷମ 'ଝିଅପାଇଁ ଗୋଟିଏ କବିତା', ହୋଇପାରେ 'ଅନ୍ୟା'ର ଯେକୌଣସି ଧାଡି, ଜଟିଳ ଜୀବନକୁ ସରଳ କରି ଖେଳାଇ ପାରୁଥିବା 'ଇଷଖେଳ'ର ଏକବାକ୍ୟାଂଶ) ନୂଆ ପ୍ରକାରେ ଖେଳିଥିବା ଶବ୍ଦକର୍ଷଣର ଲୀଳା। ସବୁଥିରେ ଜଗତ କେନ୍ଦ୍ରୀଭୂତ ହୋଇଛି ଜୀବନ ମଂଚରେ ଏବଂ ଜୀବନ ପ୍ରସରି ଯାଇଛି ଉଦାତ୍ତ ମାନବୀୟ ବିଶ୍ୱାସର ଉର୍ବରଭୂମି ଦିଗରେ। ଏହାରି ଭିତରେ ବୈସାଦୃଶ୍ୟ ସାଦୃଶ୍ୟରେ, ବୈପରୀତ୍ୟ ବିକଳ୍ପରେ, ବିଷମ ସମରେ ଓ ନିରର୍ଥକ ଅସଂଗତି ସାର୍ଥକ ସଂଗତିରେ ପରିଣତ ହୋଇଛି। ଏଥିପାଇଁ ରାଜେନ୍ଦ୍ରଙ୍କ କବିତାରେ ଯୁଗ୍ମ ଚିତ୍ରକଳ୍ପୀ ଶୃଙ୍ଖଳା ଓ ଦୁଇ ବା ତହିଁରୁ ଅଧିକ ସାଦୃଶ୍ୟ ବସ୍ତୁବାଚକ ସାପେକ୍ଷ ଶବ୍ଦର ଧ୍ୱନ୍ୟାତ୍ମକ ସହାବସ୍ଥାନ ବିଶେଷ ଗୁରୁତ୍ୱ ପାଇଛି। ରାଜେନ୍ଦ୍ରଙ୍କ ଆବୃତ୍ତିରେ ପ୍ରତ୍ୟେକ ଶବ୍ଦ ତାହା ଅବ୍ୟୟଟିଏ ହେଉ,

ବିଶେଷଣଟିଏ ହେଉ, ବିଶେଷ୍ୟ-କ୍ରିୟା-ସର୍ବନାମଟିଏ ବି ହେଉ ଉପଯୁକ୍ତ ଓ ନିଷ୍କପଟ ତାନିକ ମର୍ଯ୍ୟାଦାରେ ଉଚ୍ଚାରିତ ହୁଅନ୍ତି। ପ୍ରତିଟି ଶବ୍ଦର ଉଚ୍ଚାରଣ ଶ୍ରୋତା ନିମନ୍ତେ ପ୍ରଥମେ ଶ୍ରାବ୍ୟମାଣ ହୋଇ ପରେ ଦୃଶ୍ୟମାନ ଓ ଭାବମାନ ହୋଇଉଠେ। ଶବ୍ଦଗୁଡ଼ିକ ସାପେକ୍ଷ ବିପକ୍ଷ ସମ୍ବନ୍ଧରେ ମିଶି ଶ୍ରୋତାଙ୍କୁ ଏକ ରୂପାର୍ଥ ଦେଉଥିଲେ ବି ଆବୃତ୍ତି କାଳରେ ପ୍ରତ୍ୟେକ ଶବ୍ଦକୁ ଓ ଶବ୍ଦର ବର୍ଣ୍ଣତାନକୁ ଉପଯୁକ୍ତ ପାର୍ଥକ୍ୟ ରେଖାଟାଣି ସେ ବିତରଣ କରନ୍ତି। ଯାହାଫଳରେ ତାଙ୍କ ଆବୃତ୍ତି ସ୍ୱରବୈଚିତ୍ର୍ୟ, ବାଗ୍‌ବୈଚିତ୍ର୍ୟ, ଚିତ୍ରବୈଚିତ୍ର୍ୟ ଦେଇ ଭାବବୈଚିତ୍ର୍ୟର ତନ୍ମୟତାରେ ଶ୍ରୋତା ହୃଦୟକୁ ସ୍ପନ୍ଦନ ମୁଖର କରେ ଏବଂ କବିତାର ପଙ୍‌କ୍ତିଗୁଡ଼ିକ ଦୃଷ୍ଟାନ୍ତଗୁଣରେ ଶ୍ରୋତାଙ୍କୁ ଆବୋରି ବସେ। ଏଣିକି ଶ୍ରୋତାର ନିସ୍ତାର ନାହିଁ– କେବଳ କବିତା ସହିତ ବିନା ସର୍ତ୍ତରେ ମଜ୍ଜିରହିବା ଓ ବିବେକାନୁମୋଦିତ ଶିବସଂକଳ୍ପରେ ସଚେତ ହୋଇଯିବା ଛଡା ଶ୍ରୋତାର ଅନ୍ୟ ଉପାୟ ନାହିଁ।

ଉତ୍ତର ଅଶୀପରେ ରାଜେନ୍ଦ୍ରଙ୍କ କବିତା ଆବୃତ୍ତି ବହୁ ତରୁଣଙ୍କର ପ୍ରେରଣା ଉତ୍ସ ହୋଇଉଠିଛି। ରାଜେନ୍ଦ୍ର ଓ ବିଭୁଦତ୍ତଙ୍କ ଆବୃତ୍ତି ବଳୟରୁ ମୁକ୍ତିଖୋଜି ନୂଆ ସ୍ୱାଦରେ କବିତା ଆବୃତ୍ତିକୁ ଯେଉଁ କବିମାନେ କବିତା କଳାର ଅନ୍ୟତମ ପ୍ରଭାବ ବିସ୍ତାରୀ ଆବଶ୍ୟକତା ଭାବରେ ମାନିନେଇଛନ୍ତି ସେମାନଙ୍କ ମଧ୍ୟରୁ ଅସୀମ ହୃଷିକେଶ, ଅଜୟ, ପ୍ରଦ୍ୟୁମ୍ନ ଓ ମନୋରଂଜନ ପାଠକର ଭାବଚକ୍ଷୁ ସାମ୍ନାକୁ ପ୍ରଥମେ ଆସିଯା'ନ୍ତି। କବିତା ଆବୃତ୍ତିକୁ ସୌଖୀନ କଳା ଭାବରେ ଆମୋଦ ସଂଚାରୀ ମାଧ୍ୟମ ରୂପରେ ଗ୍ରହଣ କରି ବିଜୟମଲ୍ଲ, ସଂଜୟ ଶତପଥୀ ଓ ଦୁର୍ଗାଚରଣ ପଣ୍ଡା (ଏମାନଙ୍କ ପାଖରେ କବିପଣ ବି ମହଜୁଦ ରହିଛି) କବିତା ଅନୁରାଗୀ ମଣ୍ଡଳରେ ନୂଆ ପ୍ରକାର ଉନ୍ମାଦନା ଖେଳାଇ ପାରିଛନ୍ତି। ଏମାନେ ଆବୃତ୍ତିର ବିକଳ୍ପ ମାଧ୍ୟମର ଉପାଦେୟତାକୁ ପ୍ରମାଣ କରିଦେଇଛନ୍ତି। ଆବୃତ୍ତିକୁ କଳା ଭାବରେ ଗ୍ରହଣ କରି ଏହାକୁ ସଂରକ୍ଷିତ କରିବା ପାଇଁ ଲକ୍ଷ୍ମୀଧର ନାୟକ, ପ୍ରସନ୍ନ ପାଟଶାଣୀ, ଅଜୟସ୍ୱାଇଁ ଓ ମନୋରମା ମହାପାତ୍ର ବିଶ୍ୱାଳ ଓ ପକ୍ଷୀଘର ପତ୍ରିକା ପରିବାରଙ୍କ କାସେଟୀକରଣ ଯୋଜନା (ବୈଦ୍ୟୁତିକ ସଂଚାରଧର୍ମୀ ଧ୍ୱନିକୌଶଳ ମାଧ୍ୟମରେ ଧ୍ୱନିପେଟିକା ପ୍ରସ୍ତୁତି ପ୍ରକ୍ରିୟା) ଏ ଦିଗରେ ଏକ ମୁଗ୍ଧକରଣ-ପଦକ୍ଷେପ।

(ନଅ)

ଏହି ପ୍ରବଂଧର ଉପସଂହାର ଟାଣିବାକୁ ଗଲାବେଳେ ଆବୃତ୍ତିକୁ ଏକ ସମୟୋଚିତ ଅପରିହାର୍ଯ୍ୟତା କଳାପ୍ରଜାତି ଭାବରେ ଆଦର କରିବାର ମାନସିକତା ବୃଦ୍ଧି ପାଇବାର ବାସନା ପୋଷଣ କରି ଧ୍ୱନିତାନିକ, ସ୍ୱରାଘାତୀୟ ଓ କଳାମାତ୍ରିକ ପର୍ବବନ୍ଧରେ ଲିଖିତ କେତୋଟି ବହୁଚର୍ଚ୍ଚିତ ଆଧୁନିକ ଓଡ଼ିଆ କବିତାଂଶର ଆବ୍ଧୁଜିଂଶତ (ସ୍ୱରରେଖା ନିର୍ଣ୍ଣୟ ଭିତ୍ତିରେ) କୌଶଳକୁ ଦୃଷ୍ଟାନ୍ତ ସ୍ୱରୂପ ଅନୁଶୀଳନ ପରିସରଭୁକ୍ତ କରାଯାଉଅଛି।

(କ) ଅମିତ୍ରାକ୍ଷରୀ ଛନ୍ଦରେ ଧ୍ୱନିତାନିକ ସ୍ୱରାଘାତୀୟ ଶୈଳୀରେ ରଚିତ 'ମହାଯାତ୍ରା'ର ଆବୃତ୍ତିଭଙ୍ଗୀ :

୧– ''ଏ ଜୀବ ନୁହଁଇ ସ୍ଥି'ର/ସ୍ଥି'ରଟି' ମରଣ/ ଗୁରୁ > ଲଘୁ > ଗୁରୁ–ଦୀର୍ଘତା

୨– ମାଟିର ଏ ଘଟନି'ଶ୍ଚେ/ମି'ଶିବ ମାଟିରେ/ ମା'ଉଚ୍ଚତାନ > ମାଟିରେ ଉଚ୍ଚତାନ
ମଧ୍ୟଭାଗ ସ୍ୱଳ୍ପତାନିକ

୩– ସର୍ବ'ହରାକାଳ/ମ'ହା/ବଳୀଠା'ରୁ ବଳୀ/ ଲଘୁତାନ > ଗୁରୁତାନ > ଲଘୁ
ନିମ୍ନତାନିକ > ଉଚ୍ଚତାନିକ

୪– କଠୋ'ର/ଏ ଧନୁ ତୋର/କଠୋ'ର ଭୀ'ମର/

୫– ମ'ହାଗଦା / ଗ୍ରା'ସଇ ସେ / ପକ୍ୱ'ରମ୍ଭା'ପରି ।'' ଉଚ୍ଚତାନରୁ ନିମ୍ନତମ ତାନ

ସମଗ୍ର ପଙ୍‌କ୍ତିରେ ସୂଚିତ ଚିହ୍ନ [ | ] ଯୁକ୍ତ ବର୍ଣ୍ଣ ଉପରେ ସ୍ୱରାଘାତୀୟ ଉଚ୍ଚାରଣ କଳାକୁ ଆବୃତ୍ତ ବେଳେ ଅବଲମ୍ବନ କରାଯିବ ।

(ଖ) ଦ୍ୱିପାଦୀ ବନ୍ଧରେ କଳାମାତ୍ରିକ ତାନଧର୍ମରେ ପାର୍ବିକ ଛନ୍ଦଶୈଳୀରେ ରଚିତ କବିତାର ଆବୃତ୍ତଭଙ୍ଗୀ :

୧ – ଏବେ' କାଠ / ପଥର ନ'ପୂଜି / ଆସପୂଜ / ଜୀ'ବନ୍ତ ଦେ'ବତା /
ନିମ୍ନତାନ/ଲଘୁ ଲଘୁ ଗୁରୁ / ମଧ୍ୟତାନ ଗୁରୁ / ଉଚ୍ଚତାନ

୨ – ଯା' ଆଖିରୁ' / ଲୁହଯି'ବ ବହି / କହିଦେଲେ / ପ'ଦେ ମ'ଧୁ କଥା ।
ଗୁରୁ/ଉଚ୍ଚତାନ ଗୁରୁଲଘୁ / ମଧ୍ୟତାନ ଲଘୁ ନିମ୍ନତାନ

(ଦେବପୂଜା – ମାନସିଂହ)

ତାନର ଆରୋହ ଅବରୋହାତ୍ମକ [ | ] ସୂଚିତ ଚିହ୍ନର ସ୍ୱରାଘାତୀୟ ଅକ୍ଷରର ସ୍ୱରଲହର ଉଚ୍ଚାରଣ ଏଠାରେ ପ୍ରଥମ ପାଦରେ ଯେପରି ସଂରଚିତ ହୋଇଛି ତାହାର ପ୍ରତିବଦଳ ରୂପରେ ବା ବିପରୀତ ଧର୍ମରେ ଦ୍ୱିତୀୟ ପାଦରେ ବ୍ୟବହୃତ ହୋଇ ଆବୃତ୍ତ ଭଙ୍ଗୀରେ ଅନୁରଣାତ୍ମକ ଧ୍ୱନିମାଧୁର୍ଯ୍ୟ ମସୃଣତା ସୃଷ୍ଟିକରି କବିତାର ଭାବବକ୍ତବ୍ୟକୁ ପତନ ଉତ୍‌ଥାନ ଉତ୍‌ଥାନପତନ କ୍ରମରେ ' ' ଗତିଶୀଳ କରାଇ ନେଉଛି ।

(ଗ) କଳାମାତ୍ରିକ ଷଟ୍‌ପଦୀ ମାତ୍ରାବୃତ୍ତଛନ୍ଦ ଓ ଆବେଦନରେ ମୁକ୍ତଛନ୍ଦର ତାନିକ ଲହର ସୃଷ୍ଟିକରି ଓଡ଼ିଆ କବିତା କ୍ଷେତ୍ରରେ ରାଧାମୋହନଙ୍କ ଛନ୍ଦନିପୁଣ କାରିଗରୀ ଆବୃତ୍ତଭଙ୍ଗୀକୁ ନାନା ବାଗରେ ଆହ୍ୱାନ ଜଣାଇଛି । ତାଙ୍କର ମାଟି, ମୌସୁମୀ, ଅଗ୍ନିପୃଥ୍ୱୀ, ଅପଥଗାମୀ ଆଦି କବିତାର ଭାବସଂଚାର କେବଳ ଆବୃତ୍ତିରେ ହିଁ

ଫଳପ୍ରଦ ହୋଇଥାଏ। ଷଟ୍‌ପାଦିକ କଳାମାତ୍ରିକ ପାର୍ବିକ ବୃତ୍ତର ଆବୃତ୍ତି ନମୁନା–

୧ – ''ଆଁଉଥରେ / ଢ଼ାଳିଦେଇ / ଅମୀୟ ଚାହାଁଣୀ /
ନିମ୍ନତାନ ଉଚ୍ଚତାନ ନିମ୍ନ+ଉଚ୍ଚତାନ

୨ – ଦେହମୟ / ବୋଳିଦେଇ / ସ୍ନେହମୟ ପାଣି/ ++
ନିମ୍ନତାନ ଉଚ୍ଚତାନ ନିମ୍ନ+ଉଚ୍ଚତାନ

୩– ପ୍ରକାଶିଲେ / ବିମୁଗ୍ଧ / ବଚନେ
ମଧ୍ୟତାନ ମଧ୍ୟତାନ ମଧ୍ୟତାନ (ଗୁରୁଲଘୁ ମିଶ୍ରିତ)

୪ – ବିଜୟିନୀ / ଆଜି ତୁମ୍ଭେ / ଏ ବିଶ୍ୱ ଭୁବନେ /
ଉଚ୍ଚତାନ ମଧ୍ୟତାନ ନିମ୍ନତାନ (ଉଚ୍ଚତାନ ବି ହୋଇପାରେ)

୫ – ସୁନ୍ଦରୀ କଲ୍ୟାଣୀ /
ମଧ୍ୟତାନ

ନମ୍ରହୋଇ / ହୋଇଛ ବିରାଟ / ଆଜି ତୁମ୍ଭେ ଜଗତର ରାଣୀ।''
ନିମ୍ନତାନଉଚ୍ଚତାନ ଉଚ୍ଚତାନ

(ଘ) ଅନ୍ତର୍ଚ୍ଛାନ୍ଦିକ ପ୍ରୟାର ପ୍ରଗୀତାତ୍ମକ ବାକ୍‌ଛନ୍ଦର ଆବୃତ୍ତ ନମୁନା :

୧ – ''ପଢ଼ିଅଛି / କବିତାରେ / ଏତେବେଳେ କାନ୍ଦେ / ଚକ୍ରବାକ
୨ – ହଠାତ୍ ଯେ / ଦେଖାହେଲା / ବହୁଦିନେ / ପ୍ରତିମା ନାୟକ xxx
୩– ଜାପାନୀ କାଗଜ ଫୁଲପରି / ଦେହେ/ ବୟସର ଧୂଳି
୪ – ପଚାରିଲି–/ ଭଲଅଛ ? / କଣ୍ଠେ ମୋର ବିଂଶର୍ଣ୍ଣ ଗୋଧୂଳି
୫ – ହସିଲା ପ୍ରତିମା –/
୬– ଆକାଶର ନୀଳରେଖା / ଗେରୁଆ ମାଟିର ନାଲସୀମା
ଛୁଏଁ ଯେଉଁଠାରେ xxx।''

୧ – ଆରୋହ > ଅବରୋହ / ଉତ୍‌ଥାନ > ପତନ / ଚଢ଼ା-ଉତରା।
୨ – ଉଚ୍ଚାରଣ ଦୀର୍ଘତା + ଆରୋହତାନିକ।
୩– ଦୀର୍ଘତା > ଦୀର୍ଘାର୍ଦ୍ଧ + ଅବରୋହ ତାନିକ।
୪ – ମଧ୍ୟତାନିକ (ଗୁରୁ ଲଘୁ ମିଶ୍ରିତ ସ୍ୱରଲହର)
୫ – ଆରୋହ ତାନିକ ଓ ଆବୃତ୍ତ ଦ୍ୱିବାର କରିବାରେ ମାଧୁର୍ଯ୍ୟ ରହିଛି
୬– ଆରୋହ > ଅବରୋହ ତାନିକ।

(ଙ) ଗଦ୍ୟାତ୍ମକତା, ଆନ୍ତର୍ଚ୍ଛାନ୍ଦିକତା, ମୁକ୍ତଛନ୍ଦୀୟ ସ୍ୱରତାନିକ ବୈଚିତ୍ର୍ୟରେ ସଚ୍ଚିଦାନନ୍ଦ ଓ ଗୁରୁପ୍ରସାଦଙ୍କ ଦ୍ୱାରା ପରିକଳ୍ପିତ ମିଶ୍ରିତ ବାକ୍‌ଛନ୍ଦ କିଞ୍ଚିତ୍ ବ୍ୟତିକ୍ରମରେ ଉତ୍ତର

ସତୁରୀ ଓଡ଼ିଆ କବିତାରେ ସୀତାକାନ୍ତ–ରମାକାନ୍ତ–ରାଜେନ୍ଦ୍ର–ଜଗନ୍ନାଥ–ସୌଭାଗ୍ୟ–ଦୀପକ–ପ୍ରସନ୍ନ–ସୌରୀନ୍ଦ୍ର–ପ୍ରତିଭା–ଫନୀ–ସରୋଜ–ଦିଲ୍ଲୀପ–ହରପ୍ରସାଦ–ହରପ୍ରସାଦ ପରିଚ୍ଛା ପ୍ରମୁଖ କବିତାରେ ଅଭିନବ ହୋଇଉଠିଛି। ପ୍ରତ୍ୟେକଙ୍କ କବିତାର ଆବୃତ୍ତିଛଟାରେ ଶବ୍ଦର ତାନିକ ପ୍ରୟୋଗ ଦିଗରୁ ସ୍ୱାତନ୍ତ୍ୟ ରହିଛି। ମିଶ୍ରିତ ବାକ୍‌ଛନ୍ଦର ଏକ ନମୁନାମୂଳକ ଆବୃତ୍ତଭଙ୍ଗୀ–

୧ – ''ଶତେ'କ ଶରତ / ଥି'ବୁ , ବୁଢ଼ୀ' ହବୁ' ନାଇଁ / ଝିଅ !

(ଉଚ୍ଚତାନିକ ® ନିମ୍ନତାନିକ ) ( +++ ଶାନ୍ତ୍ୱନାବାଚକ ସ୍ୱର)
(ଆରୋହ ® ଅବରୋହ )

୨ – ସଂ'ପାକଟା କରିବୁନି / ନିଜକୁ ନୁହେଁ / କି' ନିୟତି କି' / ନୁହେଁ

ଦୀର୍ଘତା (:) ଉର୍ଦ୍ଧ୍ୱତାନିକ ( ◡ )

× × × ×

୩– ଦାରୁଣତମ / ଦୁଃ'ଖରେ / ବି/

ଦୀର୍ଘାର୍ଦ୍ଧ + ନିମ୍ନତାନିକ (•) + ^

୪ – ମା'ଟିକୁ / ଫା'ଟିଯା' ବୋଲି / କେବେ / କହିବୁ'ନି, ମା,

ଆରୋହ ବା ଉର୍ଦ୍ଧ୍ୱତାନିକ + ଅବରୋହତାନିକ ( ⌐_⌐ )

୫ – ପୋଟି' ହୋଇଯିବ / ଆକାଶ।/ ×××

୬ – ବରଂ / ତୁ ଦେବକୀ ପରି / ନିଜେ ଫାଟି'ଯିବୁ

(ମଧ୍ୟତାନିକ + ନିମ୍ନତାନିକ + ପ୍ରବୋଧନାମୂଳକ+++)

୭ – ଈଶ୍ୱରଙ୍କ' / ଜନ୍ମପାଇଁ / ଦ୍ୱାର' ଖୋଲି ଦେବୁ।।''

ଉର୍ଦ୍ଧ୍ୱତାନିକ ଓ ବିସ୍ମୟୋତ୍ପାଦକଧର୍ମୀ (+++)

(ଚ) ଓଡ଼ିଆ କବିତାରେ ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ପ୍ରସନ୍ନକୁମାର ମିଶ୍ର, ଦୀପକ ମିଶ୍ର, ପ୍ରମୋଦକୁମାର ମହାନ୍ତି, ଫନୀ ମହାନ୍ତି, ହରିହର ମିଶ୍ର, ହରପ୍ରସାଦ ପରିଚ୍ଛା ପଟ୍ଟନାୟକ...ଙ୍କ କବିତାରେ ଶବ୍ଦବସାଣରେ ଅନ୍ତଃ ଛାନ୍ଦସିକ ଚଢ଼ାଉତରାର ଓ ଦୀର୍ଘାୟିତ ଧ୍ୱନିତାନିକ ଗୀତାତ୍ମକତାର ମେଳ ଖୁବ୍ ସନ୍ତର୍ପଣରେ ଘଟିଥାଏ। ନମନୀୟ ଉଚ୍ଚାରଣ ଭିତରେ ବୁଦ୍ଧିଦୀପ୍ତ ଭାବନାର ସଂଚାରଣ କରିପାରୁଥିବାର କ୍ଷମତା ରଖିଥିବା ଆବୃତ୍ତିକାର (ଏଠାରେ ଉଲ୍ଲେଖଯୋଗ୍ୟ ଯେ ପ୍ରସନ୍ନ ଓ ହରିହରଙ୍କ ଆବୃତ୍ତି ଯୋଗ୍ୟତା ପ୍ରଚୁର) ଏମାନଙ୍କ ଭଲକବିତାକୁ ଆବୃତ୍ତି କରିବାବେଳେ ମନେହୁଏ ଗମ୍ଭୀର ଦର୍ଶନ ସୁନ୍ଦରମନନ ଓ ଐଶ୍ୱର୍ଯ୍ୟମୟ

ଭାବନାର କବିତାମାନେ କୋମଳ ଅଭିସାର ବି ରଚନା କରିପାରନ୍ତି । ଏଠାରେ ମିଥିକ୍ ଚମତ୍କାରିତାରେ ନବନ୍ୟାୟିକ ମନନଶୀଳ ଖେଳଖେଳିଥିବା ନମନୀୟ ଶବ୍ଦଚାତୁରୀର ଲଘୁସ୍ୱରାଘାତୀୟ କେତୋଟି କାବ୍ୟିକ ପଙ୍‌କ୍ତିର ଆବୃତ୍ତିଭଙ୍ଗୀ ନିରୂପଣ କରାଯାଉଛି ।

●® (i) ''ଶୁଦ୍ଧ'ଶୁଭ୍ର' / ନାରୀଧର୍ମ ମୋର / ଏକୁଟିଆ / ସଭା ମ'ଝିଟାରେ/
କୋମଳତାନ ଦୀର୍ଘତାର ଆବୃତ୍ତି ∧_∧|||∧_ (ଆବେଗସଂଚାରୀତାନ)

(ii) କଦଳୀ ପତ୍ର'ଟେ/ପରି/ଥରୁଅଛି/– (ସାମାନ୍ୟ ଗୁରୁଧର୍ମର ଆବୃତ୍ତି/
ଈଷତ୍ ଗୁରୁତାନିକ ∧ .– ||| ଆବେଗିକ ବିଷଣ୍ଣତାର ଉଚ୍ଚାରଣ)

(iii) ''ଉର୍ଦ୍ଧ୍ୱକୁ ଦୃଷ୍ଟିଢାଳିଛି/ହାତ/ବଢ଼ାଉଛି ।'' (କାକୁସ୍ଥ ବିଶାଦର ଭାବ ହେତୁ
କୋମଳ –V ଲଘୁତାନିକ କୋମଳ ଲଘୁତାନିକ ।)
(କୁରୁପତି ସଭାସ୍ଥଳେ, ପ୍ରତିଭା ଶତପଥୀ)

●® (i) ମାଗୁନି ମୁଁ'ଜ୍ଞାନତୋର / ମାଗୁନି ମୁଁ / ଅସୀମ' ତୋ'/ସ୍ମୃତି

(ii) ହେ' ମାୟାବୀ ବିଶ୍ୱ'ରୂପ/ଖାଲି ମୋର/ଏତିକି/ମିନତି/
(ଲଘୁତାନରୁ କୋମଳ ଉର୍ଦ୍ଧ୍ୱତାନୀୟ ଉଚ୍ଚାରଣ)

(iii) ଯୁଗେ ଯୁଗେ' ତୀର'ମୋର/ଦେଉ' ତୋତେ/
(ଦୀର୍ଘତାଧର୍ମୀ କୋମଳ ଉର୍ଦ୍ଧ୍ୱତାନୀୟ) _–∧

(iv) ତୋ ଦେହରୁ / ତୋ' ଆପଣା ଛ'ଳନାରୁ
(ଦୀର୍ଘ, କୋମଳ ଲଘୁତାନୀୟ) –V–V–

(v) ତୋତେ'ଇ' ମୁକତି ।''
(ଈଷତ୍ ଉର୍ଦ୍ଧ୍ୱତାନୀୟ)_._∧

● (ଜାରାଶବରର ସଂଗୀତ–ସୀତାକାନ୍ତ)

●® ଯେଥୁ ଅଂତେ'... (କୋମଳ ଲଘୁତାନୀୟ)
–V
ତାରାରୁ' ଶୁଭିଲା/ଚୁଡ଼ି'ଶବ୍ଦ (ଲଘୁରୁ ଗୁରୁତାନୀୟ ଉତ୍‌ଥାନ/ବିସ୍ମୟମିଶ୍ରିତ
V–^ / +++ ଆଗ୍ରହ ଉଚ୍ଚାରଣ)
ନିଦଗଲା' ଭାଂ'ଗି/ସୁଜନେ ହେ ! (ସଂଭାଷଣାତ୍ମକ ଲଘୁତାନୀୟ)
ସେ ନଅର/ସେ ବାଗନା
ସେ' ଘୋଡାଶାଳା/ସେ' ସ୍ୱପ୍ନ' ନାୟକ
ΔΔΔΔ/V–^ (ଦୀର୍ଘ ଲଘୁ ଗୁରୁତାନୀୟ)

ରହିଲେ ଅଚିହ୍ନା/ସେହିପରି/ (ମଧ୍ୟମ-ଗୁରୁତାନୀୟ)
ଚିହ୍ନା ଚିହ୍ନା ଲାଗି ସୁଜନେ ହେ।
କୋମଳ ଲଘୁତାନୀୟ =V • (ବସୁସେଣ, ହୃଷିକେଶ ମଲ୍ଲିକ)

(ଦଶ)

ପଶ୍ଚିମବଙ୍ଗ ଓ ବଙ୍ଗସଂସ୍କୃତିର ବୃହତ୍ତମ ଭୂଗୋଳ ରୂପ ଆଧୁନିକ ବଙ୍ଗଳାଦେଶରେ କବିତା ଆସର ଏକ ଜାତୀୟ ଅସ୍ମିତାନିର୍ମାଣ ଶିଳ୍ପକ୍ଷେତ୍ରର ମାନ୍ୟତା ପାଇଛି। କବିତା ଆସରକୁ କ୍ଳାନ୍ତିକର-ବିତର୍କଜନିତ ଗମ୍ଭୀର ବାତାବରଣରୁ ମୁକ୍ତ କରି ଏକ ଭାବମୟ ମାନସିକ ଭୂଗୋଳର ପରିବେଶ ସୃଷ୍ଟି ନିମନ୍ତେ ଏ ଉଭୟ ଭୂଖଣ୍ଡରେ ଆବୃତ୍ତିକୁ ପରିଚାଳନାଗତ ଉପାୟ ଭାବରେ ବିନିଯୋଗ କରାଯାଏ। ଫଳରେ ପ୍ରାରମ୍ଭରୁ ଶେଷପର୍ଯ୍ୟନ୍ତ ଆସର ଆବେଗିକ ଉତ୍କଣ୍ଠା ଓ ଜିଜ୍ଞାସାପ୍ରାବଲ୍ୟ ଭିତରେ ମୋହ୍ୟମାନ ହୋଇ ରହିଥାଏ। ଅବଶ୍ୟ ମୋହ୍ୟମାନତା ପାଇଁ ବଙ୍ଗୀୟକବିମାନେ କବିତା ଆବୃତ୍ତିରେ ରବୀନ୍ଦ୍ର-ନଜରୁଲ୍-ଜୀବନାନନ୍ଦଙ୍କ ଉତ୍ତରଦାୟାଦପଣକୁ ସ୍ୱାଭିମାନପ୍ରାଣ ହୋଇ ସଂପାଦନ କରିବାକୁ ପ୍ରୟାସ କରିଥା'ନ୍ତି। ନାସିମ୍ ଅହେମଦ, ପ୍ରଦୀପ ଘୋଷ, ଶମ୍ଭୁମିଶ୍ର ଓ କାଜୀ ସବ୍ୟସାଚୀଙ୍କ ପରି ଆବୃତ୍ତିକାରକଙ୍କ ଗୁରୁଲଘୁ-ଉଦାତ୍ତ ଅନୁଦାତ୍ତ-କୋମଳଗମ୍ଭୀର କବିତା ଆବୃତ୍ତି ସେଠାକାର ଆସରକୁ ମୁଗ୍ଧକର ଓ ଆକର୍ଷଣୀୟ କରିତୋଳିଥାଏ। ଏ ତୁଳନାରେ ଆମ ରାଜ୍ୟର ଆସରଗୁଡ଼ିକରେ କବି- ଆବୃତ୍ତିକାରକ ଉଭୟଙ୍କ ପାଖରେ କବିତାଥାଏ; ମାତ୍ର କବିତା ସଂଚାରର କଳା ଗୁଣ କମ୍‌ଥାଏ ଏବଂ କବିତା ଶୁଣି ତହିଁରେ ଅସ୍ମିତାଗଠନ କରିବାର ମନବି ଖୁବ୍ ଶୀତଳ ଓ ଶିଥିଳଥାଏ। ଫଳରେ ଏଠାକାର ଆସର ଶେଷନହେବାର ଯଥେଷ୍ଟ ପୂର୍ବରୁ ମଂଚ ସମ୍ମୁଖସ୍ଥ ଶ୍ରୋତାଶୂନ୍ୟ ଆସନ ମାଳମାଳ ହୋଇ ଅଥବା ଇତସ୍ତତଃ ହୋଇ ରହିଥା'ନ୍ତି କିମ୍ବା ଆସନରେ ଶ୍ରୋତା ଅଥବା କବିତାପାଠ ପାଇଁ ଅପେକ୍ଷାରତ ଅବଶିଷ୍ଟ କବି ବସ୍ତୁରୂପକାତ୍ମକ ମୁଦ୍ରାରେ ଦେଖାଯା'ନ୍ତି। ତେଣୁ ଆମ କବିତା ଆସରଗୁଡ଼ିକ ଆମକୁ ଜୀବନର ଅନୁପମ କାବ୍ୟମୟ ମୁହୂର୍ତ୍ତ ଯେତେସଂଭବ ଖୁବ୍‌କମ୍ ଯୋଗାଇଦେଇଥା'ନ୍ତି।

ଆଧୁନିକ ବଙ୍ଗଳା ଓ ସ୍ୱାଧୀନ ବଙ୍ଗଳାଦେଶରେ କବିତା ଆବୃତ୍ତିକୁ ଜନସଚେତନତା, ରାଜନୀତିକ ପ୍ରଚାର ଓ ସରକାରୀ ବିଜ୍ଞପ୍ତୀକରଣର ଉପେୟ ଓ ଉପାୟ ଭାବରେ ବ୍ୟବହାର କରାଯାଉଛି। ଶ୍ରେଣୀ ପାଠ୍ୟକ୍ରମରେ ଜାତୀୟ ପରିଚୟ ସୃଷ୍ଟିକାରୀ ବିଦ୍ୟାଭାବରେ ଆବୃତ୍ତି ତାଲିମ ଦିଆନିଆ ଚାଲିଛି। ଏପରିକି ସରକାରୀ ବୃତ୍ତି-ସାକ୍ଷାତ୍‌କାରରେ ଜଣାଶୁଣା କବିଙ୍କ କବିତା ଆବୃତ୍ତି ପ୍ରାର୍ଥୀଦ୍ୱର ସାମର୍ଥ୍ୟ କଳନାର ମାପଦଣ୍ଡ ହେଉଛି। ତୃତୀୟ ବିଶ୍ୱମାନଙ୍କରେ ଜଟିଳ ଓ ଧୂସର ଜୀବନକୁ ସରସ କୋମଳ କରିବାପାଇଁ

କବିତା ଆବୃତ୍ତି ମାଧ୍ୟମରେ ଜାତୀୟ ବିଶେଷତ୍ୱ ଉଦ୍ରେକକାରୀ ଭାବନା ଜାଗ୍ରତ କରାଯାଉଛି। ଜୀବନର ଯେକୌଣସି ପ୍ରତିକୂଳ ପରିସ୍ଥିତିରେ ବଙ୍ଗମଣିଷଟିଏ ରବୀନ୍ଦ୍ର, ନଜରୁଲ, ସୁନୀଲ, ସୁକାନ୍ତ, ଜୀବନାନନ୍ଦଙ୍କ କବିତାର ଜୀବନନର୍ତ୍ତନଧର୍ମୀ କବିତାର ପଙ୍‌କ୍ତିଟିଏ ବିହ୍ୱଳପଣରେ ସହଜରେ ଆବୃତ୍ତିକରି ଦୃଷ୍ଟାନ୍ତଟିଏ ବାଢ଼ିଦେଇଥାଏ। ଉପେନ୍ଦ୍ରଭଂଜଙ୍କୁ ବିଲରୁ ସଭାସ୍ଥଳ ପର୍ଯ୍ୟନ୍ତ ଓ କୃଷକଠାରୁ ପଣ୍ଡିତ ପର୍ଯ୍ୟନ୍ତ ଗାଉଥିବା ଏବଂ ସାରୋଳ ଓ ଜଗନ୍ନାଥଙ୍କୁ ଜୀବନର ସକଳ ବୟାବସ୍ଥାରେ ଉଦାହରଣ କରି ଛିଡ଼ାକରାଇ ଦେଉଥିବା ଓଡ଼ିଆଜାତି ଆଜି ତା'ର ବିଶ୍ୱସ୍ତରୀୟ ଖ୍ୟାତି ପାଇଥିବା କବିଙ୍କ ପୈତୃକଗୋତ୍ର ଓ ନାମକୁ ବି ଜାଣନ୍ତିନି। ଏହାହିଁ ଆମ କବିତା ପାଇଁ ସତ୍ୟ। ଏହାର କାରଣ ଆମ କବି ନିଷ୍ଠାପର ଭାବରେ ଲୋକବିଶ୍ୱାସକୁ ଚହଲାଇ ହେଉଥିବା ଆଦର୍ଶାୟିତ ଜୀବନଧର୍ମର ଦୃଷ୍ଟାନ୍ତ ଯେତିକି ନବଖାଣିଛନ୍ତି, ତାହାଠାରୁ ବହୁପରିମାଣରେ କବିତା ଆସରଗୁଡ଼ିକୁ ବୁଦ୍ଧିବାଦୀ ଓ ବୁଦ୍ଧିଜୀବୀ ସ୍ତରରେ ରଖିଦେଇ ଆବୃତ୍ତିର ପରଂପରା ପ୍ରତି ଉଦାସୀନ ରହି ଭାବନାଶକ୍ତିକୁ ସଂଚାର କରିନପାରି ଉତ୍ତମ କାବ୍ୟବୋଧଗୁଡ଼ିକୁ ସୁଦୃଶ୍ୟ ମଲାଟର ପୁସ୍ତକ ଗଣ୍ଠିଲିରେ ବାଂଧିରଖିଛନ୍ତି। ଆମ ଲୋକମଂଚରେ ସ୍ୱଳ୍ପଜଣା (ସାହିତ୍ୟଚାଷୀଙ୍କ ମେଳରେ) ଓ ବହୁ ଅଜଣା କବିମାନେ ରାଜ୍ୟ ବାହାରେ ଓ ଦେଶବାହାରେ ସଜ୍ଜିତମଂଚ ଉପରେ ଆରୂଢ଼ ହେବାପରେ ସେମାନେ ଗ୍ରଣପ୍ରିୟ ଆମ ମହଲରେ ନୁହଁନ୍ତି– ଏପ୍ରକାର କୁହାଯାଇନପାରେ। ଅପୂର୍ବ ବସ୍ତୁନିର୍ମାଣ କ୍ଷମତା- ପ୍ରତିଭା ବଳରେ ହେଉ, ରାଜନୀତିକ ଓ ସରକାରୀ ପଦବୀ ଓ ପୃଷ୍ଠପୋଷକତାର ଶକ୍ତିରେ ହେଉ ଅଥବା ସାହାଯ୍ୟ ଓ ପ୍ରତିଦାନୀୟ ଅଦଳବଦଳ ପ୍ରୀତିପଣସୂତ୍ରରେ ହେଉ କିମ୍ବା ସାଧନାର ଯଥାର୍ଥ ଅଧିକାର ଓ ଆଦର ଦିଗରୁ ହେଉ ଆମ କବିଏ ବାହାର ମଂଚରେ ଯେତେବେଳେ ବସୁଛନ୍ତି ଆମେ ନିଶ୍ଚିତ କହିବା ଆମ କବିତା ଆମ ପଛୁଆ ଭୂଖଣ୍ଡର ସୀମା ଟପୁଛି ଏବଂ ଆମ ସାଂସ୍କୃତିକ ଅଭିଳାଷ ଓ ସର୍ଜନଶୀଳ ସଂପଦର ବାହ୍ୟବଜାର ଚାହିଦା ବଢୁଛି। ମାତ୍ର ବାହାରେ ଅନ୍ୟଭାଷୀ କବିଙ୍କୁ କବିତାର ମୁଗ୍ଧକରଣ ଆବୃତ୍ତି ହେତୁ ଶ୍ରୋତାଙ୍କ ପାଖରେ ଭାଷାବ୍ୟବଧାନ ସତ୍ତ୍ୱେ ହୃଦୟର କବି ହେବାର ଯୋଗ୍ୟତା ଯେପରି ମିଳେ ସେପରି ସମ୍ମାନ ଆମ କବିଙ୍କ ଭାଗ୍ୟରେ କେତେ ଯୁଟିଥାଏ– ସେକଥା କବିଏ ଜାଣନ୍ତି, ଶୁଣିଲାବାଲା ଜାଣନ୍ତି ଆଉ ଯେଉଁମାନେ ଓଡ଼ିଶା ଭିତରେ ଶୁଣିଛନ୍ତି ସେମାନେବି ମା'ଗଙ୍ଗେଇ ପରି ଭଲରେ ଜାଣନ୍ତି।

ଏକ୍ଷେତ୍ରରେ ଆମ କବିତାକୁ ଓ ଆମ ଅଭିଳାଷପଣର ମହତ୍ତମ କବିତାକୁ ବିଶ୍ୱ ଜନଗଣମନଙ୍କ ପାଖରେ ପହଞ୍ଚାଇବାର ସୁଯୋଗ ପାଉଥିବା କବିଏ ବିଚାର କରନ୍ତୁ ସେମାନଙ୍କ କବିତ୍ୱର ବଣିଜପସରାରେ ଥିବା ନାନାଜାତି ଦ୍ରବ୍ୟକୁ ଆବୃତ୍ତି ତରିକା ନଜାଣିଥିବାରୁ କିପରି ମନୁଆଗ୍ରାହାକଙ୍କ ପାଖରେ ସେ ପହଞ୍ଚାଇବାରେ ବିଫଳ ହୋଇଛନ୍ତି ?

କବିତାର ଭାବସଂପଦ ଜାତୀୟ ଗଣସଂପଦ। କବି ଯେତେ ସ୍ୱଚ୍ଛନ୍ଦମନା ହୋଇ ଘୋଷଣା କଲେ ବି– ମୁଁ ପ୍ରଜାପତି ବ୍ରହ୍ମାଙ୍କ ପରି। ଯେମିତି ବିଶ୍ୱମୋତେ ରୁଚିବ ସେମିତି ମୁଁ ତିଆରି କରିବି; ତାହା ସେତେ ପରିମାଣରେ ଗ୍ରାହକବିମୁଖତା ସୃଷ୍ଟିକରିବ। ଶେଷରେ କବି ଓ କବିତା ଏକଲା ହୋଇଯିବେ। ଭଲକବିତା ସବୁକାଳକୁ ନେଇ ସଭିଙ୍କୁ ସାଙ୍ଗକରି ଚାଲେ। କବିତାକୁ ସଂଚାର ଗତିଦିଏ ଆବୃତ୍ତି। ରାଧାନାଥ, ମଧୁସୂଦନ, ମାୟାଧର, ବୈକୁଣ୍ଠନାଥ, ଅନନ୍ତ, ସଚ୍ଚିଦାନନ୍ଦ, ରବୀନ୍ଦ୍ରନାଥ, ଗୁରୁପ୍ରସାଦ, ବ୍ରଜନାଥ ଓ ବେଣୁଧରଙ୍କ ପରି ଆଧୁନିକପଣର କବିମାନଙ୍କ ସୃଷ୍ଟିଜଗତ ପ୍ରତି ଧ୍ୟାନଦେଲେ ଦେଖିବା ଆମ ଭାବମୟ ଜୀବନଚର୍ଯ୍ୟାର ଓ ବଂଚିବାର ପ୍ରାଣପ୍ରାଚୁର୍ଯ୍ୟସୂତ୍ର ଆମ କବିତାରେ ଭରପୂର ରହିଛି। ଆମ କବିଗଣ ଆମ ମୁଣ୍ଡ ଉପରେ ରସଘନମୟ ହୋଇ ମହାଭାବ ଆଚ୍ଛାଦିତ କରିରଖିଛନ୍ତି। ଆମେ ଓ ଆମ କବିମାନେ ଆବୃତ୍ତିର ଝାକସ୍‌ରେ ସେସବୁକୁ ସଂଚାର ନକରି ପାରିବାର ଅଭାବନୀୟ ଦୁର୍ବଳତା ହେତୁ ଆମ କବିତାରେ ଶ୍ରେୟଜୀବନ ବଂଚିବାର ସୂତ୍ରକୁ ଆମ ଜନତାଏ ଜାଣିପାରୁନାହାଁନ୍ତି। ଏହାକୁ ଥରୁଟିଏ ସ୍ୱୀକାର କରିନେବା ପରେ ପ୍ରଶ୍ନଘର ଶୂନ୍ୟ ହୋଇଉଠିବ। ଆମ କବିତା ଆମ କବିର ତୁଣ୍ଡରୁ ନିସୃତ ହୋଇ କୋଟିକଣ୍ଠରେ ଜୀବନରସର ସରସ ଦୃଷ୍ଟାନ୍ତ ହୋଇ ଆବୃତ୍ତି ହୋଇଉଠିବେ। ଆମ କବିଙ୍କ ଆବେଗ ଆମକୁ ଓ ଆମସମୟର– ସମୟୋତ୍ତର ଆଗାମୀ ପିଢ଼ିଙ୍କୁ ଆଗକୁ ଚାଲିବାର ବେଗ ବଢାଇଦେବ। ସଂଗୀତ ଶାସ୍ତ୍ରର ୬୪ କଳା ମଧ୍ୟରୁ 'ସଂପାଠ' ବା ଆବୃତ୍ତି ଅନ୍ୟତମ। ସଂପାଠର ଅର୍ଥ କବିତାର ସାମଗ୍ରିକ (ଶବ୍ଦ-ଅର୍ଥ-ବିଷୟକଳ୍ପ-ପ୍ରୟୋଜନ-ଆବେଦନ) ସୌନ୍ଦର୍ଯ୍ୟକୁ ଗାନ ନକରି ପ୍ରଭାବ ଉତ୍ପାଦନଧର୍ମରେ ସୁନ୍ଦର ଓ ସ୍ପଷ୍ଟଭାବେ ସରବ ପାଠକରିବା। ସବୁ କବି ଓ କବିତା ନୀରବ ପଠନ ଉପଯୋଗୀ। ମାତ୍ର ଖବୁକମ୍ କବିତା ଆବୃତ୍ତି ଉପଯୋଗୀ ଏବଂ କମ୍ କବି ସଂପାଠ୍ୟକବିତା ଲେଖିପାରନ୍ତି। ଲେଖିବା ସମୟରେ ସଂପାଠ ଅଭ୍ୟାସୀ କବି ସଚେତନ ଥା'ନ୍ତି ଯେ କବିତାର ପ୍ରତିପାଦ୍ୟଭାବ ଆବୃତ୍ତିଦ୍ୱାରା ବିସ୍ତାରିତ ହୁଏ। ଏପରି ଶବ୍ଦ ସେ ବ୍ୟବହାର କରିବାହେବେ ଯେ ଗୋଟିଏ ବର୍ଣ୍ଣକୁ ସାମାନ୍ୟ ଗୁରୁଲଘୁଗୁଣରେ ଟାନିକ ହ୍ରାସ ଅଥବା ବୃଦ୍ଧି କରି ଉଚ୍ଚାରଣ କରିବା ମାତ୍ରେ ଭାବ ପିଚ୍ଛିଳଗତିରେ ପାଠକ ସହିତ ଲୁଚକାଳି ଖଳି ଘୁଂଚିଯାଉଥିବ। ଆବୃତ୍ତିଯୋଗ୍ୟ ଗତିଧର୍ମର ଶବ୍ଦସଂଯୋଜନା ହିଁ ଭଲକବିତାର ବିଶେଷତ୍ୱ ଏବଂ ପାଠକ ଆବୃତ୍ତିଦ୍ୱାରା ହିଁ ତାହାର ଭାବରସକୁ ଆସ୍ୱାଦ କରିବ ଓ ଅନ୍ୟମାନଙ୍କ ପାଇଁ କବିତା ପଙ୍‌କ୍ତିକୁ ଦୃଷ୍ଟନ୍ତମୂଳା କରିଦେବ। ସୁତରାଂ ଭଲକବିତା ନିର୍ମାଣରେ ଶବ୍ଦଯୋଜନା ଓ ଆବୃତ୍ତି ଆଗପଛ ହୋଇ ଚାଲିଥା'ନ୍ତି।

କବିତା ସହଜେ ଜନ୍ମଗତ ଉଦ୍ଦେଶ୍ୟ ଦିଗରୁ ଶବ୍ଦ-ସ୍ଥାପତ୍ୟ। ଶବ୍ଦମାନେ ହୋଇପାରନ୍ତି ଅଭିଜାତ ବିଦ୍ୟାବୋଧର ମୁନି ପରାଶରଙ୍କ ଶିଷ୍ଟଶବ୍ଦ ଅଥବା କୈବର୍ତ୍ତ୍ୟକନ୍ୟା

ମତ୍ସ୍ୟଗନ୍ଧା ସତ୍ୟବତୀଙ୍କ ଲୋକାଚାରୀୟ କଂଚା-ଜୀବନାନୁଭୂତିର କଥିତଭାଷା; କିନ୍ତୁ ଉଭୟ ବସି, ମିଳିତ ହୋଇଯିବା ପରେ ଅର୍ଥକୁ ଭାଙ୍ଗିଯୋଡି ଭାବକୁ ଯୁଗରୁ ଯୁଗଧରି ପାଠକର ମନଜଗତ ଦିଗରେ ଯୋଜନଗନ୍ଧାର ସୌରଭଧରି ବାହିନିଅନ୍ତି। ତା'ପରେ ଯେଉଁ ଭାବଲୋକଟି ଜନ୍ମନିଏ ତାହା ଗୋଟାସୁଦ୍ଧା ବ୍ୟାସମୟ ଓ କାବ୍ୟିକ। ବ୍ୟାସମାନଙ୍କ ଭାବନାର ଉପର ମହଲାରେ ଶବ୍ଦମାନେ ଉପମାନର୍ତ୍ତକୀ ପରି ନାଚନ୍ତି ଓ ତାଙ୍କ ନର୍ତ୍ତନର ଛନ୍ଦ ଶ୍ରୋତା ବା ଅନୁରାଗୀ ପାଠକମନର ତଳ ମହଲାକୁ ଚିତ୍ରମୟ ହୋଇ ସଂଚରିଆସେ। ଏଥିପାଇଁ ଆବୃତ୍ତି ଅଭିନେତାର ଭୂମିକା ସଂପାଦନ କରେ। ଆବୃତ୍ତି ଚିହ୍ନାଇଦିଏ କେଉଁ ଶବ୍ଦଟି ଭାବାନୁସାରେ ପାଠକପାଇଁ ଆତ୍ମୀୟତାର ଶବ୍ଦ (word of intigrity) ହୋଇପାରିବ। ଯେଉଁ ଶବ୍ଦଦ୍ୱାରା ପାଠକ କବିକଳ୍ପ ସହିତ ଆତ୍ମୀୟତାରେ ମିଶିପାରିବ- ଆବୃତ୍ତିକର ତାହାକୁ ଜାଣି ଉଚିତାବୃତ୍ତି ଦ୍ୱାରା ସେସବୁକୁ ମାନ୍ତ୍ରିକ ଶବ୍ଦରେ ରୂପାନ୍ତରିତ କରିଦିଏ। ସାପୁଆ ପଦ୍ମତୋଳା ଗାଏନି, ଧ୍ୱନିସ୍ପନ୍ଦନକଳାରେ ଆବୃତ୍ତି କରେ। ତା' ଆବୃତ୍ତିରେ ସାପ ବି କାନଡେରି ଫଣାଟେକେ; ଆବୃତ୍ତି ଅତି ତାନ ଅଥବା ଲଘୁତାନ ହେବାମାତ୍ରେ ତଳକୁ ପ୍ରତିବାଦ ଜଣାଇ ଚୋଟମାରେ। ତେଣୁ ଆବୃତ୍ତି ଏକ ତାନିକ ଗତିପ୍ରବାହର ଚାତୁରୀ। ଏ ଚାତୁରୀ ଆମ ସାପୁଆ କବିଙ୍କର ନାହିଁ। ଏହା ଜାଣିବି ଆମ ପାଠକ ପ୍ରତିବାଦର ଚୋଟ ଏଯାଏ ମାରିନାହାଁନ୍ତି। ତେଣୁ ଆମ ଧବଳପକ୍ଷୀ କବିତା ଆସରରେ ବିନା ନାଗେଶ୍ୱରୀ ଓ ପଦ୍ମତୋଳାର ତାନିକ ବଚନରେ କବିତା ପଢ଼ି (ଆବୃତ୍ତି ନୁହେଁ) ଆମ ପକାଜହରୀ-ସାପୁଆମାନେ ଏଯାଏବି ଶ୍ରୋତା-ସାପଙ୍କୁ ନଚାଇବାର ମାଖୁନା ଆଟୋପ ଦେଖାଇ ଆସିଛନ୍ତି। ଆମ ସାପପାଠକମାନେ ଏମାନଙ୍କ କବିତାବୃତ୍ତି ଶୁଣି ଶୋଇଯା'ନ୍ତି; ନଚେତ୍ ପଛରେ ପେଡି ଭିତରେ ରହି ବିଷଶୂନ୍ୟ ନିଷ୍ଫଳା ଫଁକୁ ନିଜକୁ ଶୁଣାନ୍ତି। ମିଥ୍ୟାପଦ୍ମତୋଳାର କବିମାନେ କୁହନ୍ତି କାଳେ କାଳେ କବିତାର ଗ୍ରାହକ ଊଣା ଓ ବେରସିକ। ମାତ୍ର ଆମେ ଭଲଭାବରେ ଜାଣୁଥାଏଁ ଯେ ରବିସିଂହ, ବ୍ରଜନାଥ, ରାଜେନ୍ଦ୍ର, ହୃଷିକେଶ, ଅଜୟ ଅଥବା ବିଜୟ ମଲ୍ଲ, ଦୁର୍ଗାଚରଣ, ସଂଜୟ ଶତପଥୀ, ମନୁଆ ଦାସ, ମନୋଜ, ଅସୀମ, ଦେବୀଦାସ, ରୋହିଣୀ, କେଦାର, ଉମାକାନ୍ତ... ଆଦି ଆବୃତ୍ତି କରିବାମାତ୍ରେ ବେରସିକ ବି କବିତା ଆଡକୁ ଟାଣିହୋଇ ନଆସିବାର ଉପାୟନାହିଁ। କାରଣ ଏମାନଙ୍କ ପଦ୍ମତୋଳାରେ ବାକ୍‌କଥନୀ ଥାଏ, ଶ୍ରୁତିକୋମଳ ମାଧୁର୍ଯ୍ୟଥାଏ ଏବଂ ଶବ୍ଦମାନେ ନିଜଗୁଣରେ ଶବଳିତ ହୋଇ ଉଚ୍ଚାରିତ ହୋଇଥାନ୍ତି। ଏକାରଣରୁ ଆବୃତ୍ତି କବିତାର ରୂପକନିର୍ମାଣ କରିଥାଏ।

ଆବୃତ୍ତିକାରର କଣ୍ଠସ୍ୱର ନରମ, ଗରମ, ବିସ୍ମୟ-ବିଷାଦ-ବିମୁଗ୍ଧ ଭାବାନୁସାରେ ଗତିନିରୂପଣଧର୍ମୀ ହୋଇପାରେ; ମାତ୍ର ଶିଥିଳ, କର୍କଶ, ଅନାନ୍ତରିକତାର ନହେବା ଉଚିତ। ଆବୃତ୍ତିକାର ବୃଦ୍ଧ ହୋଇ ଶିଶୁଚପଳତାରେ, କିଶୋର ହୋଇ ତାରୁଣ୍ୟାବେଗର

ଚଞ୍ଚଳତାରେ ଓ ପୁରୁଷ ହୋଇ ନାରୀ ଅଥବା ନାରୀ ହୋଇ ପୁରୁଷ ଭଙ୍ଗିମ ଉଚ୍ଚାରଣରେ ଆବୃତ୍ତି କଲେ ଆସର କୌତୂକମଂଚର ଚୌହଦୀ ହୋଇଯାଏ। ଆବୃତ୍ତି ଏକ ବାଚନିକ କୋମଳପଣର ଭଙ୍ଗୀ। କବି ନିଜର ଗମ୍ଭୀର ଓ ଇଙ୍ଗିତକୁ ଲଳିତ ଓ ନିର୍ଭୟ କରି ଭାବସମ୍ବାଦବାହୀ ଦୂତ ରୂପେ ଆବୃତ୍ତିକାର ମାର୍ଫତରେ ଶ୍ରୋତା ପାଖକୁ ପଠାଇଥାଏ। ଆବୃତ୍ତିକାରକ ଏହାକୁ କେବଳ ନିର୍ମଳ ବାଚନିକତାରେ ଉପସ୍ଥାପିତ କରିବ; ନାଟକୀୟ ଅଙ୍ଗଭଙ୍ଗୀରେ ପରିବେଷଣ କରିବନାହିଁ। ଏଥିରେ ଅନ୍ୟପ୍ରକାର ଘଟିଲେ ଆବୃତ୍ତିଦ୍ୱାରା କବିତାଟି ଭାବକେନ୍ଦ୍ରରୁ ବିଚ୍ୟୁତ ହୋଇ ଅମଣିଆବଳଦ ପରି ଫସଲ ଅମଳ ଖଳାର ମେରୁଦଣ୍ଡ ଭାଙ୍ଗିଦିଏ। କବିତା ଶୁଣି ହୋଇନଥାଏ, ଯଦିବା ଶୁଣାଯାଇଥାଏ ତେବେ ପାଠକର ଦୋଷ ଆଦୌ ନାହିଁ ଦୁର୍ବୋଧ୍ୟ ଭାବେ ତା' ବିଷୟରେ ନାକଟେକିବାକୁ। ଯାହା ଯୁକ୍ତିକଲେ ବି କବି ହେଉଛନ୍ତି କବିତାବନିତାର ପିତା। ତା'ର ଭୋଗପ୍ରିୟ ଗ୍ରାହକ ରସିକ ଶ୍ରୋତା ବା ପାଠକ। କବି ବନିତାରୂପୀ ମାନସକନ୍ୟା କବିତାକୁ ସୁନ୍ଦର କରି, ଗୁଣର କରି ଓ କାଳାନୁସାରୀ କରି ଶବ୍ଦ ସ୍ଥାପତ୍ୟରେ ସଜାଇଥାଏ– କଦାପି ନିଜପାଇଁ ନୁହେଁ, ରସିକପାଠକ ପାଇଁ ନିଶ୍ଚିତ। ତେଣୁ ସଶ୍ରଦ୍ଧ ଆବୃତ୍ତି କବିତାକୁ ରୁଚିପୂର୍ଣ୍ଣା କରି ଲୋଡିବାପଣର ଯୋଗ୍ୟତାରେ ସ୍ୱୟଂମ୍ବରସଂପନ୍ନା କରିଦିଏ। ତେଣୁ କବିତା ଆସରରେ କବି ଦ୍ରୁପଦମାନେ ନିଜର କବିତା ଯାଜ୍ଞସେନୀକୁ ପରିଚିତ କରାଇ ନପାରିଲେ ଆବୃତ୍ତିକାର ଭ୍ରାତା ଧୃଷ୍ଟଦ୍ୟୁମ୍ନଙ୍କ ଆଶ୍ରୟ ନେବା ଉଚିତ। ଏପ୍ରକାର ଘଟିଲେ କବିତା ଆସରର ଲାଖବିଂଧା ପର୍ବଟି ମୂଳରୁ ଶେଷଯାଏ ନବରଙ୍ଗୀୟ ହୋଇପାରିବ ଏବଂ ଆସରର ଫଳପ୍ରସୂ ପ୍ରଭାବ ଆମ ଭୂଗୋଳ ମଧ୍ୟରେ ଆମ କବିତାର ମହତ୍ତମ ଗୁଣକୁ ପ୍ରଚାରିତ କରିଦେଇ ଭିନ୍ନ-ଭୂଗୋଳର ହସ୍ତିନା-ଦ୍ୱାରିକା-ଖାଣ୍ଡବପ୍ରସ୍ଥ-ମତ୍ସ୍ୟଦେଶ ଆଦି ସ୍ଥଳରେ ଦ୍ରୌପଦୀୟ ପ୍ରେରଣାର ସୌନ୍ଦର୍ଯ୍ୟ ଓ ଅପରୂପ ଆକର୍ଷଣର ପ୍ରସାର ସାଧନ କରିବ। ଯେଉଁଠି କବି ସ୍ୱୟଂପ୍ରଭ ଏବଂ ଅର୍ଦ୍ଧନାରୀଶ୍ୱରର ବିଚିତ୍ର ଖେଳରେ (ଲେଖିବା-ଆବୃତ୍ତି କରିବାର ପ୍ରତିଭାକ୍ରୀଡାରେ) ଧୂରୀଣ ସେଠି ଆଚାର୍ଯ୍ୟ ଭାମହଙ୍କ ଭାଷାରେ ରମଣୀୟା କବିତା ଲୋକୋତ୍ତର ଭାବାସୀନା ହୋଇ ଯୁଗାନ୍ତରବ୍ୟାପୀ ଚିରାୟତ ଭାବଚିତ୍ରର ନିର୍ଭୟ ପ୍ରେରଣାରୂପେ ସତ୍‌କବି ସଂଭୂତା ପ୍ରଶଂସାର ଅଧିକାରିଣୀ ହୋଇଯାଏ। ଆମଭାଷାରେ ଏ ଅହୋଭାଗ୍ୟ କ୍ୱଚିତ୍ ହାତଗଣତି କବିତା ଓ କବିଙ୍କୁ ମିଳିଛି।

ଏସବୁର ଗୋଟିଏ ସାରାଂଶ– କବିତାକୁ ଜନଜୀବନର ଓ ଉତ୍କଳୀୟତାର ମହାଭାଷ୍ୟ କରିବାପାଇଁ ଆମକୁ ସଚେତନଭାବରେ ସାଗ୍ରହ ଆବୃତ୍ତିକଳାର ଭିତ୍ତିକ୍ଷେତ୍ର ଓ ତାଲିମ ଅନୁଶାସନୀୟ କ୍ଷେତ୍ର ନିର୍ମାଣ କରିବାକୁ ନିଶ୍ଚିତ ପଡିବ। ଏ କ୍ଷେତ୍ର ଦୃଶ୍ୟଶ୍ରାବ୍ୟର ଓ ମୁଦ୍ରିତରୂପର ଗଣମାଧ୍ୟମର ଆୟୋଜିତ କବିତା ଆସରର ଅଥବା ପାଠ୍ୟକ୍ରମ ସଂଚାରୀ

ବିଦ୍ୟାଧାରାର ମାଧ୍ୟମକ୍ଷେତ୍ର ହୋଇପାରେ। ସୁତରାଂ ସର୍ବତ୍ର କବିତାଆବୃତ୍ତି କଳାଜ୍ଞାନର ମର୍ଯ୍ୟାଦା ପାଇବା ଉଚିତ।

(ଏଗାର)

ଇତି କରିବା ପୂର୍ବରୁ କେତୋଟି ଭାବାନ୍ତର ଏଠାରେ ସୁଧୀଗଣଙ୍କ ପାଇଁ ଉଲ୍ଲେଖ କରିବାର ଇଚ୍ଛା ସମ୍ବରଣ କରିହେଉନି। ଭାବାନ୍ତର ସୁଧୀବର୍ଗଙ୍କ ପ୍ରତି ଭାବାନ୍ତର ହେଉ ଏ ଆଶା ପୋଷଣ କରାଯାଉଛି। ଭାବାନ୍ତରଗୁଡ଼ିକ ହେଉଛି–

- ଆବୃତ୍ତି ଜ୍ଞାନ କୌଶଳ କ'ଣ ଏକାନ୍ତ ଜରୁରୀ? ଶ୍ରେଣୀଗୃହରେ ବହୁଶାସ୍ତ୍ରରେ ପାରଦର୍ଶୀ ଓ ବହୁବର୍ଷର ଅଭିଜ୍ଞତାରେ ବରିଷ୍ଠ ଅନେକ ଶିକ୍ଷକ ନିଜର ନିତିଦିନିଆ ଶବ୍ଦରେ ଲିଖିତ କବିତାକୁ ଆବୃତ୍ତି ନ କରିପାରିବାର ଲଜ୍ଜାବୋଧକ ପରିବେଶ ଆମକୁ ନିଶ୍ଚିତ ଆବୃତ୍ତି ସଚେତନ ହେବାକୁ ବାଧ୍ୟ କରିବ। ରଥଯାତ୍ରାର ଧାରା ବିବରଣୀଠାରୁ କବିତା ଆସରର ଅତିଥି ଅଭିଭାଷଣ ପ୍ରଦାନ କାଳରେ ଆମ ଅଭିଜ୍ଞଘୋଷକ ଓ କବି ବାଗ୍ମୀମାନଙ୍କ କବିତା ଆବୃତ୍ତିର କୌତୁକ ବିଫଳତାକୁ ଶୁଣିଥିବା ଶ୍ରୋତା ନିଶ୍ଚିତ କହିବେ ଓଡ଼ିଆ ସ୍ୱାଭିମାନସୂଚକ କବିତା ପଙ୍‌କ୍ତିଗୁଡ଼ିକର ସମୂହ ବିତରଣ ନିମନ୍ତେ ଆବୃତ୍ତି-ତାଲିମ ନିହାତି ଅପରିହାର୍ଯ୍ୟ।
- କବିତା ଆସରର ଭାବବିମୁଗ୍ଧ ପରିସରରେ ରସପିପାସୁ ଶ୍ରୋତାଙ୍କ ପାଖରେ ସ୍ୱୟଂ କବିରେବ ପ୍ରଜାପତି ନିଜ ସୃଷ୍ଟିର ଅନୁପମତାକୁ ଆବୃତ୍ତିର ଅପୋଚାରଣ, ବିକୃତୀକରଣ ଓ ଖଣ୍ଡିତୀକରଣ ମଧ୍ୟରେ ନଚିହ୍ନାଇ ପାରିବାର ସର୍ଜନ ପିତୃତ୍ୱ ଓ ମାତୃତ୍ୱପଣର ବିଫଳତା ଆମକୁ ଆବୃତ୍ତିନିପୁଣ ହେବାକୁ ଅଙ୍ଗୁଳି ନିର୍ଦ୍ଦେଶ କରିଛି, କରୁଛି ଓ କରିବ– ଏକଥା ଅସତ୍ୟ ନୁହେଁ।
- ଭଲ ଆବୃତ୍ତିକାରୀ କବିଟିଏ ଶବ୍ଦର ନୂଆ ଗଢ଼ଣ ଓ ନୂଆ ପ୍ରକାରେ ବସାଣ କରିପାରେ ଏବଂ ସମୂହ ଉଦ୍ଦେଶ୍ୟରେ ଉତ୍ପତ୍ତିତ କବିତାଟିଏ ପ୍ରସୂତିକାଳୀନ ନୀରବ ଆବୃତ୍ତି ଭିତରେ ସୃଜିପାରେ– ଏହାକୁ ମାନିନେବା ପରେ ଆମର ଆଗକୁ ଆସୁଥିବା କବିତା ଉଣା ଅଧିକେ ପ୍ରବୋଧିତ ପ୍ରତୀୟମାନ କବିତା ହୋଇଯିବେ।

ଅତଏବ ଆମେ ଏହି ସିଦ୍ଧାନ୍ତରେ ପହଞ୍ଚିବା ଆମ ଭାଷାରେ ଆମ ପାଖରେ ବହୁଭଲ କବି ଅଛନ୍ତି, କିନ୍ତୁ ଖୁବ୍ କମ୍ କବି ରାଧାମୋହନ, ରାଜେନ୍ଦ୍ର ଓ ହୃଷିକେଶଙ୍କ...ପରି ଚମତ୍କାର ଭାବ ଉତ୍ପାଦନ ଦକ୍ଷତାରେ ଆବୃତ୍ତି କରିପାରନ୍ତି। ଅତଏବ ଆବୃତ୍ତିକୁ କବିତାର ସକଳସ୍ଥିତିରେ ସ୍ୱାଗତ କରାଯାଉ।



# ଭାରତୀୟ ସମୀକ୍ଷାତତ୍ତ୍ୱର ବ୍ୟାପ୍ତି ଓ ଦୀପ୍ତି

(ଏକ)

ସାହିତ୍ୟ, ସାହିତ୍ୟ ସମୀକ୍ଷା ଓ ସମୀକ୍ଷାତତ୍ତ୍ୱ– ଏ ତ୍ରିତୟ ପରସ୍ପର ପରିପୂରକ ଏବଂ ଦ୍ୱନ୍ଦ-ମିଳନ ଓ ଖଣ୍ଡନ-ମଣ୍ଡନ ବିଚାରରେ ପରସ୍ପର ନିର୍ଭରଶୀଳ ଓ ସମାସନ୍ନ। ବାଙ୍ମୟ କଳାସୃଷ୍ଟିରେ ତିନୋଟିଯାକ ସାପେକ୍ଷ ଧର୍ମରେ ସଂଯୁକ୍ତ। ଆବେଦନ ଓ ଉଦ୍ଦେଶ୍ୟସାଧନ ଦିଗରୁ ତିନିହେଁ ଶିବସଂକଳ୍ପ ପ୍ରତି ଦାୟବଦ୍ଧ। ବିଚିତ୍ର ଭାବରେ ଏମାନଙ୍କ ଜନ୍ମ ଓ ପାରସ୍ପରିକ ସହ ବନ୍ଧନୀଯୁକ୍ତ କ୍ରମବିକାଶ ଆଗପଛ ଓ ସମାନ୍ତରାଳ ଭଙ୍ଗୀରେ ଦୃଶ୍ୟମାନ। ହିତବୋଧ ଓ ମିଳନବୋଧର ମହାମାନ୍ତ୍ରିକ ବାଙ୍ମୟ ନିର୍ମାଣ ହେଉଛି ସାହିତ୍ୟ (ଦୃଶ୍ୟକାବ୍ୟ/ଶ୍ରାବ୍ୟକାବ୍ୟ/ଗଦ୍ୟାୟିତ/ପଦ୍ୟାୟିତ କାବ୍ୟାଦି ବାଙ୍ମୟ ପ୍ରଜାତି ସମୂହ)। ସାହିତ୍ୟ ଜନ୍ମଲାଗ୍ନିକ ସୂତ୍ରରେ ସମୀକ୍ଷା ଓ ସମୀକ୍ଷା ତତ୍ତ୍ୱର ଅଗ୍ରଜ। ଲୋକବୃତ୍ତିକୁ ଆଧାର କରି କାବ୍ୟ ନାଟକାଦି ସର୍ଜନଶୀଳ ସୃଷ୍ଟି ନବରସର ଜାଗତିକ ଲୀଳାକ୍ଷେତ୍ରକୁ ଆଗେ ଆସିଥାଏ। ଜୀବନ ଓ ଜଗତ ପ୍ରତି, ମାନବୀୟ ସହଜାତ ଭାବନା ଓ ସାଂସ୍କୃତିକ ସମଯୋଜନାର ଅଭିଳାଷ ପ୍ରତି ସର୍ଜନଶୀଳ ସୃଷ୍ଟି କେତେଦୂର ଉପାଦେୟ, ଅଙ୍ଗୀକାରବଦ୍ଧ ଓ ଆହ୍ଲାଦ ବିତରଣରେ ସମର୍ଥ ତାହାକୁ ଆକଳନ କରିବାର ପ୍ରାଞ୍ଜିକ ଓ ନିରପେକ୍ଷ ଇଚ୍ଛାବୃତ୍ତିରୁ ସମୀକ୍ଷାର ସୃଷ୍ଟି। କବିର ସହଜା, ଆହାର୍ଯ୍ୟା ଅଥବା ଔପଦେଶିକୀ କବିତ୍ୱଶକ୍ତିର (ସଂସ୍କାରୋଚିତ ଦିବ୍ୟ ପ୍ରତିଭା, ଶାସ୍ତ୍ରଜ୍ଞାନାଦି ଅର୍ଜିତ ପ୍ରେରଣାପୁଷ୍ଟ ପ୍ରତିଭା ଓ ପ୍ରଯତ୍ନ ପ୍ରସୂତ ପ୍ରତିଭା) କାରୟିତ୍ରୀ ନିପୁଣତା ଏକ ଦିବ୍ୟ ଉନ୍ମତ୍ତତା ଭିତରେ ଶବ୍ଦାର୍ଥର କାବ୍ୟସୌଧ ନିର୍ମାଣ କରେ। ଏହି କାବ୍ୟସୌଧର ସୌନ୍ଦର୍ଯ୍ୟାବେଦନ ଅନଭାବିତପୂର୍ବ ନିର୍ମିତି (କଳା ସ୍ଥାପତ୍ୟର ସୃଷ୍ଟି) ହୋଇ ଅନ୍ୟର ନିର୍ମାଣ (ରଚନାକୌଶଳ) ପ୍ରେରଣା ହେଉ – ଏପ୍ରକାର ବିଭାବନକାରକ ରୁଚି ନେଇ କବି ଶବ୍ଦ ଓ ଅର୍ଥର, ଅପୂର୍ବ ବସ୍ତୁରୂପ ଅଙ୍କନ କରେ। ଏ କାରଣରୁ ଅପୂର୍ବ ବସ୍ତୁ ନିର୍ମାଣକ୍ଷମ ପ୍ରତିଭାଶକ୍ତିର ଅପତ୍ୟ ଭାବରେ କଳାସୃଷ୍ଟିକୁ ଗ୍ରହଣ କରାଯାଏ। ଦୋଷଶୂନ୍ୟ-ଗୁଣାଶ୍ରିତ ଶବ୍ଦାର୍ଥ ଏହି ପ୍ରତିଭା ଅପତ୍ୟର ଶରୀର। ଶବ୍ଦାର୍ଥ ଶରୀରରେ ରସ ଜୀବାତୁଶକ୍ତି ରୂପରେ ଅଧିଷ୍ଠାନ କରିଥାଏ। କାବ୍ୟାତ୍ମାରସ ଶବ୍ଦାର୍ଥରେ ଗଠିତ ଅବୟବଶ୍ରୀକୁ ଆଶ୍ରୟ କରି ପ୍ରସାଦ-ମାଧୁର୍ଯ୍ୟ-ରସ ଶବ୍ଦାର୍ଥରେ ଗଠିତ ଅବୟବଶ୍ରୀକୁ ଆଶ୍ରୟ କରି ପ୍ରସାଦ

ମାଧୁର୍ଯ୍ୟ-ଓଜଃ-ସୁକୁମାର ଆଦି ଗୁଣକୁ ଉଦାତ୍ତଧର୍ମ ଭାବରେ ଧାରଣକରି ଅପୂର୍ବ ବ୍ୟଂଜନାଶକ୍ତି ବଳରେ ଅଭିବ୍ୟକ୍ତି ଲାଭକରେ। ଏହି ଅଭିବ୍ୟକ୍ତି ଏକ ଲୋକୋତ୍ତର ସଂଚାରଧର୍ମୀ ଅଭିବ୍ୟକ୍ତି। ଏହା ସୌନ୍ଦର୍ଯ୍ୟବର୍ଦ୍ଧକ ପଦସଂଘଟନା, ଗୁଣାତ୍ମକ ବଚନ ବିନ୍ୟାସ, ଆଳଙ୍କାରିକ ଚାତୁରୀ, ବିଦଗ୍ଧ ବାଣୀଭଙ୍ଗୀ ଓ ରସାନୁସାରୀ ଔଚିତ୍ୟ ବିନ୍ୟାସର ଆଶ୍ରିତ ହୋଇଥାଏ। ରମଣୀୟାର୍ଥକ ପଦ, ଏହାର ଗୁଣାତ୍ମକ ସଂଘଟନା, ଭାବୋଚିତ ବୃତ୍ତିବନ୍ଧ ଓ ଧ୍ୱନ୍ୟାତ୍ମକ ଅର୍ଥଦ୍ୟୋତନା ସହିତ ଛାନ୍ଦସିକ ମାଧୁର୍ଯ୍ୟ ମିଶି କାବ୍ୟତାରେ ଅନଦୃଶିତପୂର୍ବ ଚମତ୍କାରିତା ସୃଷ୍ଟିକରେ। ରସାନୁସାରୀ ପ୍ରକରଣର ଚମତ୍କାରିତା କବିର ସର୍ଜନଶୀଳ ଅନୁଭୂତିର ନୂଆପଣକୁ ସହୃଦୟ ହୃଦୟ ସମ୍ବାଦରେ ପରିଣତ କରେ। କାବ୍ୟାଭିପ୍ରାୟକୁ ସହୃଦୟ ନିଜର ଅନୁଭୂତି, ପ୍ରତ୍ୟୟ ଓ ଅଭିପ୍ରାୟ ସହିତ ସଂଯୁକ୍ତ କରିଦେବା ଦ୍ୱାରା କାବ୍ୟଟି ଶିବସଂକଳ୍ପଦ୍ୟୋତକ ଭାବକୁ ସ୍ଫୋଟାୟିତକରି ଉତ୍ତମ କୃତିର ମର୍ଯ୍ୟାଦା ପାଏ। କୃତି ସହିତ ମିଶି ସହୃଦୟ ଲୋକୋତ୍ତର ଆହ୍ଲାଦ ଅନୁଭବ କରେ। ତଟସ୍ଥ କରିଦେବାରେ ସମର୍ଥ ସାହିତ୍ୟର ବିଷୟ, ଚରିତ୍ର ଓ ବକ୍ତବ୍ୟ କାଳବୋଧର ପାଚେରୀ ଟପି ସାର୍ବିକ ଜୀବନ ଓ ଜଗତକୁ ଗଠନାତ୍ମକ ଉଦାହରଣମାନ ଯୋଗାଇ ଚାଲିଥାଏ।

ଏପ୍ରକାର ସାର୍ବକାଳିକ ଆଲୋକୋପମ ବିଶ୍ୱାସର ସାରସ୍ୱତ ସୃଷ୍ଟି ସମୀକ୍ଷାଯୋଗ୍ୟ ଏବଂ ଏହାର ଉଦାତ୍ତ ସୌନ୍ଦର୍ଯ୍ୟର ଅନୁପମତାର ରହସ୍ୟ ଓ ବିଶେଷତାକୁ ସମୀକ୍ଷା କରିବାକୁ ତଲ୍ଲୀନପାଠକ ଭାବୟିତ୍ରୀ ଦକ୍ଷତାରେ ପ୍ରବୃତ୍ତ ହୁଏ। ଅହଂମନଶୂନ୍ୟ, ନିରପେକ୍ଷ, ପ୍ରିୟାପ୍ରୀତିତୋଷଣ ନିର୍ବିକାର, ସମ୍ବେଦନଶୀଳ, ଉଦାର ଗ୍ରାହକୀୟ ଆତ୍ମୀୟତା ଓ ସମୀଭୂତ ମାନସିକତା ସଂପନ୍ନ ଏବଂ ସ୍ୱଚ୍ଛ ଦର୍ପଣାୟିତ ହୃଦୟର ମର୍ମଜ୍ଞ ସାମାଜିକ ପୁନଃପୁନଃ ଅନୁସଂଧାନାତ୍ମିକା ଭାବନା ଓ ଅଭ୍ୟାସ ହେତୁ ସାହିତ୍ୟକୃତିର ସାମଗ୍ରିକ ସୌନ୍ଦର୍ଯ୍ୟ କଳନା କରିବାକୁ ଚାହେଁ। ଏହି ଇଚ୍ଛାବୃତ୍ତି ଓ ସାରସ୍ୱତୀୟ କର୍ତ୍ତବ୍ୟହିଁ ସମୀକ୍ଷାକୁ ଜନ୍ମଦିଏ।

ସମୀକ୍ଷା ଶବ୍ଦର ନିଷ୍ପାଦନ ବା ଗଢ଼ଣ ଦ୍ୱିସ୍ତରୀୟ ପ୍ରତ୍ୟୟ ଆରୋପଣ ଭିତ୍ତିରେ ହୋଇଛି। ପ୍ରଥମ ସ୍ତରଟି ହେଉଛି ସମ୍-ଈକ୍ଷ୍+ଅ = ସମୀକ୍ଷ। ଏହାର ଅର୍ଥ ସମ୍ୟକ୍ ଦୃଷ୍ଟି। ସମ୍ୟକ୍ (ସମ୍-ଅନ୍ଚ୍-କ୍ୱିପ୍ = ସମ୍ୟକ) ଅର୍ଥ ଉତ୍ତମ ରୂପେ ସମଗ୍ର ଭାବରେ। 'ଦୃଷ୍ଟି' (ଦୃଶ୍+ତି) ଅର୍ଥ ଜ୍ଞାନପୂର୍ଣ୍ଣ ଦର୍ଶନ। ଏ ସମସ୍ତକୁ ଅବଲମ୍ବନ କରି ସମୀକ୍ଷା ବା ସମ୍ୟକ୍ ଦୃଷ୍ଟିର ବିଚାରର ପରିଭାଷାଟିକୁ ପ୍ରାଚ୍ୟ ଅବବୋଧ ଭିତ୍ତିରେ ଏହିପରି ନିର୍ଦ୍ଦିଷ୍ଟ କରାଯାଇପାରେ– 'ଉତ୍ତମରୂପେ ସମଗ୍ରଭାବରେ ସଯତ୍ନରେ ଅନୁସଂଧାନ

କରି ସର୍ଜନଶୀଳ କୃତିର ସତ୍ୟ ଓ ସୌନ୍ଦର୍ଯ୍ୟକୁ (ଭାବଗତ ସତ୍ୟ+ରୂପଗତ ସୌନ୍ଦର୍ଯ୍ୟ) ପ୍ରଜ୍ଞାଶୀଳ ଆକଳନ କରିବା।' ଦ୍ୱିତୀୟ ସ୍ତରଟି ହେଉଛି ସମୀକ୍ଷା+ଆ=ସମୀକ୍ଷା। ଏହାର ଅର୍ଥ ସାମଗ୍ରିକ ଭାବରେ ବୀକ୍ଷଣ ବା ବିଶେଷ ରୂପେ କୃତିର ବାହ୍ୟରୂପ ଓ ଅନ୍ତଃରୂପର ନିରୀକ୍ଷଣ କରିବା। ସମୀକ୍ଷାର ଏହି ବିଶେଷ ନିରୀକ୍ଷଣ ବୃତ୍ତିଟି ହେଉଛି– ଖଣ୍ଡନ ଓ ମଣ୍ଡନ ଦୃଷ୍ଟିରେ କଳାକୃତିର ଉଭୟ ଦୋଷଗୁଣ ମୀମାଂସା କରି ତାହାର ସୌନ୍ଦର୍ଯ୍ୟ ଓ ମହତ୍ତମ ଆବେଦନକୁ ସାକାରାତ୍ମକ ଦିଗରୁ ସିଦ୍ଧାନ୍ତନିଷ୍ଠ କରି ଦେଖାଇଦେବା। ସାହିତ୍ୟ ରଚନା ଭିତରେ ଥିବା ସତ୍ୟ ଦର୍ଶନକୁ ସମୀକ୍ଷାର ଅସ୍ତ୍ର, ସମୀକ୍ଷକର ନିରପେକ୍ଷତାକୁ ଏହାର ସାମର୍ଥ୍ୟ ଓ ସୌନ୍ଦର୍ଯ୍ୟାକଳନକୁ ଏହାର ଉପାୟ ଭାବରେ ଗ୍ରହଣ କରାଯାଇପାରେ।

ରସଗ୍ରାହୀ ସମୀକ୍ଷକ କବିପାଖରୁ ନିର୍ମଳ କବିତ୍ୱ ଲୋଡେ। ଆଚାର୍ଯ୍ୟ ଦଣ୍ଡୀଙ୍କ ମତରେ ଦୋଷରହିତ ପବିତ୍ରପ୍ରାଣ ନୈସର୍ଗିକୀ ପ୍ରତିଭାର ଅଧିକାରୀ ସ୍ୱଚ୍ଛକାବ୍ୟତା ଯୋଗାଇ ଦିଅନ୍ତି। ଏମାନଙ୍କ କାବ୍ୟସଂପଦ ଅମନ୍ଦ ଓ ଅଭିଯୋଗରହିତ। ଭାମହଙ୍କ ବିଚାରରେ ସଦ୍‌କବିତ୍ୱ ଏକ ମାଳାକାରବୃତ୍ତି। କେଉଁଫୁଲ ସୁନ୍ଦର, ଗୁନ୍ଥାଯୋଗ୍ୟ ଓ କେଉଁଫୁଲ ସହିତ ମିଶି କିପରି ସ୍ଥାନରେ ଗୁନ୍ଥାହେଲେ ଚାରୁତା ବର୍ଦ୍ଧିତ ହେବ– ଏସବୁକୁ ମାଳାକାର ଚିନ୍ତାକରି ମନୋମୁଗ୍ଧକର ପୁଷ୍ପହାର ଯେପରି ରଚନାକରେ ସେହିପରି ସତ୍-ନିର୍ମଳ କବି ସାବଧାନତା ସହିତ ଅପୂର୍ବ ନିର୍ମାଣ ଆଗ୍ରହରେ ସୁନ୍ଦର, ସାର୍ଥକ, ମନୋଜ୍ଞ, ସରସ, ଲଳିତ ଧ୍ୱନିସର୍ଜକ ପଦଚୟନ ଓ ସଂଯୋଜନା କରି ମୁଗ୍ଧକର ଭାବ ଉତ୍ପାଦନ କରିଥାଏ। ଭଲ କବିର କାବ୍ୟତା ପ୍ରୟୋଜନବୋଧର କାବ୍ୟତା। ଭରତଙ୍କଠାରୁ ବିଶ୍ୱେଶ୍ୱର ପଣ୍ଡିତଙ୍କ ପର୍ଯ୍ୟନ୍ତ ଚାଳିଶିରୁ ଉର୍ଦ୍ଧ୍ୱ ଆଳଙ୍କାରିକ କାବ୍ୟର ପ୍ରୟୋଜନ ସାଧନ ଶିବସଂକଳ୍ପନିଷ୍ଠ, ସତ୍ୟ ପ୍ରକାଶନିଷ୍ଠ ଓ ସୁନ୍ଦର ବିତରଣ ଭିତ୍ତିକ ହେବା ଉପରେ ଗୁରୁତ୍ୱ ଦେଇଛନ୍ତି। ମହତ୍‌କବିଙ୍କ କାବ୍ୟବାଣୀ ବୈଦିକ ଋଷିବତ୍ ଆଦେଶ ଦିଏ, ସୁହୃଦ ପରି ପରାମର୍ଶ ଦିଏ ଓ ବିଶେଷ କରି ପତ୍ନୀ ପରି କୋମଳ ସଂଭାଷଣଧର୍ମରେ ଉପଦେଶ ଦିଏ। ନିର୍ମଳ କବିତ୍ୱର କଳ୍ପଲୋକ ଭିତରେ ସତ୍ୟ ଆନନ୍ଦାନୁଭୂତି, ଯଶ-ଅର୍ଥ-କାମ-ମୋକ୍ଷ ସଂଯୁକ୍ତ ଆଲୋକିତ ଭାବାନୁଭୂତି, କଳା ବୈଚକ୍ଷଣ, ଲୋକ ବ୍ୟାବହାରିକ କୌଶଳ ଓ କଲ୍ୟାଣବୋଧକ ଉପାୟମାନ ପୂର୍ଣ୍ଣଥାଏ। ବକ୍ରୋକ୍ତିବାଦୀ କୁନ୍ତଳଙ୍କ ଧାରଣାରେ ରସ ବିଭାବନକାରକ, ନବାର୍ଥ ପ୍ରତିପାଦନଯୋଗ୍ୟ ଓ ବୁଦ୍ଧିବିଶୋଧିତ ବାଣୀଭଙ୍ଗୀ ହିଁ ଶ୍ରେୟକବିତ୍ୱ। ସୁତରାଂ ଏବଂବିଧ କବିପଣର କାବ୍ୟତା ଓ କାବ୍ୟ ସମୀକ୍ଷାଯୋଗ୍ୟ।

ଅପରପକ୍ଷରେ କବିସତ୍ତା ସର୍ବଦା ମର୍ମଜ୍ଞ, ରସିକ, ବିକଳ୍ପକ, ସୁମନସ ସହୃଦୟଙ୍କର ସମୀକ୍ଷାକୁ ପ୍ରତୀକ୍ଷା କରେ। ସହୃଦୟଙ୍କ ମନଦର୍ପଣ ନିର୍ମଳଥିବ। କାବ୍ୟର

ଶ୍ରୀ ଓ ସୌଭାଗ୍ୟର ଚିତ୍ର ସେହି ଦର୍ପଣରେ ଭାବମୟ ହୋଇ ପ୍ରତିଫଳିତ ହୋଇପାରୁଥିବ। ତାଙ୍କର କାବ୍ୟାନୁଶୀଳର ଅଭ୍ୟାସ ଥିବ। ପଣ୍ଡିତପଣରେ ବହୁଶାସ୍ତ୍ରଦର୍ଶୀ ବିଚାର ସାମର୍ଥ୍ୟକୁ ନେଇ ସେ କାବ୍ୟକୁ ପଢ଼ି ଶୁଣି ସିଦ୍ଧାନ୍ତ ନେଇପାରୁଥିବେ। କାବ୍ୟରମଣୀର ଯାବତୀୟ ଗଢ଼ଣଚାତୁରୀ ଓ ଭାବପ୍ରବାହର ଚମତ୍କାରିତା ସହିତ ତନ୍ମୟୀଭବନ ଯୋଗ୍ୟତାରେ ସେ ଏକାତ୍ମୀଭୂତ ହୋଇପାରୁଥିବେ। କାଳିଦାସଙ୍କ କବିପୁରୁଷ ନିମନ୍ତେ କାବ୍ୟମୋଦୀ ମୀମାଂସକ କାବ୍ୟସ୍ଥ ଉପମାବାଚକ ସାଦୃଶ୍ୟକଳ୍ପ ଓ ଅନୁପ୍ରାସପ୍ରାଣ ଶ୍ରୁତିବୋଧର ମାଧୁରୀକୁ ହୃଦୟଙ୍ଗମ କରି ବାଗାର୍ଥର ପାର୍ବତୀ ପରମେଶ୍ୱରୀୟ ମହାମିଳନର ସୌନ୍ଦର୍ଯ୍ୟକୁ ବିଲୋକନ କରି ପାରୁଥିବେ। ଭାରବିଙ୍କ କବିସତ୍ତା ବିଚାରରେ କାବ୍ୟର ଅର୍ଥ ଦ୍ୟୋତନାକୁ ଆବଶ୍ୟକ ଅନୁସାରେ ନବାର୍ଥକରଣ କରିପାରୁଥିବା କଳ୍ପଜନ ହିଁ କାବ୍ୟ-ଉପଭୋକ୍ତା ଓ ଉପଯୁକ୍ତ ନିର୍ଣ୍ଣାୟକ। ବାଣ ପରୋକ୍ଷରେ ସ୍ୱୀକାର କରନ୍ତି ଯେ କାବ୍ୟନୁଶୀଳନକାରୀର ବକ୍ରୋକ୍ତିବୋଧବାଦୀ ଗୁଣଥିବ ଓ ସେ କାବ୍ୟର ଚାତୁର୍ଯ୍ୟୋକ୍ତିକାରକ ଶ୍ରୀକୁ ବିଭଙ୍ଗ କରି ଆନନ୍ଦ ନେବାରେ ଓ ଦେବାରେ ନିପୁଣ ହୋଇପାରିଥିବେ। ସାରୋଳା ଦାସଙ୍କ ବିଚାରରେ ପୁରାଣ ପରାମର୍ଶ ଗ୍ରହଣକାରୀ ସୁଧୀଜନେ କବିର ଭଣତିରେ ଥିବା ଅଦୃଷ୍ଟ ଦୃଷ୍ଟକରଣର ନବଭିଆଣକୁ ବୁଝି ବୁଝାଇ ପାରୁଥିବେ। ରସବାଦୀ ଓଡ଼ିଆ କବି ଦୀନକୃଷ୍ଣଙ୍କ ପାଇଁ ରସିକ ପଣ୍ଡିତ, ଉପେନ୍ଦ୍ରଙ୍କ ପାଇଁ ଅର୍ଥୀ-ପଣ୍ଡିତ-ସହୃଦ ଓ ଅଭିମନ୍ୟୁଙ୍କ ନିମନ୍ତେ ବିବେକଗ୍ରାହକ ହିଁ କାବ୍ୟସୌନ୍ଦର୍ଯ୍ୟ ବିବେଚନା/ସମୀକ୍ଷା ପାଇଁ ଉପଯୁକ୍ତ ଅଟନ୍ତି। ଏଥିପାଇଁ ବେଳେବେଳେ ଯଥାର୍ଥ ବ୍ୟାଖ୍ୟାକାରୀ ସମୀକ୍ଷାସିଦ୍ଧାନ୍ତଦର୍ଶୀଟିଏ ପାଇବାର ସନ୍ଦେହରେ ଓ ପ୍ରତୀକ୍ଷାରେ ବିଜଡିତ ହୋଇ ପ୍ରାଚୀନ ସଂସ୍କୃତ କବି, ପ୍ରାକୃତ କବି ଓ ମଧ୍ୟଯୁଗୀୟ ଓଡ଼ିଆଭଳି ପ୍ରାନ୍ତୀୟ ଭାରତୀୟ ଭାଷାଭାଷୀ କବି ନିଜ କାବ୍ୟର ବିଶେଷତ୍ୱ, ଲକ୍ଷଣ, ଗଢ଼ଣ ଓ ଆବେଦନ ସଂପର୍କରେ କବି-ସିଦ୍ଧାନ୍ତମାନ ପ୍ରଦାନ କରିଯାଇଛନ୍ତି। କାବ୍ୟରେ କବିର ସୈଦ୍ଧାନ୍ତିକ ଭୂମିକା ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ସମୀକ୍ଷା ପାଇଁ ଅପରକୁ ଆହ୍ୱାନ ଜଣାଇଛି ଓ ସୁଲଭ ଆକଳନର ମାର୍ଗଟିଏ ଆଭାସିତ କରିଦେଇଛି। ଏଥିରୁ ଗୋଟିଏ କଥା ସ୍ପଷ୍ଟ ହୁଏ ଭାରତୀୟ କାବ୍ୟକର୍ଷଣ ପରଂପରା ସୁପ୍ରାଚୀନ ଓ ସୁନିରୂପିତ। ପାଠକ-ସମୀକ୍ଷକ ଓ କବି-ସମୀକ୍ଷକ ମିଶିଯିବାରେ ହିଁ ସମୀକ୍ଷା ଉତ୍ତର ପିଢ଼ିପାଇଁ ପ୍ରେରଣାଦାୟକ ହୋଇଉଠେ – ଏଥିରେ ଭାରତୀୟ ସାହିତ୍ୟ ମୀମାଂସା ଆସ୍ଥାବାନ।

ସମୀକ୍ଷାକୁ ପ୍ରାଚ୍ୟ ପରଂପରାରେ ଆଲୋଚନା (ଆ-ଲୋଚ୍+ଅନ୍-ଆ), ଅନୁଶୀଳନ (ଅନୁ-ଶୀଲ୍+ଅନ) ସମାଲୋଚନା (ସମ୍-ଲୋଚ୍+ଅନ୍-ଆ), ଅନ୍ୱେଷାତ୍ମକ

ସାଗ୍ରହ ଚର୍ଚ୍ଚା, ସତ୍ୟ ଓ ସୌନ୍ଦର୍ଯ୍ୟକୁ ସଂଧାନମୂଳକ ଖଣ୍ଡନ-ମଣ୍ଡନଧର୍ମୀ ବିଚାର, ଚିନ୍ତା-ବିଶ୍ଳେଷଣ-ବିବେକାନୁମୋଦିତ-ନିରପେକ୍ଷ ବିବେଚନା ଭାବରେ ବିକଶିତ କରାଯାଇଛି। ସାମାନ୍ୟ ପ୍ରାର୍ଥକ୍ୟ ଏସବୁ ମଧ୍ୟରେ ଥିଲେ ମଧ୍ୟ ସବୁଗୁଡ଼ିକର ଉଦ୍ଦେଶ୍ୟ ହେଉଛି- କବିର କାବ୍ୟାଭିଳାଷ ଓ ସହୃଦୟର ବିଶ୍ୱାସ ମିଶ୍ରଣରେ କାବ୍ୟରୂପକ ଶୁଦ୍ଧସୃଷ୍ଟିର ଦୋଷଶୂନ୍ୟ ମହତ ଉପାଦେୟତାକୁ ଦେଖି ଦେଖାଇଦେବା ଏବଂ ଏହାଦ୍ୱାରା ଏକ ବୃହତ୍ତମ ସାଂସ୍କୃତିକ ଅଭିଳାଷର ବୀଜବପନ କରିଦେବା।'

ସମୀକ୍ଷା ଉତ୍ତର ପିଢ଼ିପାଇଁ କାବ୍ୟ ନିର୍ମାଣ କରିବାକୁ ଓ କାବ୍ୟାନୁଶୀଳନ କରିବାକୁ ଯେତେବେଳେ କେତେକ ମାନକ ବିଶେଷତ୍ୱ ପରିବେଷଣ କରି ମୌଳମତ ବା ମୂଳନୀତି ନିର୍ଦ୍ଦିଷ୍ଟ କରିଦିଏ ସେତେବେଳେ ତାହା 'ସମୀକ୍ଷାତତ୍ତ୍ୱ' ଭାବରେ ପ୍ରସିଦ୍ଧିଲାଭ କରେ। ସମୀକ୍ଷାତତ୍ତ୍ୱ ନିର୍ଦ୍ଦିଷ୍ଟ ମାର୍ଗରେ ଅନୁରୂପତା ଧର୍ମରେ କାବ୍ୟର ଆକଳନ ପାଇଁ ଧାରା ପଦ୍ଧତି ଯୋଗାଇଦିଏ। କାବ୍ୟ ମୀମାଂସାର ସୂତ୍ରାୟିତ ଅନୁଶାସନ ହିଁ ସମୀକ୍ଷାତତ୍ତ୍ୱ। କାବ୍ୟଦର୍ଶନ ଓ କାବ୍ୟ ନିର୍ମାଣରେ ଥିବା ବିରୋଧ-ସମସ୍ୟାର ମୀମାଂସା ବା ସମାଧାନ ନିମନ୍ତେ ସମୀକ୍ଷାତତ୍ତ୍ୱର ଅନୁଶାସନ ସୁପରୀକ୍ଷିତ ସିଦ୍ଧାନ୍ତବୀଜଗୁଡ଼ିକୁ ପରସ୍ପରୀର ପ୍ରଭାବଶାଳୀ ନିର୍ମିତି ପାଇଁ ଯୋଗାଇଦିଏ। ଏ ଅନୁଶାସନଟି ହେଉଛି ସର୍ଜନଶୀଳ କଳାକୃତିର ପ୍ରସାର ପ୍ରକ୍ରିୟାର ମୂଳଭିତ୍ତି। ପାଶ୍ଚାତ୍ୟଜଗତରେ କଠୋର ପ୍ରଶିକ୍ଷଣ ଭାବରେ ସାହିତ୍ୟାନୁଶୀଳନ ଶିକ୍ଷାଦେବାର ଯଥାର୍ଥତାଟି ଆମଦେଶରେ କୋହଳ ହୋଇରହିଛି ଅଥବା ଉତ୍ତମ ରୂପରେ ଲାଗୁ ହୋଇନି। ଆମ ଜ୍ଞାନକୁ ବିଶ୍ୱାୟିତ କରିବାର ଲକ୍ଷ୍ୟ ନେଇ ଆୟୋଗିକ ସଂସ୍ଥାମାନଙ୍କ ଅନୁଦାନରେ ଅନେକ ଉଜ୍ଜୀବନ ଓ ସତେଜୀକରଣର ତାଲିମ କାର୍ଯ୍ୟକ୍ରମ ସାମ୍ନାକୁ ଗଣମାଧ୍ୟମ ଫଟୋଚିତ୍ର ମାଧ୍ୟମରେ ଆସୁଛନ୍ତି। ମାତ୍ର ସିଦ୍ଧାନ୍ତରେ ପହଞ୍ଚି ନିର୍ଦ୍ଦିଷ୍ଟ ସମୟଖଣ୍ଡକୁ କିପରି ତତ୍ତ୍ୱସୂତ୍ରରେ ମହତ୍ତମ ବିଦ୍ୟାର ରଚନାଗୁଡ଼ିକ ବୁଝି ବୁଝାଇବାକୁ ହେବ ତାହାର ଅଭାବ ସୁଦୂରପ୍ରସାରୀ ହୋଇଚାଲିଛି। ଏଠାରେ ଉଲ୍ଲେଖଯୋଗ୍ୟ ସାହିତ୍ୟତତ୍ତ୍ୱର ସୁନ୍ଦରତମ ବିଚାରଗୁଡ଼ିକ ଅନ୍ୟଜ୍ଞାନର ଜଟିଳତାକୁ ସରଳ କରିଦେବାର ଉପାୟ ବତାଇଥା'ନ୍ତି। ଏଦିଗରୁ ପାଶ୍ଚାତ୍ୟ ଭୂଖଣ୍ଡ ପରି ଆମ ଭୂଗୋଳ ପରିସରରେ ସାହିତ୍ୟ ସମୀକ୍ଷାତତ୍ତ୍ୱ ଓ ସମୀକ୍ଷକ ଆମ ଜଳବାୟୁର ବିଶେଷତାକୁ ନେଇ ନୂଆ ପ୍ରକାରମାନ ସୃଷ୍ଟି କରିବା ଉଚିତ କି ନୁହେଁ– ଏ ପ୍ରଶ୍ନ ସୁଧୀ ବୁଦ୍ଧିଜୀବୀଙ୍କର ହେଉ। ଏପ୍ରକାର ପ୍ରଶ୍ନ ଆମେ ଆମ ବିବେକ; ଆମ ହୃଦୟ ଓ ମସ୍ତିଷ୍କକୁ ପଚାରି ନଥିବାରୁ ସାହିତ୍ୟ ସମୀକ୍ଷା ପରଂପରାରେ ନାଁ ଆମେ ଗୋଟାପଣେ ପ୍ରାଚ୍ୟର, ନାଁ ସଫଳ ଭାବେ ପାଶ୍ଚାତ୍ୟର, ନାଁ ଉଭୟକୁ ମିଶାଇ

ଏକ ତାତ୍ତ୍ୱିକ ସାରପ୍ରଣାଳୀ ପ୍ରସ୍ତୁତରେ ସମର୍ଥ। ତତ୍ତ୍ୱ+ବାଦ+ଧାରା+ଲକ୍ଷଣ+ପ୍ରକାରକୁ ନେଇ ଆମ ସମୀକ୍ଷାରେ ଯେପରି ଘାଣ୍ଟ ନିର୍ମାଣ କରି ଚାଲିଛେ ତହିଁରୁ ଜଣାଯାଉଛି ଦାୟିତ୍ୱହୀନ ଭାବେ ଆମେ ଅନୁଶାସନର ସମସ୍ତ ସୀମାକୁ ନଜାଣି ବା ଜାଣି ବି ଜାଣିଶୁଣି ସୀମା ଡେଇଁ ଯାଦୃଚ୍ଛିକୀ ହୋଇଚାଲିଛେ। ତେଣୁ ଆମ ଆଲୋଚନା ଧାରାରେ ଆମ ଐତିହ୍ୟର ସମୀକ୍ଷାତତ୍ତ୍ୱଗୁଡ଼ିକ ମରହଟ୍ଟୀ, ମଧ୍ୟଯୁଗୀୟ କାବ୍ୟଧାରା ପର୍ଯ୍ୟନ୍ତ ବିଚାର ପାଇଁ ସୂତ୍ର ଯୋଗାଇବାରେ ଦକ୍ଷତା ରଖନ୍ତି ଏବଂ ରସ-ରୀତି-ଧ୍ୱନିବାଦୀ ସଂଜ୍ଞା-ଲକ୍ଷଣ-ପ୍ରକାର ରୂପେ ଟିପ୍ପଣୀକାରକ ହୋଇ ବିଶ୍ଳେଷଣ ହୁଅନ୍ତି। ଏମାନଙ୍କର ଗୁଣାତ୍ମକ ବିବର୍ତ୍ତନ ଓ କାବ୍ୟିକ ଭୂମିକା ପରିଭାଷା ନିର୍ମାଣର ଚକଟା ଭିତରେ ଏବେ ବି ଅସ୍ପଷ୍ଟ। ଏ ହେଲା ଓଡ଼ିଆ ସାହିତ୍ୟାଲୋଚନାର ଭିତିରି ପରିବାରୀ କଥା- ତେଣୁ ଅଣ୍ଡିନିଆଁବତ୍ ଏଇଠି ଥାଉ।

ବାହାର କଥାଟିକୁ ଏବେ ବିଚାରକୁ ଅଣାଯାଉ। ଏବେ ଆମେ ଜଗତୀକରଣ ପର୍ଯ୍ୟାୟରେ ବିଶ୍ୱାୟନ ଲକ୍ଷଣରେ ଆମକୁ ଦେଖି ଦେଖାଇହେବାକୁ ବେଶ୍ ପ୍ରଯତ୍ନ ଆରମ୍ଭ କରିଦେଇଛେ। ଆମ ମାନସିକତା ମାର୍କିନ-ଚୀନ୍-ଜାପାନ୍-କାନାଡା-ଇଂଲଣ୍ଡ ଆଦି ବିଦେଶୀ ଉତ୍ପାଦନଗୁଡ଼ିକୁ (ଉଭୟ ବସ୍ତୁ ଓ ଭାବଗତ) ଆପଣେଇବାରେ ଯେପରି ହନ୍ତସନ୍ତ, ବିବ୍ରତ, ବ୍ୟଗ୍ର, ବ୍ୟାକୁଳ ଓ ସେସବୁକୁ ବ୍ୟବହାର କରି ଧାରଣ କରି ଓ ସାଇତିରଖି ଆଗେଇବାର ଉପାୟ ସଂଧାନରେ ଯେପରି ପ୍ରତିଯୋଗିତା ସଂପନ୍ନ ସେହି ଦୃଶ୍ୟଗୁଡ଼ିକ ଗାଁରୁ ସହର, ଶିକ୍ଷାକର୍ମୀ କର୍ମଶାଳାରୁ ବିଶ୍ୱବିଦ୍ୟାଚର୍ଚ୍ଚାର ଆଳୟଗୁଡ଼ିକ ପର୍ଯ୍ୟନ୍ତ ବେଶ୍ କୌତୁକମୟ ହୋଇ ଉଠିଛନ୍ତି। ଜଗତୀକରଣ କହିଲେ ଉତ୍କଳୀୟତା ଓ ଭାରତୀୟତାକୁ ଆମେରିକୀୟ, ଜାପାନୀୟ, ୟୁରୋପୀୟ ଅସ୍ମିତା ଓ ବଳଶାଳିତା ଭିତରେ ନିମଜ୍ଜିତ କରିଦେବା କେବଳ ନୁହେଁ। ଜଗତର ସକଳ ପ୍ରକାର କରଣ ଭିତରେ ଭାରତୀୟତାର ତାତ୍ତ୍ୱିକ ଦର୍ଶନ, ବିଚାର, ରୁଚି ଓ ସ୍ୱାଭିମାନକୁ ବିସ୍ମୟୋତ୍ପାଦନ ମୂର୍ତ୍ତିରେ ପରିଣତ କରି ନୂଆନ୍ୟାୟରେ ସେମାନଙ୍କୁ ସଜାଇ ବିଶ୍ୱତୋମୁଖୀ କରିବା। ଏ ଦୃଷ୍ଟିରୁ ଉପନିବେଶବାଦୀ ବଳଶାଳୀ ହେତୁପଣ ଦ୍ୱାରା ଆମ କାବ୍ୟତତ୍ତ୍ୱରୁ ସରଳ ସୁନ୍ଦରତାମାନଙ୍କୁ ନେଇ ତାଙ୍କୁ ନୂଆରୂପରେ ପ୍ରସ୍ତୁତ କରି ଆମ ବଜାର ଚାହିଦାରେ ତାଙ୍କୁ ତାଙ୍କର କରି ରପ୍ତାନୀସୂତ୍ରରେ ଯୋଗାଇ ଦେବାର ମହତ ଉଦ୍ଦେଶ୍ୟ ମଧ୍ୟରେ ଅଷ୍ଟାଦଶ ଶତାବ୍ଦୀଠାରୁ ସାମ୍ରାଜ୍ୟବାଦୀ ଶକ୍ତି ଆମ ସମୀକ୍ଷାତତ୍ତ୍ୱକୁ ରସ ଶୋଷି ନେଇ ଚୋକଡରେ ପରିଣତ କରିଦେବାର କୌଶଳ କାର୍ଯ୍ୟକାରୀ କରିବସିଲେ। ଫଳରେ ଆଧୁନିକ ଶିକ୍ଷାର ପ୍ରସସ୍ତ ଚାନ୍ଦୁଆତଳେ ପ୍ରାଚୀନ ମଧ୍ୟଯୁଗୀୟ କାବ୍ୟର ଆଳଙ୍କାରିକ ତର୍ଜମା ବିଧାନର ମାନକରୂପେ ଭାରତୀୟ ସମୀକ୍ଷାତତ୍ତ୍ୱ କଣଟିପି ହୋଇ ରହିବାକୁ

ବାଧ୍ୟ ହୋଇଛି। ପାଶ୍ଚାତ୍ୟ ସମୀକ୍ଷାତତ୍ତ୍ୱର ସମାନ୍ତରାଳମାର୍ଗୀ ଏକ ଦାୟିତ୍ୱବାନ ଆକଳନ ପ୍ରକ୍ରିୟା ବାର୍ତ୍ତମାନିକ ଉତ୍ତର ଆଧୁନିକ ବିଚାରବୋଧୀମାନଙ୍କୁ ନିର୍ମାଣ କରିବାକୁ ପଡ଼ିବ। ଏ ଆଧୁନିକତା ଗୋଟାସୁଧା ଭାରତୀୟ ଅବବୋଧର ବୈଚିତ୍ର୍ୟକୁ ନେଇ ବିଶ୍ୱାୟନୀବିଧାନ ସହିତ ସମୀଭୂତ କରିପାରିବ। ଆମେ ବି ଜଗତୀକରଣ ଓ ଉତ୍ତର ଆଧୁନିକୀକରଣ ପଟ୍ଟଚିତ୍ରରେ ଏକ ବଳିଷ୍ଠ ଅଂଶ ଓ ଅନ୍ୟମାନଙ୍କର ଅନୁକରଣଯୋଗ୍ୟ; ତାହା ପ୍ରମାଣ କରିବାର କର୍ତ୍ତବ୍ୟବୋଧଟିଏ ଆମ ସମୀକ୍ଷାତତ୍ତ୍ୱଦର୍ଶୀଙ୍କ ବିଚାର ଗର୍ଭକୁ ରମଣୀୟ ପ୍ରେରଣାରେ ଅବତରଣ କରୁ।

ଏହି କ୍ରମରେ ଭାରତୀୟ ସମୀକ୍ଷାତତ୍ତ୍ୱର ଯୁଗାନୁସାରୀ ପ୍ରୟୋଜନବୋଧକ କ୍ରମୋନ୍ନତିକ ବୈଚିତ୍ର୍ୟ ଉପରେ ସମ୍ୟକ୍‌ରୂପେ ସଂକ୍ଷିପ୍ତରେ ଅନୁଶୀଳନ କରାଯାଉଅଛି।

(ଦୁଇ)

ସମୀକ୍ଷାତତ୍ତ୍ୱକୁ ଭାରତୀୟ ବିଦ୍ୱାନମାନେ ସାହିତ୍ୟକୃତିର ମହନୀୟ-ଉପାଦେୟ-ଗୌରବ ନିରୂପଣର ଦର୍ଶନୋଚିତ ମାପଦଣ୍ଡ ଭାବରେ ଗ୍ରହଣ କରିଛନ୍ତି। ମହାଭାରତୀୟତାର ଅଂଚଳଭେଦ ଓ ରାଜନୀତିକ-ଆଧ୍ୟାତ୍ମିକ-ସାମାଜିକ ଅବସ୍ଥାଚକ୍ରର ପରିବର୍ତ୍ତନ ଅନୁସାରୀ ସମୟଖଣ୍ଡ ମୁତାବକ ସମୂହରୁଚିର ପରିବର୍ତ୍ତନକୁ ନେଇ ସାହିତ୍ୟ ଓ ତା'ର ଗୌରବ ମୂଲ୍ୟାୟନକାରୀ ଅନୁଶାସନର ସ୍ୱରୂପ ବଦଳିଛି। କୌଣସି ଗୋଟିଏ ସମୟର ସମୀକ୍ଷା ସିଦ୍ଧାନ୍ତ ସାହିତ୍ୟର ହିରଣ୍ୟଗର୍ଭା ରହସ୍ୟ ଓ ସୌନ୍ଦର୍ଯ୍ୟକୁ ଆକଳନ କରିବାରେ ଶତପ୍ରତିଶତ ସଫଳ ହୋଇଛି। ଏପ୍ରକାର ଦାବୀ ସର୍ବଦା-ସର୍ବଥା ସାବ୍ୟସ୍ତ କରିପାରି ନାହିଁ। ତେଣୁ ଗୋଟିଏ କାଳ ପୁରୁଣା ପରିଚିତ ନେବା ପରି ଗୋଟିଏ ସମୀକ୍ଷାତତ୍ତ୍ୱ ପ୍ରଥାସିଦ୍ଧ ଓ ପାରଂପରିକ ହୋଇଉଠିଛି। ପରଂପରାକୁ ଆଧାର କରି ପରବର୍ତ୍ତୀ ଯୁଗ ନୂତନ ଓ ଶ୍ରେଷ୍ଠ ଭାବରେ ଚିନ୍ତାରାଜ୍ୟର ସିଂହାସନ ଆରୋହଣ କରିଛି। ଏହି ମର୍ମରେ ଜଗତ ଓ ଜୀବନର ମୂର୍ତ୍ତିବନ୍ତ ପ୍ରତିଛବି ସାହିତ୍ୟ ପୂର୍ବସ୍ୱରୀୟ କଳ୍ପନା ଓ ଭାବନାଠାରୁ ଆଧୁନିକ ବୋଲି ପଟ୍ଟାଟିଏ ପାଇଛି ଓ ପାଉତିଟିଏ ସଂଗ୍ରହ କରିନେଇଛି। ସାହିତ୍ୟ ସମୀକ୍ଷାତତ୍ତ୍ୱ ମଧ୍ୟ ଏ ବ୍ୟବସ୍ଥାରେ ପ୍ରମୁଖ ଅଂଶୀଦାର ହୋଇଛି। ପୁନଶ୍ଚ ମହାପ୍ରକୃତିର ପ୍ରାବୃତ୍ତିକ ଖେଳରେ ବିଶ୍ୱଚିତ୍ରରେ ଥିବା କୌଣସି ଭୂଭାଗ ନିଜ ଢ଼ଙ୍ଗ ଓ ରୂପରେ କମ୍ ବିସ୍ମୟକର ନୁହେଁ। ଏ ନ୍ୟାୟରେ ପ୍ରତ୍ୟେକ ଭୂଗୋଳୀୟ ଅଂଶଧାରୀମାନେ ଜୀବନଯାପନ ଶୈଳୀରେ ବୈଚିତ୍ର୍ୟ ଦେଖାନ୍ତି। ଜୀବନନିଷ୍ଠ ସାହିତ୍ୟ ଏ ବୈଚିତ୍ର୍ୟର ଲୀଳାକୁ ଧାରଣ କରି ଭିନ୍ନ ହେବା ହିଁ ସ୍ୱାଭାବିକ। ଏ ଦୃଷ୍ଟିରୁ ଅନ୍ୟଗୋତ୍ରୀ ସମୀକ୍ଷା ବଳରେ ସ୍ୱଗୋତ୍ରୀ ରଚନାର ସୌନ୍ଦର୍ଯ୍ୟ କଳନା ଅବାନ୍ତର ଓ

ଦୁର୍ବୋଧ୍ୟ ହେବା ଛଡ଼ା ଅନ୍ୟରୂପ ନାହିଁ। ତଥାପି ଅନ୍ୟପରି ହେବା ଓ ଅନ୍ୟ ସହିତ ମିଳିତ ହେବାର ଉଦାର ପ୍ରଗତିଶୀଳ ସତ୍ୟଠାରୁ ବି ଦୂରେଇ ରହିବା ଅର୍ଥ ନିଜକୁ ପଛୁଆ ଘୋଷଣା କରିବା। ତେଣୁ ମହାଭାରତୀୟ ଆଂଚଳିକ ଭେଦ-ପ୍ରଭେଦ ଓ ପୁରାତନ-ନୂତନ ଯୁଗ ବ୍ୟବସ୍ଥାର ପୃଥକ ଲକ୍ଷଣ ରହିଥିବା ସତ୍ତ୍ୱେ ଭାରତୀୟ ସାହିତ୍ୟତତ୍ତ୍ୱ ପ୍ରତି ଅବସ୍ଥାରେ ପ୍ରତ୍ୟେକ ପ୍ରତ୍ୟେକର ଶ୍ରେଷ୍ଠ ବିଚାରକଳ୍ପ ଓ କ୍ରିୟାକଳ୍ପକୁ ମାନିନେଇ (ଖଣ୍ଡନ > ମଣ୍ଡନ ଧର୍ମରେ) ନିଜ ସହିତ ଯୋଡିଦେଇ ତତ୍ତ୍ୱୁଲ୍ୟ ଗୌରବରେ ପ୍ରସାରଲାଭ କରିଛି। (ଏ ପ୍ରଣାଳୀରେ ଜଗତୀକରଣ କାଳରେ ପ୍ରାଚ୍ୟ ଅବବୋଧ ପାଶ୍ଚାତ୍ୟ ଦିଗରେ ଧାବମାନ ହୋଇ ସେଠାରେଥିବା ଶ୍ରେଷ୍ଠ ସାହିତ୍ୟ ବିଚାର କଳ୍ପ ସହିତ ସଂଯୁକ୍ତ ହେବାର ଯଥାର୍ଥତା ରହିଛି।)

ପାଶ୍ଚାତ୍ୟ ସାହିତ୍ୟତତ୍ତ୍ୱ ଏତେ ପରିମାଣରେ ବିତର୍କଶୀଳ ଓ ଯୁକ୍ତି ନାମରେ ପ୍ରଭାବଶୂନ୍ୟ ଯେ ସେଗୁଡ଼ିକ ସୂର୍ଯ୍ୟୋଦୟ-ସୂର୍ଯ୍ୟାସ୍ତ ପରି ସ୍ୱଳ୍ପକାଳ ଆଲୋକମୟ ହୋଇ ରୁହନ୍ତି। ଦୋଷ ରହିବା ଓ ରହିଥିବାରୁ ମଳିନ ପଡ଼ି ଅନ୍ୟକୁ ଜକଜକ ହୋଇ ଛିଡ଼ାହେବାର ସୁବିଧା ଦେବା ପ୍ରତ୍ୟେକ ବିଚାରର ନିୟତି। ଭାରତୀୟ ସମୀକ୍ଷାତତ୍ତ୍ୱରେ ଭରତ > ଭାମହ > ଦଣ୍ଡୀ> ଉଦ୍‌ଭଟ> ବାମନ> ରୁଦ୍ରଟ > ରୁଦ୍ରଭଟ୍ଟ > ଆନନ୍ଦବର୍ଦ୍ଧନ > ରାଜଶେଖର-ଅବନ୍ତୀସୁନ୍ଦରୀ > ମୁକୁଳଭଟ୍ଟ > ଭଟ୍ଟଲୋଲ୍ଲଟ > ଶ୍ରୀଶଙ୍କୁକ > ଭଟ୍ଟନାୟକ > ଅଭିନବଗୁପ୍ତ > ଭଟ୍ଟତୌତ > ଧନଞ୍ଜୟ > କୁନ୍ତକ > ମହିମଭଟ୍ଟ > ବାଗ୍‌ଭଟ୍ଟ କ୍ଷେମେନ୍ଦ୍ର > ଭୋଜରାଜ > ମମ୍ମଟ > ରୁଚକ > ଶୋଭାକର > ହେମଚନ୍ଦ୍ର > ଜୟଦେବ > ବିଦ୍ୟାଧର > ବିଦ୍ୟାନାଥ > ନାରାୟଣ > ବିଶ୍ୱନାଥ > କେଶବ > ଶିଙ୍ଗଭୂପାଳ > ଭାନୁଦତ୍ତ > ରୂପଗୋସ୍ୱାମୀ > ଅପ୍ପୟ > ଜଗନ୍ନାଥ > ବିଶେଶ୍ୱର ଓ ସେମାନଙ୍କର ତତ୍ତ୍ୱନିରୂପଣଗ୍ରନ୍ଥ ନାଟ୍ୟଶାସ୍ତ୍ର > କାବ୍ୟାଳଂକାର > କାବ୍ୟାଦର୍ଶ > କାବ୍ୟାଳଙ୍କାର ସାରସଂଗ୍ରହ, ଅଳଙ୍କାର ସଂଗ୍ରହ > କାବ୍ୟାଳଂକାର ସୂତ୍ରବୃତ୍ତି > କାବ୍ୟାଳଙ୍କାର > ଶୃଙ୍ଗାରତିଳକ > ଧ୍ୱନ୍ୟାଲୋକ > କାବ୍ୟମୀମାଂସା > ଅଭିଧାବୃତ୍ତି ମାତୃକା > (ଭଟ୍ଟଲୋଲ୍ଲଟ ଓ ଶ୍ରୀଶଙ୍କୁକଙ୍କ ଗ୍ରନ୍ଥଦୁଷ୍ପ୍ରାପ୍ୟ) ହୃଦୟଦର୍ପଣ > ଅଭିନବଭାରତୀ, ଲୋଚନଟୀକା > କାବ୍ୟକୌତୁକ > ଦଶରୂପକ > ବକ୍ରୋକ୍ତି ଜୀବିତଂ > ବ୍ୟକ୍ତିବିବେକ > ଔଚିତ୍ୟ ବିଚାରଚର୍ଚ୍ଚା, କବିକଣ୍ଠାଭରଣ > ସରସ୍ୱତୀ କଣ୍ଠାଭରଣ > କାବ୍ୟପ୍ରକାଶ > ଅଳଙ୍କାର ସର୍ବସ୍ୱ > ଅଳଙ୍କାର ରତ୍ନାକର > କାବ୍ୟାନୁଶାସନ > ନାଟ୍ୟଦର୍ପଣ > କାବ୍ୟାନୁଶାସନ > ଚନ୍ଦ୍ରାଲୋକ > ଏକାବଳୀ > ଯଶୋଭୂଷଣ > (ନାରାୟଣଙ୍କ ଗ୍ରନ୍ଥ ନାହିଁ—ମାତ୍ର ଅଦ୍‌ଭୁତର ମୀମାଂସକ ଭାବରେ ତାଙ୍କର ପପୌତ୍ର ବିଶ୍ୱନାଥ ତାଙ୍କୁ ସମ୍ମାନ ଦେଇଛନ୍ତି) > ସାହିତ୍ୟ ଦର୍ପଣ > ଅଳଙ୍କାର ଶେଖର > ରସାର୍ଣ୍ଣବ ସୁଧାକର > ରସତରଙ୍ଗିଣୀ > ନାଟକ ଚନ୍ଦ୍ରିକା, ଭକ୍ତିରସାମୃତ ସିନ୍ଧୁ > ଚିତ୍ରମୀମାଂସା > ରସଗଙ୍ଗାଧର

> ଅଳଙ୍କାର କୌସ୍ତୁଭ ପ୍ରଭୃତିକୁ ମଳିନହେବା ଓ ଜକ୍‌ଜକ୍ ହୋଇ ନବନ୍ୟାୟରେ ଉଦ୍‌ଭାସିତ ହେବା ନିୟତି ନିୟମକୁ ବରଣ କରିବାକୁ ପଡ଼ିଛି । ନିୟତିନିୟମ ବିରୁଦ୍ଧରେ ଯାଇ ଶାଶ୍ୱତ କାବ୍ୟାନୁଭୂତିକୁ ନିର୍ମାଣ କରୁଥିବା କବିଙ୍କ ନିର୍ମିତିଗୁଡ଼ିକୁ ସମୀକ୍ଷା କରିବାର ଉପେୟ ଓ ଉପାୟ ବଦଳିବାର ସମୟୋଚିତ ପ୍ରଯତ୍ନରୁ ଭାରତୀୟ ସମୀକ୍ଷା ଧାରାରେ ଯେତେ ତତ୍ତ୍ୱ ଆତ୍ମପ୍ରକାଶ କରିଛି ସେସବୁ ମଧ୍ୟରୁ ରସବାଦୀ ସିଦ୍ଧାନ୍ତ > ଅଳଙ୍କାରବାଦୀ ସିଦ୍ଧାନ୍ତ > ଗୁଣ ବିଚାର ବିମର୍ଶ > ରୀତିବାଦୀ ସିଦ୍ଧାନ୍ତ > ଧ୍ୱନିବାଦୀ ସିଦ୍ଧାନ୍ତ > ବକ୍ରୋକ୍ତିବାଦୀ ସିଦ୍ଧାନ୍ତ > ଔଚିତ୍ୟବାଦୀ ସିଦ୍ଧାନ୍ତ > ଚିତ୍ରବାଦୀୟ ସିଦ୍ଧାନ୍ତ > ଚମତ୍କାରବାଦୀ ସିଦ୍ଧାନ୍ତ ଉଲ୍ଲେଖଯୋଗ୍ୟ ।

ଭାରତୀୟ ସାହିତ୍ୟ ପରଂପରାରେ ସଂସ୍କୃତ, ପ୍ରାକୃତ ଓ ଆଧୁନିକ ଭାରତୀୟ ଭାଷାରେ ରଚିତ କାବ୍ୟ-କବିତା-ନାଟକ-ଗଦ୍ୟ ଇତ୍ୟାଦି ସାହିତ୍ୟ ପ୍ରଜାତିଗୁଡ଼ିକୁ ଆଧାର କରି ୧୮ଶ ଶତାବ୍ଦୀର ପ୍ରଥମ ପାଦ (ଭରତଙ୍କଠାରୁ ବିଶେଶ୍ୱର ପଣ୍ଡିତଙ୍କ) ପର୍ଯ୍ୟନ୍ତ ସମାଲୋଚନା ତିନୋଟି ପ୍ରକାରରେ ଆତ୍ମପ୍ରସାର ଲାଭ କରିଛି । ପ୍ରଥମଟି ଟୀକାଧର୍ମୀ, ଦ୍ୱିତୀୟଟି ସୌନ୍ଦର୍ଯ୍ୟ ବିଶ୍ଲେଷଣଧର୍ମୀ ଓ ତୃତୀୟଟି କବି-ସଂବିଧାତ୍ମକ । ଟୀକାଧର୍ମୀ ସମୀକ୍ଷା ନିର୍ଦ୍ଦିଷ୍ଟ କୃତି ସହିତ ସଂପୃକ୍ତ । ମୂଳ ଲେଖାର କ୍ରମ ଓ କ୍ରମିକ ପାଦ ଓ ଅଧ୍ୟାୟରେ ଥିବା ବାକ୍ୟ, ବାକ୍ୟାଂଶ ଓ ପଦର ପାରସ୍ପରିକ ସଂବନ୍ଧ ନିରୂପଣ ଟୀକାଧର୍ମୀ ସମୀକ୍ଷାର ମୌଳ ବୈଶିଷ୍ଟ୍ୟ । ଟୀକାର ପଦ୍ଧତି ଅନ୍ୱୟ (ଅନୁ–ଇ+ଅ) ଧର୍ମୀ । ବାକ୍ୟସ୍ଥ ପଦର ସାପେକ୍ଷ ସମ୍ବନ୍ଧ, କଠିନ ଶବ୍ଦର ସଂକ୍ଷିପ୍ତ ବ୍ୟାଖ୍ୟା ଓ ଅର୍ଥଗତ ପ୍ରତିଶବ୍ଦ ନିର୍ଦ୍ଧାରଣ ହେଉଛି ଅନ୍ୱୟାତ୍ମକ ଟୀକା । ଏଥି ସହିତ ବିଷଦାର୍ଥକରଣର ବ୍ୟାଖ୍ୟାଧର୍ମୀ ଟୀକାରେ କାବ୍ୟ ବା ରଚନାର ଦୋଷ-ଅଦୋଷ, ଶବ୍ଦର ଲଳିତ ଗମ୍ଭୀର ବିନ୍ୟାସ, ପଙ୍‌କ୍ତିର ପ୍ରତ୍ୟେକ ଶବ୍ଦର ସରଳ ବିକଳ୍ପ ନିରୂପଣ ଓ ପାଦସ୍ଥ ଅଳଙ୍କାର ଓ ଲକ୍ଷଣାର ଟିପ୍ପଣୀ କରଣ ହେଉଛି ବିଶଦବ୍ୟାଖ୍ୟାଧର୍ମୀ ଟୀକାର (ଟିକ୍-ଅ-ଆ) ବିଶେଷତ୍ୱ । ସମୀକ୍ଷାର ଦ୍ୱିତୀୟ ପ୍ରକାରଟି ହେଉଛି କାବ୍ୟ ସର୍ଜନାର ସାମଗ୍ରିକ ସୌନ୍ଦର୍ଯ୍ୟ ବ୍ୟବସ୍ଥାର ବିଶ୍ଲେଷଣ । ଏହା ମୁଖ୍ୟତଃ ତତ୍ତ୍ୱ (ତଦ୍ + ତ୍ୱ– ତାହାହିଁ ସାର ଓ ତାହାହିଁ ମୂଳନୀତି) ମୂଳକ । ସର୍ଜନଶୀଳତାର ସାରସତ୍ୟ, ସୃଷ୍ଟିର ହେତୁ - ପ୍ରୟୋଜନ-ଲକ୍ଷଣ-ଆଧାର, ଆତ୍ମିକ ଓ ଶୈଳ୍ପିକ ସୌନ୍ଦର୍ଯ୍ୟର ସ୍ୱାତନ୍ତ୍ର୍ୟ କଳନା ଏବଂ ଶବ୍ଦାର୍ଥମୂଳକ କାବ୍ୟାଭିପ୍ରାୟର ଗୌରବ ମୂଲ୍ୟାୟନ ଇତ୍ୟାଦି ଏପ୍ରକାର ସମୀକ୍ଷାର ଅନ୍ତର୍ଭୁକ୍ତ । ଏହା ଏକ ବା କତିପୟ ସାହିତ୍ୟକୃତିର ଅନୁଶୀଳନ ନୁହେଁ । ବରଂ ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ/ମୀମାଂସା/ମତବାଦକୁ କେତୋଟି ବିଶେଷନୀତି ବା ଲକ୍ଷଣ ଭିତ୍ତିରେ ନିରୂପଣ କରାଯାଇ ଯେକୌଣସି କାବ୍ୟ ଓ କାବ୍ୟଧାରାର ସୌନ୍ଦର୍ଯ୍ୟକୁ ସେହି ନୀତିରେ ବିଶ୍ଲେଷଣ କରିବା

ଉପରେ ଏହିପ୍ରକାର ସମୀକ୍ଷା ଗୁରୁତ୍ୱ ଦେଇଥାଏ। ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ମତବାଦକୁ ଭିତ୍ତିକରି ଏ ଧାରାର ସମୀକ୍ଷା ନିର୍ଣ୍ଣିତ ହୋଇଥାଏ। ପୂର୍ବର ମତବାଦକୁ ଖଣ୍ଡନ କରି ତହିଁର ମୂଳନୀତିରେ ଥିବା ଦୋଷକୁ ମଣ୍ଡନ କରି ନୂଆବିଧି ପ୍ରଣୟନ ଉପରେ ଏହା ଗୁରୁତ୍ୱଦିଏ। ମତବାଦର ସ୍ୱାତନ୍ତ୍ର୍ୟ ଭିତ୍ତିରେ ନିର୍ଦ୍ଧାରିତ ପୁସ୍ତକ କେନ୍ଦ୍ରକରି ଏ ପ୍ରକାର ସମୀକ୍ଷା ନିର୍ଭରଶୀଳ। ପ୍ରବକ୍ତା ନିର୍ଦ୍ଦିଷ୍ଟ, ଗ୍ରନ୍ଥ ନିର୍ଦ୍ଦିଷ୍ଟ ଓ ଅନୁଧ୍ୟାନର ନୀତି ଏଥିରେ ନିର୍ଦ୍ଦିଷ୍ଟ। ଏହି ସମୀକ୍ଷାର ବୀଜମତବାଦକୁ ନେଇ ସମୀକ୍ଷା/ଶାଖା/ସଂପ୍ରଦାୟ ପ୍ରତିଷ୍ଠା ଅର୍ଜନ କରିଥାଏ। ଯଥା: ଆଚାର୍ଯ୍ୟ ଭରତଙ୍କ ନାଟ୍ୟଶାସ୍ତ୍ରଂକକୁ ନେଇ ରସବାଦୀ ଶାଖା, ଭାମହଙ୍କ କାବ୍ୟାଳଙ୍କାରକୁ ନେଇ ଶବ୍ଦାର୍ଥ ବିବେଚନା ଶାଖା, ବାମନଙ୍କ କାବ୍ୟାଳଙ୍କାର ସୂତ୍ରବୃତ୍ତିକୁ କେନ୍ଦ୍ରକରି ରୀତ୍ୟାଙ୍ଗିକ ଶାଖା ଇତ୍ୟାଦି ସାଂପ୍ରଦାୟିକ ସମୀକ୍ଷା ବିଚାର ମୁଣ୍ଡଟେକି ଉଠିଛି। ଏହି ସମୀକ୍ଷାତତ୍ତ୍ୱର ଅପର ପରିଭାଷା ହେଉଛି ଅଳଙ୍କାରତତ୍ତ୍ୱ ଓ ସମୀକ୍ଷକର ବିକଳ୍ପ ଆଳଙ୍କାରିକ। ତୃତୀୟଟି ହେଉଛି କବିନିଷ୍ଠ ସମାଲୋଚନା। ସମୀକ୍ଷାତତ୍ତ୍ୱଦର୍ଶୀ କବିର କାବ୍ୟାଭିପ୍ରାୟକୁ ଏହି ସମାଲୋଚନାରେ ସ୍ୱୟଂ କବି ନିଜ କୃତିର ଗର୍ଭସ୍ଥଳକୁ ପ୍ରବେଶ କରି ସୁଯୋଗ କ୍ରମେ ନିଜ କାବ୍ୟତା ସଂପର୍କରେ ଟିପ୍ପଣୀ ଦେଇଥାଏ। କେଉଁ ଉପାୟରେ କାବ୍ୟକୁ ପାଠକରି ତା'ର ସାମଗ୍ରିକ ସୌନ୍ଦର୍ଯ୍ୟ ପାଠକ ପାଇପାରିବ ଏବଂ କାବ୍ୟର ଭିତ୍ତି ଓ ଭୂତିକୁ ଅନୁଭବ ସ୍ତରକୁ ନେଇପାରିବେ– ସେ ସଂପର୍କରେ ପଦ୍ୟାୟିତ ସିଦ୍ଧାନ୍ତ ସ୍ୱୟଂକବି କାବ୍ୟର ଆରମ୍ଭ-ଶେଷରେ ଏବଂ ପ୍ରତି ଅଧ୍ୟାୟର ଆରମ୍ଭ ଶେଷରେ କାବ୍ୟାଶ୍ରିତ ଶୈଳୀରେ ପ୍ରତିପାଦନ କରିଥା'ନ୍ତି। କାବ୍ୟର ରସ, ରସାନୁଭୂତିରେ ସହାୟକ ହେତୁ, ରସୋତ୍ପାଦକକ୍ଷମ ଆଶ୍ରୟ ସୌନ୍ଦର୍ଯ୍ୟର (ଛନ୍ଦ, ଅଳଙ୍କାର, ଧ୍ୱନି, ଲକ୍ଷଣା ଓ ବକ୍ରୋକ୍ତି ଆଦି ଶାଖା) ପ୍ରାୟୋଗିକ ଚାତୁରୀ, କାବ୍ୟ ଗଢ଼ଣର ଉପାୟ ଓ କାବ୍ୟାବବୋଧର ସୂତ୍ର ସଂପର୍କରେ କବି ନିଜସ୍ୱ ବିଚାର ବର୍ଣ୍ଣନା ଛଳରେ ଉଲ୍ଲେଖ କରିଥା'ନ୍ତି। ଏହାଦ୍ୱାରା ନିର୍ଦ୍ଦିଷ୍ଟ କାବ୍ୟର, କବିର ସର୍ଜନଶୀଳ ସ୍ୱାତନ୍ତ ସହଜରେ ଅନୁଧ୍ୟାନ କରିହୁଏ। ନିଜ କାବ୍ୟରଚନାର ପରିପାଟୀ, ଲକ୍ଷଣ ଓ ବିଶେଷତ୍ୱ ସଂପର୍କରେ ଆମ ମଧ୍ୟଯୁଗୀୟ କାବ୍ୟଧାରାରେ କବି-ସମୀକ୍ଷକ ମନୋଭାବ ପୋଷଣ ପୂର୍ବକ ଏହି ମର୍ମରେ ଦୀନକୃଷ୍ଣଙ୍କ ପ୍ରଦତ୍ତ ମନ୍ତବ୍ୟ ''କ' ଅକ୍ଷରେ ହେଉଛି ନିୟମ/କଥା ନୁହେଁ, ଦିବ୍ୟ ଅଦିବ୍ୟ ସମ'' (ରସକଲ୍ଲୋଳ) ''ମୂର୍ତ୍ତିମନ୍ତ କରି ମୃଦୁଗୀତ ବିଚାରଇ/ଏଣୁକରି ଅଳଙ୍କାର ଥିବଯୁକ୍ତ ହୋଇ/ପଦସରଳ ଧ୍ୱନିରେ ମାନସ ମୋହିବ'' (ଲାବଣ୍ୟବତୀ)– ଏପ୍ରକାର କାବ୍ୟ ନିର୍ମାଣ ସଂପର୍କିତ ଭଂଜୀୟ ସିଦ୍ଧାନ୍ତ ଘୋଷଣା ଏବଂ ଅଭିମନ୍ୟୁଙ୍କ କାବ୍ୟିକ ସଫେଇ-ଗୁଣ ଗ୍ରାହାକେ ପାଇବେ ଚିନ୍ତିଲା ସୁପ୍ରେମ/xxx ଥୋକେସ୍ଥଳ ହେବ ଦ୍ରାକ୍ଷାଗୁଡ଼ଯୁକ୍ତ

ପାକ ××× ଦିବ୍ୟ ଅଦିବ୍ୟ ଭାଷାରେ ପଦ ହେବସିଦ୍ଧି/ ××× ଯମକାଦି ଚିତ୍ରକାବ୍ୟ ପ୍ରବନ୍ଧ ପ୍ରବନ୍ଧ'' (ବିଦଗ୍ଧ ଚିନ୍ତାମଣି) ଉଲ୍ଲେଖଯୋଗ୍ୟ।

ଭାରତୀୟ ସାହିତ୍ୟ-ସମୀକ୍ଷାତତ୍ତ୍ୱ କହିଲେ ବିଶେଷଭାବରେ କାବ୍ୟ ରଚନା ବିଧି, କାବ୍ୟ ଲକ୍ଷ୍ୟ, କାବ୍ୟ ପ୍ରୟୋଜନ, କାବ୍ୟ ହେତୁ, କାବ୍ୟର ପ୍ରକାତିକ ଭେଦ, କାବ୍ୟର ଭାବଗତ ଓ ରୂପଗତ ଉପାଦାନ କଳନା, କାବ୍ୟଚାତୁରୀ, କାବ୍ୟିକ ଶବ୍ଦ ଏବଂ କବିତ୍ୱ ଓ କାବ୍ୟତା ଇତ୍ୟାଦି ଦିଗକୁ ଅବଲମ୍ବନ କରି ଭିନ୍ନଭିନ୍ନ ସମୟରେ ପ୍ରସାର ଲାଭ କରିଥିବା ମତବାଦ ଓ ସେଗୁଡ଼ିକର ଗ୍ରନ୍ଥାୟିତ ମୀମାଂସାକୁ ବୁଝାଇଥାଏ। ଏହି ମୀମାଂସାଧର୍ମୀ ତତ୍ତ୍ୱବିଧାନ ବଳରେ କାବ୍ୟର ବାହ୍ୟ ଅସ୍ତିତ୍ୱ ଓ ଅନ୍ତଃଅସ୍ତିତ୍ୱକୁ ଅନୁଶୀଳସନ ଓ ଉଦ୍‌ଘାଟନ କରିବାର ତତ୍ତ୍ୱାଶ୍ରିତ ବିଦ୍ୟାଟି ହେଉଛି ସମାଲୋଚନା। ସମାଲୋଚନାର (ସମ୍-ଆ-ଲୋଚ୍+ଅନ୍-ଆ) ଅର୍ଥ ସାହିତ୍ୟ କୃତିର ଦୋଷଗୁଣ ବିଚାର କରି ତାହାର ପାଠଯୋଗ୍ୟ ସମୀଚୀନତାକୁ ସ୍ଥିର କରିଦେବା। ସମାଲୋଚନା ବା ସମୀକ୍ଷା ଶବ୍ଦ ପ୍ରାୟତଃ ବିଚାରବିମର୍ଶ, ଆଲୋଚନା, ବିବେଚନା, ପର୍ଯ୍ୟବେକ୍ଷଣ, ଅନୁଶୀଳନ, ତର୍ଜମା ଓ ମୀମାଂସା ଅର୍ଥରେ ଭାରତୀୟ ପରଂପରାରେ ବ୍ୟବହୃତ ହୋଇଆସୁଛି। ଏହାର ଶାସ୍ତ୍ରୀୟ ଅର୍ଥବାଚୀ ଶବ୍ଦଟି ହେଉଛି 'ଅଳଙ୍କାର'। 'ଅଳଙ୍କାର'ର ଲକ୍ଷ୍ୟ ହେଉଛି- କଳାସୃଷ୍ଟିର ପରିଚର୍ଯ୍ୟା ଓ ପାଠକମହଲରେ କାବ୍ୟବୋଧର ପ୍ରସାର ଘଟାଇ ସତ୍‌ରୁଚି ପ୍ରତିଷ୍ଠା କରିବା। ସାହିତ୍ୟ-ସର୍ଜନଶୀଳ ସୃଷ୍ଟିର ପରିଚର୍ଯ୍ୟା ନିମନ୍ତେ ସମୟରୁ ସମୟ ବିଭିନ୍ନ ମତବାଦ ଆତ୍ମ ପ୍ରକାଶ କରିଛି। ଏହି ମତବାଦର ବିଚାର ଦିଗଗୁଡ଼ିକୁ ବୈଧାନିକ ସୂତ୍ରରେ ପକାଇ ସୃଷ୍ଟିର ଗୌରବବୀଜ ନିରୂପଣ କରିବାର ସାଧନ ହେଉଛି ସମୀକ୍ଷା। ସମୀକ୍ଷା ନିମନ୍ତେ ସୁବ୍ୟବସ୍ଥିତ ଉପାୟ ନିର୍ଦ୍ଧାରଣକାରୀ ଅନୁଶାସନ ବା ସଂହିତା ହିଁ ସମୀକ୍ଷାତତ୍ତ୍ୱ। ମୋଟ ଉପରେ ସମୀକ୍ଷା ତତ୍ତ୍ୱ ପାଠ ଓ ପାଠକ ସହିତ କବିସତ୍ତାର ଚେତନାସ୍ତରୀୟ ମିଳନ ସାଧନସେତୁ ଓ ସେତୁ ନିର୍ମାଣ ପାଇଁ ଆଲୋଚନାର ସଂହିତା ନିର୍ଦ୍ଧାରିତ କରେ ସମୀକ୍ଷାତତ୍ତ୍ୱ। ସମୀକ୍ଷାତତ୍ତ୍ୱ ପୂର୍ବସ୍ୱରୀର ମହତ୍ତମ ରଚନାର ବୈଚିତ୍ରକୁ ଆଧାର କରି ପରସ୍ୱରୀମାନେ କିପରି, କେଉଁ ସୂତ୍ରରେ ନୂଆ ପ୍ରକାରେ ମହତ୍ତମରଚନା ନିର୍ମାଣ କରିପାରିବେ- ସେଥିପ୍ରତି ସୁରଭିତ ମାର୍ଗ ପ୍ରସ୍ତୁତ କରିଦିଏ। ଗୁଣଗ୍ରାହିତା ସୂତ୍ରରେ ପୂର୍ବବର୍ତ୍ତୀ ସତ୍ୟ ଓ ସୌନ୍ଦର୍ଯ୍ୟବୋଧକୁ ଜାଣିବା ତାହାର ରହସ୍ୟ ଅନକୁ ଜଣେଇବା ଓ ଅଭିନବତାରେ ପ୍ରବୃତ୍ତ ହେବାକୁ ପ୍ରବୋଧିତ କରିବାର ଅନନ୍ୟ ଫଳଶ୍ରୁତି ହିଁ ସମୀକ୍ଷାତତ୍ତ୍ୱ।

(ତିନି)

ଭାରତୀୟ ସମୀକ୍ଷାତତ୍ତ୍ୱ ଅଳଙ୍କାରତତ୍ତ୍ୱ, ସାହିତ୍ୟତତ୍ତ୍ୱ, କାବ୍ୟତତ୍ତ୍ୱ, କ୍ରିୟାକଳ୍ପ, କାବ୍ୟାଦର୍ଶ, ସାହିତ୍ୟ ମୀମାଂସା, କାବ୍ୟ ମୀମାଂସା, କାବ୍ୟଦର୍ପଣ ଓ କାବ୍ୟଶାସ୍ତ୍ର ଆଦି ଶୀର୍ଷକରେ ପରିଚିତ ହୋଇ ଆସିଛି। ମାତ୍ର ଏସବୁ ମଧ୍ୟରୁ 'କ୍ରିୟାକଳ୍ପ' ସର୍ବପୁରାତନ ଓ 'ଅଳଙ୍କାର' ସର୍ବଶେଷ ନାମ। ଅଳଙ୍କାର ଶିରୋନାମାଟି ସର୍ବାପେକ୍ଷା ଏଥିନିମନ୍ତେ ପ୍ରସିଦ୍ଧି ପ୍ରାପ୍ତ ହୋଇଛି। ବାଲ୍ମୀକି ରାମାୟଣରେ 'କ୍ରିୟାକଳ୍ପ ବିଦଶ୍ଚୈବ ତଥା କାବ୍ୟବିଦୋ ଜନାନ୍' ମନ୍ତବ୍ୟ ପ୍ରଦାନ ଛଳରେ ସୃଷ୍ଟିର ପ୍ରସାର ନିମନ୍ତେ କ୍ରିୟାକଳ୍ପ ବିଦ୍ୟାର ଉପାଦେୟତାକୁ ସ୍ୱୀକାର କରିଛନ୍ତି। ବାତ୍ସାୟନ କୃତ କାମଶାସ୍ତ୍ରର ୩ୟ ଅଧ୍ୟାୟରେ 'କ୍ରିୟାକଳ୍ପ ଇତି କାବ୍ୟକରଣ ବିଧିଃ' ମନ୍ତବ୍ୟ ଭିତରେ କାବ୍ୟରଚନାର ସାମଗ୍ରିକ ସୂତ୍ର ବା ସଂହିତା କଳାର ଚର୍ଚ୍ଚା ଶାସ୍ତ୍ର ଭାବରେ କ୍ରିୟାକଳ୍ପର ଗୁରୁତ୍ୱ ସମର୍ଥିତ ହୋଇଛି। ବୌଦ୍ଧଗ୍ରନ୍ଥ 'ଲଳିତ ବିସ୍ତରଂ'ରେ କ୍ରିୟାକଳ୍ପକୁ ରଚନାର ସାଧାରଣ ବିଚାର ଶୃଙ୍ଖଳା ଭାବରେ ବିବେଚନା କରାଯାଇଛି। କାବ୍ୟକ୍ରିୟାର ସକଳ ଆଧାର ଓ ବିନିଯୋଗ କୌଶଳ ସଂପର୍କରେ ବିଚାରର ସିଦ୍ଧାନ୍ତକରଣ ହିଁ କ୍ରିୟାକଳ୍ପ ଭାବରେ ଗୃହୀତ ହୋଇଛି। ଭରତ ବାଙ୍‌ମୟ ରଚନାର ବିଧି ବିଶ୍ଳେଷଣ ଗ୍ରନ୍ଥକୁ 'ଶାସ୍ତ୍ର' ରୂପେ ପ୍ରଥମେ ନାମିତ କରି 'ନାଟ୍ୟଶାସ୍ତ୍ରଂ' ଶିରୋନାମାରେ ନିଜର ସିଦ୍ଧାନ୍ତକୁ ଶାସ୍ତ୍ରୀୟ ମର୍ଯ୍ୟାଦା ଦେଇଥିଲେ ବି ଭାମହଙ୍କ ସମୟରୁ 'ଅଳଙ୍କାର'କୁ ସମୀକ୍ଷାତତ୍ତ୍ୱର ସର୍ବଗୃହୀତ ନାମ ଭାବରେ ଆଦର ମିଳିଛି। କାବ୍ୟାଳଙ୍କାର, କାବ୍ୟାଳଙ୍କାର ସାର ସଂଗ୍ରହ, କାବ୍ୟାଳଙ୍କାର ସୂତ୍ର ବୃତ୍ତି, ଅଳଙ୍କାର ସର୍ବସ୍ୱ, ଅଳଙ୍କାର ରତ୍ନାକର, ଅଳଙ୍କାର ଶେଖର ଓ ଅଳଙ୍କାର କୌସ୍ତୁଭ ଆଦି କାବ୍ୟତତ୍ତ୍ୱ ସଂପର୍କିତ ସିଦ୍ଧାନ୍ତଗ୍ରନ୍ଥ ନାମକରଣରୁ ସ୍ପଷ୍ଟ ସୂଚିତ ହୁଏ ଯେ ଅଳଙ୍କାରକୁ ହିଁ କାବ୍ୟ ସୌନ୍ଦର୍ଯ୍ୟର ନିୟାମକ ରୂପେ ଗ୍ରହଣ କରାଯାଇ ଆସିଛି।

ପ୍ରାଚ୍ୟ ବିଦ୍ୟା ଚର୍ଚ୍ଚାରେ ସାହିତ୍ୟଚର୍ଚ୍ଚା ସଂସ୍କାର ବାସନା ସହିତ ଜଡ଼ିତ। ତେଣୁ କୌଣସି ବିଷୟକୁ ପୂର୍ଣ୍ଣମାତ୍ରାରେ ଅସ୍ୱୀକାର କରି ନୂଆଗଢ଼ିବାର ତିଳେମାତ୍ର ଇଚ୍ଛା ଭାରତୀୟ ସର୍ଜନଶୀଳ କବି ବିବେକ ପୋଷଣ କରେ ନାହିଁ। ପରଂପରାଟିଏ ପ୍ରେରଣା ଭିତ୍ତି ହୋଇ ରହିବା ବିଧିଗତ ବ୍ୟାପାର। ପରଂପରାର ଭିତ୍ତି ଉପରେ ଶବ୍ଦାର୍ଥର ବିଭାବନ କ୍ରୀଡା ହିଁ ନୂତନତା ଭାବରେ ଏବ୍ୟାପାରର ବୃହତ୍ତମ ଅଂଶ। ଶବ୍ଦ ଓ ଅର୍ଥକୁ ମେରି ମେରିଆ କରି କିପରି କାବ୍ୟଭାବର ଶୋଭାମୟ ଓ ସୁପ୍ରଚୁର ଅମଳ ସଂଭବ ହୋଇଛି ତାହାକୁ ଦେଖାଇଦେବାର କର୍ଷଣକ୍ରିୟା ହିଁ ସମାଲୋଚନା। ତେଣୁ ସମାଲୋଚନାହିଁ ଭାବ ଉତ୍ପାଦକ ଓ ଭାବବର୍ଦ୍ଧକ ଶବ୍ଦାର୍ଥର ଅନୁଶାସନ; ଯାହାକୁ

ଅଳଙ୍କାର ଭାବରେ ପରିଭାଷିତ କରାଯାଇଛି। ସୀମିତ ଓ ବ୍ୟାପକ ଅର୍ଥରେ 'ଅଳଙ୍କାର' ଶବ୍ଦଟିକୁ ଦ୍ୱିବିଧ ରୂପରେ ପ୍ରାଚ୍ୟ ବିଦ୍ୱାନମାନେ ବ୍ୟବହାର କରିଛନ୍ତି। ସୀମିତ ଅର୍ଥଟି ଅଭିଧାସୂଚକ ଲକ୍ଷଣମୂଳକ ଅର୍ଥ। ଏ ଦିଗରୁ କାବ୍ୟର ଶୋଭାମଣ୍ଡନଶୀଳ ଶବ୍ଦ ଓ ଅର୍ଥର ପ୍ରାୟୋଗିକ ଶୃଙ୍ଖଳା ଭାବରେ ଏହା ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ନାମରେ ବ୍ୟବହୃତ ହୋଇଥାଏ। ଶବ୍ଦାନୁଶାସନର ଶ୍ରୁତିମାଧୁର୍ଯ୍ୟ ଓ ଅର୍ଥାନୁଶାସନର ଭୂଷଣଗୌରବ ଏକ ଆଶ୍ରୟ ସୌନ୍ଦର୍ଯ୍ୟ ଭାବରେ ଅଳଙ୍କାର ସଂପାଦନ କରିଥାଏ। ଅପରପକ୍ଷରେ ଅଳଙ୍କାରର ବ୍ୟାପକ ଅର୍ଥଟି ହେଉଛି ଯେଉଁ ଉପାଦାନ ଦ୍ୱାରା କାବ୍ୟର ବହିଃ ଓ ଅନ୍ତଃ ସୌନ୍ଦର୍ଯ୍ୟର ଔଚିତ୍ୟମୂଳକ ପରିପ୍ରକାଶ ଓ ସାମଗ୍ରିକ ଶୋଭା ପରିବର୍ଦ୍ଧିତ ହୋଇଥାଏ ତାହା ହିଁ ଅଳଙ୍କାର। କାବ୍ୟ ନିର୍ମାଣରେ ବିନିଯୁକ୍ତ ସମସ୍ତ ଶୋଭାମଣ୍ଡନକାରୀ ଉପାଦାନର ମିଶ୍ରିତ ବିଧି ହିଁ ଅଳଙ୍କାର। ତେଣୁ ଯେଉଁ ଶାସ୍ତ୍ରରେ କାବ୍ୟ ସର୍ଜନ ଉପଯୋଗୀ ଉପାଦାନର ଉତ୍କର୍ଷ, ଅପକର୍ଷ ଓ ଔଚିତ୍ୟଗର୍ଭକ ବିଚାର ସଂଯୁକ୍ତ ହୋଇ ମହତ୍ତମ ସୃଷ୍ଟିର ସୂତ୍ର ନିରୂପିତ ହୋଇଥାଏ ତାହା ଅଳଙ୍କାର ଶାସ୍ତ୍ର। ପରବର୍ତ୍ତୀ କାଳରେ ରାଜଶେଖରଙ୍କ 'କାବ୍ୟ ମୀମାଂସା'ରେ 'ସାହିତ୍ୟ'କୁ ଶ୍ରେୟ ବୈଦିକ ବିଦ୍ୟା ଚତୁର୍ବିଧ ଅନୁରୂପ ପଞ୍ଚମବିଦ୍ୟା (ପଞ୍ଚମୀ ସାହିତ୍ୟ ବିଦ୍ୟା ଇତି ଯାଯାବରୀୟ– କାବ୍ୟମୀମାଂସା) ରୂପରେ ମାନ୍ୟତା ମିଳିବାରୁ ସମାଲୋଚନାମୂଳକ ଅଳଙ୍କାରଶାସ୍ତ୍ରକୁ ରୁଜ୍ୟକ ସାହିତ୍ୟ ମୀମାଂସା, ବିଶ୍ୱନାଥ ସାହିତ୍ୟ ଦର୍ପଣ, ଭୋଜ କାବ୍ୟଶାସ୍ତ୍ର ଓ ହେମଚନ୍ଦ୍ର କାବ୍ୟାନୁଶାସନ ରୂପେ ପରିଚିତି ଦେଇଛନ୍ତି। ଯାହାଫଳରେ ପାଶ୍ଚାତ୍ୟ ବିଦ୍ୱାନମାନଙ୍କର ପ୍ରାଚ୍ୟବିଦ୍ୟାନୁଶୀଳନ ଦେଇ ସେମାନଙ୍କର 'ପୋଏଟିକ୍ସ୍' ଓ 'ଥିଓରୀ ଅଫ୍ କ୍ରିଟିସିଜମ୍'ର ପ୍ରତିଶବ୍ଦ ଭାବରେ ଆମ ଭୂଗୋଳ ପରିସରରେ ସର୍ବତ୍ର କାବ୍ୟତତ୍ତ୍ୱ, ସାହିତ୍ୟ ତତ୍ତ୍ୱ ଓ ପ୍ରାଚ୍ୟ ସମୀକ୍ଷାତତ୍ତ୍ୱ ଏ ନାମ ତ୍ରୟ ସାହିତ୍ୟାଲୋଚନା ପାଇଁ ପ୍ରସିଦ୍ଧି ଲାଭ କରିଛି।

ଅନୁରୂପ ଭାବରେ 'ତତ୍ତ୍ୱ' ବା ସ୍ୱତନ୍ତ୍ରବିଚାରଦୃଷ୍ଟି ଅର୍ଥରେ ମୀମାଂସା, କୌତୁକ, ସୌରଭ, ଦର୍ପଣ, ଅନୁଶାସନ, ଆଲୋକ, ଆଦର୍ଶ, ଟୀକା, ପ୍ରକାଶ ଓ ତିଳକ ଆଦି ଶବ୍ଦର ବ୍ୟବହାର କରାଯାଇ ବିବିଧତାକୁ ସମର୍ଥନ କରାଯାଇଛି। ଖ୍ରୀ.ପୂ. ୨ୟ ଶତାବ୍ଦୀରୁ ୧୮ଶ ଶତାବ୍ଦୀ ପର୍ଯ୍ୟନ୍ତ ଭରତଙ୍କଠାରୁ ବିଶ୍ୱେଶ୍ୱର ପଣ୍ଡିତଙ୍କ ପର୍ଯ୍ୟନ୍ତ କାବ୍ୟର ସ୍ୱରୂପ, କାବ୍ୟର ହେତୁ, କାବ୍ୟର ପ୍ରୟୋଜନ, କାବ୍ୟର ଦୋଷଗୁଣ, କାବ୍ୟ ଭେଦ, କାବ୍ୟରୂପ, କାବ୍ୟନିର୍ମାଣ ଓ କବି-କାବ୍ୟ-ସହୃଦୟ ବିଷୟରେ ବହୁଧା ମୀମାଂସାର ଏକ ସୁଦୃଢ଼ ଓ ସୁପ୍ରାଚୀନ ପରଂପରା ପ୍ରାଚ୍ୟ ସାହିତ୍ୟ ବିଦ୍ୟାକ୍ଷେତ୍ରରେ ରହିଛି।

(ଚାରି)

ଦୀର୍ଘ ଦୁଇ ହଜାର ବର୍ଷ ଧରି ସାହିତ୍ୟ / କାବ୍ୟର ବିଷୟପକ୍ଷ ଓ ପ୍ରକରଣ ପକ୍ଷକୁ ନେଇ ଅଭିବ୍ୟକ୍ତିର ବିବିଧତା (ଆଙ୍ଗିକ / ବାଚିକ / ସାତ୍ତ୍ୱିକ / ମୂର୍ତ୍ତ / ପ୍ରମୂର୍ତ୍ତ / ଦୃଶ୍ୟ / ଶ୍ରାବ୍ୟ / ଚିତ୍ରାୟିତ / ସ୍ଫୋଟାୟିତ ଇତ୍ୟାଦି) ବାକ୍‌ଚାତୁରୀର ବିବିଧତା (କଥନଧର୍ମୀ / ଶ୍ଳେଷାତ୍ମକ / ଯମକାୟିତ / ଆନୁପ୍ରାସିକ / ସାଦୃଶ୍ୟ କଳ୍ପ / ରୂପକାତ୍ମକ / ଅତିଶୟୋକ୍ତିମୂଳକ / ସ୍ୱଭାବୋକ୍ତିସଂପନ୍ନ / ଉଲ୍ଲେଖଧର୍ମୀ / ଉପଲକ୍ଷ୍ୟ ଓ ନିଦର୍ଶନାକାରକ / ବିରୋଧାଭାସମୂଳକ / ବ୍ୟତିରେକ ଓ ବୈପରୀତ ଧର୍ମୀ) ଓ ସୌନ୍ଦର୍ଯ୍ୟ ନିରୂପଣର ବହୁଧା ସାଧନ ସଂପର୍କରେ ନାନା ଯୁକ୍ତି, ତର୍କ, ବିତର୍କ ଓ ମଣ୍ଡନ ଦେଇ ସିଦ୍ଧାନ୍ତମାନ ନିରୂପିତ ହୋଇଛି। ଭାବୟିତ୍ରୀ ପ୍ରତିଭାର ଅଧିକାରୀ ବହୁଶାସ୍ତ୍ରଦର୍ଶୀ କାବ୍ୟାଚାର୍ଯ୍ୟ / ଆଳଙ୍କାରିକମାନେ କାବ୍ୟର ଆତ୍ମଶକ୍ତି, ଆତ୍ମାର ଭାବନଶକ୍ତି, ଚଳନଶକ୍ତି ଓ ନିତ୍ୟ ବିରଚନଶକ୍ତିକୁ ନେଇ ବିବିଧ ସଂପ୍ରଦାୟ / ଶାଖାର ପରିଯୋଜନା କରିଛନ୍ତି। ଭରତଙ୍କ ବିଦ୍ୟାଳୟ ହେଉ, ଭାମହଙ୍କ ବିଦ୍ୟାଳୟ ହେଉ, ବାମନଙ୍କ ବିଦ୍ୟାଳୟ ହେଉ ଅଥବା ଆନନ୍ଦବର୍ଦ୍ଧନ, କୁନ୍ତକ, କ୍ଷେମେନ୍ଦ୍ରଙ୍କ ବିଦ୍ୟାଳୟ ହେଉ ପ୍ରତ୍ୟେକ ଶାଖାର ମର୍ମଜ୍ଞମାନେ କାବ୍ୟର ଭାବତତ୍ତ୍ୱ, ପ୍ରୟୋଗତତ୍ତ୍ୱ, ଭକ୍ତିବୈଚିତ୍ର୍ୟତତ୍ତ୍ୱ, ସୌନ୍ଦର୍ଯ୍ୟତତ୍ତ୍ୱ, ବିଷୟାନୁସାରୀ ଭାବନତତ୍ତ୍ୱ ଓ ପ୍ରଭାବ ଉତ୍ପାଦନଶୀଳ ଚମତ୍କାରତତ୍ତ୍ୱ ଇତ୍ୟାଦିର ଏକକ ଗୁରୁତ୍ୱ ଓ ସମନ୍ୱିତ ଗୁରୁତ୍ୱକୁ ନେଇ ନାନା ତଥ୍ୟର ସମାବେଶ କରାଇଛନ୍ତି। କାବ୍ୟତତ୍ତ୍ୱଦର୍ଶୀଙ୍କ ତଥ୍ୟ, ତଥାତ୍ମକ ସୂଚନା ଓ ତାହାର ତାତ୍ତ୍ୱିକ ଯଥାର୍ଥତାକୁ ନେଇ କାବ୍ୟର ଉତ୍ତମତ୍ୱ ନିରୂପଣ କରଯାଇଛି। ଏହିକ୍ରମରେ ଲୋକବୃତ୍ତିକ ରସବାଦୀ ସିଦ୍ଧାନ୍ତ > ଅଳଙ୍କାରବାଦୀ ଶବ୍ଦାର୍ଥକଳ୍ପ ସିଦ୍ଧାନ୍ତ > ପଦସଂଘଟନାତ୍ମକ ଗୁଣାଶ୍ରୟୀ ରୀତିସିଦ୍ଧାନ୍ତ > ତାତ୍‌ପର୍ଯ୍ୟାର୍ଥକ ସୌନ୍ଦର୍ଯ୍ୟାଭିବ୍ୟକ୍ତିମୂଳକ ଧ୍ୱନିସିଦ୍ଧାନ୍ତ > ଶବ୍ଦସୌଷ୍ଠବମୂଳକ ପାକସିଦ୍ଧାନ୍ତ > ସ୍ୱଚ୍ଛନ୍ଦ ସୁନ୍ଦର ରମଣୀୟ ଭଣତି ଓ ବିଦଗ୍ଧ କାବ୍ୟବନ୍ଧାତ୍ମକ (poetic diction) ବକ୍ରୋକ୍ତି ସିଦ୍ଧାନ୍ତ > ସଙ୍ଗତି ବିନ୍ୟାସମୂଳକ ରସପ୍ରାଣାତ୍ମକ ଔଚିତ୍ୟ ସିଦ୍ଧାନ୍ତ > ଭାବର ଲୋକୋତ୍ତର ଆହ୍ଲାଦଜନକ ଚମତ୍କାରବାଦୀ ସିଦ୍ଧାନ୍ତ ପ୍ରଭୃତି ଉଭୟ ବିଜ୍ଞାନ ଓ କଳାସମ୍ମତ ହୋଇ କାବ୍ୟଗୌରବ ନିରୂପଣରେ ଏକ ଏକ୍ ତାତ୍ତ୍ୱିକ ଶାଖା ରୂପରେ ଭୂମିକା ସଂପାଦନ କରିଆସିଛନ୍ତି।

ଉପରୋକ୍ତ କାବ୍ୟସିଦ୍ଧାନ୍ତ ସଂପର୍କିତ ଶାସ୍ତ୍ରଗୁଡ଼ିକ ଅନୁଶୀଳନ କଲେ ଦେଖାଯାଏ କାରିକା (ନିୟମ, ସୂତ୍ର) ବୃତ୍ତି (ଅଭିମତ) ଓ ଉପଲକ୍ଷ୍ୟ (ଉଦାହରଣ) ମଧ୍ୟରେ କାବ୍ୟ ବିବେଚନାର ମାନଦଣ୍ଡ ନିର୍ଣ୍ଣୟ କରାଯାଇଛି। ପ୍ରତ୍ୟେକ ଚିନ୍ତାବାଦୀ ଗୋଷ୍ଠୀଙ୍କ

(Theoritical school) ସିଦ୍ଧାନ୍ତ ଶବ୍ଦ ଓ ଅର୍ଥକୁ ମୌଳ ଉପାଦାନ ଭାବରେ ସ୍ୱୀକାର କରିଛି। ଶବ୍ଦ ଓ ଅର୍ଥର ଗୁଣାତ୍ମକ ବିନ୍ୟାସ ଓ ଅଭିଧା-ଲକ୍ଷଣା-ବ୍ୟଂଜନାବୃତ୍ତିକ କୌତୁକ, ଏ କୌତୁକ ଦେଇ କବିପୁରୁଷର ଭାବସୃଜନରେ ନିବିଷ୍ଟ ବ୍ୟକ୍ତିବିବେକପଣ ଯେତେବେଳେ ଏକ ପ୍ରଗାଢ଼ ବସ୍ତୁବୋଧକ ବିଷୟରସକୁ ଚମତ୍କାର ଅଭିବ୍ୟକ୍ତି ଦେବାରେ ସଫଳ ହୁଏ ତାହାର ଆବେଦନ ସାଧାରଣ ପାଠକର ହୃଦୟବୃତ୍ତି ଓ ବିଶ୍ୱାସ ସହିତ ସଂଯୁକ୍ତ ହୋଇଯାଇ ଏକ ଅଦ୍‌ଭୁତ ସାଧାରଣୀକରଣ ବ୍ୟାପାରରେ ଉଦାହରଣମୂଳକ ହୋଇ ସମୂହବର୍ଗଙ୍କ ସାମ୍ନାରେ ଛିଡ଼ାହୋଇଯାଏ। ତେଣୁ କାବ୍ୟବାଣୀ ମହତ୍ତମ ଶବ୍ଦାର୍ଥ ସଂଯୁକ୍ତ ଲୋକବୃତ୍ତିକ ଉଦାହରଣ ମାତ୍ର।

ସେଥିପାଇଁ କବି-ସମାଲୋଚକ କାଳିଦାସ ବାଗାର୍ଥର ମଂଜୁଳ କୌତୁକରେ ଶିବପାର୍ବତୀଙ୍କ ଅର୍ଦ୍ଧନାରୀଶ୍ୱର ମିଳନକୁ ଦେଖିବା ଓ ଦେଖାଇବା ହିଁ ଯଥାର୍ଥ କାବ୍ୟ-ଯୋଗ୍ୟତା ବୋଲି ଉଲ୍ଲେଖ କରିଛନ୍ତି। ଶିବସଂକଳ୍ପ ଭିତରେ ଶବ୍ଦ ଓ ଅର୍ଥର ମିଳନରେ କାବ୍ୟ ଜୀବନ ଓ ଜଗତର କଲ୍ୟାଣ ଉପରେ ପର୍ଯ୍ୟବସିତ ହେବ ଏବଂ ପାର୍ବତୀୟ ଶ୍ରୀ-ସୌନ୍ଦର୍ଯ୍ୟ-ସୌଭାଗ୍ୟ ଗୁଣରେ କାବ୍ୟମୋଦୀଙ୍କ ଶୁଭଗଚେତନାକୁ ବିସ୍ତାରିତ, ବିସ୍ଫାରିତ ଓ ପୁଲକିତ କରିଦେବ। ତତ୍ତ୍ୱଦର୍ଶୀ ସମୀକ୍ଷା ଶାସ୍ତ୍ରୀମାନେ ଏ ବିଚାର ଓ ପ୍ରତ୍ୟୟଠାରୁ ବିଭିନ୍ନ ନୁହଁନ୍ତି। ସେମାନେ ଶବ୍ଦ ଓ ଅର୍ଥର ବହିରଙ୍ଗୀୟ ଓ ଅନ୍ତରଙ୍ଗୀୟ କୌତୁକକୁ (ଖେଳକୁ) ତାତ୍‌ପର୍ଯ୍ୟ ଉତ୍ପାଦକ ଦୃଷ୍ଟିରେ ପରବର୍ତ୍ତୀ ଭାବେ ସୂତ୍ର ନିର୍ଦ୍ଧାଣ କରିଛନ୍ତି। ଏହି ମର୍ମରେ ଭାରତୀୟ ସମୀକ୍ଷାତତ୍ତ୍ୱ ବା କାବ୍ୟତତ୍ତ୍ୱର ସମସ୍ତ ତାତ୍ତ୍ୱିକ ଶାଖାକୁ ଓ ସେମାନଙ୍କ ସିଦ୍ଧାନ୍ତକୁ ନିମ୍ନସାରଣୀ ନଂ-୧ ଓ ନଂ-୨ ଅନୁସାରେ ସହବନ୍ଧିତ ଓ ସ୍ୱତନ୍ତ୍ର-ଚିହ୍ନିତ କରାଯାଇପାରେ।

ସୁସ୍ଥ ଓ ଶୁଭଗ ସାହିତ୍ୟର ସୃଷ୍ଟି ଓ ବିକାଶକୁ ରସ, ଧ୍ୱନି, ଅଳଙ୍କାର, ରୀତି, ବକ୍ରୋକ୍ତି, ଔଚିତ୍ୟ ଓ ଚମତ୍କାର ଆଦି କଳାସିଦ୍ଧାନ୍ତଗୁଡ଼ିକ ଦୃଶ୍ୟାନ୍ତର-ସନ୍ନିଧା ପ୍ରଦାନ କରିଆସିଛନ୍ତି। ରସସିଦ୍ଧାନ୍ତ ଦ୍ୱାରା ଭାବାନୁସାରୀ ଅନ୍ତଃସୌନ୍ଦର୍ଯ୍ୟର ସମୃଦ୍ଧି ସାଧନ ହୋଇଥିବା ବେଳେ 'ଧ୍ୱନିସିଦ୍ଧାନ୍ତ' କାବ୍ୟରେ କଳ୍ପନାତତ୍ତ୍ୱର ପ୍ରସାର ସାଧନ କରି ଅନ୍ତସ୍ତତ୍ତ୍ୱର ତାତ୍‌ପର୍ଯ୍ୟ ପ୍ରଦଶନରେ ସହାୟକ ହୋଇଛି। ଅଳଙ୍କାରସିଦ୍ଧାନ୍ତ ବାଣୀର ସୌନ୍ଦର୍ଯ୍ୟ ପରିଚ୍ଛନ୍ନତାର ସାଧନଗୁଡ଼ିକର ଉନ୍ନୟନ କରିଥିବା ସ୍ଥଳେ ରୀତିସିଦ୍ଧାନ୍ତ ଶବ୍ଦର ଗୁଣାତ୍ମକ ବିନ୍ୟାସଧର୍ମକୁ ଆଧାର କରି କାବ୍ୟର ଚଳନଶୀଳ ସଜୀବତା ଉପରେ ଗୁରୁତ୍ୱାରୋପକରିଛି। ବକ୍ରୋକ୍ତି ସିଦ୍ଧାନ୍ତ କାବ୍ୟଭଙ୍ଗୀରେ ଚାତୁର୍ଯ୍ୟ ଓ କଳାତ୍ମକ ଚମତ୍କାରିତା ଆଣି ଶବ୍ଦ ଓ ଅର୍ଥର ବହୁ ପ୍ରାସ୍ଥିକ ଦ୍ୟୋତନାକୁ ଦେଖାଇଦେଇଛି। ଔଚିତ୍ୟବାଦୀ ବିଚାର

## କବି ବ୍ୟାପାର-କାବ୍ୟ (ଶବ୍ଦାର୍ଥୌ ସହିତୌ କାବ୍ୟଂ)-୧

ନିର୍ମିତି | ନିର୍ମାଣ ପକ୍ଷ

### ୧. ବହିରଙ୍ଗୀୟ ଶବ୍ଦିକ ବ୍ୟାପାର

#### (କ) ବିନ୍ୟାସ ବ୍ୟାପାର

**ଅଳଙ୍କାର**
(ସୌନ୍ଦର୍ଯ୍ୟାଶ୍ରୟ ଉପାଦାନ)

| ପ୍ରବକ୍ତା | ଅଳଙ୍କାର ଶାସ୍ତ୍ର |
|---|---|
| ଭାମହ | • କାବ୍ୟାଳଙ୍କାର |
| ରୁଦ୍ରଟ | • କାବ୍ୟାଳଙ୍କାର |
| ଜୟଦେବ | • ଚନ୍ଦ୍ରାଲୋକ |
| ଅପ୍ପୟ | • ଚିତ୍ରମୀମାଂସା |
| ବିଶ୍ୱେଶ୍ୱର | • ଅଳଙ୍କାର କୌସ୍ତୁଭ |

**ରୀତି / ପାକବିନ୍ୟାସ**
(ନିର୍ଦ୍ଦୋଷ ଗୁଣାତ୍ମକ ପଦସଂରଚନା)

| ପ୍ରବକ୍ତା | ଅଳଙ୍କାର ଶାସ୍ତ୍ର |
|---|---|
| ଦଣ୍ଡୀ | • କାବ୍ୟାଦର୍ଶ |
| ବାମନ | • କାବ୍ୟାଳଙ୍କାର ସୂତ୍ରବୃତ୍ତି |
| ରୁଦ୍ରଟ | • କାବ୍ୟାଳଙ୍କାର |
| କେଶବ | • ଅଳଙ୍କାର ଶେଖର |
| ରାଜଶେଖର/ ଅବନ୍ତୀ ସୁନ୍ଦରୀ | • କାବ୍ୟ ମୀମାଂସା |

### ୨. ଅନ୍ତରଙ୍ଗୀୟ ଭାବାର୍ଥ ବ୍ୟାପାର

#### (ଖ) ଅଭିବ୍ୟକ୍ତି ବ୍ୟାପାର

**ଧ୍ୱନି**
(ଶବ୍ଦାର୍ଥ ଶକ୍ତି ବିଚାରାତ୍ମକ)

| ପ୍ରବକ୍ତା | ଶାସ୍ତ୍ର |
|---|---|
| ଆନନ୍ଦ ବର୍ଦ୍ଧନ | • ଧ୍ୱନ୍ୟାଲୋକ |
| ଅଭିନବ ଗୁପ୍ତ | • ଲୋଚନଟୀକା |
| ଧନଞ୍ଜୟ | • ଦଶରୂପକ |
| ବିଦ୍ୟାଧର | • ଏକାବଳୀ |

**ବକ୍ରୋକ୍ତି**
(ରମ୍ୟ ଭଣତି ଓ ବିଦଗ୍ଧ-ବାଗ୍‌ଭଙ୍ଗୀ)

| ପ୍ରବକ୍ତା | ଶାସ୍ତ୍ର |
|---|---|
| କୁନ୍ତକ | • ବକ୍ରୋକ୍ତି କାବ୍ୟ ଜୀବିତଂ |
| ଭାମହ | • କାବ୍ୟାଳଙ୍କାର |

## ନିର୍ମିତ ନିର୍ମାଣ-୨
### (ଅନ୍ତରଙ୍ଗୀୟ ଭାବାର୍ଥ ବ୍ୟାପାର)

**ଭାବକକ୍ଷ**

**ରସ**

| ପ୍ରବକ୍ତା | ଶାସ୍ତ୍ର |
|---|---|
| ଭରତ | ନାଟ୍ୟଶାସ୍ତ୍ର |
| ଅଭିନବଗୁପ୍ତ | ଅଭିନବ ଭାରତୀ |
| ରୁଦ୍ରଟ | କାବ୍ୟାଳଙ୍କାର |
| ରୁଦ୍ରଭଟ୍ଟ | ଶୃଙ୍ଗାର ତିଳକ |
| ଭଟ୍ଟତୌତ | କାବ୍ୟକୌତୁକ |
| ଧନଞ୍ଜୟ | ଦଶରୂପକ |
| ଭୋଜରାଜ | ସରସ୍ୱତୀ କଣ୍ଠାଭରଣ |
| ବିଶ୍ୱନାଥ | ସାହିତ୍ୟ ଦର୍ପଣ |
| ଜଗନ୍ନାଥ | ରସରତ୍ନାକର |

**ଔଚିତ୍ୟ**

| ପ୍ରବକ୍ତା | ଶାସ୍ତ୍ର |
|---|---|
| କ୍ଷେମେନ୍ଦ୍ର | ଔଚିତ୍ୟ ବିଚାରଚର୍ଚ୍ଚା |

**ଆବେଦନକକ୍ଷ**

**ଚମତ୍କାରବାଦ**

| ପ୍ରବକ୍ତା | ଶାସ୍ତ୍ର |
|---|---|
| ନାରାୟଣ | ଅଦ୍‌ଭୁତ ରସବାଦୀ |
| ବିଶ୍ୱନାଥ | ସାହିତ୍ୟ ଦର୍ପଣ |
| ଅପ୍ପୟ ଦୀକ୍ଷିତ | ଚିତ୍ରମୀମାଂସା |
| ପଣ୍ଡିତରାଜ ଜଗନ୍ନାଥ | ରସଗଙ୍ଗାଧର |

କାବ୍ୟର ବାହ୍ୟସୌନ୍ଦର୍ଯ୍ୟର ବିବିଧ ଆଶ୍ରୟ ଓ ଅନ୍ତଃସୌନ୍ଦର୍ଯ୍ୟର ସୌଭାଗ୍ୟକୁ ସଂଶ୍ଳେଷଣ କରି ଗୁଣଯୁକ୍ତ ଓ ଦୋଷହୀନ କାବ୍ୟାଭିଭିବ୍ୟକ୍ତି ଉପରେ ପ୍ରାଧାନ୍ୟ ଦେଇଛି। ଚମତ୍କାରବାଦୀ ସିଦ୍ଧାନ୍ତ କାବ୍ୟର ପ୍ରଭାବ ବା ଆବେଦନ ଉପରେ ଧ୍ୟାନନିଷ୍ଠ ହେବାକୁ ପ୍ରବୃତ୍ତ କରିଛି। ଶବ୍ଦ ଓ ଅର୍ଥର ମିଳନରେ ସହୃଦୟ-ହୃଦୟ-ଆହ୍ଲାଦିକ ରମଣୀୟ ଅଭିବ୍ୟକ୍ତି ଚିତ୍ତବିସ୍ତାରଧର୍ମୀ ଚମତ୍କାର ଭାବ ଉଦ୍‌ବୋଧନରେ ସମର୍ଥ ଓ ଏହାହିଁ ଉତ୍ତମୋତ୍ତମ କାବ୍ୟ-ଯୋଗ୍ୟତା- ଏପ୍ରକାର ଉଦାତ୍ତ ସୌନ୍ଦର୍ଯ୍ୟର କାବ୍ୟ-ସର୍ଜନଶୀଳ-ପ୍ରତ୍ୟୟଟିଏ ଚମତ୍କାରବାଦ ପ୍ରତିଷ୍ଠା କରିଛି। ଭାବାବେଦନରେ ଲୋକୋତ୍ତୀର୍ଣ୍ଣତାକୁ କାବ୍ୟବୀଜ ଭାବରେ ଗ୍ରହଣ କରି ମଧ୍ୟଯୁଗୀୟ ଆଳଙ୍କାରିକ କବିମାନେ ଶବ୍ଦାର୍ଥର ବିଭାବନକାରକ ଦୃଶ୍ୟାନ୍ତରୀୟ ସନ୍ନିଧା ବୈଚିତ୍ର୍ୟର (morphing/ଗୋଟିଏ ଭାବଚିତ୍ର ଅନ୍ୟ ଭାବଚିତ୍ରରେ ରୂପାନ୍ତରିତ ହୁଏ ଓ ଏକ ଚମତ୍କାର ଓ ଚିତ୍ତବିସ୍ତାରୀ ଆଶ୍ଚର୍ଯ୍ୟଜନକ

ବସ୍ତୁଆକାରନ୍ୱିତ ଭାବଟିଏ ନିର୍ମାଣ କରିଦିଏ) ଖେଳ ଖେଳିଛନ୍ତି। ଫଳରେ କାବ୍ୟୋଚିତ ନିର୍ମିତି ନିର୍ମାଣ ଦୁଇ ବା ତା'ଠାରୁ ଅଧିକ ବସ୍ତୁନିଷ୍ଠ ସାଦୃଶ୍ୟ-ବୈସାଦୃଶ୍ୟ/ସାପେକ୍ଷ-ବିପକ୍ଷ ଅଭିଧାବାଚକ ଶବ୍ଦକୁ ବିମିଶ୍ର କରି (composite) ଏକ ଆରୋପଣାତ୍ମକ ଯୌଗିକ ତାତ୍‌ପର୍ଯ୍ୟାର୍ଥର ସହାୟତାରେ ରମଣୀୟ ଭାବଚିତ୍ର ପ୍ରସ୍ତୁତିର କଳାତ୍ମକ ସର୍ଜନ ବ୍ୟାପାର (art of creative production) ରୂପେ ଅବଲମ୍ବିତ ହୋଇଛି। ଶ୍ରୀହର୍ଷ ଓ ଜୟଦେବ ଏ ପ୍ରକାର ଚମତ୍କାରିତା ଉତ୍ପାଦନର ବୀଜବପନ କରିଥିଲେ ବି ଓଡ଼ିଆ ମଧ୍ୟଯୁଗୀୟ କବି ବ୍ୟାପାର ଅଧିକ ପାଦ ଆଗେଇ ଯାଇ ଚମତ୍କାରବାଦୀ କାବ୍ୟଭାବନା ଓ କାବ୍ୟନିର୍ମାଣ ପ୍ରତି ଅଭ୍ୟୁତ୍ସାହୀ ହୋଇ ଲୌକିକକୁ ଲୋକୋତ୍ତର ବିସ୍ମୟରେ ଉଦ୍ଦୀପ୍ତ କରିବା .ଅପେକ୍ଷା ଅଲୌକିକକୁ ଲୌକିକ ସଂପ୍ରସାରଣଶୀଳ ବାସ୍ତବତାରେ, ଅର୍ଥାତ୍ ଦିବ୍ୟକୁ ଅଦିବ୍ୟରେ ଘଟାନ୍ତରିତ ଓ ମିଳିତ କରିଦେଉଛି। ଏହି ମର୍ମରେ କାବ୍ୟର କଥା– ଭାଷା– ଚରିତ୍ର– ଲୀଳା–ରସ–ଘଟଣା କ୍ରମଗୁଡ଼ିକରେ ଅଭିଜାତ ଦିବ୍ୟତା ଅଦିବ୍ୟତା ଭିତରେ ଚିତ୍ର ସମ୍ବିଧା ସୂତ୍ରରେ ମିଶିବାକୁ ବ୍ୟାକୁଳ ଓ ଗୌରବ ମନେକରୁଛି। ଏପରିକି ଶୃଙ୍ଗାର-କରୁଣ-ଶାନ୍ତ-ବୀରାଦି ବଳିଷ୍ଠଅଙ୍ଗୀ ରସଗୁଡ଼ିକ ମଧ୍ୟ ବିସ୍ମୟ-ଭାବନିଷ୍ଠ ହୋଇ ଅଦ୍‌ଭୁତ ଘଟଣା ଅବଲମ୍ବିତ ହୋଇ ଅଦ୍‌ଭୁତ ରସରେ ସଂଯୋଜିତ ହୋଇ ନୂଆ ଢଙ୍ଗରେ ଆଶ୍ଚର୍ଯ୍ୟ ପ୍ରୀତିକର ପ୍ରତିଦୃଶ୍ୟଟିଏ ଲେଖାଁ ହୋଇ ଉଠୁଛନ୍ତି। ପାର୍ଥିବ ବୃତ୍ତି ଓ ପ୍ରବୃତ୍ତିଗୁଡ଼ିକ ଦିବ୍ୟ ଚରିତ୍ର ପାଖରେ ଉପଲବ୍ଧ ହେବାଦ୍ୱାରା ସେସବୁ ଆଉ କ୍ଷୁଦ୍ର, ସଂକୀର୍ଣ୍ଣ,ମୋହପୂର୍ଣ୍ଣ, ଅଳୀକ, ଦୁର୍ବଳ ଓ ଧୂସର ଦେଖା ନଯାଇ ମଧୁର, ସତେଜ ଓ ପରମ ଆକର୍ଷଣୀୟ ହୋଇ ବିସ୍ମୟାନନ୍ଦକ ହୋଇ ଉଠୁଛନ୍ତି। ସୁତରାଂ ପ୍ରାଚ୍ୟ ସାହିତ୍ୟ ତତ୍ତ୍ୱ ଏକ ସ୍ପୃହଣୀୟ ମୀମାଂସାଟିଏ ଉଭା କରାଇ ଦେଇଛି ଯେ– ଚମତ୍କାରିତା ହିଁ ଉତ୍ତମ କାବ୍ୟଯୋଗ୍ୟତା ଏବଂ ସାଧାରଣ ପାର୍ଥିବତାରେ ଚମତ୍କାର ଉତ୍ପାଦନ ଓ ପ୍ରଦର୍ଶନ ହିଁ କବିର ନିର୍ମାଣୋଚିତ ବିବେକପଣ। ଏ ବିବେକପଣ ପାର୍ଥିବ ଶୁଭାଶୁଭର ଭାବଗୁଡ଼ିକୁ ମୌଳିକ ଉପଜୀବ୍ୟ ଭାବରେ ଗ୍ରହଣ କରି ବିସ୍ମୟକର ଶବ୍ଦାର୍ଥ ଚମତ୍କୃତିର ଖେଳ ହିଁ ଖେଳିଥାଏ ଏବଂ ପାର୍ଥିବ ଦେଇ ଅପାର୍ଥିବ ଆନନ୍ଦ ଅନୁଭବ ପାଇଁ ଉତ୍ସାହୀ କରିଦିଏ। ଏ କ୍ଷେତ୍ରରେ ରୂଜ୍ୟକଙ୍କ କାବ୍ୟାନନ୍ଦ ବିଚାର, ବ୍ୟକ୍ତିବିବେକକାର ମହିମ ଭଟ୍ଟଙ୍କ ଭାବାନନ୍ଦ ନିରୂପଣ ଭରତଙ୍କ ଆଶ୍ଚର୍ଯ୍ୟ-ଆଖ୍ୟାନ-ଅଭିଖ୍ୟାନ, ନାରାୟଣଙ୍କ ରସେ ସାରଶ୍ଚମତ୍କାରଃ, ବିଶ୍ୱନାଥଙ୍କ ଆହ୍ଲାଦଜନକ ଆବେଦନର ଲୋକୋତ୍ତର ଚମତ୍କାରିତା ଓ ପଣ୍ଡିତରାଜ ଜଗନ୍ନାଥଙ୍କ ଚମତ୍କାରଜନକ ଭାବନା ଓ ତାହାର ବିଷୟାର୍ଥକ ରମଣୀୟ ଶାବ୍ଦିକତା କାବ୍ୟସୌନ୍ଦର୍ଯ୍ୟ କଳନାର ଅଭିନବ ମାନଦଣ୍ଡ ହୋଇଉଠିଛି। ବିଶ୍ୱସାହିତ୍ୟର ସୌନ୍ଦର୍ଯ୍ୟତାତ୍ତ୍ୱିକ ବିଚାରରେ ଚମତ୍କାରବାଦୀ ସିଦ୍ଧାନ୍ତର ଭାସ୍କରୀଦୀପ୍ତିକୁ (appollian

merit) ଅନ୍ୟତମ ମହତ୍ତ୍ୱପୂର୍ଣ୍ଣ ଆବିଷ୍କାର ଭାବରେ ମାନିନେବାରେ ବାଧା ନାହିଁ। (ଏ କ୍ଷେତ୍ରରେ ମାର୍ଗଦର୍ଶୀ ଓଡିଆ ସମୀକ୍ଷକ ସୁଦର୍ଶନ ଆଚାର୍ଯ୍ୟ ଓ ଦାଶରଥୀ ଦାସଙ୍କ ବିଚାରକୁ ସ୍ମରଣଭିତ୍ତି ରୂପେ ସମ୍ମାନ ଦେଉଛି।)

ମୋଟ ଉପରେ କାବ୍ୟର ଚାରୋଟି ପକ୍ଷ 'ଭାବ-ଭାଷା-ନିର୍ମାଣ-କଳା ଆବେଦନ' ସଂପର୍କରେ ସିଦ୍ଧାନ୍ତ ନିରୂପଣ କରି ଭାରତୀୟ ସମୀକ୍ଷାତତ୍ତ୍ୱ ଦୀର୍ଘକାଳୀୟ ପ୍ରଭାବବିସ୍ତାରୀ ଉତ୍କର୍ଷତା ପ୍ରଦର୍ଶନ କରିବାରେ ସଫଳ ହୋଇପାରିଛି। ଗୁଣଦର୍ଶୀ ଓ ଦୋଷଦର୍ଶୀ ଉଭୟ ପ୍ରକାର ସମାଲୋଚନାର ଧାରୀକୁ ସମର୍ଥନ କରି କାବ୍ୟର ଆତ୍ମା ଓ ଆତ୍ମାର ଶବ୍ଦାର୍ଥ-ଦ୍ୟୋତକ ଲୀଳାୟିତ ସୌନ୍ଦର୍ଯ୍ୟର ମହତ୍ତ୍ୱ ମୀମାଂସାରେ ଭାରତୀୟ କାବ୍ୟତତ୍ତ୍ୱର ବିବିଧ ବୈଚିତ୍ର୍ୟ ପ୍ରକୃଷ୍ଟ ବିଜ୍ଞାନ ସମ୍ମତ ମାର୍ଗ ନିର୍ଦ୍ଧାରଣ କରିଛି- ଏହାର ଜଗତାଭିମୁଖୀ ବ୍ୟାଖ୍ୟା ସଂପ୍ରତି ଅପରିହାର୍ଯ୍ୟ ହୋଇପଡିଛି।

(ପାଞ୍ଚ)

ଋକ୍‌ବେଦରୁ ଅଳଙ୍କାର, ରସ, ଧ୍ୱନି, ବକ୍ରୋକ୍ତି ଓ ବାଙ୍‌ମୟତା ଆଦି ନାମରୁ ଭାରତୀୟ କାବ୍ୟ ସମୀକ୍ଷାର ଆଦି ସ୍ଥିତିକୁ ବିଦ୍ୱାନମାନେ ଲକ୍ଷ୍ୟ କରିଥାନ୍ତି। 'ରସୋ ବିପ୍ରଃ କବିଃ କାବ୍ୟେନ ନ୍ୟାୟରେ ବୈଦିକ କବିଦୃଷ୍ଟି ରସକୁ ବାଣୀର ସାରଭୂତ ବିଷୟ ଭାବରେ ଅର୍ଥନିଷ୍ଠ କରିଛନ୍ତି। ବେଦାନ୍ତ-ଉପନିଷଦ ପର୍ଯ୍ୟାୟରେ ରସକୁ ('ରସୋ ବୈସଃ' ଭାବରେ ପରିଭାଷିତ କରାଯାଇ) ଆନନ୍ଦର କାରଣ ଓ ପରମାତ୍ମାର ସମପର୍ଯ୍ୟାୟ ରୂପରେ ପ୍ରତିପାଦନ କରଯାଇଛି। 'ନିରୁକ୍ତରେ' ଥିବା ଉପମାଭେଦ ଓ ବୋଧ, ପାଣିନିଙ୍କ 'ଅଷ୍ଟପଧ୍ୟାୟରେ' ଉଲ୍ଲେଖିତ ଉପମାତ୍ମକ ବଚନ ବୈଚିତ୍ର୍ୟ, 'ଶତପଥ ବ୍ରାହ୍ମଣ'ରେ ଉଦାହରଣ ଭିତ୍ତିରେ ବ୍ୟବହୃତ ଅନୁପ୍ରାସ-ଉପମା-ବ୍ୟତିରେକାଦି ଅଳଙ୍କାର, ରାମାୟଣର ଯୁଦ୍ଧ କାଣ୍ଡରେ ବର୍ଣ୍ଣିତ ଶୃଙ୍ଗାର, କରୁଣ, ହାସ୍ୟ, ବୀର, ଭୟାନକ ଓ ରୌଦ୍ରାଦି ରସର ସାରଳଂକାର କାବ୍ୟତାର ମହତ୍ତ୍ୱକଥନ ଏବଂ ୧୫୦ ଖ୍ରୀଷ୍ଟାବ୍ଦର ଜୁନାଗଡର ରୁଦ୍ରାଦମନ ଶିଳାଲେଖରେ ପ୍ରତିପାଦିତ 'ଉଦାରଳଂକୃତ ଗଦ୍ୟପଦ୍ୟ' ବାକ୍ୟାଂଶ ପ୍ରମାଣ କରେ ଯେ ପ୍ରାଚୀନ ଭାରତୀୟ ରଚନା ପରଂପରାରେ କାବ୍ୟତତ୍ତ୍ୱୀୟ ବିବିଧ ଲକ୍ଷଣ ଓ ଉପାଦାନ ବିଷୟରେ ଶ୍ଳୋକ ନିର୍ମାତାମାନେ ସଂଚେତନ ରହିଛନ୍ତି। ବେଦାନ୍ତ ସମର୍ଥିତ ରସର ଆତ୍ମାରୂପ ପରବର୍ତ୍ତୀ କାଳରେ (ଖ୍ରୀ.ପୂ.୧୦୦-୨୦୦) 'ନାଟ୍ୟଶାସ୍ତ୍ର' ପ୍ରଣେତା ଭରତଙ୍କୁ ରସସିଦ୍ଧାନ୍ତକୈନ୍ଦ୍ରିକ ସମୀକ୍ଷାଶାସ୍ତ୍ର ରଚନା କରିବାକୁ ଉତ୍ସାହିତ କରିଛି। ଭରତ ନାଟ୍ୟଶାସ୍ତ୍ରରେ ଅନେକ ପୂର୍ବସ୍ୱରୀ ଆଚାର୍ଯ୍ୟଙ୍କ ଯୁକ୍ତିନିଷ୍ଠ ଓ ସଶକ୍ତ ରସକୈନ୍ଦ୍ରିକ ସିଦ୍ଧାନ୍ତକୁ ଆନୁବଂଶ୍ୟ ଶ୍ଳୋକ ରୂପରେ ଉତ୍‌ଥାପନ କରିଛନ୍ତି, ଯାହା ଜଣାଇଦିଏ ଭରତଙ୍କ ପୂର୍ବରୁ କାବ୍ୟ-କ୍ରିୟାକଳ୍ପୀୟ ବିଧାନ ସ୍ୱୀକୃତ ହୋଇସାରିଛି।

କାବ୍ୟ-କ୍ରିୟାକଳ୍ପୀୟ ବିଚାର ଧାରାରେ ପୂର୍ବ ଉଲ୍ଲିଖିତ ମୀମାଂସକମାନଙ୍କ ବିଚାରବିମର୍ଶ ଦୃଷ୍ଟିକୁ ମୁଖ୍ୟତଃ ତିନିଶ୍ରେଣୀରେ ବିଭକ୍ତ କରାଯାଇପାରେ – (i) ଆତ୍ମାନୁଶୀଳନବାଦୀ / ରସବାଦୀ / ଭାବବାଦୀ ସିଦ୍ଧାନ୍ତ, (ii) ପ୍ରକରଣବାଦୀ / ନିର୍ମିତିନିର୍ମାଣବାଦୀ / ରୀତ୍ୟାଙ୍ଗିକବାଦୀ ସିଦ୍ଧାନ୍ତ ଓ (iii) ସମନ୍ୱୟବାଦୀ ସିଦ୍ଧାନ୍ତ।

(i) ଆତ୍ମାନୁଶୀଳନବାଦୀ– ଆଳଙ୍କାରିକମାନେ କାବ୍ୟରେ ରଚନାବିଧାନ ଅପେକ୍ଷା ରସବିଧାନ ବା ଭାବସୌନ୍ଦର୍ଯ୍ୟବିଧାନ ଉପରେ ଗୁରୁତ୍ୱ ଆରୋପ କରି ଆତ୍ମିକସୌନ୍ଦର୍ଯ୍ୟ ଅନୁସାରେ ବାହ୍ୟିକ ରୂପଚର୍ଚ୍ଚାର ସୌନ୍ଦର୍ଯ୍ୟ ନିରୂପିତ ହୋଇଥାଏ ବୋଲି ସିଦ୍ଧାନ୍ତ ନିର୍ଣ୍ଣୟ କରିଥା'ନ୍ତି। କାବ୍ୟ-ନାଟକାଦିର ଆତ୍ମା ହେବାର ଯୋଗ୍ୟତା ଅର୍ଜନ ପାଇଁ ଖଣ୍ଡନ-ମଣ୍ଡନ-ପ୍ରତିମଣ୍ଡନ ସୂତ୍ରରେ ଛଅଗୋଟି ସାଂପ୍ରଦାୟିକ ଆଚାର୍ଯ୍ୟମାନେ ନିଜନିଜର ତତ୍ତ୍ୱବୀଜକୁ ସାମ୍ନାରେ ରଖି ତର୍କଣା କରିଥିବାର ଲକ୍ଷ୍ୟ କରାଯାଏ। ଆତ୍ମା-ଯୋଗ୍ୟତାମୂଳକ ପ୍ରତିଯୋଗିତାରେ ରସ, ରୀତି, ଧ୍ୱନି, ବକ୍ରୋକତି, ଔଚିତ୍ୟ ଓ ଚମତ୍କାରକୁ ଅଂଶଗ୍ରହଣକାରୀ ପ୍ରତିଯୋଗୀ ଭାବରେ ପକ୍ଷଭୁକ୍ତ କରାଯାଇଛି। ବାମନାଚାର୍ଯ୍ୟ ଗୁଣବିଶିଷ୍ଟ ପଦରଚନାକୁ ରୀତି ଓ ରୀତିକୁ କାବ୍ୟର ଆତ୍ମାରୂପରେ ପ୍ରଥମେ ଘୋଷଣା (ରୀତିରାତ୍ମା କାବ୍ୟସ୍ୟ) କରିବା ପରେ ଧ୍ୱନ୍ୟାଲୋକର ପ୍ରଣେତା ଆଚାର୍ଯ୍ୟ ଆନନ୍ଦବର୍ଦ୍ଧନ ଶାବ୍ଦିକ ପଦସଂଘଟନା ରୀତିକୁ କାବ୍ୟର ମୁଗ୍ଧକର ଶରୀରସର୍ବସ୍ୱ ଉପାଦାନ ଭାବରେ ଅଭିହିତ କରି ଆତ୍ମା ସ୍ଥାନରୁ ରୀତିକୁ ଓହ୍ଲାଇ ଆଣି ତାହା ସ୍ଥାନରେ ଧ୍ୱନିକୁ ସଂସ୍ଥାପନ କରି ଗୁରୁଗମ୍ଭୀର କଣ୍ଠରେ ଶିଷ୍ୟ ଅଭିନବଗୁପ୍ତଙ୍କୁ ବ୍ୟାଖ୍ୟାକାରୀ ଭାବରେ ସମ୍ମୁଖରେ ରଖି ଘୋଷଣା କରିଛନ୍ତି– 'କାବ୍ୟସ୍ୟାତ୍ମା ଧ୍ୱନିରିତି'। କାବ୍ୟାତ୍ମା ଧ୍ୱନିର ଅନ୍ତରଙ୍ଗୀୟ ସୌନ୍ଦର୍ଯ୍ୟ ପ୍ରତିପାଦନ ସହିତ ତାହାର ନିର୍ମାଣଭଙ୍ଗୀରେ ଏକ ଅନଭାବିତପୂର୍ବ ବିପ୍ଳବ ସେ ଆଣିନ୍ତି। ଶବ୍ଦ ଓ ଅର୍ଥର ମିଳନରେ କାବ୍ୟହୁଏ ଏବଂ ଅଳଙ୍କାର ବକ୍ରୋକ୍ତିପ୍ରାଣା ଚାରୁତାର ଆଶ୍ରୟରେ ଶବ୍ଦାର୍ଥର ଅପୂର୍ବ ମିଳନ ସାଧନ ହୁଏ। ଭାମହଙ୍କ ଏହି ବିଚାରକୁ କାବ୍ୟର ଶୋଭାକାରକ ସୌନ୍ଦର୍ଯ୍ୟାଶ୍ରିତ ସିଦ୍ଧାନ୍ତ ଭାବରେ ଗ୍ରହଣ କରି ବାମନାଚାର୍ଯ୍ୟ ଗୁଣାତ୍ମକ ପଦସଂରଚନା ଭିତରେ କାବ୍ୟକୁ ଚଳନଶକ୍ତି ସମର୍ଥ କରୁଥିବା ରୀତିକୁ କାବ୍ୟର ଆତ୍ମା ଭାବରେ ଅଭିହିତ କରିଥିଲେ। ଆନନ୍ଦ ବର୍ଦ୍ଧନ ଅଳଙ୍କାରକୁ କାବ୍ୟର ଶୋଭାକାରକ ଆଶ୍ରୟଧର୍ମ ଓ ରୀତିକୁ କାବ୍ୟର ବିଶେଷ ସଂଘଟନାତ୍ମକ ଉପାୟ ଭାବରେ ଅର୍ଥନିଷ୍ଠ କରି ଏ ଉଭୟକୁ ରସଧ୍ୱନିର ଉପକାରକ ଭାବରେ ବିବେଚନା କରିଛନ୍ତି। ରୀତି ଓ ଅଳଙ୍କାର ଶାବ୍ଦିକ ଧ୍ୱନି ବା ଗୁଣୀଭୂତ (ବସ୍ତୁଧ୍ୱନି+ଅଳଙ୍କାର ଧ୍ୱନି) ଧ୍ୱନିର ସମାନୁରୂପ ବା ପ୍ରତିରୂପ। ମାତ୍ର ରସଧ୍ୱନି ହିଁ ଉତ୍ତମ କାବ୍ୟର ପ୍ରାଣ। 'ରସଧ୍ୱନି'– 'ଯେ ରସ ସେହିଁ ଧ୍ୱନି' ଅର୍ଥରେ ତାତ୍‌ପର୍ଯ୍ୟପୂର୍ଣ୍ଣ ହୋଇ ଧ୍ୱନିକୁ ସ୍ୱୟଂ ରସରୂପ

ଭାବରେ ବିଚାର କରାଯାଇ କାବ୍ୟାତ୍ମା ମର୍ଯ୍ୟାଦା ଆନନ୍ଦ ବର୍ଦ୍ଧନ ଦେଇଛନ୍ତି। ମାତ୍ର ଅଳଙ୍କାର ଓ ରୀତି ଧ୍ୱନି ଲକ୍ଷଣରେ ଉଦ୍‌ଭାସିତ ହୋଇପାରନ୍ତି। ଏଗୁଡିକ ସ୍ୱୟଂ ଧ୍ୱନି ନୁହଁନ୍ତି। ରସ ଧ୍ୱନ୍ୟାତ୍ମକ ତାତ୍‌ପର୍ଯ୍ୟପୂର୍ଣ୍ଣ ଅଭିବ୍ୟକ୍ତି ଲୋଡି ଉତ୍ତମ କାବ୍ୟାତ୍ମା ହୋଇପାରେ। କିନ୍ତୁ ଧ୍ୱନି ସ୍ୱୟଂ ରସ ନୁହେଁ, ତେଣୁ ଆତ୍ମାନୁଭବ < ପୁନଶ୍ଚ ଆତ୍ମା ଏକ ଓ ତାହାର ତ୍ରିବିଧ ପ୍ରକାର (ରସଧ୍ୱନି-ବସ୍ତୁଧ୍ୱନି-ଅଳଙ୍କାରଧ୍ୱନି ଏବଂ ଏସବୁର ଆକାରାତ୍ମକ ଆବେଦନ) ଅସଂଭବ। ଏପ୍ରକାର ଅଭାବବାଦୀ, ଅନିର୍ବଚନୀୟବାଦୀ, ଭାବବାଦୀ, ଭୁକ୍ତିବାଦୀ, ତାତ୍‌ପର୍ଯ୍ୟବାଦୀ (ଆଚାର୍ଯ୍ୟଧନିକ) ବକ୍ରୋକ୍ତିବାଦୀ ଓ ଅନୁମିତମିବାଦୀ ଇତ୍ୟାଦି ଧ୍ୱନି ବିପକ୍ଷବାଦୀ କାବ୍ୟଶାସ୍ତ୍ରୀଙ୍କ ତର୍କଣାର ସବଳତା ପାଖରେ ଧ୍ୱନିବାଦର ଗୌରବମୟ ପ୍ରୟାସ (କାବ୍ୟାତ୍ମା ଘୋଷଣାର ଯୁକ୍ତି) ଖଣ୍ଡିତ ହୋଇଛି।

କାବ୍ୟାତ୍ମା-ସ୍ଥାନ ସଂରକ୍ଷଣରେ ଧ୍ୱନିବାଦୀ ସିଦ୍ଧାନ୍ତ ଖଣ୍ଡିତ ଓ ବିଫଳ ହୋଇଥିଲେ ବି ପଦାଂଶଗତ, ବର୍ଣ୍ଣଗତ, ରଚନାଗତ, ପ୍ରବନ୍ଧଗତ, ଇଙ୍ଗିତସୂଚକ, ଅଭିଧାମୂଳକ, ଲକ୍ଷଣାବାଚକ, ଅଳଙ୍କାରାଶ୍ରିତ, ବସ୍ତୁଭିତ୍ତିକ, ସାଙ୍କର୍ଯ୍ୟ-ସଂସୃଷ୍ଟି-ଶୁଦ୍ଧତାନିକ ହୋଇ ପ୍ରାୟତଃ ୫୩୫୫ ପ୍ରକାରର ଧ୍ୱନିକ୍ରମରେ କାବ୍ୟରେ ରସ ବ୍ୟଂଜନାତ୍ମକ ଅଭିବ୍ୟକ୍ତି ପାଇଥାଏ– ଏବଂବିଧ ମୀମାଂସା ଅଖଣ୍ଡିତ ରହିଛି। ଭାବର ଶବ୍ଦାଶ୍ରିତ ଅର୍ଥନିଷ୍ଠ ବ୍ୟଂଜିତ ଅଭିବ୍ୟକ୍ତି ପ୍ରକ୍ରିୟାକୁ ପାଶ୍ଚାତ୍ୟ କାବ୍ୟତତ୍ତ୍ୱର 'ଇଙ୍ଗିତ ସିଦ୍ଧାନ୍ତ' (Theory of suggestion / ନୂତନ ସମାଲୋଚନାର ପ୍ରବକ୍ତା ପ୍ରାୟୋଗିକ ଇଙ୍ଗିତବାଦୀ ଆଇ.ଏ.ରିଚାର୍ଡସ୍‌ଙ୍କ Meaning within meaning ତତ୍ତ୍ୱ) ଅନୁରୂପ ଗ୍ରହଣ କରାଯାଇପାରେ। ଧ୍ୱନି ଅନୁରଣନାତ୍ମକ ଅର୍ଥ ପ୍ରତିପାଦନ କରେ। ଅର୍ଥ ଭିତରେ ଅର୍ଥ ଓ ଅର୍ଥର ତାତ୍‌ପର୍ଯ୍ୟାର୍ଥ ବା ଆରୋପିତ ଅର୍ଥ ଉପଲବ୍ଧି କରାଇ ଏହା ସହୃଦୟ ମନରେ ଭାବସ୍ପନ୍ଦନ ସୃଷ୍ଟି କରେ। ଶବ୍ଦଗର୍ଭରେ ଥିବା ଇଙ୍ଗିତସୌନ୍ଦର୍ଯ୍ୟର ଆନନ୍ଦ ନିଷ୍ପାଦନଧର୍ମୀ କାବ୍ୟ ଉପାଦାନ ହେଉଛି ଧ୍ୱନି। କାବ୍ୟାନୁଭୂତି ଓ କବିର ଅଭିପ୍ରାୟକୁ ଏକ ଭାବାତ୍ମକ ବସ୍ତୁଆକାର ପ୍ରଦାନ କରି ବ୍ୟଂଜନାବ୍ୟାପାରରେ ଅଭିବ୍ୟକ୍ତି ଦେବାରେ ଧ୍ୱନିର ଭୂମିକା ଅଳଙ୍କାର ଓ ରୀତିଠାରୁ ବ୍ୟଧିକ ପ୍ରଭାବଶାଳୀ ବିବେଚନା ହୋଇଛି। ଧ୍ୱନି କବିର ଅନୁଭୂତିକୁ ପାଠକ ଦିଗରେ ବିଶିଷ୍ଟାର୍ଥକ କରି ସଂଚାରୀ ନେଇଥାଏ। ଉତ୍ତମ କାବ୍ୟିକ ଅଭିବ୍ୟକ୍ତି ଓ ଉଦାତ୍ତ ଶବ୍ଦାର୍ଥଭଙ୍ଗୀର ଶକ୍ତି ହେଉଛି ଧ୍ୱନି ପରୋକ୍ଷରେ ରସସଂଚାରକ ଆବେଦନ ସୃଷ୍ଟିକାରୀ ମାଧ୍ୟମ। ଶବ୍ଦ ଓ ଅଳଙ୍କାର ଦ୍ୱାରା ରସର ଲଳିତ ନିଷ୍ପତ୍ତି ବିଭବ-ଅନୁଭବ-ସଂଚାରୀଭାବାଶ୍ରିତ ହୋଇ ଘଟେ। ମାତ୍ର କବିର ଅନୁଭୂତି, କାବ୍ୟର ଭାବସୌନ୍ଦର୍ଯ୍ୟ ଓ ପାଠକର ବିଶ୍ୱାସକୁ ଇଙ୍ଗିତାତ୍ମକ କରି ଗଢିବାରେ ଓ ମିଶାଇବାରେ ଧ୍ୱନିର ଅପରିହାର୍ଯ୍ୟତା ସାର୍ବିକସିଦ୍ଧାନ୍ତ ହୋଇପାରିଛି। ଶବ୍ଦର ଧ୍ୱନ୍ୟାୟିତ ଶ୍ରବଣ ଓ ବ୍ୟଂଜନାୟିତ ଅର୍ଥ-ଚିତ୍ରକରଣ ଗୁଣରୁ କାବ୍ୟାନୁଭୂତି ଓ କାବ୍ୟଭାବ ବ୍ୟାପକ

ଅର୍ଥରେ ପାଠକର ଅନ୍ତଶ୍ଚକ୍ଷୁ ପାଖରେ ମାୟା ବାସ୍ତବତାର ଚିତ୍ରରେ (ବାସ୍ତବ ଅବିକଳ ନୁହେଁ, ମାତ୍ର ବାସ୍ତବତାଠାରୁ ବିଚ୍ଛିନ୍ନ ନୁହେଁ) ଉଦୟ ଆଭାରେ ଉଭା ହୋଇଯାଏ। ଅନୁରାଗସଂଜାତ ପ୍ରକ୍ରିୟାରେ ଧ୍ୱନି ଦ୍ୱାରା କାବ୍ୟାତ୍ମା ରସର ଚମତ୍କାରିତା ଓ ଉତ୍କର୍ଷତା ପାଠକର ଉପଲବ୍ଧି ସ୍ତରକୁ ଆସିଯାଇଥାଏ। ଏ କାରଣରୁ ଧ୍ୱନି ବିପକ୍ଷବାଦୀମାନେ ଧ୍ୱନିକୁ ଆତ୍ମା ପଦବୀରୁ ଉଚ୍ଛେଦ କରିଥିଲେ ବି ବ୍ୟଂଜନାତ୍ମକ ଶବ୍ଦ-ବିମ୍ବ ସୃଷ୍ଟିକ୍ଷମ ଧ୍ୱନି ସହୃଦୟର କାବ୍ୟାନନ୍ଦ ଅନୁଭବ ପାଇଁ ପରମ ତଟସ୍ଥ ଚିତ୍ତାବସ୍ଥାଟିଏ ଯୋଗାଇଦିଏ ଏହାକୁ ଅସମର୍ଥ କରି ନାହାଁନ୍ତି। ସୁତରାଂ ଆନନ୍ଦବର୍ଦ୍ଧନଙ୍କଠାରୁ ରସାଶ୍ରୟୀ କାବ୍ୟର ଅନୁଶୀଳନ ପାଇଁ ଶବ୍ଦଶକ୍ତିର ତାତ୍‌ପର୍ଯ୍ୟ ଓ ବ୍ୟଂଜନକୁ ମାନି ନିଆଗଲା। ରସାନୁଭୂତି ନିମନ୍ତେ ଧ୍ୱନୀକରଣ ବ୍ୟାପାରକୁ ଶ୍ରେୟପନ୍ଥା ଭାବରେ ସ୍ୱୀକାର କରାଗଲା ଏବଂ ରସକୁ କାବ୍ୟାତ୍ମାରେ ଭୂଷିତ କରିବାର ମାର୍ଗ ଖୋଲିଗଲା। ଅତଏବ ଭାରତୀୟ ସମୀକ୍ଷାତତ୍ତ୍ୱରେ ଆନନ୍ଦବର୍ଦ୍ଧନ ଓ ଅଭିନବଗୁପ୍ତ କର୍ତ୍ତୃକ ଧ୍ୱନିତତ୍ତ୍ୱ ଏକ ସୂକ୍ଷ୍ମ ପ୍ରୟୋଗାତ୍ମକ ସମୀକ୍ଷାତତ୍ତ୍ୱର ସାର୍ବକାଳିକ ଗୌରବ ପାଇପାରିଛି।

ଆତ୍ମାନୁଶୀଳନବାଦୀ ସିଦ୍ଧାନ୍ତର ଅନ୍ୟତମ ଅଂଶୀଦାର ବକ୍ରୋକ୍ତି, ଔଚିତ୍ୟ ଓ ଚମତ୍କାରବାଦ ନିଜ ନିଜର ଆତ୍ମପ୍ରକାଶ କାଳରେ ପ୍ରଚଣ୍ଡ ଦୀପ୍ତିରେ ଖଣ୍ଡପ୍ରଳୟ ସୃଷ୍ଟି କରିଛନ୍ତି। ଅନେକ ସମୟରେ ବହୁ ଭାରତୀୟ ନବନ୍ୟାୟିକ ସମୀକ୍ଷାଶାସ୍ତ୍ରୀମାନେ ଏ ତିନୋଟିର ଯଥାର୍ଥ ପୃଷ୍ଠପୋଷକତା ଓ ଅନୁଶୀଳନ ନହେବାରୁ ଏବଂ ପାଶ୍ଚାତ୍ୟ ଉପନିବେଶବାଦୀ ବିଚାରର ପ୍ରଳୟ-ପ୍ରଭାବ ପାଖରେ ପ୍ରାଚ୍ୟତତ୍ତ୍ୱର ଭିତ୍ତି ଦୋହଲଯିବାରୁ ଏ ତ୍ରିତୟଙ୍କ କ୍ରମୋନ୍ନତିକ ସୁଯୋଗ ଘଟିନାହିଁ। ବେଳେବେଳେ ସମୀକ୍ଷାସୂତ୍ରର ଅବିକଳତା, ଅନୁଶୀଳନ ପଦ୍ଧତିର ଅନୁରୂପତା ଓ ସମଭାବାପନ୍ନ ସିଦ୍ଧାନ୍ତ-ଫଳ ଦିଗରୁ ଏ ତିନିହେଁ ନୂତନ ପିଢ଼ିର ପାଶ୍ଚାତ୍ୟ ଶବ୍ଦତାତ୍ତ୍ୱିକ ଓ ବିନ୍ୟାସବାଦୀ ସାହିତ୍ୟ ସିଦ୍ଧାନ୍ତର ଖୁବ୍ ପାଖାପାଖି ମନେ ହୁଅନ୍ତି। ଏମିତି ଧାରଣାଟିଏ ମଧ୍ୟ ଉପୁଜେ— ଏଗୁଡ଼ିକ ଯଥାର୍ଥ ଶିକ୍ଷାୟନ ବ୍ୟବସ୍ଥା, ସମାଜତାତ୍ତ୍ୱିକ ଶିକ୍ଷାଧାରାର ପୃଷ୍ଠପୋଷକତା ଓ ମୁକ୍ତଭୂଖଣ୍ଡୀୟ ଜ୍ଞାନଚର୍ଚ୍ଚାର ସ୍ୱଚ୍ଛନ୍ଦ ନିୟତି ପାଇଥିଲେ ଏଗୁଡ଼ିକୁ ଭିତ୍ତିଭୂମିରେ ରଖି ଭାରତୀୟ ସମୀକ୍ଷାତତ୍ତ୍ୱ ଜଗତର ସମସ୍ତ ଆଧୁନିକ ବିଚାରକୁ ଅଧିକ ସ୍ୱଷ୍ଟ, ପ୍ରଶସ୍ତ ଓ ଉପାଦେୟମୂଳକ କରିପାରିଥା'ନ୍ତା। ମାତ୍ର ଏମିତି ଘଟିଲା ନାହିଁ— ଏହାହିଁ ସତ୍ୟ, ତଥାପି ଦୁର୍ଭାଗ୍ୟ। ଏବେ ଏମାନଙ୍କୁ ପୁରୁଣା ଆଭିଜାତ୍ୟର ପେଟରା ଭିତରୁ ଆଣି ଏମାନଙ୍କ ମାଧ୍ୟମରେ ଭାରତୀୟ ବିଚାରବତ୍ତାକୁ ଜଗତୀକରଣ କରିବାର ଅବକାଶଟିଏ ତିଆରି କରାଯାଇପାରେ।

ପରଂପରାର ଦୁର୍ବଳ ଦିଗଗୁଡ଼ିକୁ ବିନଷ୍ଟ କରି ନୂତନତ୍ୱର ସୁନ୍ଦର ଅୟମାରମ୍ଭ କରିବା ପ୍ରତିଯୁଗରେ ଉତ୍ତରଦାୟାଦମାନଙ୍କ ପାରିଲାପଣିଆର ମହିମା ରୂପେ ଆଦର ଭାଜନ

ହୋଇଥାଏ। ଭାମହଙ୍କ ଠାରୁ ଅଭିନବଗୁପ୍ତ ଭୁକ୍ତିବାଦୀ ଭଟ୍ଟନାୟକଙ୍କଠାରୁ ତାତ୍ପର୍ଯ୍ୟବାଦୀ ଧନିକ ଓ ରୀତିବାଦୀ ରୁଦ୍ରଟଙ୍କ ପର୍ଯ୍ୟନ୍ତ କାବ୍ୟର ଗୁଣାତ୍ମକ ପଦବିନ୍ୟାସ, ବଚନବିନ୍ୟାସ, ଧ୍ୱନ୍ୟାତ୍ମକ ଅଭିବ୍ୟକ୍ତି ଓ ଶୋଭାତିଶୁନ୍ଦର ଅଳଙ୍କାର ଚାତୁରୀକୁ ପ୍ରାୟତଃ ରସସର୍ବସ୍ୱ ବୋଲି ବିଚାର କରିବାବେଳେ କେହି ବି କାବ୍ୟଭଙ୍ଗୀ / କାବ୍ୟବନ୍ଧର କାରୁକଳାତ୍ମକ ବ୍ୟାପାର ଉପରେ ଗୁରୁତ୍ୱ ଦେଇନାହାଁନ୍ତି। କାବ୍ୟର ସମଗ୍ର-ସୌନ୍ଦର୍ଯ୍ୟ ସଂସ୍ଥାପନାରେ କବିର ବ୍ୟକ୍ତିତ୍ୱପଣ ଯେ ବିଚିତ୍ର ଭାବେ ଯୋଡି ହୋଇଥାଏ– ଏପ୍ରକାର ବିଚାର ମଧ୍ୟ କାବ୍ୟଶାସ୍ତ୍ରୀମାନଙ୍କ ବୋଧପରିସରକୁ ଆସିନାହିଁ। ଦଶମ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ଭାରତୀୟ ସମୀକ୍ଷାତତ୍ତ୍ୱରେ ଉପମାବାଚକ ଅଳଙ୍କାର ପ୍ରୟୋଗରେ କାଳିଦାସ ଧୂରୀଣ, ଅର୍ଥଗୌରବ ସଂପାଦନରେ ଭାରବି ନିପୁଣ, ପଦଲାଳିତ୍ୟ ଶ୍ରେୟତା ଦଣ୍ଡୀଙ୍କର ଓ ମାଘକବିଙ୍କ କାବ୍ୟତାରେ ଏ ତିନିଗୁଣର ସମାହାର ଘଟିଛି– ଏପ୍ରକାର ଟୀକାତ୍ମକ ଶାବ୍ଦିକ ବିଚାର ସୁଲଭ ରହିଛି। ଉପମାନଟୀର ନୃତ୍ୟଧର୍ମ ଓ ଅନୁପ୍ରାସ ଉଚିତ ଶାବ୍ଦିକ ମାଳାକରଣ କାବ୍ୟତାର ମାନଦଣ୍ଡ ହୋଇଛି। ମାତ୍ର କାଳିଦାସଙ୍କ ନାନ୍ଦନିକ ଇଚ୍ଛାଶକ୍ତି ଉପମାକୁ ନୂଆ ପ୍ରକାରେ ଚିତ୍ରାତ୍ମକ ସ୍ୱାଦରେ ବିନିଯୋଗ କରିଛି, ଭାରବିଙ୍କ ଉଚ୍ଚମନା ବ୍ୟକ୍ତିତ୍ୱ ନୂଆ ନ୍ୟାୟରେ ପ୍ରଚଳିତ ଓ ବ୍ୟବହୃତ ଶବ୍ଦକୁ ଅର୍ଥଦ୍ୟୋତନାର କ୍ରୀଡାତ୍ମକ ଗୌରବ ଦେଇଛି, ଦଣ୍ଡୀଙ୍କ ନିଷ୍କପଟ ବ୍ୟକ୍ତିସତ୍ତା ଦ୍ୱାରା ପଦଲାଳିତ୍ୟରଚନାରେ ନୂଆ ଧରଣର ଚମକ ଆସିଛି ଏବଂ ଏ ତ୍ରିବିଧ କାବ୍ୟାଭିବ୍ୟକ୍ତିମୂଳକ ବୃତ୍ତି ମାଘଙ୍କ ସ୍ଥିତିପ୍ରଜ୍ଞ ଦୃଷ୍ଟିରେ କିପରି ମିଶିଯାଇ ଭିନ୍ନସ୍ୱାଦପ୍ରଦାନକ୍ଷମ ହୋଇଛି– ଏ ଧରଣର ଆଲୋଚନା ସଂଭବ ହୋଇନାହିଁ। ଏଥିପ୍ରତି ସଚେତନ ହୋଇ ରାଜନକ କୁନ୍ତକଙ୍କ ପ୍ରଥମେ କବି ବ୍ୟାପାର, ସ୍ୱଭାବ ଓ ବ୍ୟକ୍ତିତ୍ୱ ସହିତ ନିର୍ମାଣଭଙ୍ଗୀକୁ ସଂଯୁକ୍ତ କରି ପୂର୍ବସ୍ୱରୀୟ ସକଳ ସିଦ୍ଧାନ୍ତକୁ ନବନ୍ୟାୟିକ ବ୍ୟବସ୍ଥାରେ ପ୍ରତିଷ୍ଠା ଦେଇଛନ୍ତି ଓ ନିଜସ୍ୱ ବିଚାରରେ ଅଭିନବତ୍ୱ ଆଣିଛନ୍ତି। ଶବ୍ଦ ଓ ଅର୍ଥ ମିଳିତ କବି-କର୍ମ-କୌଶଳ ଏକ ବକ୍ରୋକ୍ତି ବ୍ୟାପାର। ବକ୍ରୋକ୍ତିମୂଳା ଶବ୍ଦ ବ୍ୟାପାର ପୂର୍ବ ପ୍ରସିଦ୍ଧିମୂଳା ଅର୍ଥ ବ୍ୟତିରେକୀ ହୋଇ ବିଚିତ୍ର ଓ ବିଲକ୍ଷଣମୂଳକ ନୂଆ ଅଭିଧା ଅର୍ଥ ନିଷ୍ପାଦନ କରିଥାଏ। କବିର ବିଲକ୍ଷଣ ବକ୍ରୋକ୍ତି ବ୍ୟାପାର ହେଉଛି ତା'ର ସ୍ୱଭାବ ନିବନ୍ଧନ ଏବଂ ସାମଗ୍ରିକ ଭାବରେ ସବୁପ୍ରକାର ଶବ୍ଦ (ଶାସ୍ତ୍ରୀୟ ଓ ଲୋକାଚାରୀୟ) ଏକ ଜୈବିକ ଗାଠନିକ କାବ୍ୟବନ୍ଧରେ ସ୍ୱଚ୍ଛନ୍ଦସୁନ୍ଦର ହୋଇ (organic poetic structure with rhythmic beauty / କୁନ୍ତକଙ୍କ ଭାଷାରେ– 'କବି ସ୍ୱଭାବ ନିବନ୍ଧନତ୍ୱେନ କାବ୍ୟ ପ୍ରସ୍ଥାନ/ଅଥବା-କବି ବ୍ୟାପାର ବ୍ୟକ୍ତିତ୍ୱ ପ୍ରକାରାଃ/ବା ଶରୀରଂ ବାବିତେନେବ ସ୍ଫୁରିତେନେବ ଜୀବିତଂ) ଉଠିଥାଏ। କବି ସ୍ୱଭାବ ଅନୁସାରେ ଶବ୍ଦର ବକ୍ର-ବ୍ୟାପାରଟି ଜଟିଳ, ଗମ୍ଭୀର, କୁଟିଳ, ଲଳିତ, ବାହୁଲ୍ୟ ମଣ୍ଡିତ, ଇଙ୍ଗିତାତ୍ମକ ଓ ସ୍ୱଚ୍ଛନ୍ଦ ସୁନ୍ଦର ହୋଇଥାଏ। ବକ୍ରୋକ୍ତିମୂଳା 'ବନ୍ଧୋକାବ୍ୟ ବିନ୍ୟାସ'କୁ କୁନ୍ତକଙ୍କ

ସ୍ଥାପତ୍ୟ ନିର୍ମାଣଧର୍ମୀ ସୌନ୍ଦର୍ଯ୍ୟବାଦୀ ଦୃଷ୍ଟିଭଙ୍ଗୀ ଏକ ଶିଳ୍ପସମ୍ମତ ରୂପ ଭାବରେ ଅର୍ଥନିଷ୍ଠ କରିଛି। ବକ୍ରୋକ୍ତି ଦ୍ୱାରା କାବ୍ୟର ସାର୍ବଭୌମ ସତ୍ତା ଓ ମହିମା ପ୍ରକାଶିତ ହେଉଥିବାରୁ ଏହାକୁ 'କାବ୍ୟଜୀବିତଂ' ଭାବରେ ସେ ଘୋଷଣା କରିଛନ୍ତି।

କୁନ୍ତକଙ୍କ ବକ୍ରୋକ୍ତି ସିଦ୍ଧାନ୍ତ ଏକ ନନ୍ଦତାତ୍ତ୍ୱିକ ମୀମାଂସାର ପରିଣାମ। ତାଙ୍କ ପୂର୍ବରୁ ଭାମହ, ଦଣ୍ଡୀ, ରୁଦ୍ରଟ, ବାମନ, କବି ରତ୍ନାକର ଓ ବାଣଭଟ୍ଟ ପ୍ରମୁଖ ବକ୍ରୋକ୍ତିକୁ ଅଳଙ୍କାରର ଅନ୍ତର୍ଗୁଣ, ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ବିଶେଷ ଭାବରେ ଗ୍ରହଣ କରିଛନ୍ତି। ଶବ୍ଦ- କାକୁ ଉଚ୍ଚାରଣରେ ଅଥବା ଶ୍ଳେଷାତ୍ମକ ବାଣୀରେ ବ୍ୟବହୃତ ହୋଇ ବକ୍ତାଠାରୁ ଏକ ଭିନ୍ନ ଓ ବିପରୀତ ଅର୍ଥରେ ଶ୍ରୋତା ଦ୍ୱାରା ଗୃହୀତ ହେଲେ ତାହା ବକ୍ରୋକ୍ତି ଅଳଙ୍କାର ହୁଏ। ମାତ୍ର କୁନ୍ତକ ପୂର୍ବସ୍ୱରୀୟ ଅଳଙ୍କାରବାଦ, ରୀତିବାଦ, ଧ୍ୱନିବାଦ ଓ ରସବାଦ ସିଦ୍ଧାନ୍ତ ପ୍ରତି ସଚେତନ ରହି ସେସବୁକୁ ସ୍ୱୀକାର ଓ ବିଶ୍ଳେଷଣ କରି ଏକ ନବରୁଚିର ତତ୍ତ୍ୱକଳ୍ପ ଭାବରେ ପ୍ରତିଷ୍ଠା ଦେଇଛନ୍ତି। ଏହାଦ୍ୱାରା ପ୍ରକାଶର ଚାରୁତା, ଚମତ୍କାରିତା, ଓ ଭାବକରଣର ତିର୍ଯ୍ୟକତା ଉପରେ କ୍ରମଶଃ ଗୁରୁତ୍ୱ ବୃଦ୍ଧି ପାଇଛି। ନନ୍ଦନତତ୍ତ୍ୱାଶ୍ରୟୀ-ବକ୍ରୋକ୍ତି ଭିତରେ ଧ୍ୱନି ଓ ରସର ବକ୍ରତାସୂଚକ ଲୀଳାକୁ ସେ ଦେଖି ଦେଖାଇ ଦେଇଛନ୍ତି/ ''ଧ୍ୱନିବକ୍ରତା, ପଦବକ୍ରତା, ଅର୍ଥବକ୍ରତା, ଭାବବକ୍ରତା, ବସ୍ତୁବକ୍ରତା, ବୃତ୍ତି ବକ୍ରତା, ଆଖ୍ୟାନବକ୍ରତା ଓ ଉପଚାର ବକ୍ରତା ଓ ପ୍ରବନ୍ଧ ବକ୍ରତା ଆଦି ବିବିଧ ବକ୍ରବ୍ୟାପାର ମଧ୍ୟରେ ଅଳଙ୍କାର, ରୀତି, ଧ୍ୱନି ଓ ରସାଦି ନବ-କଳ୍ପରେ ମିଶି ରହିଛନ୍ତି। ପ୍ରତ୍ୟେକ ଶବ୍ଦର ଅଭିଧାବୃତ୍ତି ଭିତରେ ଭାବରସର ନାନ୍ଦନିକ ମହତ୍ତ୍ୱକୁ ନଖୋଜି ଅର୍ଥ ଭିତରେ ଥିବା ଅର୍ଥ, ଅର୍ଥକୁ ବିରୋଧ କରୁଥିବା ଅର୍ଥ, ଅର୍ଥର ବିପରୀତ ଧର୍ମରେ ଉପଲବ୍ଧ ଅର୍ଥ, ପ୍ରତି ଅର୍ଥ, ଅର୍ଥ ପରେ ସୃଷ୍ଟି ହେଉଥିବା ବୃତ୍ତିକ ଅର୍ଥ ଓ ଅର୍ଥ ବାହାରେ ଅନ୍ୟ ଶବ୍ଦ ସହିତ ମିଶି ପ୍ରକାଶ କରୁଥିବା ମିଳିତ ଅର୍ଥକୁ ଖୋଜିବା ମଧ୍ୟରେ ବି ସହୃଦୟ ହୃଦୟାହ୍ଲାଦକାରକ ଚମତ୍କାରିତା ରହିଛି। ଶବ୍ଦର ଆଳଙ୍କାରିକ ସୁଷମାକୁ ଗୁରୁତ୍ୱ ନ ଦେଇ ଶବ୍ଦ ବସାଣର ଗୁଣାତ୍ମକ ଓ ଛାନ୍ଦସିକ ଯୋଜନାକୁ ପ୍ରାଥମିକ ବିନ୍ୟାସ ଧର୍ମ ଭାବରେ ବିଚାର ନକରି ଏସବୁ ମଧ୍ୟରେ ବକ୍ରୋକ୍ତି/ଉକ୍ତିବୈଚିତ୍ର୍ୟାତ୍ମକ ନିର୍ମାଣ ସୁଷମା ଓ ନବାର୍ଥକରଣ ଉପରେ କୁନ୍ତକ ପ୍ରାଧାନ୍ୟ ଦେଇଛନ୍ତି। କୁନ୍ତକଙ୍କ କବିବ୍ୟାପାରଶାଳିନୀ ବକ୍ରୋକ୍ତି ଭିତ୍ତି ସୂକ୍ଷ୍ମ ନାନ୍ଦନିକ ଚିନ୍ତନର ସାରାଂଶ ହେଉଛି– କାବ୍ୟନିର୍ମାଣ ଏକ ବିଦଗ୍ଧ-ପ୍ରତିନିର୍ମାଣ ଓ ବନ୍ଧକଳାର କର୍ମ।' ପୂର୍ବର ଘଷରା, ପ୍ରସିଦ୍ଧି ସଂପନ୍ନା; ମାତ୍ର ଔଜ୍ଜ୍ୱଲ୍ୟ ରହିତ ଓ ତୀବ୍ର ପ୍ରଭାବ ବିସ୍ତାର ଅକ୍ଷମ ଶବ୍ଦକୁ ପରିହାର କରି ନୂତନ ବିକଳ୍ପକୁ ଆବାହନ କରିବା ଅଥବା ଶବ୍ଦାର୍ଥରେ ବିଭାବନ ଅର୍ଥ ପରିସ୍ଫୁଟ କରିବା ହିଁ ବିଲକ୍ଷଣ କବିତ୍ୱର ବୈଶିଷ୍ଟ୍ୟ। କୌଣସି ଶବ୍ଦ ନିରର୍ଥକ ହୋଇନଥିବ। ପଙ୍‌କ୍ତି ବିନ୍ୟାସରେ ଶବ୍ଦଗୁଡିକ ପରସ୍ପରର ଶୋଭା ଓ ଦ୍ୟୋତନା ପ୍ରତି ସମ୍ମାନ ଜଣାଉଥିବେ ବା ମିଶିକରି ଏକ

ସ୍ପନ୍ଦସୁନ୍ଦର ବା ସାମଗ୍ରିକ ଫଳଶ୍ରୁତିର ଅଭିନବ ଅର୍ଥ ପ୍ରଦାନ କରୁଥିବେ। କାବ୍ୟତା ଶବ୍ଦର ପ୍ରାୟୋଗିକ ପ୍ରକାଶ୍ୟମାନ ଅର୍ଥକରଣରେ ଅପକର୍ଷ ହେଉନଥିବ। ଏ ପ୍ରକାର ଚାତୁର୍ଯ୍ୟୋକ୍ତିମୂଳକ ବକ୍ରୋକ୍ତି ବ୍ୟାପାରରେ କାବ୍ୟରସର ପରିସ୍ଫୁଟନ ଓ ଚମତ୍କାର ସ୍ଫୁରଣ ଧନ୍ୟ ହୋଇଥାଏ– ତେଣୁ ବକ୍ରୋକ୍ତି କାବ୍ୟ ଜୀବିତଂ ଗୌରବ ପାଇବା ସମୀଚୀନ ବୋଲି କୁନ୍ତଳ ଦୃଢ଼ଯୁକ୍ତି ପ୍ରଦାନ କରିଛନ୍ତି।

ମାତ୍ର ପରବର୍ତ୍ତୀ କାଳରେ ରସକୁ ଧନ୍ୟ କରିବା ପାଇଁ ସମସ୍ତ ଶକ୍ତି ବିନିଯୋଗ କରୁଥିବା ବକ୍ରୋକ୍ତିମୂଳକ କବି ବ୍ୟାପାର କାବ୍ୟାତ୍ମା ଭାବେ ଗ୍ରହଣୀୟ ନ ହୋଇ ବରଂ କବିସ୍ୱଭାବନିଷ୍ଠ ଶୈଳୀ ଚାତୁରୀ ବା ମାର୍ଗ (ସୁକୁମାର/ବିଚିତ୍ର/ମଧ୍ୟମ ମାର୍ଗ) ଭାବରେ ପ୍ରସିଦ୍ଧିଲାଭ କରିଛି। ଫଳତଃ ବକ୍ରୋକ୍ତିତତ୍ତ୍ୱ ରସପୋଷକ ହୋଇ ଅନ୍ତର୍ଭାବିତ ଚମତ୍କାରର ସଂଚାରଶକ୍ତି ଭାବରେ ନିର୍ମାଣ ଧର୍ମରେ ଆଦୃତ ହୋଇଛି। ଉକ୍ତିର ଚମତ୍କାର ବକ୍ରତାରୁ ରସ ଜାତ ହୁଏନାହିଁ। ବରଂ କବିର ଚମତ୍କାର ଭାବାନୁଭୂତ ରସରୁ ଉକ୍ତି ବକ୍ରତା ସୃଷ୍ଟି ହୋଇଥାଏ। କାବ୍ୟାତ୍ମା ଗୌରବରୁ ବଂଚିତ ହୋଇଥିଲେ ମଧ୍ୟ ଅଭିଜାତ, ବୈଚିତ୍ର୍ୟ ଓ ସୌଭାଗ୍ୟ ଗୁଣାଶ୍ରିତ ବକ୍ରୋକ୍ତି ରସର ଅଭିବ୍ୟକ୍ତି ସଂଘଟନକାରୀ ନନ୍ଦନତାତ୍ତ୍ୱିକ ରୂପାତ୍ମକ ବିଚାର ଭାବରେ ସ୍ୱୀକୃତ ହୋଇଛ ଏବଂ ପ୍ରାଚୀ ରୂପାଙ୍ଗିକ ସମୀକ୍ଷାତତ୍ତ୍ୱର ବ୍ୟାପକତାକୁ ପ୍ରଚାର କରିଛି।

ଅଭିନବଗୁପ୍ତଙ୍କ ଯୋଗ୍ୟ ଦାୟାଦ ଓ ଅନୁଗାମୀଶିଷ୍ୟ ଆଚାର୍ଯ୍ୟ କ୍ଷେମେନ୍ଦ୍ର ବ୍ୟାସ ଦାସ ଔଚିତ୍ୟକୁ କାବ୍ୟାତ୍ମାରୂପେ ଅନ୍ତର୍ଭାବିତ କରିବାକୁ ଉଦ୍ୟମ କରିଛନ୍ତି। ତାଙ୍କ ମତରେ ପୂର୍ବସୂରୀଙ୍କ ଦ୍ୱାରା ଚର୍ଚ୍ଚିତ ଓ ପ୍ରତିଷ୍ଠିତ ରସ, ଅଳଙ୍କାର ରୀତି, ଗୁଣ, ଧ୍ୱନି, ବକ୍ରୋକ୍ତି, ତାତ୍‌ପର୍ଯ୍ୟ ଓ ପାକ ଇତ୍ୟାଦିକୁ ସମତା ଓ ଯଥାର୍ଥତାମାନ ଦଣ୍ଡରେ ପରିଶୋଧିତ ଓ ପରିସ୍ଫୁରଣ କରିବାରେ ଔଚିତ୍ୟର ଭୂମିକା ଜୀବନଶକ୍ତିବତ୍ (ଜୀବିତ ଭୂତସ୍ୟ ବିଚାରଂ) ସଂସ୍କ୍ରିୟାତ୍ମକ ହୋଇଛି। କ୍ଷେମେନ୍ଦ୍ରଙ୍କ ପୂର୍ବରୁ ଆନନ୍ଦ ବର୍ଦ୍ଧନ, ରୁଦ୍ରଟ, ଅଭିନବଗୁପ୍ତ, ଭୋଜ, ରାଜଶେଖର ଓ କୁନ୍ତଙ୍କ ରସାଭିବୃଦ୍ଧି ଓ ରସାଭିବ୍ୟକ୍ତିର ମୂଳତତ୍ତ୍ୱ ଭାବରେ ଔଚିତ୍ୟର ଉପାଦେୟତାକୁ ସମର୍ଥନ କରିଛନ୍ତି। ଆନନ୍ଦବର୍ଦ୍ଧନଙ୍କ ମତରେ ରସସୃଷ୍ଟି ଓ କାବ୍ୟ ପ୍ରସିଦ୍ଧି ପାଇଁ ଔଚିତ୍ୟ ଧାରଣା ଅନିବାର୍ଯ୍ୟ। ରୁଦ୍ରଟଙ୍କ ବିଚାରରେ ଔଚିତ୍ୟ ଉପଯୁକ୍ତ ଭାବାନୁସାରୀ ଶବ୍ଦ ପ୍ରୟୋଗର ଯୁକ୍ତାଯୁକ୍ତ ସଂଗତିବୋଧ। କାବ୍ୟରେ ଶବ୍ଦର ସ୍ଥାନ-କାଳ-ପାତ୍ର ଉପଯୋଗୀ ସଂଯୋଜନ ହିଁ ଔଚିତ୍ୟ। ଔଚିତ୍ୟ ହେଉଛି କାବ୍ୟ ମଣ୍ଡନ କଳାର ସଂହିତା। ବିଭାବ, ଅନୁଭାବ ଓ ସଂଚାରୀ ଭାବ ଦ୍ୱାରା ଯଥୋପଚିତ ପଦବିନ୍ୟାସ ବଳରେ ଯେଉଁପ୍ରକାର ରସାଭିବ୍ୟକ୍ତି ଘଟେ ତାହାର ଗୁପ୍ତବୀଜ ହେଉଛି ଔଚିତ୍ୟ। ସୁତରାଂ ରସ ନିଷ୍ପତ୍ତି ଏକପ୍ରକାର ଭାବୋଚିତ୍ୟ। ସେହିପରି ଔଚିତ୍ୟ ତାତ୍‌ପର୍ଯ୍ୟର

ପଦବିନ୍ୟାସ ହିଁ ଉତ୍ତମ କାବ୍ୟର ହେତୁ। ରସ, ଧ୍ୱନି ଓ ଔଚିତ୍ୟର ସୁମିତିବୋଧ ଓ ସଂଗତିବୋଧର ସୌଭାଗ୍ୟ ମହାକବିଙ୍କୁ ତିଆରି କରିଥାଏ। ରାଜଶେଖରଙ୍କ ଦୃଷ୍ଟିରେ କାରୟିତ୍ରୀ ପ୍ରତିଭାର କବି-କର୍ମ ଅନ୍ତରାଳରେ କବିର ଉଚିତ ଅନୁଚିତ ବୋଧର ବିବେକ ପଣ ଏଣେତେଣେ ହୋଇ (ଯାଯାବରୀୟଃ) ରହିଥାଏ। କାବ୍ୟପାକ ହେଉଛି ରସୋଚିତ ଶବ୍ଦାର୍ଥର ଉତ୍ତମ ଯୁକ୍ତିମୂଳକ ନିବନ୍ଧନ। ଭୋଜଙ୍କ ମତରେ ଭାଷୌଚିତ୍ୟ ବଳରେ ଭାବାନୁସାରୀ ଅର୍ଥଦ୍ୟୋତକ ଅଳଙ୍କାରର କାବ୍ୟିକ ଗତି ରୂପ ଭାଷଣାତ୍ମକ ହୋଇଉଠେ। କୁନ୍ତକଙ୍କ ଦୃଷ୍ଟିରେ ଉଚିତାଖ୍ୟାନ ଦ୍ୱାରା କାବ୍ୟର ସୌଭାଗ୍ୟ ବୃଦ୍ଧିପାଏ; ଏହେତୁ ଶବ୍ଦର ପରମାର୍ଥକରଣର ଶକ୍ତି ହେଉଛି ଔଚିତ୍ୟ। କାବ୍ୟର ଆଖ୍ୟାନ ଲୋକବୃତ୍ତୌଚିତ୍ୟ ହେବାଦ୍ୱାରା କଲ୍ୟାଣ ଭାବ ବିତରଣଧର୍ମୀ ହୋଇଥାଏ।

ଏସବୁ ପ୍ରମାଣ କରେ ଯେ କ୍ଷେମେନ୍ଦ୍ରଙ୍କ ସମୟକୁ ଭାରତୀୟ କାବ୍ୟଚର୍ଚ୍ଚାରେ ଔଚିତ୍ୟ ରସାନୁଷଙ୍ଗୀ ହୋଇସାରିଛି। କ୍ଷେମେନ୍ଦ୍ର ଭାବ, ରସ ଓ ନିର୍ମାଣଭଙ୍ଗୀ ପରିପୁଷ୍ଟ ଔଚିତ୍ୟକୁ କାବ୍ୟାତ୍ମା ଭାବରେ ପ୍ରତିଷ୍ଠା ଦେଇ ଘୋଷଣା କଲେ– ''ଔଚିତ୍ୟ ରସ ସିଦ୍ଧସ୍ୟ ସ୍ଥିରଂ କାବ୍ୟସ୍ୟ ଜୀବିତଂ।'' ଏହାଦ୍ୱାରା ଆନନ୍ଦ ବର୍ଦ୍ଧନଙ୍କ ଏହି ଯୋଗ୍ୟ ପ୍ରଶିଷ୍ୟ ରସ ଓ ଧ୍ୱନି ସହିତ ଔଚିତ୍ୟକୁ ଅଙ୍ଗୀକୃତ କରିଦେଇ ତର୍କଶାସ୍ତ୍ରୀୟ ନ୍ୟାୟରେ ଶାସ୍ତ୍ରୀୟ ସିଦ୍ଧାନ୍ତଟିଏ ଏରୂପେ ନିର୍ଣ୍ଣୟ କଲେ ଯେ–

- ଉତ୍ତମ କାବ୍ୟ ରସନିଷ୍ଠ।

–

- ରସ କାବ୍ୟର ପ୍ରାଣ।
- ଔଚିତ୍ୟ ରସର ପ୍ରାଣ।

–

- ଅତଏବ ରସପ୍ରାଣ ଔଚିତ୍ୟ ହିଁ କାବ୍ୟ-ଜୀବିତଂ।

କ୍ଷେମେନ୍ଦ୍ରଙ୍କ ଅର୍ଥକରଣର ସୂକ୍ଷ୍ମତା ଖୁବ୍ ଦର୍ଶନୋଚିତ। ଆତ୍ମନ୍ ଅର୍ଥ ସାରଭୂତ ହୋଇ ସ୍ଥିର ଧର୍ମରେ ରହିବା। କାବ୍ୟରେ ରସ ସାମାନ୍ୟଧର୍ମର ଶବ୍ଦାର୍ଥ କଳେବର ଭିତରେ ସ୍ଥିରଧର୍ମରେ ଆତ୍ମା ରୂପରେ ରହିବା ନ ରହିବା ସହିତ ସମାନ। ମାତ୍ର ସ୍ଥିରଧର୍ମୀ ଆତ୍ମାରୂପୀ ରସକୁ ଜୀବନ ଧର୍ମରେ (ଚଳନଶକ୍ତି ସଂପନ୍ନ, ବିଶେଷଣରେ) ଗତିଶୀଳ କରାଏ ଔଚିତ୍ୟ। କାବ୍ୟକୁ ମହାକାଳ ବକ୍ଷରେ ଜୀବିତ କରି ରଖେ ଶବ୍ଦାର୍ଥର ଉଚିତ ସହାବସ୍ଥାନ। ପରବର୍ତ୍ତୀ କାଳରେ ଜୟ ମଙ୍ଗଳାଚାର୍ଯ୍ୟ କବି ଶିକ୍ଷା ଓ ସାହିତ୍ୟ ମୀମାଂସାରେ ଔଚିତ୍ୟକୁ କାବ୍ୟଜୀବିତଂ ଓ କବିତା ଜୀବିତୋପମମ୍ ଭାବରେ ମାନ୍ୟତା ଦେଇଛନ୍ତି। ମାତ୍ର ପରବର୍ତ୍ତୀ ରସପ୍ରାଣ ସମନ୍ୱୟବାଦୀ ଆଳଙ୍କାରିକମାନେ ଔଚିତ୍ୟ ସ୍ୱୟଂ

ଆତ୍ମନିର୍ଭରଶୀଳ ନୁହେଁ ଏବଂ ସର୍ବଦା ରସାଶ୍ରିତ ହୋଇଥିବାରୁ ଏହାକୁ କାବ୍ୟର ଚମତ୍କାର ଭାବ ଉତ୍ପାଦନକ୍ଷମ ସାରଧର୍ମ ଭାବରେ ଗ୍ରହଣ କରଛନ୍ତି। ଧ୍ୱନି ଓ ବକ୍ରୋକ୍ତିପରି ଔଚିତ୍ୟ କାବ୍ୟର ଆତ୍ମା ଓ ଏପରିକି ରସର ଆତ୍ମା ଶୀର୍ଷକ ପରିଚିତିରୁ ଖସିଆସି ପଦବିନ୍ୟାସର 'ଲଳିତୋଚିତ ଚାରୁ ସନ୍ନିବେଶ' ବା 'ଯୁକ୍ତାଯୁକ୍ତସର୍ବସ୍ୱ ପରମୋତ୍କର୍ଷ' ସାଧନ ଶକ୍ତି ଭାବରେ ରସବାଦର ଉପକାରକ ଧର୍ମ ଭାବରେ କାବ୍ୟଶୃଙ୍ଖଳାରେ ସଂପୃକ୍ତ ରହିଛି। କାବ୍ୟର ସାମଗ୍ରିକ ଉପାଦାନଗୁଡ଼ିକୁ ସମତା ଓ ସଙ୍ଗତି ସଂହିତାରେ ଏକ ସଂଶ୍ଳେଷଣାତ୍ମକ ଶକ୍ତି ଭାବରେ ସମ୍ମିଳିତ କରାଇବାରେ ଔଚିତ୍ୟ ସିଦ୍ଧାନ୍ତ କବିପଣକୁ ଉପାୟ ଯୋଗାଇ ପାରିଛି।

ଆତ୍ମାନୁଶୀଳନାତ୍ମକ ସିଦ୍ଧାନ୍ତର ଶେଷ ବିଚାରକ ହେଉଛନ୍ତି– ରସଗଙ୍ଗାଧର ପ୍ରଣେତା ପଣ୍ଡିତ ରାଜ ଜଗନ୍ନାଥ (୧୭ଶ ଶତାବ୍ଦୀ)। 'ରମଣୀୟାର୍ଥପ୍ରତିପାଦକଃ ଶବ୍ଦ କାବ୍ୟଂ' ଓ 'କାବ୍ୟଜୀବିତଂ ଚମତ୍କାରିତ୍ୱଂ' ଜଗନ୍ନାଥଙ୍କର ଏପ୍ରକାର ଅଭିମତ ସମୀକ୍ଷାତତ୍ତ୍ୱକୁ କ୍ରମଶଃ ବିଜ୍ଞାନସମ୍ମତ ଓ ମନସ୍ତାତ୍ତ୍ୱିକ ବିଚାରସମ୍ମତ କରିଦେଇଛି। କବିତ୍ୱର କାରଣ ବା ବୀଜ ହେଉଛି ପ୍ରତିଭା। ଶବ୍ଦ ଓ ଅର୍ଥ ଇତ୍ୟାଦିକୁ ଆଧାର କରି କବିସ୍ମୃତିରେ ଥିବା ଘାଟନିକ ଭାବନାର ପୁନରୋଦୟ ହେବାର କ୍ରିୟାରୁ ଯେଉଁ ସର୍ଜନପ୍ରବଣ ଦିବ୍ୟ ଉନ୍ନତତା ସଂଜାତ ହୁଏ ତାହା ପ୍ରତିଭା। ପ୍ରତିଭା ବସ୍ତୁନିର୍ମାଣକ୍ଷମ ଶକ୍ତି ଓ ନୂଆନୂଆ ପ୍ରକାରେ ବାସ୍ତବତାକୁ ଦେଖାଇବାରେ ଶ୍ରଦ୍ଧାଶୀଳ। ପୁନଃ ପୁନଃ ଅନୁସନ୍ଧାନାତ୍ମିକା ଶକ୍ତି-ଭାବନା ପ୍ରତିଭାକୁ ଉଦ୍‌ବୋଧିତ କରେ ଓ ଏ ଉଦ୍‌ବୋଧନରୁ ରମଣୀୟ ଅର୍ଥ ପ୍ରତିପାଦକ ଶବ୍ଦକ୍ରୀଡାରେ କବିବିବେକ ରତହୋଇ ଶୁଭାଶୁଭ କଳନାକରି ମହତ୍ତମ କାବ୍ୟାନୁଭୂତିକୁ ଚମତ୍କାର ଅକ୍ଷର ପ୍ରତିମା ରୂପରେ ସାଦୃଶ୍ୟଭାଜନ କରାଇଦିଏ। ପ୍ରତିଭାର ଲକ୍ଷ୍ୟ ଚମତ୍କାର ଉତ୍ପାଦନ। ଅଦୃଷ୍ଟକୁ ଦୃଷ୍ଟ କରାଇବା, ଚିତ୍ତକୁ ବିସ୍ତାର କରିବା ଭଳି ବିସ୍ମୟାବେଗ ଯୋଗାଇ ଦେବା ହିଁ କବିପଣ। ଏପ୍ରକାର କାବ୍ୟାନୁଭୂତି ପରୋକ୍ଷରେ ଚମତ୍କାର। ତେଣୁ ଚମତ୍କାର ହିଁ କାବ୍ୟର ପ୍ରାଣ। ରସ-ଅଳଙ୍କାର-ଛନ୍ଦ-ଶବ୍ଦ-ଅର୍ଥ-ଧ୍ୱନି-ପଦବିନ୍ୟାସ ସବୁଗୁଡ଼ିକ ରଣୀୟ ଓ ବିସ୍ମୟୋଦ୍ଦୀପକ ନ ହେବାଯାଏ କାବ୍ୟ ପ୍ରଭାବଶାଳୀ ବା ତାହାର ଜୀବନ ଥିବା ପରି ମନେହୁଏ ନାହିଁ। ତେଣୁ ଚମତ୍କାରିତାହିଁ କାବ୍ୟ ସଜୀବତାର ମୂଳବୀଜ।

ରମଣୀୟ ଅର୍ଥ ଓ ଚମତ୍କାର ଭାବ ନିର୍ବହଣ ପାଇଁ କବି ଆନନ୍ଦ ସଂଚାରୀ ଚିତ୍ର କଳ୍ପନାର ଶବ୍ଦମେଳି ସାନ କରିଥା'ନ୍ତି। ଅକ୍ଷର ପ୍ରତିମାରୂପେ କାବ୍ୟ/କବିତା/କଳା/ସୃଷ୍ଟିଟି ବିଜେ ହେବା ପୂର୍ବରୁ କବିର ସ୍ୱଭାବ ଦ୍ୱାରା ତା'ର ଅନୁଭବ-ଭାବ-ଅଭିପ୍ରାୟ-ଚିନ୍ତା-ଭାଷା-ବିନ୍ୟାସଚାତୁରୀ ଏକପ୍ରକାର ମାନସିକ ସ୍ତରରେ ଚମତ୍କାର ଭାବରେ ପ୍ରସ୍ତୁତ ହୋଇସାରିଥାଏ। ଅକ୍ଷରରୂପୀ କାବ୍ୟ ବିବେକଟି କବିର ବ୍ୟକ୍ତି ବିବେକର ଦ୍ୱିତୀୟଜଃ

ରୂପ। ମୂଳ କବିତାର ଚମତ୍କାରିତା ଦ୍ୱିତୀୟତଃ ପ୍ରତିରୂପାତ୍ମକ କବିତାରେ ଅବିକଳ ଥାଇପାରେ, ନଥିବାଟା ଅଧିକ ସତ୍ୟ। ଏ ଦୃଷ୍ଟିରୁ କବିତ୍ୱର ହେତୁବୀଜ ରସ ଓ ରସାଙ୍ଗ (ଭାବ-ବିଭାଗ-ଅନୁଭବ, ସଂଚାରୀଭାବ), ରୀତି, ଧ୍ୱନି, ବକ୍ରୋକ୍ତି, ଔଚିତ୍ୟବିନ୍ୟାସ ଓ ବୃତ୍ତିବିନ୍ୟାସ ଇତ୍ୟାଦିର ଚମତ୍କାର ପ୍ରଯତ୍ନସିଦ୍ଧ ସଂରଚନା ଉପରେ କବିମାନସ ଧ୍ୟାନନିଷ୍ଠ ହୋଇଥାଏ। ସହୃଦୟ ଆହ୍ଲାଦକାରକ କରି କାବ୍ୟ ନିର୍ମାଣ କରିବାର ଅଭିଳାଷ ବି କବିକୁ ଚମତ୍କାରିତା ଖେଳିବାକୁ ବଧକରେ। ଚମତ୍କାରିତା ସୃଷ୍ଟିର ମୂଳ ଉପାଦାନଟି ହେଉଛି ରମଣୀୟ ଅର୍ଥ ଉଦ୍‌ଭାସନକ୍ଷମ ଶବ୍ଦପୁଂଜ। ଶବ୍ଦର ପରସ୍ପର ସାପେକ୍ଷ-ନିରପେକ୍ଷ ସଂପର୍କ ଦେଇ କବି ବିସ୍ମୟୋତ୍ପାଦକ ବସ୍ତୁପୁଂଜ ବା ବସ୍ତୁବିମ୍ବ ନିର୍ମାଣ କରେ। ବସ୍ତୁବିମ୍ବଗୁଡ଼ିକ ରସାନୁକୂଳ ତାତ୍‌ପର୍ଯ୍ୟ ଅର୍ଥକରଣରେ କ୍ଷମ ହେବାଦ୍ୱାରା ସାଧାରଣ ଅଦ୍‌ଭୁତ ଭାବରେ ଦେଖି ହୋଇଯାଏ। କବି କଳ୍ପିତ ଅଦ୍‌ଭୁତ ସହୃଦୟର ବିଶ୍ୱାସଯୋଗ୍ୟ ହେବାଦ୍ୱାରା ରମଣୀୟ ଅର୍ଥ ପ୍ରତିପାଦକ ଶବ୍ଦବିନ୍ୟାସ ପ୍ରାଣରେ ଚମତ୍କାରିତାର ସଂଚାର ଘଟାଏ। ଚମତ୍କାରବାଦର ମୌଳ ପ୍ରତିପାଦ୍ୟ ହେଉଛି– କବିକର୍ମ। ବାସ୍ତବତାକୁ ପାଠକବିବେକ ନିମନ୍ତେ ଆଦର୍ଶାୟିତ ଉପଲକ୍ଷ୍ୟପ୍ରଧାନ ଓ ରମଣୀୟ କରି ସୁବିନ୍ୟସ୍ତ କରିବାହିଁ କବିକର୍ମ। ଏହି ରମଣୀୟ ଅଦାର୍ଶାୟିତା ବାସ୍ତବତା ପ୍ରକୃତ ବାସ୍ତବତାର ମାୟାରୂପ, ମାତ୍ର ଚମତ୍କାର ଓ ସୌନ୍ଦର୍ଯ୍ୟାବଲମ୍ବିତ। ଚମତ୍କାରିତା ମୂଳରେ ଥାଏ ଅର୍ଥର ରମଣୀୟତା, ଅଲୌକିକ ସମ୍ବେଦନା ଓ ଶାବ୍ଦିକ ଅଭିବ୍ୟକ୍ତିର ଉତ୍କର୍ଷ। ରମଣୀୟତା ହେଉଛି ଲୋକୋତ୍ତର ଆହ୍ଲାଦଦାୟୀ ଗୁଣ। ଏହିଗୁଣ ଶବ୍ଦାଶ୍ରିତ। ଏଗୁଣର ସହାୟତାରେ କାବ୍ୟର ସାମଗ୍ରିକ ରୂପରେ ସୌନ୍ଦର୍ଯ୍ୟଲୀଳା ସାଧନ ହୁଏ। କାବ୍ୟତ୍ୱ ହେଉଛି– 'ଚମତ୍କାରଜନକ ଭାବନା ବିଷୟାର୍ଥ ପ୍ରତିପାଦକ ଶବ୍ଦର ବିସ୍ମୟୋଦ୍ଦୀପକ ଅଭିବ୍ୟକ୍ତି। ଏ ଦୃଷ୍ଟିରୁ ପୂର୍ବସୂରୀଙ୍କ 'ରସେ ସାରଶ୍ଚମତ୍କାରଃ' ଓ 'ଲୋକୋତ୍ତର ଚମତ୍କାରପ୍ରାଣଃ' ବିଚାରକୁ ପୁନର୍ଗଠିତ କରି ଜଗନ୍ନାଥ ପଣ୍ଡିତ ସମ୍ମଟ ଓ ବିଶ୍ୱନାଥଙ୍କୁ ଖଣ୍ଡନ କରି ନାରାୟଣଙ୍କୁ ମଣ୍ଡନ ଧର୍ମରେ ସ୍ୱୀକାର କରି ବିସ୍ମୟବୋଧାତ୍ମକ ରସାନୁଭୂତିର ସମପର୍ଯ୍ୟାୟବାଚୀ ଶବ୍ଦଭାବରେ ଚମତ୍କାରକୁ ଗ୍ରହଣ କରି ତା'ର ଲୋକୋତ୍ତର ଆହ୍ଲାଦଜନକ ରମଣୀୟତାକୁ ଉତ୍ତମୋତ୍ତମ କାବ୍ୟର ପ୍ରାଣଧର୍ମ ଭାବରେ ବିଚାର କରି ଚମତ୍କାରିତ୍ୱକୁ କାବ୍ୟର ଜୀବନ ଭାବରେ (କାବ୍ୟଜୀବିତଂ ଚମତ୍କାରିତ୍ୱଂ) ବିବେଚନା କରିଛନ୍ତି।

'ସାହିତ୍ୟ ଦର୍ପଣ'ରେ ରସନିଷ୍ଠ ଚମତ୍କାରିତାକୁ କାବ୍ୟୋଚିତ ପ୍ରାଣଧର୍ମର ଅନ୍ୟତମ ସୌନ୍ଦର୍ଯ୍ୟ ଭାବରେ ଗ୍ରହଣ କରି ବିଶ୍ୱନାଥ ନିଜ ମତର ମଣ୍ଡନ କରିବାକୁ ଯାଇ ପ୍ରପିତା ଆଚାର୍ଯ୍ୟ ନାରାୟଣଙ୍କ ପ୍ରଦତ୍ତ ଯେଉଁ ତିନିଧାଡିବିଶିଷ୍ଟ ଶ୍ଳୋକଟିକୁ ଉଦ୍ଧାର କରିଛନ୍ତି; ତାହାର ବିଚାର ନିଷ୍କର୍ଷ ହେଉଛି–

- ଚମତ୍କାର ହେଉଛି ରସର ସାର ବା ମୂଳଭିତ୍ତି।
- ଚମତ୍କାରର ସାରତ୍ୱ ହେତୁ ସବୁପ୍ରକାର ରସ ଅଦ୍‌ଭୁତରସର ଆବେଦନ ଧର୍ମରେ ଅଭିବ୍ୟକ୍ତି ଲାଭ କରନ୍ତି।
- ତେଣୁ ରସମାତ୍ରକେ ସର୍ବତ୍ର ଅଦ୍‌ଭୁତର ରାଜତ୍ୱ ଓ ଚମତ୍କାର ଏ ରାଜତ୍ୱର ଲକ୍ଷଣ।

ବିଶ୍ୱନାଥ କବିରାଜ ରସକୁ କାବ୍ୟର ପ୍ରାଣ ଭାବରେ ସିଦ୍ଧାନ୍ତନିଷ୍ଠ କରିଛନ୍ତି। କାବ୍ୟାତ୍ମା ରସର ପ୍ରାଣ ହେଉଛି ଲୋକୋତ୍ତର ଚମତ୍କାରିତା। ବାସ୍ତବ ଜୀବନରେ ଅନେକ ଜାଗତିକ ଲୀଳାରେ ଓ ଲୋକବୃତ୍ତିରେ ଅଦ୍‌ଭୂତ ଓ ଅଭାବିତ ଘଟଣା-ପ୍ରତିକ୍ରିୟା, ତାରତମ୍ୟ ଓ ଆତିଶଯ୍ୟାଦି ଘଟିପାରେ। ମାତ୍ର ସେସବୁ ଲୋକୋତ୍ତର ଚମତ୍କାରିତାରେ ରସର ପ୍ରାଣ ନୁହଁନ୍ତି। ଯେଉଁ କାବ୍ୟାନୁଭୂତିଗୁଡ଼ିକ ସହୃଦୟକୁ ଲୌକିକ ସଂକୀର୍ଣ୍ଣ ଅବସ୍ଥାରୁ ଊର୍ଦ୍ଧ୍ୱକୁ ନେଇ ବିସ୍ମୟାବେଗରେ ସାଶ୍ଚର୍ଯ୍ୟ ଚିତ୍ତ ବିସ୍ତାର ଘଟାଇ ସଂବିଦାନନ୍ଦ ପ୍ରଦାନରେ କ୍ଷମ ହୁଏ ସେହି ଅନୁଭୂତିସମୂହ ଲୋକୋତ୍ତର ଚମତ୍କାରିତାରେ ଦୀପ୍ତିମାନ।

ଚମତ୍କାରର କାବ୍ୟଗୌରବକୁ ଜଗନ୍ନାଥ ବିଭାବନଗୁଣରେ ଅଭିନବ ମର୍ଯ୍ୟାଦା ଦେଇଛନ୍ତି। ତାଙ୍କ ଚମତ୍କାରବାଦୀ ସିଦ୍ଧାନ୍ତର ସାରାଂଶ ହେଉଛି–

- କାବ୍ୟ ଲକ୍ଷଣ ବିଚାରରେ ପୂର୍ବସୂରୀ ଆଳଙ୍କାରିକମାନେ (ଭାମହ, ଆନନ୍ଦ, କୁନ୍ତଳ, ସମ୍ମଟ, ବିଶ୍ୱନାଥ ପ୍ରମୁଖ) ଶବ୍ଦାର୍ଥ ମିଳନ ଭିତରେ କାବ୍ୟତାକୁ ବ୍ୟାଖ୍ୟା କରିଥିବା ବେଳେ ଜଗନ୍ନାଥ ଅର୍ଥ ବିଚ୍ୟୁତ କରି ଶବ୍ଦକଳା ମଧ୍ୟରେ କାବ୍ୟତାର ମୂଲ୍ୟାୟନ କରିଛନ୍ତି। ଅର୍ଥର ରମଣୀୟତା ଶବ୍ଦାନୁଶାସନ ଦ୍ୱାରା ନିୟନ୍ତିତ। ଶବ୍ଦଦ୍ୱାରା କାବ୍ୟାତ୍ମା 'ଚମତ୍କାରତ୍ୱ'ର ରମଣୀୟତା (ଲୋକୋତ୍ତର ଆହ୍ଲାଦ) ଅନୁଭବସିଦ୍ଧ ହୋଇଥାଏ।
- ଚମତ୍କାର ଭାବୋଦ୍ଦୀପକ ରମଣୀୟତା ହେଉଛି ଲୌକିକ ଲବ୍ଧମାନ ଭୋଗ୍ୟବସ୍ତୁରୁ ପ୍ରାପ୍ତ ଆନନ୍ଦ ନୁହେ। ତାହା ଲୋକୋତ୍ତର ଆନନ୍ଦ ଓ ନିତ୍ୟ ବିଦ୍ୟମାନ।
- ଚମତ୍କାର ପ୍ରାଣ କାବ୍ୟର ଅଦ୍‌ଭୁତ, ଅଲୌକିକ ଓ ବିସ୍ମୟୋଦ୍ଦୀପକ ଘଟଣା ବାରମ୍ବାର ଅନୁସନ୍ଧିତ୍ସା ଭିତରେ ସହୃଦୟ ଭାବନାସ୍ତରକୁ ଆସିଯାଏ। ପୁନଃପୁନଃ ଭାବନା ସଂଜାତ ପ୍ରତିକ୍ରିୟାରୁ ଚମତ୍କାରଯୁକ୍ତ ଅର୍ଥ ଶବ୍ଦରୁ ଉଦ୍‌ଭାସିତ ହୁଏ।
- ରସାତ୍ମକ ବାକ୍ୟ ବା ରସ ଉଦ୍‌ବୋଧନକ୍ଷମ ବାକ୍ୟ ହିଁ କାବ୍ୟ– ଏପ୍ରକାର ସିଦ୍ଧାନ୍ତକୁ ଖଣ୍ଡନ କରି ଦର୍ଶାଇଛନ୍ତି ଯେ ଲୋକାନୁମୋଦିତ ପ୍ରତ୍ୟେକ ଶବ୍ଦ ଓ ବାକ୍ୟ ରସଯୁକ୍ତ। କୌଣସି ନା କୌଣସି ରସର ମୂଳ ଭାବସତ୍ତା ବାକ୍ୟରେ ରହିବ। ତେଣୁ ସାଧାରଣ ନିତିଦିନିଆ ବାକ୍ୟ କି କାବ୍ୟ ହୋଇଯିବେ ଓ

ନୀରସ ବାକ୍ୟ ରହିବ ନାହିଁ। ତେଣୁ ଚମତ୍କାର ସଂଭାବନା କରୁଥିବା ଶବ୍ଦହିଁ କାବ୍ୟଲକ୍ଷଣ ପାଇଁ ଶୁଦ୍ଧ ଉପାଦାନ ଅଟେ।

- ଗୁଣାଳଙ୍କାର ଯୋଜନାରେ ସିଦ୍ଧ ବାକ୍ୟର କାବ୍ୟତାକୁ ଅସ୍ୱୀକାର କରି ପଣ୍ଡିତରାଜ ବ୍ୟଂଜନା, ଲକ୍ଷଣା ଏପରି ଅଭିଧାବାଚକ ପଦଯୋଜନାରେ ଚମତ୍କାର ବ୍ୟାପ୍ତି ଥିଲେ ତାହା କାବ୍ୟଯୋଗ୍ୟତାସଂପନ୍ନ ବୋଲି ପ୍ରତିପାଦନ କରିଛନ୍ତି।
- ଚମତ୍କାରିତ୍ୱର ଅଭାବ ଅକାବ୍ୟ ବା ଦୁଷ୍କାବ୍ୟ।
- ସୁତରାଂ କାବ୍ୟର ଜୀବନ ହେଉଛି ଚମତ୍କାର। କାବ୍ୟଜୀବନରୂପୀ ଚମତ୍କାରିତା କାବ୍ୟିକ ଶବ୍ଦ, ଅର୍ଥ ତାତ୍ପର୍ଯ୍ୟ, ଛନ୍ଦ, ଅଳଙ୍କାର, ଭଙ୍ଗୀ ଇତ୍ୟାଦି ସକଳ ଉପାଦାନକୁ ସତେଜ ଗୁଣରେ, ଅଦ୍ଭୁତ ବିଚିତ୍ରତାରେ ଓ ଆଶ୍ଚର୍ଯ୍ୟଜନକ ଅନଭାବିତପୂର୍ବ ସଂଘଟନାରେ ସଶକ୍ତ କରିଦିଏ ଓ କାବ୍ୟାଭିପ୍ରାୟକୁ ସଂବିଦାନନ୍ଦ ବା ବୋଧନରେ (Rational enjoyment) ପରିଣତ କରିଦିଏ। ସୁତରାଂ ଚମତ୍କାରିତା ହିଁ ପରମ ସୌନ୍ଦର୍ଯ୍ୟ ସର୍ଜନାର ହେତୁ।

ଗଙ୍ଗାଧରଙ୍କ ପରବର୍ତ୍ତୀ ସମୟ ଭାରତୀୟ ଅସ୍ମିତାର ସୂର୍ଯ୍ୟାସ୍ତ ସମୟ। ଉପନିବେଶବାଦୀ ଚିନ୍ତାଧାରାର ପ୍ରଭାବଶାଳୀ ବାଦଲ ତଳେ ଭାରତୀୟ ସମୀକ୍ଷା ତତ୍ତ୍ୱ ଚମତ୍କାରବାଦକୁ ଖଣ୍ଡନକରି ନୂତନ ସିଦ୍ଧାନ୍ତ ଦେବାରେ ଅଥବା ମଣ୍ଡନକରି ପ୍ରବଳ ଶକ୍ତିମତ୍ତାରେ ପରିଚୟ ଦେବାର ଅବକାଶ ଆଉ ପାଇନାହିଁ। ଗଙ୍ଗାଧରଙ୍କ ରସଗଙ୍ଗାଧର ଆତ୍ମସମୀକ୍ଷାତତ୍ତ୍ୱକୁ ପରୋକ୍ଷରେ ଚମତ୍କାର ରସାନୁଭୂତି ସହିତ ସଂପୃକ୍ତ କରିଦେଇଛି। ସୁତରାଂ ପ୍ରାଚ୍ୟ ସମାଲୋଚନା ଧାରାରେ କାଳକ୍ରମେ ବହୁ ସାହିତ୍ୟସିଦ୍ଧାନ୍ତର ବିକାଶ ହୋଇଥିଲେ ବି ସବୁ ସିଦ୍ଧାନ୍ତର ସାରତତ୍ତ୍ୱ ପରିଣାମରେ ରସ ସିଦ୍ଧାନ୍ତର ଉଦାତ୍ତ ମହାର୍ଣ୍ଣବରେ ମିଶିଯାଇଛି ଓ ରସଚେତନା ହିଁ କାବ୍ୟର ଆତ୍ମାନୁଶୀଳନାତ୍ମକ ତର୍କଣାରେ ଆଧିପତ୍ୟ ବିସ୍ତାର କରି ରହିଛି।

ଭରତଙ୍କଠାରୁ ବିଶ୍ୱେଶ୍ୱରଙ୍କ ପର୍ଯ୍ୟନ୍ତ ଆଳଙ୍କାରିକ, କାଳିଦାସଙ୍କଠାରୁ ରସଗୀତକାରକ ଦୀନକୃଷ୍ଣଙ୍କ ପର୍ଯ୍ୟନ୍ତ ଭାରତୀୟ କବିମଣ୍ଡଳୀ ଋଗ୍‌ବେଦ ଠାରୁ ଅଗ୍ନିପୁରାଣ ପର୍ଯ୍ୟନ୍ତ ଶାସ୍ତ୍ରକାବ୍ୟ କାହାରି ଭିନ୍ନମତ ନାହିଁ ଯେ କବି-ପ୍ରଜାପତିଙ୍କ ନିର୍ମିତ ନିୟତି ନିୟମ ରହିତ ଭାବଜଗତରେ ଅଦୃଶ୍ୟବ୍ରହ୍ମ ପରି ରସ ହିଁ ପରମ ସୌନ୍ଦର୍ଯ୍ୟ ଭାବରେ ସାମଗ୍ରିକ କଳାସୃଷ୍ଟିର ସର୍ଜନସତ୍ତାରେ ବିଦ୍ୟମାନ। ଜାଗତିକ ଲୀଳା ଭିତରେ ଉପଲବ୍ଧ ନବଧାରସ (ଭିନ୍ନମତରେ ଦଶଧା/ଦ୍ୱାଦଶପ୍ରକାର) କାବ୍ୟଜଗତରେ ଲୌକିକ > ଅଲୌକିକ ହେବାର ଆହ୍ଲାଦଦାୟକ କାବ୍ୟାନୁଭୂତିର ମୂଳହେତୁ ରୂପରେ ମାନ୍ୟତା ପାଇଛି। ସ୍ୱପ୍ରକାଶାନନ୍ଦ ଚିନ୍ମୟ

ସ୍ୱରୂପୀ ରସ ବ୍ରହ୍ମାନନ୍ଦ ସହୋଦରଃ ଭାବରେ ଆଖ୍ୟାୟିତ ହୋଇ କାବ୍ୟର ମୋକ୍ଷସାଧିକା ପ୍ରୟୋଜନକୁ ଅର୍ଥନିଷ୍ଠ କରିଛି। ବୈଦିକ ସଂହିତା ତଥା ବେଦାନ୍ତ (ବୃହତ୍ ଆରଣ୍ୟକ ଉପନିଷଦ) ଯୁଗକୁ ରସ ଅନୁମାନଯୋଗ୍ୟ ଅଣାକାର ନିର୍ଯ୍ୟାସ ବା ଆତ୍ମା ରୂପେ ଦର୍ଶନ ରାଜ୍ୟରେ ଅନୁଭବଯୋଗ୍ୟ ହୋଇରହିଛି ମାତ୍ର ରସକୁ ସାଧାରଣ ଉପଲବ୍ଧି ସ୍ତରକୁ ଆଣି ଲୀଳାତ୍ମକ କାବ୍ୟଯୋଗ୍ୟତାରେ ବିମଣ୍ଡିତ କରିବାରେ ଭରତଙ୍କ (ନାଟ୍ୟଶାସ୍ତ୍ର ପ୍ରଣେତା) ପାଣ୍ଡିତ୍ୟପଣ ନିତ୍ୟକାଳୀନ ନୂତନତାର ପ୍ରସଙ୍ଗ ଖେଳ ଖେଳିଛି। କାମଶାସ୍ତ୍ରୀ ବାତ୍ସାୟନ ରସକୁ ଅନୁଭୂତିର ବିଷୟ ଭାବରେ ଗ୍ରହଣକରି ରସସହୃଦୟଙ୍କ ଆନନ୍ଦ ନିମନ୍ତେ ଏହା କାବ୍ୟର ଲୀଳାନୁବର୍ତ୍ତନର ମୂଳଭିତ୍ତି ବୋଲି ଦର୍ଶାଇଛନ୍ତି (ତଦିଷ୍ଟ ଭବଲୀଳାନୁବର୍ତ୍ତନଂ)। କାମସୂତ୍ରର ଜୟମଙ୍ଗଳ ଟୀକାରେ ଶୃଙ୍ଗରାଦି କାବ୍ୟ ଇପ୍‌ସିତ ରସ ସ୍ଥାୟୀ, ସଂଚାରୀ, ସାତ୍ତ୍ୱିକ, ବାଚନିକ ପ୍ରଭୃତି ଲୀଳା ଚେଷ୍ଟାରେ ପ୍ରକାଶିତ ହୋଇଥାଏ– ଏପ୍ରକାରର ବ୍ୟାଖ୍ୟା ପରିଦୃଷ୍ଟ ହୁଏ। ନାଟ୍ୟାଚାର୍ଯ୍ୟ ଭରତ ମଧ୍ୟ ନାଟ୍ୟରସ ଲୀଳାକାରକ ନିଷ୍ପତ୍ତିରେ ପହଞ୍ଚିବା ପାଇଁ ସ୍ଥାୟୀଭାବକୁ ବିଭାବ > ଅନୁଭବ > ସଂଚାରୀ ଭାବର ସଂଯୋଗରେ ନିର୍ମିତ ସୋପାନ ଅତିକ୍ରମ କରିବାକୁ ପଡେ ବୋଲି ଦର୍ଶାଇଛନ୍ତି। ଭରତଙ୍କ ନାଟ୍ୟାବଲମ୍ବୀ ରସ ବିଚାରରେ ରସ ସର୍ଜନଶୀଳ ମଂଚକର୍ମର (ନାଟକକୃତି) ଆନୁଜୀବ୍ୟ ନୁହେଁ। ମାତ୍ର ରସବିନା ନାଟକର କୌଣସି ଅର୍ଥ ନାହିଁ (ନ ହି ରସାଦୃତେ କଶ୍ଚିଦର୍ଥଃ ପ୍ରବର୍ତ୍ତତେ)। ଭରତଙ୍କୁ ବ୍ୟାଖ୍ୟା କରିବାକୁ ଯାଇ ଅଭିନବ ଭାରତୀରେ ଅଭିନବ ଗୁପ୍ତ ଟୀକାରେ ଉଲ୍ଲେଖ କରିଛନ୍ତି ରସସୂତ୍ରଟି ହେଉଛି– ''ବିଭାବାନୁଭାବ ସଂଚାରୀ ସଂଯୋଗାଦ୍ର ସନିଷ୍ପତ୍ତିଃ''– ଅର୍ଥାତ୍ ଭାବ, ବିଭାବ-ଅନୁଭାବ-ସଂଚାରୀଭାବ ସଂଯୋଗରେ ରସର ନିଷ୍ପତ୍ତି ଘଟାଇଥାଏ। ନାଟ୍ୟଭାବର ସ୍ଥାୟୀସତ୍ତାଟି ବିଭାବ ଦ୍ୱାରା ଉଦ୍ଦୀପ୍ତ ହୋଇ ଅନୁଭାବ ଦ୍ୱାରା ପରିପୁଷ୍ଟ ହୋଇ ସଂଚାରୀ ଭାବ ଦ୍ୱାରା ସିଦ୍ଧ ହୋଇ ଏହି ତ୍ରିବିଧ ସୋପାନର ସଂଯୋଗରେ ରସ ରୂପରେ ବିଷୟନିଷ୍ଠ ହୋଇ ନିଷ୍ପତ୍ତି ପାଇଥାଏ। ପରବର୍ତ୍ତୀ କାଳରେ ଏହି ସୂତ୍ରକୁ କେନ୍ଦ୍ରବିନ୍ଦୁରେ ରଖି ରସସିଦ୍ଧାନ୍ତର ବହୁପାକ୍ଷିକ ବିକାଶ ଘଟିଛି। ଏଠାରେ ଗୋଟିଏ କଥା ଲକ୍ଷ୍ୟଣୀୟ– କରତ ନାଟ୍ୟଶାସ୍ତ୍ରରେ ସର୍ଜନଶୀଳ କର୍ମର ଅନ୍ୟ ଆଧାର ଗୁଣ– ବୃତ୍ତି– ପ୍ରବୃତ୍ତି–ଦୋଷ–ଅଳଙ୍କାର–ଶାବ୍ଦିକତା ପ୍ରଭୃତିକୁ ରସଠାରୁ ଊଣା କରି ରସର ଅନୁପୂରକ ଭାବରେ ଯେଉଁ ଆକଳନମାର୍ଗ ତିଆରି କରିଛନ୍ତି ସେ ମାର୍ଗରୁ ପରବର୍ତ୍ତୀ ଆଚାର୍ଯ୍ୟମାନେ ପୂର୍ଣ୍ଣତଃ ଅପଥଗାମୀ ହୋଇନାହାଁନ୍ତି। ସେହି ପଥରେ ରହି ପଥପ୍ରାନ୍ତର ରସଲୀଳାରେ କିଛିକିଛି ପ୍ରାସଙ୍ଗିକ ଖଣ୍ଡନ ମଣ୍ଡନର ଅଭିନବତ୍ୱ ମାତ୍ର ଦେଖାଇଛନ୍ତି। ଭରତ ଅନୁଭବଗତ ରସକୁ ନାଟ୍ୟଲୀଳାର ପରିଣାମରେ ଏକ ନିଷ୍ପତ୍ତିପ୍ରାପ୍ତ ଅବସ୍ଥା ଭାବରେ କଳନା କରି ସେହି ଅବସ୍ଥାର ପଦାର୍ଥ ଆକୃତି ଓ ଆସ୍ୱାଦନକୁ ସ୍ୱୀକାର କରିଛନ୍ତି (ରସ ଇତିକଃ ପଦାର୍ଥ/ଭବତେ ଆସ୍ୱାଦ୍ୟତ୍ୱତ୍)। ପରବର୍ତ୍ତୀ କାଳରେ ରସର

ଆସ୍ୱାଦନାତ୍ମକ ଆବେଦନ ଓ ଅନ୍ୟାନ୍ୟ କାବ୍ୟାଙ୍ଗ ସହିତ ମିଶି ଆକୃତିରୂପା ଆବେଦନ ଭାରତୀୟ ସମୀକ୍ଷାସିଦ୍ଧାନ୍ତକୁ ଆନନ୍ଦବାଦୀ ବିଚାରନିଷ୍ଠ କରିଦେଇଛି।

ଆନନ୍ଦବର୍ଦ୍ଧନଙ୍କ ଦ୍ୱାରା ରସବାଦ ବିଧିବଦ୍ଧ ଭାବରେ କାବ୍ୟାବଲମ୍ବିତ ହୋଇଛି। ପୂର୍ବ ଅଳଙ୍କାର, ରୀତି ଓ ଗୁଣ ସହିତ ସ୍ୱୟଂ ଆନନ୍ଦବର୍ଦ୍ଧନଙ୍କ ଧ୍ୱନିତତ୍ତ୍ୱକୁ ରସ କ୍ରମଶଃ ସ୍ୱପରିଧି ମଧ୍ୟରେ ନିୟନ୍ତ୍ରଣ କରି ରଖିଛି। ରସବାଦୀ ସମୀକ୍ଷାର ଏହି ପଦ୍ଧତି ଓ ବିଚାର ଦୃଷ୍ଟି ପରବର୍ତ୍ତୀ କାବ୍ୟଶାସ୍ତ୍ରୀୟ ଆଲୋଚନାକୁ ପ୍ରଭାବିତ କରିଛି। ଫଳରେ ଗୋଟିଏ ସମୟର ବଳଶାଳୀ ତତ୍ତ୍ୱ ଅନ୍ୟସବୁ ତତ୍ତ୍ୱକୁ ଖଣ୍ଡନ ମଣ୍ଡନ ପାଇଁ ନିଜର ପରିଧିସ୍ଥ କରିଦେବାଦ୍ୱାରା ତତ୍ତ୍ୱ ତତ୍ତ୍ୱ ଭିତରେ ଥିବା ଅନ୍ତରଙ୍ଗ ସହଯୋଗ ଯେତିକି ପରିସ୍ଫୁଟ ନ ହୋଇଛି ବରଂ ଏକ ବିଚିତ୍ର ଦଳଚକଟା ଦେଇ ଗୋଟିକର ସର୍ବାଙ୍ଗସୁନ୍ଦର ଜକ୍‌ଜକ ହୋଇଉଠିଛି ଏବଂ ଅନ୍ୟ ଅନେକ ସବୁଦିନ ପାଇଁ ମଳିନ ପଡ଼ିଯାଇଛନ୍ତି। କିନ୍ତୁ ଆଶ୍ଚର୍ଯ୍ୟ ରସ ଧ୍ୱନିଯୁକ୍ତ ଉତ୍ତମ ଆତ୍ମାହେଉ, ଅଳଙ୍କାଯୁକ୍ତ ଐଶ୍ୱର୍ଯ୍ୟମୟୀ ଆତ୍ମା ହେଉ, ରୀତି-କୃତି ଆଶ୍ରିତ ଗୁଣାତ୍ମକ ଆତ୍ମା ହେଉ, ଚିତ୍ରାଳଙ୍କାର ଯୁକ୍ତ ଅଧମ ଆତ୍ମା ହେଉ, ବକ୍ରୋକ୍ତି ଭିତ୍ତିକ ଚାରୁଚିତ୍ରମୟୀ ଆତ୍ମା ହେଉ ଓ ଔଚିତ୍ୟସାର ବିବେକୀ ଆତ୍ମାହେଉ– ସର୍ବଦା ଭାବପାକ୍ଷିକ ଅନ୍ତଃସୌନ୍ଦର୍ଯ୍ୟର ସିଂହାସନରେ ବସିରହିଛି। ରସର ନିର୍ଦ୍ଦେଶ ଅନୁସାରୀ ରୂପପକ୍ଷର ନିର୍ମିତନିର୍ମାଣ ସଂଘଟିତ ହୋଇଛି। ଯେଉଁ କାବ୍ୟରେ ରସ ଯେଉଁ ଉପକାରକ ତତ୍ତ୍ୱକୁ ସାରସତ୍ତା ଭାବରେ ଗ୍ରହଣ କରିଛି ସେହି ତତ୍ତ୍ୱଟି ରୂପପକ୍ଷର ହେଲେ ବି ରସର ଏକାନ୍ତ ଅନ୍ତରଙ୍ଗ ହୋଇଛି। ଭାବପାକ୍ଷିକ ସୌନ୍ଦର୍ଯ୍ୟ ସଂପାଦନ ହେତୁ କାବ୍ୟପ୍ରାଣ ନହୋଇ ବରଂ ରସପ୍ରାଣ ହେବାର ମର୍ଯ୍ୟାଦା ପାଇଛି। ଏ ଦୃଷ୍ଟିରୁ ରସସିଦ୍ଧାନ୍ତରେ ଔଚିତ୍ୟ-ରସର ପ୍ରାଣ, ବକ୍ରୋକ୍ତି-ରସର ପ୍ରାଣ ଓ ଚମତ୍କାର ଭାଗ୍ୟରେ ବି ରସରପ୍ରାଣ ହେବାର ନରମ ଅବକାଶ ମିଳିଛି। ଏପ୍ରକାର ଅବସ୍ଥା ଧ୍ୱନି, ରୀତି ଓ ରୀତିସଂଯୁକ୍ତ ପାକସିଦ୍ଧାନ୍ତକୁ ମଧ୍ୟ ଭୋଗିବାକୁ ପଡ଼ିଛି। ଶ୍ରେୟକାବ୍ୟର ବୈଶିଷ୍ଟ୍ୟ ହେଉଛି ଶବ୍ଦଭିତରେ ଥିବା ଅଶବ୍ଦବାଚକ ଇଙ୍ଗିତ। ଅଭିଧାନ ରଖି କବିର ଏହି ଅଶବ୍ଦବାଚ୍ୟ-ଙ୍ଗିତକୁ ବୁଝାଯାଇପାରେ ନାହିଁ। ଏକ ପ୍ରତୀୟମାନ ଅର୍ଥ ଆରୋପ କରାଯାଏ। ରସାନୁସାରେ ଇଙ୍ଗିତର ଅର୍ଥ ତାତ୍‌ପର୍ଯ୍ୟ ନିରୂପିତ ହୁଏ। ସୁତରାଂ ଧ୍ୱନିମଧ୍ୟ ରସବ୍ୟାପାରର ଅଧୀନ। ବାମନଙ୍କ ବିଚାରରେ ରୀତି ବା ପଦସଂଘଟନାର ବିଶିଷ୍ଟ ରୂପ ହେଉଛି ଦ୍ୱିବିଧ– ଶବ୍ଦପାକ ଓ ଅର୍ଥ ପାକ। ଉଭୟ ପାକରଧର୍ମ ହେଉଛି ନିଜ ନିଜ ଗୁଣରେ ରସଉଚିତ ଆବେଦନ ସୃଷ୍ଟି କରିବା। ରାଜଶେଖରଙ୍କ କାବ୍ୟ ମୀମାଂସାରେ ଅବନ୍ତୀସୁନ୍ଦରୀଙ୍କ ଅନୁପମ ବିଚାର 'କାବ୍ୟପାକକଳ୍ପ' ମଧ୍ୟ 'ରସୋଚିତ ଶବ୍ଦାର୍ଥ ସ୍ୱକ୍ତି ନିବନ୍ଧନ' ଅଭିଧାରେ ପରିଭାଷିତ ହୋଇଛି। ଶବ୍ଦ ଔଚିତ୍ୟଗର୍ଭା ହୋଇ ଦ୍ରାକ୍ଷା, ନାରିକେଳ, ରମ୍ଭା, ପନସାଦି ପାକକଳାରେ ନିବନ୍ଧିତ ହେଇ କେବଳ ରସବୋଧ ହିଁ କରିଥାଏ। ଗୁଣ ବିମର୍ଶବାଦୀଙ୍କ ଗୁଣର ସଂଜ୍ଞା

ହେଉଛି– 'କାବ୍ୟ ରସକୁ ଆଶ୍ରୟ କରିଥିବା ଧର୍ମ ହିଁ ଗୁଣ।' ରସର ଉତ୍କର୍ଷ ଗୁଣାଶ୍ରୟୀ। ରସ ସହିତ ଗୁଣର ସ୍ଥିତିସମୂହ ନିତ୍ୟ। ଗୁଣ ବିଚାରର ଆଚାର୍ଯ୍ୟ ଦଣ୍ଡୀଙ୍କ ଦୃଷ୍ଟିରେ ଗୁଣକାବ୍ୟର ପ୍ରାଣ। ମାତ୍ର ଏ ପ୍ରାଣଧର୍ମ ସ୍ୱୟଂ ସ୍ୱତନ୍ତ୍ର ନୁହେଁ। ଏହା ରସାଶ୍ରିତ ପୁଣି ରସତୋଷକ। ରସସଂଯୁକ୍ତ ଓ ରସାନୁଗତ ହୋଇ ଗୁଣ କାବ୍ୟର ଅନ୍ତଃସୌନ୍ଦର୍ଯ୍ୟ ସଂପାଦନ କରିଥାଏ। ପୁନଶ୍ଚ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଗୁଣ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ରସ ପ୍ରଜାତି ସହିତ ମିଶି କାବ୍ୟର ନିର୍ମିତିନିର୍ମାଣକୁ ସଂଭାଳିଥା'ନ୍ତି। ରୀତି ସହିତ ମିଶି ଗୁଣ ରସାନୁସାରୀ ଶ୍ରୁତିସୁନ୍ଦରତା ଓ ମର୍ମବୋଧର ମହତ୍ତ୍ୱ ସାଧନ କରିଥାଏ। ଏହି ମର୍ମରେ ମାଧୁର୍ଯ୍ୟ ଗୁଣ + ବୈଦର୍ଭୀ ରୀତିର ଶୃଙ୍ଗାର ପ୍ରାଣତା ହେବା, ଓଜଃଗୁଣ + ଗୌଡୀ ରୀତିର ରୌଦ୍ର ଓ ବୀରରସ ସଂଯୁକ୍ତି, ପ୍ରସାଦ ଗୁଣ + ପାଞ୍ଚାଳୀ ରୀତିର କରୁଣରସ ସଂସ୍ଥିତି ଓ ଲାଟୀୟା ରୀତି ସହିତ ମିଶି ପ୍ରସାଦଗୁଣର ଶୃଙ୍ଗାର, ଶାନ୍ତ, କରୁଣ ଓ ବାତ୍ସଲ୍ୟ ଆଦି ରସସିଦ୍ଧିକରଣ ପ୍ରମାଣ କରେ ଯେ କାବ୍ୟର ମାୟାଜଗତରେ ରସହିଁ ସାର।

ରୁଦ୍ରଟ ଚାରିପ୍ରକାର ରୀତିକୁ ଚିତ୍ତ ଦ୍ରବୀଭୂତକାରୀ ଗୁଣବିଶିଷ୍ଟ ବର୍ଣ୍ଣବିନ୍ୟାସ କ୍ରମ ଭାବରେ ବିଚାର କରି ପ୍ରତ୍ୟେକଟିକୁ ରସର ଅବତାରଣାକାରୀ ମାଧ୍ୟମ ଭାବରେ ବିବେଚନା କରିଛନ୍ତି। ବୈଦର୍ଭୀ ରୀତି ଶୃଙ୍ଗାର, କରୁଣ, ଶାନ୍ତ ରସର ଅବତାରଣା ପାଇଁ ଉପଯୋଗୀ ହୋଇଥିବା ବେଳେ, ଗୌଡୀ ରୀତିର ବୀର, ଅଦ୍‌ଭୁତ, ରୌଦ୍ର ଓ ଭୟାନକ ରସର ଅବତାରଣା ହୋଇଥାଏ। ଲାଟିୟା ଓ ପାଞ୍ଚାଳୀ ରୀତିରେ ଶୃଙ୍ଗାର ରସୋଚିତ ରୂପବର୍ଣ୍ଣନା, ସରୋବର ବର୍ଣ୍ଣନା, ଉଦ୍ୟାନବର୍ଣ୍ଣନା ଓ ନଗରାଦି ବର୍ଣ୍ଣନା ସହିତ ବାତ୍ସଲ୍ୟ ଓ ଶାନ୍ତରସର ବର୍ଣ୍ଣନା ହୋଇଥାଏ।

ଭାମହ, ଉଦ୍‌ଭଟ, ରୁଦ୍ରଟ, ଜୟଦେବ, ଅପ୍ପୟ ଓ ବିଶ୍ୱେଶ୍ୱର ପ୍ରମୁଖ ଅଳଙ୍କାରବାଦୀ କାବ୍ୟଶାସ୍ତ୍ରୀଗଣ ଅଳଙ୍କାରକୁ କାବ୍ୟର ଗୁରୁତ୍ୱ ଓ ବୈଚିତ୍ର୍ୟ ନିର୍ମାଣକାରୀ ଶୋଭାଧାୟୀ ବା ସୌନ୍ଦର୍ଯ୍ୟାଶ୍ରୟୀ ତତ୍ତ୍ୱ ରୂପେ ଗ୍ରହଣ କରିଛନ୍ତି। ଏହି ଶୋଭାଧାୟୀ ତତ୍ତ୍ୱଟି ରସାନୁକୂଳ ଉକ୍ତିପ୍ରକାର (figures of speech) ହେବା ଦ୍ୱାରା ହିଁ ନିଜର ରମଣୀୟତା ଓ ବୈଚିତ୍ର୍ୟ ପ୍ରଦର୍ଶନ କରି ପାରିଥାଏ। ଅଳଙ୍କାର ବି ରସବୈଚିତ୍ର୍ୟର ସହାୟକ ହୋଇଛି। ରସବଦ୍ ଅଳଙ୍କାରହିଁ କାବ୍ୟାନୁଭୂତିକୁ ପାଠକାନୁକୂଳ ଚିତ୍ରାନୁଭୂତିରେ ବା ଦୃଶ୍ୟାନୁଭୂତିରେ ରୂପାନ୍ତରିତ କରିପାରେ। ଏଠିବି ରସଗର୍ଭରେ ମିଶିଯିବାକୁ ଅଳଙ୍କାର ସିଦ୍ଧାନ୍ତ କମ୍ ବ୍ୟାକୁଳତା ପ୍ରକାଶ କରିନାହିଁ।

ବୈପରୀତ୍ୟ, ବ୍ୟତିରେକୀ, କୋମଳ, ଜଟିଳ, ଧ୍ୱଂସ, ସୃଜନ, ବିରୋଧାଭାସ, ଅତିରଂଜିତ, ଶୁଭଗ ଓ ମନ୍ଦସୂଚକ– ଯେକୌଣସି ପ୍ରକାରର ସଂପେକ୍ଷ ବିପକ୍ଷ ଭାବ ହେଉ ତା'ର ପୂର୍ଣ୍ଣତା ଘଟେ ରସରେ। ଭାବର ଦ୍ୟୋତନା ଅନୁସାରେ କବିର ପ୍ରକାଶଭଙ୍ଗୀ

ଭିତରେ ରସ ରହିଥାଏ (କବିବାଚି ରସଃସ୍ଥିତି-ରାଜଶେଖର)। ଦଣ୍ଡୀଙ୍କ ଦୃଷ୍ଟିରେ ସଫଳ କାବ୍ୟତାର ହେତୁ ହେଉଛି-ଇଷ୍ଟାର୍ଥ ବ୍ୟବଚ୍ଛିନ୍ନ ପଦାବଳୀ। ଏପ୍ରକାର ପଦାବଳୀ ହେଉଛି ତାଙ୍କ ବିଚାରରେ ଗୁଣାତ୍ମକ ଓ ଦୋଷବର୍ଜିତ 'ବାଗ୍‌ରସ'। ଭୋଜରାଜ ରସାନ୍ୱିତ ମତରେ ନିର୍ଦ୍ଦେଶ ଗୁଣଯୁକ୍ତ ଅଳଙ୍କାରମଣ୍ଡିତ କାବ୍ୟରଚନାରେ ସମର୍ଥ କବି ଉଭୟ କୀର୍ତ୍ତି ଓ ପ୍ରୀତି ଲାଭ କରିଥାଏ। 'କାବ୍ୟପ୍ରକାଶ ଦୀପିକା'ରେ ଚଣ୍ଡୀଦାସ ରସଯୁକ୍ତ ଆସ୍ୱାଦନଶୀଳ ପଦସନ୍ଦର୍ଭ ଭିତରେ କାବ୍ୟର ରମଣୀୟତା ଓ ରଚନା ସାଫଲ୍ୟକୁ ଦେଖିଛନ୍ତି। ଆଚାର୍ଯ୍ୟ ଶୌଦ୍ଧୋଦନି ରସାଦିଯୁକ୍ତ ବାକ୍ୟହିଁ କାବ୍ୟଭାବରେ ଘୋଷଣା କରି (କାବ୍ୟଂ ରସାଦିମଦ୍‌ବାକ୍ୟଂ ଶ୍ରୁତିଂ ମୁଖବିଶେଷ କୃତ୍) ବିଶ୍ୱନାଥ କବିରାଜଙ୍କ ନିମନ୍ତେ ରସକୁ କାବ୍ୟାତ୍ମାରୂପେ ସିଦ୍ଧାନ୍ତନିଷ୍ଠ କରିଦେବା ପାଇଁ ମାର୍ଗ ପରିଷ୍କାର କରି ଦେଇଛନ୍ତି।

ସ୍ଥୂଳତଃ ପ୍ରାଚ୍ୟ କାବ୍ୟବିଦ୍ୟାନୁସାରେ ରସହିଁ କାବ୍ୟକ୍ଷେତ୍ରରେ ବୁଣା ଯାଇଥିବା ନିତ୍ୟ ବୀଜଟିଏ। ଏହା କବିର ପୂର୍ବଜନ୍ମ ସଂସ୍କାର ଓ ସହୃଦୟର ବାସନା ଅନୁସାରୀ। କବିମାତ୍ରେ ହିଁ ଶୃଙ୍ଗାରୀ ବା ଭାବପ୍ରେମୀ ଓ କାବ୍ୟ ମାତ୍ରେ ହିଁ ଏକ ରସମୟ ଜଗତ ଯେଉଁଠି କବିର ବୀତାବିତରାଗ ସଚିତ୍ର ଭାସ୍ୱରିତ ହୋଇଉଠିଥାଏ। ଏ ଦୃଷ୍ଟିରୁ କାବ୍ୟ ରଚନା ଓ କାବ୍ୟପାଠର ଏକମାତ୍ର ସାର୍ବକାଳିକ ଓ ସାର୍ବଜନୀନ ଅଭିପ୍ରାୟ ହେଉଛି ନୂଆପ୍ରକାରେ ରସୋଦ୍ରେକ କରିବା ଓ ରସୋପଲବ୍ଧି କରେଇବା। ଉପଭୋଗ, ଅନୁମାନ, ଉଦ୍‌ବୋଧନ, ଚର୍ବଣାବ୍ୟାପାର, ଅନୁଶୀଳନ ଓ ଉତ୍ପାଦନ ପ୍ରକ୍ରିୟାରେ ରସୋପଲବ୍ଧି ସଂଭବ ହୋଇଥାଏ। ତେଣୁ କାବ୍ୟ ସମ୍ବାଦ ସର୍ବଦା ସଂଚାର ପାଇଁ ରସିକଜନଟିଏ ଆସିବାକୁ ପ୍ରତୀକ୍ଷା କରିଥାଏ। ପୁନଶ୍ଚ, ପୂର୍ଣ୍ଣ କାବ୍ୟଟିଏ ବା ଶହ ଶହ ପଙ୍‌କ୍ତିବିଶିଷ୍ଟ ପଦ୍ୟାତ୍ମକ କୃତିଟିଏ ନୁହେଁ; ଗୋଟିଏ ମାତ୍ର ରସାତ୍ମକ ବାକ୍ୟ ଭିତରେ ବି କାବ୍ୟାନନ୍ଦ ପୂର୍ଣ୍ଣ ହୋଇଥାଏ। ଏ ଦୃଷ୍ଟିରୁ ଶବ୍ଦ ସୌକୁମାର୍ଯ୍ୟ, ଅର୍ଥ ତାତ୍ପର୍ଯ୍ୟ, ଧ୍ୱନ୍ୟାତ୍ମକ ଆବେଦନ, ପଦସଂଘଟନାତ୍ମକ ସୌନ୍ଦର୍ଯ୍ୟ, ଆଳଙ୍କାରିକ ଐଶ୍ୱର୍ଯ୍ୟ ଓ ବିଦଗ୍ଧ ବାଣୀଭଙ୍ଗୀ ଥାଇ ମଧ୍ୟ ରସହିଁ କାବ୍ୟର ଜୀବନ ବା କାବ୍ୟାତ୍ମା ଭାବରେ (ବାଗ୍ ବୈଦଗ୍ଧ୍ୟ ପ୍ରଧାନୋଽପିରସ ଏବାତ୍ର ଜୀବିତଂ) ଅବିଳଚିତ ରହିଛି।

(ଛଅ)

(ii) ଭାରତୀୟ ସମୀକ୍ଷାତତ୍ତ୍ୱରେ ଶବ୍ଦାର୍ଥବାଦୀ କାବ୍ୟଶାସ୍ତ୍ରୀମାନଙ୍କୁ 'ରୀତ୍ୟାଙ୍ଗିକବାଦୀ' ଭାବରେ ସ୍ୱତନ୍ତ୍ର ପରିଚୟରେ ଅନୁଶୀଳନ କରାଯାଇପାରେ। ରୀତ୍ୟାଙ୍ଗିକବାଦୀଙ୍କ ମତରେ କବିର ଭାବ ସ୍ଥିର ଓ ଭାବର ରସସୂତ୍ର ଓ ରସାଭିବ୍ୟକ୍ତି ପଦ୍ଧତି ବି ସ୍ଥିର। କେବଳ ଅସ୍ଥିର ଧର୍ମ ହେଉଛି ଶବ୍ଦାର୍ଥକରଣ ଉକ୍ତି ପ୍ରକାର (figures of speech)। ଶବ୍ଦାର୍ଥ ସଂଯୋଗିତ ସାହିତ୍ୟର ପୁରୁଣା ଭାବ ନୂଆ ବାଗରେ ଅଭିବ୍ୟକ୍ତି

ପାଇଥାଏ। ପଦ-ବାକ୍ୟ-ଉଭୟର ସଜ୍ଜୀକରଣ ଠାରୁ ଆରମ୍ଭ କରି କବି ସ୍ୱଭାବନିଷ୍ଠ ବାକ୍‌ଭଙ୍ଗୀ, ରଚନାଶୈଳୀ ଓ ଅର୍ଥପ୍ରତୀତିକରଣ ଇତ୍ୟାଦିକୁ ସ୍ୱତନ୍ତ୍ର ଭାବରେ ଆଲୋଚନା କରି ସିଦ୍ଧାନ୍ତନିଷ୍ଠ କରିବା ଉପରେ **ରୀତ୍ୟାଙ୍ଗିକ ସମୀକ୍ଷା** ଜୋର୍ ଦିଏ। କାବ୍ୟ ନିର୍ମାଣରେ ଥିବା ସାମଗ୍ରିକ ଦୋଷ (ପଦଦୋଷ, ଅର୍ଥଦୋଷ, ରସଦୋଷ) ଅପକର୍ଷ ସାଧନକାରୀ କବିପ୍ରସିଦ୍ଧି ବିଚାର, ଅଳଙ୍କାର ପ୍ରୟୋଗ, ରୀତିଚାତୁରୀ ନିରୂପଣ, ଗୁଣବିମର୍ଶ, ବୃତ୍ତିଭେଦ, ଔଚିତ୍ୟ ବିଚାର, ବକ୍ରୋକ୍ତି ତର୍ଜମା ଆଦି ରୀତ୍ୟାଙ୍ଗିକ ତତ୍ତ୍ୱ ସହିତ ଜଡିତ। ଏସବୁକୁ ନେଇ ଭାରତୀୟ ସମୀକ୍ଷାତତ୍ତ୍ୱରେ ଏକ ରୂପାତ୍ମକ ବା ସୌନ୍ଦର୍ଯ୍ୟତାତ୍ତ୍ୱିକ ସମୀକ୍ଷାଧାରା ଗତିଶୀଳ ହୋଇଛି। ସର୍ବପ୍ରଥମେ ଭାମହ ଶବ୍ଦ ଓ ଅର୍ଥର ସହଭାବ ହିଁ କାବ୍ୟ (ଶବ୍ଦାର୍ଥୌ ସହିତୌ କାବ୍ୟଂ) ଭାବରେ ଘୋଷଣା କରିବା ପରେ ଦଣ୍ଡୀ, ରୁଦ୍ରଟ, କୁନ୍ତକ, ମମ୍ମଟ, ବିଦ୍ୟାନାଥ, ବାଗ୍‌ଭଟ୍ଟ, ହେମଚନ୍ଦ୍ର, ଜୟଦେବ ଓ ଭୋଜରାଜ ପ୍ରମୁଖ ଆଚାର୍ଯ୍ୟଗଣ ଭାମହଙ୍କୁ ଅନୁସରଣ କରି ଶବ୍ଦ ଓ ଅର୍ଥର ମିଳନ ବୈଚିତ୍ର୍ୟ ଓ ଏକକରମଣୀୟତା ମଧ୍ୟରେ କାବ୍ୟସ୍ୱରୂପ ବିଶ୍ଳେଷଣ କରିଛନ୍ତି। ଦୋଷରହିତ, ଗୁଣ ଓ ଅଳଙ୍କାର ଯୁକ୍ତ ରୀତି ଲକ୍ଷଣାଶ୍ରିତ ବୃତ୍ତିଭିତ୍ତିକ ଶବ୍ଦାର୍ଥ ଭୂଷିତ ନିର୍ମାଣ ଧର୍ମରେ କାବ୍ୟର ବୈଚିତ୍ର୍ୟ ନିରୂପିତ ହୋଇଛି। ଏହି କ୍ରମରେ କାବ୍ୟର ବହିରଙ୍ଗୀୟ ରୂପପକ୍ଷ ଓ ଅନ୍ତରଙ୍ଗୀୟ ଅର୍ଥପକ୍ଷ ନିର୍ଦ୍ଦିଷ୍ଟ ହୋଇ ତଦନୁସାରେ କାବ୍ୟିକ ତତ୍ତ୍ୱନିର୍ଣ୍ଣିତ ହୋଇଛି ଓ କବିମାନଙ୍କ କାବ୍ୟର ମହିମା ବିଶ୍ଳେଷିତ ହୋଇ ନୂତନ କାବ୍ୟରଚନା ପାଇଁ କାବ୍ୟ ଲକ୍ଷଣ, କାବ୍ୟହେତୁ, କାବ୍ୟଦୋଷ, କାବ୍ୟିକ ପାକ, କାବ୍ୟ ପ୍ରୟୋଜନ, କବିଭେଦ, କାବ୍ୟଭେଦ, କାବ୍ୟିକ ଶବ୍ଦଶକ୍ତି, କାବ୍ୟଚରିତ୍ର, କାବ୍ୟ-କବିବିବେକ ଓ କାବ୍ୟବୃତ୍ତି ଇତ୍ୟାଦି ସଂପର୍କରେ ପ୍ରକୃଷ୍ଟ ତାତ୍ତ୍ୱିକ ଧାରଣାମାନ ସୂତ୍ରାୟିତ ହୋଇଛି।

ରୀତିବାଦୀମାନଙ୍କର ସିଦ୍ଧାନ୍ତ କାବ୍ୟକଳ୍ପକୁ ବିନ୍ୟାସମୂଳକ ଓ ସଙ୍ଗତିପୂର୍ଣ୍ଣ ସଂରଚନା ଭାବରେ ବିବେଚନା କରିଛି। କାବ୍ୟଶାସ୍ତ୍ରରେ ଏକ ସୌନ୍ଦର୍ଯ୍ୟବାଦୀ ସମୀକ୍ଷାଧାରାର ବିକାଶ ଘଟିଛି। ଆଂଚଳିକ ବୈଶିଷ୍ଟ୍ୟ ଓ ଭୌଗୋଳିକ ରୁଚି ମଧ୍ୟରେ କାବ୍ୟର ପଦଗତ ବିନ୍ୟାସ ସଂପାଦିତ ହେଉଥିବାର ପ୍ରାଚୀନ ଧାରଣାକୁ ବାମନାଚାର୍ଯ୍ୟ ଦୋଷଯୁକ୍ତ ହେତୁ ଅସ୍ୱୀକାର କରିଛନ୍ତି। ଭାମହଙ୍କ ବକ୍ରୋକ୍ତି ଅନୁସାରୀ କାବ୍ୟରଚନାବୃତ୍ତିକୁ ଓ ଦଣ୍ଡୀଙ୍କ ଗୁଣାଶ୍ରିତ ରଚନାମାର୍ଗକୁ ବାମନାଚାର୍ଯ୍ୟ ଏକ ସୌନ୍ଦର୍ଯ୍ୟବାଦୀ (ରୀତିଶୀର୍ଷକ) ପ୍ରକରଣଧର୍ମୀ ସିଦ୍ଧାନ୍ତରେ ପରିଣତ କରିଛନ୍ତି। ଯଦିଓ ସେ ରୀତିକୁ କାବ୍ୟର ଆତ୍ମା ଭାବରେ ବିବେଚନା କରିଛନ୍ତି ତାହା ପରବର୍ତ୍ତୀ କାଳରେ ଭାବବାଦୀ ଆଲୋଚନାରେ ସମର୍ଥନ ନ ପାଇଁ ଆନନ୍ଦ, ରୁଦ୍ରଟ, ଭୋଜ, ରାଜଶେଖର, ମମ୍ମଟ, ବିଶ୍ୱନାଥ ପ୍ରମୁଖଙ୍କ ତର୍କଣାରେ ରୂପପାକ୍ଷିକ ହୋଇଉଠିଛି। କାବ୍ୟର ନିତ୍ୟଧର୍ମ ଓ କାବ୍ୟର ଅନ୍ତଃ-ବାହ୍ୟସୌନ୍ଦର୍ଯ୍ୟ ଉତ୍ପାଦନକାରୀ ଶବ୍ଦ ଓ ଅର୍ଥଗୁଣଦ୍ୱାରା

ମଣ୍ଡିତହୋଇ କବି ଦ୍ୱାରା ନିଷ୍ପାଦିତ ବିଶିଷ୍ଟ ପଦରଚନା ହିଁ କାବ୍ୟ ସର୍ଜନର ସଫଳତାର ବୀଜ। ବାମନଙ୍କ ପରେ ରୀତିକୁ କବିପ୍ରସ୍ଥାନ ହେତୁ ବା କବିକର୍ମର ଶୈଳୀ ଭାବରେ ବିଚାର କରାଯାଇଛି। ଶବ୍ଦ, ପଦ, ବର୍ଣ୍ଣ ଓ ବଚନ ଇତ୍ୟାଦିରେ ଯଥୋପଯୁକ୍ତ ସଂଘଟନା/ ବିନ୍ୟାସ/ବିରଚନା/ସଂଯୋଜନା ମଧ୍ୟରେ ରୀତି (ବୈଦର୍ଭୀ, ଗୌଡୀ, ପାଞ୍ଚାଳୀ, ଲାଟିଆ, ଆବନ୍ତିକା ଆଦି ଭେଦରେ) କାବ୍ୟର ଅଙ୍ଗସଂସ୍ଥାନ ଧର୍ମୀ ଶୋଭାକାରକ ଉପାୟ ଓ ରସର ଉପକାରକ (ପଦସଂଘଟନା ରୀତିରଙ୍ଗ ସଂସ୍ଥାନବିଶେଷବତ୍/ଉପକର୍ତ୍ତ୍ରୀ ରସାଦୀନାଂ- ବିଶ୍ୱନାଥ) ରୂପେ ଉପଯୋଗ ହୋଇଛି। କାବ୍ୟଘଟଣା, ବିଷୟରସ ଓ ଭାବାଭିପ୍ରାୟକୁ କେନ୍ଦ୍ରକରି କବିଏ ନିଜନିଜ ରୁଚିରେ କାବ୍ୟବନ୍ଧ ନିର୍ମାଣରେ ଗୁଣାଶ୍ରୟୀ ପଦସଂଘଟନାରେ ପ୍ରଯତ୍ନମନା ହୋଇଛନ୍ତି। କାବ୍ୟତା ହୋଇଛି ରସକାରକ ପଦଚାତୁରୀ ପ୍ରଦର୍ଶନର ଖେଳ। ପଦର ଶ୍ରୁତିଗତ, ଶୃଙ୍ଖଳାଗତ, ମେଳିଗତ ଓ ରସସଂଚାରଗତ ସୌନ୍ଦର୍ଯ୍ୟ ଦେଇ ପାଠକ କାବ୍ୟସୌନ୍ଦର୍ଯ୍ୟର ନିକଟତର ହୋଇଛି। ପଦସୌନ୍ଦର୍ଯ୍ୟର ବିବିଧ ସୂତ୍ରକୁ ସମୀକ୍ଷାଶାସ୍ତ୍ରରେ ଏ କାରଣରୁ ଆଲୋଚନା ପରିସରକୁ ସଗୁରୁତ୍ୱ ଅଣାଯାଇଛି। ପଦବିନ୍ୟାସମୂଳକ ସମୀକ୍ଷା ପରଂପରାରେ ବାମନଙ୍କ ବ୍ୟଂଜନାତ୍ମକ ଚମତ୍କାରିତା ସୃଷ୍ଟିସଂପନ୍ନ ଅର୍ଥପାକ ଓ ରସାବେଦନମୂଳକ ଶବ୍ଦପାକ ରାଜଶେଖରଙ୍କ ବିଦୁଷୀପତ୍ନୀ ଅବନ୍ତୀସୁନ୍ଦରୀଙ୍କ କ୍ରିୟାକଳ୍ପ ବିବେଚନାରେ ଉତ୍ତମ କବିଗଣ ପୋଖତ ଶବ୍ଦକୀଡକରୂପେ ଅର୍ଥକର ହୋଇଉଠିଛି। ସେମାନେ ରସୋଚିତ ଶବ୍ଦାର୍ଥ ଅଭିବ୍ୟକ୍ତିକୁ ପାକ (ନାରୀକେଳ-ପନସ-ଦ୍ରାକ୍ଷାଦି) ପ୍ରତିଯୋଗିତାରେ ସିଦ୍ଧ କରି ନିଜନିଜର ବୈଶିଷ୍ଟ୍ୟ ଓ ପ୍ରଭାବ ପ୍ରତିଷ୍ଠା କରିଥା'ନ୍ତି। ରସବାଧକ ଓ ଭାବବିରୋଧୀ ଶବ୍ଦପାକ ଅନୌଚିତ୍ୟ ଏବଂ କାବ୍ୟର ଉତ୍ତମତ୍ୱ ଏହାଦ୍ୱାରା ବିଡମ୍ବିତ ହୋଇଥାଏ। ଔଚିତ୍ୟବାଦୀଙ୍କ ମତରେ ରସୌଚିତ୍ୟ ସମ୍ମାନରେ ବ୍ୟବହୃତ ପଦଚାତୁରୀ କାବ୍ୟର ନିର୍ବିକଳ୍ପୀୟ ସୌନ୍ଦର୍ଯ୍ୟ (ଇମାନୁଏଲ୍ କାଣ୍ଟ୍‌ଙ୍କ transcedental aestheticsର ସମପର୍ଯାୟବାଚୀ) ସୃଷ୍ଟିର କାରଣ ହୋଇଥାଏ।

ଶବ୍ଦଦ୍ୱାରା ଭାବ ରୂପଗ୍ରହଣ କରିବା ହିଁ କାବ୍ୟତା। ଭାବପ୍ରତି ବିଶମ୍ବଦ ରହି ଶବ୍ଦ ସଙ୍ଗେ ଅର୍ଥ ମିଶି ସମତା ଓ ସଙ୍ଗତି ସୂଚକରୂପ ଲାଭ କରିବା ଦ୍ୱାରା କବିର ଚେତନା କାବ୍ୟରୂପ ଗ୍ରହଣ କରେ। ରୂପଗତି ସୌନ୍ଦର୍ଯ୍ୟ ସଂପାଦନ ହିଁ ଚମତ୍କାର ଅଭିବ୍ୟକ୍ତି ଏବଂ ଏହାହିଁ ବିଶୁଦ୍ଧ କାବ୍ୟର ଶ୍ରେୟ ଆଶ୍ରୟଧର୍ମ। ଅଳଙ୍କାରକୁ ଭାରତୀୟ କାବ୍ୟତତ୍ତ୍ୱରେ ସୌନ୍ଦର୍ଯ୍ୟବାଦୀ ବିଚାରବିମର୍ଶର ଦୃଷ୍ଟାନ୍ତ ଭାବରେ ଗ୍ରହଣ କରାଯାଇଛି। ସୌନ୍ଦର୍ଯ୍ୟବିଧାନ ରୂପ, ଭାବ ଓ ଆଭିବ୍ୟକ୍ତିକ ଆବେଦନ ଦିଗରୁ ନିରୂପିତ ହୋଇଥାଏ। ନିର୍ମିତିନିର୍ମାଣରେ ବା କାବ୍ୟର ଗଠନ କାଳରେ ଶବ୍ଦ ଓ ଅର୍ଥକୁ ଭିତ୍ତିକରି ଅଳଙ୍କାର ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଏ। ଅଳଙ୍କାର କାବ୍ୟର ଆଶ୍ରୟ ସୌନ୍ଦର୍ଯ୍ୟ ଭାବରେ ସାଧାରଣ

ଭାଷାକୁ କାବ୍ୟିକ ଭାଷାରେ ପରିଣତ କରେ। ନଚେତ ଭାମହଙ୍କ ମତରେ ଅଳଙ୍କାରଶୂନ୍ୟ ଭାଷା ସାଧାରଣ ଜନମୁଖର ବାଚନିକ ବାର୍ତ୍ତା ହୋଇଯିବାର ଆଶଙ୍କା ଥାଏ। ଅଳଙ୍କାରକୁ କାବ୍ୟ ଗ୍ରହଣ କରେ ଓ ଅଳଙ୍କାର ହେତୁକ ହୋଇଥିବାରୁ କାବ୍ୟ ସହୃଦୟ ଗ୍ରାହ୍ୟ ହୋଇଥାଏ। କାବ୍ୟର ଗ୍ରହଣଯୋଗ୍ୟତା ବୃଦ୍ଧିକାରକ ଅଳଙ୍କାର ସ୍ୱୟଂ ସୌନ୍ଦର୍ଯ୍ୟ ସ୍ୱରୂପ (ସୌନ୍ଦର୍ଯ୍ୟମେବ ଅଳଙ୍କାରଃ-ବାମନ)। ନାଟ୍ୟଶାସ୍ତ୍ରର ଚାରିପ୍ରକାର ଅଳଙ୍କାର ଦଣ୍ଡୀଙ୍କ ସମୟକୁ ୩୮ ପ୍ରକାରରେ ଦେଖାଦେଇ ଅପ୍ପୟ ଦୀକ୍ଷିତଙ୍କ ସମୟକୁ ଦ୍ୱିଶତାଧିକ ଉକ୍ତି ପ୍ରକାରରେ ପରିଣାମ ଗ୍ରହଣ କରିଛି। ରସାନୁକୂଳ ମିତାଚାରିତା ଦେଇ ଅଳଙ୍କାର କାବ୍ୟର ଶବଳିତ ମର୍ଯ୍ୟାଦା ବୃଦ୍ଧି କରାଯାଇଥାଏ। ମାତ୍ର ଅଳଙ୍କାର ବାହୁଲ୍ୟ କାବ୍ୟର ରୂପଗତ ଉଜ୍ଜ୍ୱଳତାକୁ ମ୍ଳାନ କରିଦିଏ, ରସାବେଦନରେ ବିଡମ୍ବନା ସୃଷ୍ଟିକରେ ଓ କାବ୍ୟକୁ ଅଲୋଡା କରିଦିଏ। ଶ୍ରୀହର୍ଷ ଓ ଭଂଜଙ୍କ ପରି କବିମାନେ ଅଳଙ୍କାରକୁ ବିଚକ୍ଷଣ ସୌନ୍ଦର୍ଯ୍ୟ-ବ୍ୟଂଜକ ଗଠନକଳାର ପ୍ରସଙ୍ଗ ଭାବରେ ମାନିନେଇ ଅଳଙ୍କାରପ୍ରବଣ ପାଠକଙ୍କୁ ଉପଯୁକ୍ତ କାବ୍ୟରସ ଗ୍ରାହକ ଭାବରେ ସ୍ୱାଗତ କରିଛନ୍ତି। ଅଳଙ୍କାର ପିପାସୁ ପାଠକହିଁ ସାଧୁ-ପଣ୍ଡିତଜନ ଓ ସେହିମାନେ ହିଁ କାବ୍ୟବିବେଚକ ହେବାକୁ ଯୋଗ୍ୟ – ଏପରି ବିଶ୍ୱାସ ଓ କାବ୍ୟଜଗତୀୟ ପ୍ରସିଦ୍ଧି ବଳିଷ୍ଠ ରହିଛି। କାଳିଦାସଙ୍କ ଦୃଷ୍ଟିରେ ଅଳଙ୍କାର ହିଁ ସୌନ୍ଦର୍ଯ୍ୟ। ଅଳଙ୍କାର ଚାରୁତା କାବ୍ୟକୁ ସୌଭାଗ୍ୟସୁଖଦ କରିତୋଳେ। ଭାରବିଙ୍କ ନିମନ୍ତେ ରମ୍ୟ-ରୂପ-ବିଭୂତି ନିମନ୍ତେ ଅଳଙ୍କାର ହିଁ କାବ୍ୟର ସୌନ୍ଦର୍ଯ୍ୟାତ୍ମକ ବୀଜମନ୍ତ୍ର।

ମୋଟ ଉପରେ ଶବ୍ଦ ଓ ଅର୍ଥକୁ ସ୍ଫୁଲିଙ୍ଗାୟିତ ରଂଜନୀଶକ୍ତିରେ ଚମତ୍କୃତ କରି କାବ୍ୟର ଅନ୍ତର୍ନିହିତ ସୁଷମା ବିଧାନରେ ଅଳଙ୍କାରର ଚିତ୍ର ବିନ୍ୟାସୀ ଓ ସୌନ୍ଦର୍ଯ୍ୟ ସଂଚାରୀ ଅବଦାନ ଚିତ୍ର ମୀମାଂସାତ୍ମକ ସମୀକ୍ଷାତତ୍ତ୍ୱଟିଏ ବିକଶିତ କରାଇଛି। ଶବ୍ଦ ଓ ଅର୍ଥ ମିଳନ ଧର୍ମରେ ବିମଣ୍ଡିତ ହୋଇ ଭାବକୁ ମୂର୍ତ୍ତିମନ୍ତ କରେ, ମୃଦୁମୟ କରେ ଓ ଏଥିପାଇଁ ରୂପାତ୍ମକ / ଚିତ୍ରାତ୍ମକ ଦୃଶ୍ୟଧର୍ମରେ ଉଦ୍‌ଭାସନ କରାଇପାରୁଥିବା ଅଳଙ୍କାରକୁ ଆଶ୍ରୟ କରିଥାଏ– ଏ ପ୍ରକାର ସମୀକ୍ଷା ଦୃଷ୍ଟି ଭରତ-ଭାମହଙ୍କ ଠାରୁ ଅପ୍ପୟଙ୍କ ପର୍ଯ୍ୟନ୍ତ (ଖ୍ରୀ.ପୂ. ୨୦୦-ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀ ଠାରୁ– ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ) ବିସ୍ତାରଲାଭ କରିଛି। ଆମ ଆଳଙ୍କାରିକ କାବ୍ୟ ପରଂପରାରେ ଉପେନ୍ଦ୍ରଭଂଜ ଓ ତାତ୍‌କାଳୀନ ସମଧର୍ମୀ କାବ୍ୟନିର୍ମାତାମାନେ କାବ୍ୟରେ ଅଳଙ୍କାର ସଂଯୁକ୍ତି ଉପରେ ପ୍ରାଧାନ୍ୟ ଦେବା ଅଭିନବ ସର୍ଜନଶୀଳତାର ପରିଚାୟକ (ସାମନ୍ତବାଦୀ ବ୍ୟବସ୍ଥାବୃତ୍ତରେ ସୂଚକ ବି) ହୋଇଛି। ଅଳଙ୍କାରର ମାର୍ଜିତ ଓ ଚାରୁ ସନ୍ନିବେଶ ପ୍ରମାଣ କରି ଆସିଛି ଯେ– 'ଚମତ୍କାର ସର୍ବବ୍ୟାପୀ' ଓ ଏ ଚମତ୍କାରିତା ଆଳଙ୍କାରିକ ଗଠନସୌନ୍ଦର୍ଯ୍ୟ ମଧ୍ୟରେ ମାନସମୋହନ କରିଥାଏ।

(ଆଠ)

ଆଲୋଚନାର ପୂର୍ବପର୍ଯ୍ୟାୟଗୁଡ଼ିକରୁ ଏହା ନିଶ୍ଚିତବୋଧ ହୋଇଛି ଯେ ଭାରତୀୟ ସମୀକ୍ଷାତତ୍ତ୍ୱ ଭାବବାଦୀ ଓ ରୂପବାଦୀ ବିଚାରନିଷ୍ଠ ହୋଇ ବିବିଧ ପ୍ରସ୍ଥାନର ବିକାଶ ସାଧନ କରିଛି। ମାତ୍ର ଖୁବ୍ ସତର୍କତାର ସହିତ ଲକ୍ଷ୍ୟକଲେ ଦେଖାଯିବ ରସ-ରୀତି-ଧ୍ୱନି-ବକ୍ରୋକ୍ତି ଆଦି ପ୍ରସ୍ଥାନ ପ୍ରବକ୍ତାଙ୍କ ଅପେକ୍ଷା କାବ୍ୟ ପରଂପରାରେ କାବ୍ୟଶାସ୍ତ୍ରୀୟ ତତ୍ତ୍ୱ କଳନା ବେଳେ କାବ୍ୟର ଉଭୟ ଭାବପ୍ରସ୍ଥ ଓ ରୂପଗ୍ରସ୍ଥ ଭିତରେ ପାରସ୍ପରିକ ଉପକାରକ ସମ୍ବନ୍ଧ ରକ୍ଷାକରି ଅନେକ କାବ୍ୟଶାସ୍ତ୍ରୀ 'ସମନ୍ୱୟପନ୍ଥୀ' ଆଳଙ୍କାରିକ ରୂପେ ଅଧିକ ଆଦର ଭାଜନ ହୋଇଛନ୍ତି। ଏପରିକି ମଧ୍ୟଯୁଗୀୟ ଭାରତୀୟ କାବ୍ୟ-ରସ-ରୀତି-ଗୁଣ-ଧ୍ୱନି-ବକ୍ରୋକ୍ତି-ଅଳଙ୍କାର ଆଦିର ସମ୍ମିଶ୍ରଣ ଘଟିଛି। ଚମତ୍କାର ଆବେଦନ ଓ ପ୍ରୟୋଜନ ଉପରେ କାବ୍ୟ ରଚୟିତାମାନେ ଗୁରୁତ୍ୱ ଦେଇଛନ୍ତି। କାବ୍ୟରଚନା ଅପେକ୍ଷା କାବ୍ୟରଚନା ପରବର୍ତ୍ତୀ ପ୍ରଭାବ ଓ ଉପାଦେୟତା ମୁଖ୍ୟ ହୋଇଉଠିଛି। କବି-କାବ୍ୟ ଓ ସହୃଦୟତା (ପାଠକୀୟ ଆବେଦନ)କୁ ନେଇ କାବ୍ୟତ୍ରିଭୁଜ ମଧ୍ୟରେ କାବ୍ୟର ଚମତ୍କାରୀ ପ୍ରଭାବ ହିଁ ଉତ୍କର୍ଷ ଅପକର୍ଷ ନିର୍ଣ୍ଣୟ ଭିତ୍ତିରେ ସମାଲୋଚନାର ବିଶେଷ ପ୍ରତିପାଦ୍ୟ ହୋଇଛି। ସମନ୍ୱୟବାଦୀ ସମୀକ୍ଷାପଦ୍ଧତି କାବ୍ୟଗଢ଼ଣ ଓ ବିଚାରର ଚାରୋଟି ଦିଗଉପରେ ପ୍ରାଧାନ୍ୟ ଦେଇ ପ୍ରସାରଲାଭ କରିଛି। ସେଗୁଡ଼ିକ ହେଉଛି – କାବ୍ୟଲକ୍ଷଣ, କାବ୍ୟସ୍ଫୂର୍ତ୍ତିର ହେତୁ, କାବ୍ୟର ପ୍ରୟୋଜନ ଓ କାବ୍ୟାବେଦନ। ସମନ୍ୱୟବାଦୀ କାବ୍ୟଶାସ୍ତ୍ରୀଙ୍କ ମଧ୍ୟରୁ ରାଜଶେଖର ଓ ମମ୍ମଟ, ଏପରିକି ରସବାଦୀ ବିଶ୍ୱନାଥଙ୍କୁ ମଧ୍ୟ ଅନ୍ୟତମ ଭାବରେ ବିଚାର କରାଯାଇପାରେ।

ଅନେକ ଆଳଙ୍କାରିକ କାବ୍ୟର କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ନିରୂପଣ କରି ନଥିଲେ ମଧ୍ୟ ସାହିତ୍ୟ ସର୍ଜନ ପ୍ରକ୍ରିୟାରେ ନିର୍ଦ୍ଦୋଷତା ଓ ଉତ୍କର୍ଷତା ନିମନ୍ତେ ଏକ ଏକ ଅଭିନବ ଓ ବଳିଷ୍ଠ ଦିଗ ଉନ୍ମୋଚନ କରିଛନ୍ତି। କାବ୍ୟରଚନାକୁ ସରଳ, ସ୍ପଷ୍ଟ ଓ ସାଧାରଣୀକରଣରେ ସ୍ୱଭାବସିଦ୍ଧ କରିବାପାଇଁ ମୁକୁଳଭଟ୍ଟଙ୍କ ଅଭିଧା ଶବ୍ଦବୃତ୍ତିର ଶକ୍ତିବିବେଚନା, ଭଟ୍ଟତୌତଙ୍କ କାବ୍ୟ ପ୍ରସ୍ତୁତିକରଣରେ ଭାବ-ବିଭାବାଦି ରସାଙ୍ଗମାନଙ୍କର ଶବ୍ଦକୌତୁକ କ୍ରୀଡାର ବୈଚିତ୍ର୍ୟ, ଧନିକଙ୍କ କାବ୍ୟାପ୍ରଭାବ ନିମନ୍ତେ ଅର୍ଥ ଭିତରେ ଅର୍ଥକରଣର ଚମତ୍କାରୀ ତାତ୍ପର୍ଯ୍ୟ ଶକ୍ତିର ନିରୂପଣ, ଭଟ୍ଟନାୟକଙ୍କ କାବ୍ୟିକ ରସାନୁଭୂତିର ଭୋଗୀକୃତ ସାଧାରଣୀକରଣ, ଧନଞ୍ଜୟଙ୍କ କାବ୍ୟିକ ଚରିତ୍ରାନୁଶୀଳନ ଓ ନାୟିକାଭେଦ, ମହିମଭଟ୍ଟଙ୍କ କବିର 'ବ୍ୟକ୍ତି-ବିବେକତ୍ୱ' ଭିତ୍ତିରେ ସମୂହନିଷ୍ଠ କାବ୍ୟ ବିବେକର ନିରୂପଣ, ରୁଚକଙ୍କ କବିଭେଦ ଓ କାବ୍ୟାନନ୍ଦ ବିଚାର, ଭାଗଭଟ୍ଟ ୧ମ ଓ ୨ୟଙ୍କ କାବ୍ୟାଭାଷା ଓ କବି ସମୟ-ପରଂପରା ସମ୍ବନ୍ଧୀ ତର୍କଣା, ବିଦ୍ୟାଧରଙ୍କ ବୃତ୍ତିବିଚାର ଓ ଅପ୍ପୟଙ୍କ

ଅଳଙ୍କାରୋଚିତ ଚିତ୍ରମୀମାଂସା ଓ କବିଶିକ୍ଷା ଇତ୍ୟାଦି ବିଚାରବନ୍ତ ଅଭିମତ ଏ କ୍ଷେତ୍ରରେ ସ୍ମରଣୀୟ ।

ଆଧୁନିକ ସମାଜତତ୍ତ୍ୱ ଅନୁସାରେ ପ୍ରତିକାଳରେ ବିଶ୍ୱମାନବର ଜ୍ଞାନବିକାଶର ଇତିହାସ ମୁଖ୍ୟତଃ ପ୍ରୟୋଜନବୋଧ ଉପରେ ନିରୂପିତ ହୋଇଆସିଛି । ଏହାହିଁ ନିର୍ବିବାଦୀୟ ସତ୍ୟ– ପୁରୁଣାକୁ ଛାଡ଼ିବା ଓ ବର୍ତ୍ତମାନକୁ ଆପଣାପଣରେ ନୂଆ କରି ତିଆରି କରି ନିଜ ସମକାଳକୁ ପୂର୍ବାପେକ୍ଷା ଯୋଗ୍ୟ କରି ଛିଡ଼ା କରାଇବା ଇଚ୍ଛାକୁ କେନ୍ଦ୍ରକରି ବ୍ୟକ୍ତି ଓ ଜାତି ନବନବ ଚେତନାର ଉନ୍ମେଷ ସାଧନରେ ପ୍ରଯତ୍ନମନା ହୋଇ ଆସିଛି । ନୂଆ କରିବାକୁ ଯାଇ ନୂଆ ନୂଆ ପ୍ରୟୋଜନ ଓ ସମସ୍ୟାର ସମ୍ମୁଖୀନ ହୋଇଛି । ତହିଁରୁ ମୁକୁଳିବା ଓ ଭିନ୍ନରୁଚିର୍ ଆଭିମୁଖ୍ୟଟିଏ ପ୍ରଚଳନ କରିବା ନିମନ୍ତେ ଉପାୟ ପାଞ୍ଚିଛି । ଭାବନା ଅନୁସାରେ ସୂତ୍ର ଓ ସୂତ୍ରାନୁସାରେ ନୂଆ ପ୍ରକାରର ଉତ୍ପାଦନ ସଂଭବ କରିଛି । ଏହି ପ୍ରକ୍ରିୟାକରଣରୁ ସାହିତ୍ୟବୃତ୍ତି ବି ଦୂରେଇଯିବାର ଚାରା ରଖିନି । ସାହିତ୍ୟ ରଚନା ମଧ୍ୟ ଅନ୍ୟାନ୍ୟ ମାନବୀୟ, ସାମାଜିକ ଓ ସାଂସ୍କୃତିକ ପ୍ରସଙ୍ଗ ପରି ପ୍ରୟୋଜନବୋଧରୁ ଉତ୍ପାଦିତ ହୋଇଛି । ନୂଆ ରୂପରେ, ନୂଆ ଆବଶ୍ୟକତାର ପରିପୂରଣରେ ଓ ନୂଆରୁଚିରେ ବିନୋଦନ କରିବାରେ କାବ୍ୟରଚନାର ଉଦ୍ଦେଶ୍ୟ ପରିବର୍ତ୍ତିତ ହୋଇଆସିଛି । ପୂର୍ବପ୍ରସିଦ୍ଧିକୁ ଭାଙ୍ଗି କାବ୍ୟର ନବନିର୍ମାଣ ପାଇଁ ଅପ୍ରତ୍ୟାଶ୍ରିତ ପ୍ରେରଣାଶକ୍ତି, ଦିବ୍ୟ ଉନ୍ମତ୍ତତା, ଅଦ୍‌ଭୁତ ଓ ନୈସର୍ଗିକୀ ପ୍ରତିଭାଶକ୍ତି, ଅପୂର୍ବ ମୂର୍ତ୍ତି ନିର୍ମାଣକ୍ଷମ ଭାବନା ଶକ୍ତି, ନବନବୋନ୍ମେଷଶାଳିନୀ ପ୍ରଜ୍ଞା ଓ ପ୍ରଜ୍ଞାଶକ୍ତିର ତ୍ରିକାଳିକ ମଣ୍ଡା ବିସ୍ତାର, ବିଭାବନକାରକ ବର୍ଣ୍ଣନା, ପୂର୍ବଜନ୍ମର ସଂସ୍କାର, ଅର୍ଜିତ ଶାସ୍ତ୍ରଜ୍ଞାନ ଓ ବାରମ୍ବାର ପ୍ରଯତ୍ନଶୀଳ ଅଭ୍ୟାସ ଇତ୍ୟାଦିକୁ ସ୍ଫୁରଣହେତୁ ଏବଂ ପ୍ରୟୋଜନକୁ ଉଦ୍ଦେଶ୍ୟ ଓ ପ୍ରସାରର କାରଣ ରୂପେ କାବ୍ୟଶାସ୍ତ୍ରୀମାନେ ବିବେଚନା କରିଛନ୍ତି । ଏହି ବିବେଚନା ଧାରାରେ ଭାମହ, ଦଣ୍ଡୀ, ବାମନ, ଆନନ୍ଦବର୍ଦ୍ଧନ, ରୁଦ୍ରଟ, ରାଜଶେଖର, ହେମଚନ୍ଦ୍ର, ଜୟଦେବ, ବାଣଭଟ୍ଟ, ମମ୍ମଟ ଓ ଜଗନ୍ନାଥ ପ୍ରମୁଖଙ୍କ ବିଚାରଦୃଷ୍ଟି ସମୀକ୍ଷାତତ୍ତ୍ୱରେ ସ୍ୱତନ୍ତ୍ର ଅଧ୍ୟାୟର ପରିଚାୟକ । କାବ୍ୟ ନିର୍ମାଣର ହେତୁ ବା କାରଣକୁ ନେଇ ଦୁଇଶ୍ରେଣୀୟ ବିଚାର ପରିଦୃଷ୍ଟ ହୁଏ– ପ୍ରତିଭାକେବଳାମତ ଓ ମିଶ୍ରମତ । ନିଜ ରୁଚି ଅନୁସାରେ ନୂଆ ନୂଆ ଭାବୋନ୍ମେଷ କରିବାର ଇଚ୍ଛାଶକ୍ତି ହେତୁ ସୁକବି ଚେତନାକୁ ଅଚେତନ ଓ ଅଚେତନକୁ ଚେତନରେ ପରିଣତ କରିବାର ନିର୍ମାଣ ଦକ୍ଷତା ପ୍ରଦର୍ଶନ କରେ । ଏହି ଦକ୍ଷତାର ସଫଳ ପରିଣାମ ହେଉଛି କାବ୍ୟ ଓ ଏହାର ନିର୍ମାଣ ହେତୁ ହେଉଛି– ପ୍ରତିଭା (ଭିନ୍ନମତରେ ଶକ୍ତି) ବ୍ୟୁତ୍ପତ୍ତି ଓ ଅଭ୍ୟାସ । ପ୍ରତିଭା ଶକ୍ତିର ପ୍ରଭୁତ୍ୱକୁ କେବଳ ସ୍ୱୀକାର କରୁଥିବା ଆଳଙ୍କାରିକମାନେ ହେଉଛନ୍ତି ଭାମହ, ବାମନ, ହେମଚନ୍ଦ୍ର, ଭଟ୍ଟତୌତ, ବାଗ୍‌ଭଟ୍ଟ, କେଶବ, ଜୟଦେବ ଓ ଜଗନ୍ନାଥ । ଏମାନଙ୍କ ମତରେ କାବ୍ୟର କାରୟିତ୍ରୀ ପ୍ରତିଭା ବା କେବଳ ନିର୍ମାଣଶକ୍ତି ହିଁ

କାବ୍ୟ ସ୍ଫୂର୍ତ୍ତିର ହେତୁ। ବ୍ୟୁତ୍ପତ୍ତି (ଶାସ୍ତ୍ରଜ୍ଞାନ) ଓ ଅଭ୍ୟାସ (ପୂର୍ବସ୍ୱରୀକ ରଚନାକୌଶଳଠାରୁ ନିର୍ମାଣ ତରିକା ଶିକ୍ଷା କରି ତଦନୁସାରେ ଅଥବା ତାହାଠାରୁ ନୂଆକରି କାବ୍ୟ ପ୍ରସ୍ତୁତ କରିବାର ବାରମ୍ବାର ପ୍ରଯତ୍ନ) ଏ ଦୁଇଟି ଉପାୟ କାବ୍ୟ ପ୍ରତିଭାର ସଂସ୍କାର ଓ କାବ୍ୟକୁ ଗୁଣାତ୍ମକ ଦୋଷଶୂନ୍ୟ ନୂଆଢ଼ଙ୍ଗର କରିବାରେ ଉପକାରକ ହୋଇଥାନ୍ତି। ଭାମହଙ୍କ ମତରେ ପ୍ରତିଭା କାବ୍ୟକ୍ରିୟାବର ଶକ୍ତି। ବାମନ କବିତ୍ୱ ବୀଜ ଭାବରେ ପ୍ରତିଭାକୁ ସମର୍ଥନ କରିଛନ୍ତି (କବିତ୍ୱ ବୀଜଂ ପ୍ରତିଭାନଂ)। ଭାଗଭଟ୍ଟ, କେଶବମିଶ୍ର ଓ ହେମଚନ୍ଦ୍ର ପ୍ରତିଭାକୁ କାବ୍ୟକଳ୍ପର ହେତୁ ଓ ଅନ୍ୟଦୁଇଟିକୁ ଉତ୍କର୍ଷ-ଉପକାରକ ଉପାୟ ଭାବରେ ପ୍ରତିପାଦନ କରିଛନ୍ତି। ଜଗନ୍ନାଥ ଅଦୃଷ୍ଟକାରଣ ଓ ଦୃଷ୍ଟକାରଣ ଭିତ୍ତିରେ ଅନୁଭୂତିର କାବ୍ୟାନୁକୂଳ ଅଭିବ୍ୟକ୍ତି ନିମନ୍ତେ ଶବ୍ଦାର୍ଥର ଉପସ୍ଥିତି ଘଟାଉଥିବା ସାମର୍ଥ୍ୟ ପ୍ରତିଭାକୁ କାବ୍ୟ ନିର୍ମାଣର ଏକମାତ୍ର ହେତୁ (ପ୍ରତିଭା ଏକ କେବଳା କାରଣଂ) ବୋଲି ଦୃଢ଼ୋକ୍ତି ପ୍ରକାଶ କରିଛନ୍ତି।

ସମନ୍ୱୟପନ୍ଥୀଙ୍କ ମତରେ କେବଳ ପ୍ରତିଭା ନୁହେଁ, ପ୍ରତିଭା ସହିତ ବ୍ୟୁତ୍ପତ୍ତି ଓ ଅଭ୍ୟାସର ସଶକ୍ତ ମିଳନରେ କାବ୍ୟସ୍ଫୁରଣ ହୋଇଥାଏ। ଦଣ୍ଡୀ, ରୁଦ୍ରଟ ଓ ମମ୍ମଟ ଏକ୍ଷେତ୍ରରେ ନିଜ ନିଜର ସ୍ୱତନ୍ତ୍ର ମତପୋଷଣ କରିଛନ୍ତି। ଦଣ୍ଡୀଙ୍କ ବିଚାରରେ ପ୍ରତିଭା ନୈସର୍ଗିକୀ ଓ ନିର୍ମଳ ଦୃଷ୍ଟିମତ୍ତା ଏହାର ବୈଶିଷ୍ଟ୍ୟ। କବିର ସହଜାତ ପ୍ରତିଭା ନିର୍ମଳ ଅନୁଭୂତି-ଦୃଷ୍ଟି-ଜ୍ଞାନଭିତ୍ତିକ ବ୍ୟୁତ୍ପତ୍ତି ଓ ଦୋଷରହିତ ଅଭ୍ୟାସ ସହିତ ମିଶି ଅମନ୍ଦକାବ୍ୟ ସଂପଦ ଉତ୍ପାଦନର କାରଣ ହୋଇଥା'ନ୍ତି। ରୁଦ୍ରଟଙ୍କ ମତରେ ଏ ତ୍ରିବିଧଶକ୍ତିର ପ୍ରିୟ ଓ ବ୍ୟାପକ ସାପେକ୍ଷପଣରେ ମିଳନ ନଘଟିଲେ ସୁକାବ୍ୟ ସଂଭବ ହୁଏ ନାହିଁ। ଆନନ୍ଦ ବର୍ଦ୍ଧନଙ୍କ ମତରେ ଶକ୍ତି ବା ପ୍ରତିଭା ହେଉଛି ଅନନ୍ତ ଓ ଏହା କାବ୍ୟତା (ଧ୍ୱନ୍ୟାତ୍ମକ/ଗୁଣୀଭୂତ ବ୍ୟଙ୍ଗାତ୍ମକ/ଚିତ୍ରାତ୍ମକ ବା ଉତ୍ତମ-ମଧ୍ୟମ-ଅଧମତ୍ୱସଂପନ୍ନ) ପାଇଁ ମହତ୍ତ୍ୱପୂର୍ଣ୍ଣ। ମାତ୍ର ଶାସ୍ତ୍ରାଦିଜ୍ଞାନ ଓ ରଚନାର ଏକାଗ୍ରଉଦ୍ୟମ ପ୍ରତିଭାଶାଳୀ କବିଙ୍କୁ ପୁରାତନରେ ନୂତନତା ରୂପାୟଣରେ ଯୋଗ୍ୟ କରିଦେଇଥାଏ। ପ୍ରତିଭା ଶାସ୍ତ୍ରଜ୍ଞାନ ଓ ନବନିର୍ମାଣ ଉପାୟ ବଳରେ କବିଙ୍କୁ ଭାବ ପ୍ରଦର୍ଶନକାରୀ କରିଦିଏ। ମମ୍ମଟଙ୍କ ବିଚାର ଏକ୍ଷେତ୍ରରେ ପରିଚ୍ଛନ୍ନ। ଶକ୍ତି ନିପୁଣ/ପ୍ରତିଭାଧର କବି ଲୋକ ବ୍ୟବହାର ଓ କାବ୍ୟାଦିର ପର୍ଯ୍ୟାଲୋଚନା ସହିତ ରଚନା କରିବାର ନବ ଉପାୟର ଅଭ୍ୟାସ ବଳରେ ବିଲକ୍ଷଣଯୁକ୍ତ ବାଙ୍‌ନିର୍ମିତି କରିଥାନ୍ତି। ସଂସ୍କାରୋଚିତ ନିର୍ମିତି ଶକ୍ତି ହିଁ ହେଉଛି କବିତ୍ୱ ବୀଜରୂପ ପ୍ରତିଭା। ଏହି ପ୍ରତିଭା ଅନ୍ୟଦୁଇଟି କାରଣ ସହିତ ମିଶି (ଶାସ୍ତ୍ରଶିକ୍ଷା ଓ କବିଶିକ୍ଷା/ବାରମ୍ବାର ଏହାର ପ୍ରୟୋଗାତ୍ମକ ଅଭ୍ୟାସ) ସମୁଲ୍ଲାସ କାବ୍ୟ ନିର୍ମାଣ ସଂଭବ ହୋଇଥାଏ।

ଏ କ୍ଷେତ୍ରରେ ସମନ୍ୱୟବାଦୀ ରାଜଶେଖରଙ୍କର କବି-କାବ୍ୟ-କାବ୍ୟପ୍ରତିଭା ସଂପର୍କିତ ବିଚାର ଅଧିକ ସ୍ୱାତନ୍ତ୍ର୍ୟସମ୍ମତ। ତାଙ୍କ ମତରେ ଏକାଗ୍ରତା ଓ ଅଭ୍ୟାସ

ମାଧ୍ୟମରେ କବିର କାବ୍ୟରଚନାଯୋଗ୍ୟ ଅନୁଭୂତିକୁ ପ୍ରକାଶ କରିବାର ଶକ୍ତି ଉଦ୍‌ଭାସିତ ହୁଏ। ବ୍ୟୁତ୍ପତ୍ତି, ଶବ୍ଦାର୍ଥ ନିରୂପଣ ଓ ପ୍ରୟୋଗଜନିତ ପ୍ରତିଭା ମିଶି ଏହି ଶକ୍ତିକୁ ବିସ୍ତାରଣକ୍ଷମ କରାଇଥାଏ। ପ୍ରତିଭା ଶବ୍ଦ, ଅର୍ଥ, ଆଳଙ୍କାରିକ ବିନ୍ୟାସ ଓ ବଚନବିନ୍ୟାସ ପର୍ଯ୍ୟନ୍ତ ସୀମାବଦ୍ଧ। କିନ୍ତୁ ପ୍ରତିଭା ଓ ବ୍ୟୁତ୍ପତ୍ତି ମିଶ୍ରିତ ଶକ୍ତି ଭାବର ମୂର୍ତ୍ତିମାନ ପ୍ରତ୍ୟକ୍ଷୀକରଣ କରିପାରିଥାଏ। ପ୍ରତିଭାବନ୍ତ ଓ ବ୍ୟୁତ୍ପତ୍ତି ଜ୍ଞାନୀ ଶାସ୍ତ୍ରକବି ହୋଇପାରନ୍ତି। ମାତ୍ର ଯଥାର୍ଥ କାବ୍ୟକବି ହେବାକୁ ତ୍ରିବିଧ ପ୍ରତିଭା (ସହଜା-ଆହାର୍ଯ୍ୟା-ଔପଦେଶିକୀ) ଓ ବ୍ୟୁତ୍ପତ୍ତି ମିଶ୍ରିତ ପ୍ରତ୍ୟକ୍ଷୀକରଣ ଶକ୍ତି ହିଁ ଶ୍ରେୟସ୍କର (ସାଶକ୍ତିଃ କେବଳ କାବ୍ୟହେତୁଃ)।

ଯଥାର୍ଥ କାବ୍ୟକବି ଓ ଉତ୍ତମ ଭାବନାର ସଶକ୍ତ କାବ୍ୟ ପ୍ରସାରଣ ଇଚ୍ଛୁକ ଓ ପ୍ରୟୋଜନବୋଧ ପ୍ରତି ସର୍ବଦା ଉନ୍ମୁଖ। ଏଥିପ୍ରତି ସଚେତନ ରହି ଭାରତୀୟ ସମୀକ୍ଷାଶାସ୍ତ୍ରୀମାନେ କାବ୍ୟର ଭେଦ ଓ ପ୍ରୟୋଜନ ଉପରେ ଗୁରୁତ୍ୱ ଦେଇ ଆସିଛନ୍ତି। ପ୍ରୟୋଜନବୋଧକୁ ଆଧାର କରି ନନ୍ଦନବାଦୀ ତତ୍ତ୍ୱ, ହିତବାଦୀ ତତ୍ତ୍ୱ ଓ ନୀତିବାଦୀ ତତ୍ତ୍ୱର ବିକାଶ ଘଟିଛି। ଉତ୍ତମ କାବ୍ୟ ସହୃଦୟ ହୃଦୟରେ ଓ ସାମାଜିକ ଅବସ୍ଥାରେ ଆନନ୍ଦ ସଂଚାର କରେ, କଲ୍ୟାଣ ଖେଳାଇ ଦିଏ ଓ ନୈତିକ ଅଭିଳାଷ ଉଦ୍‌ବୋଧିତ କରେ– ଏପ୍ରକାର ଆବଶ୍ୟକତା ମଧ୍ୟରେ କାବ୍ୟ ରଚନା ଓ ପଠନର ପ୍ରସାରସାଧିତ ହୋଇଛି। କାବ୍ୟନିର୍ମିତି ନିର୍ମାଣରୁ ଉଭୟ କବି ଓ ପାଠକ ଜୀବନନିଷ୍ଠ ଓ ଉତ୍ତମ ଉପାଦେୟଗୁଡ଼ିକୁ ଲୋଡ଼ି ବସିଛନ୍ତି। ସମାଜ ବିଶୃଙ୍ଖଳା, ସାର୍ବିକ ହିତ ଓ ସଦ୍‌ଭାବନା ପାଇବା ପାଇଁ କମ୍ ଯାଚନାଚକ୍ଷୁରେ କାବ୍ୟ ଜଗତ ଆଡ଼କୁ ଚାହିଁନାହିଁ। ଏ ପ୍ରସଙ୍ଗରେ ପ୍ରାଚ୍ୟ ସମୀକ୍ଷାତତ୍ତ୍ୱ ସମୁଚିତ ଓ ସମୁତ୍ସାହିତ ଆଲୋଚନାରେ ପ୍ରବୃତ୍ତ ରହିଛି। ଉପାଦେୟତାଗୁଡ଼ିକୁ ଅଙ୍ଗୀକାର କରି କିପରି ପାଠକ ଚାହିଦାନୁସାରୀ ଲୋଡ଼ିବାପଣର କାବ୍ୟ ରଚିତ ହୋଇପାରିବ ସେଥିପ୍ରତି ଗଠନାତ୍ମକ ଦୃଷ୍ଟିପାତ ସମୀକ୍ଷା ବ୍ୟବସ୍ଥାରେ କମ୍ ଘଟି ନାହିଁ। ଆଦି କାବ୍ୟଶାସ୍ତ୍ରୀ ଭରତଙ୍କଠାରୁ କାବ୍ୟଫଳଶ୍ରୁତିର ଶେଷ ବିଚାରକ ବିଦ୍ୟାନାଥଙ୍କ ପର୍ଯ୍ୟନ୍ତ ପ୍ରୟୋଜନବୋଧାତ୍ମକ କାବ୍ୟାବେଦନ ଉପରେ ନିରଳସ ଆଲୋଚନା ଉପଲବ୍ଧ ହୋଇଆସିଛି।

ପ୍ରାଚ୍ୟ କାବ୍ୟଶାସ୍ତ୍ରରେ କାବ୍ୟାଧ୍ୟୟନର ସୋପାନ ଚତୁଷ୍ଟୟ ଉପରେ ଗୁରୁତ୍ୱ ଦିଆଯାଇଛି। ପ୍ରୟୋଜନ > ଅଧିକାର > ସମ୍ବନ୍ଧ > ବିଷୟବସ୍ତୁ– ପରସ୍ପର ସହବନ୍ଧିତ ଏହିକ୍ରମଚତୁଷ୍ଟୟ ଦେଇ କାବ୍ୟମୂଲ୍ୟ ନିରୂପଣ କରାଯାଏ। ପ୍ରୟୋଜନ କାବ୍ୟର ନିର୍ମାଣ ଓ ପଠନ ଉଦ୍ଦେଶ୍ୟ ସହିତ ଜଡ଼ିତ। ଲୋକବିଶ୍ୱାସ ସମର୍ଥନ କରେ–ବସ୍ତୁଟିଏ ବି ଗ୍ରହଣ କରିବା ପଛରେ ପ୍ରୟୋଜନ ରହିଛି (ଯାବତ୍ ପ୍ରୟୋଜନଂ ନୋକ୍ତ ତାବତ୍ ତତ୍‌କେନ ଗୃହ୍ୟତେ)। ଏପରିବି କଥିତ ଅଛି – ପ୍ରୟୋଜନ ନଥିଲେ ମନ୍ଦ ବି ସହଜରେ ପ୍ରବର୍ତ୍ତିତ

ହୋଇପାରନ୍ତିନି (ପ୍ରୟୋଜନଂ ଅନୁଦ୍ଦିଶ୍ୟ ନ ମନ୍ଦୋଽପି ପ୍ରବର୍ତ୍ତତେ)। ସୁତରାଂ କାବ୍ୟନିର୍ମାଣ ପରି ଖ୍ୟାତିକର ଶ୍ରମସାଧନରେ ପ୍ରୟୋଜନବୋଧର ମହତ୍ୱ ଘୋଷଣା ହେବ ହିଁ ହେବ। ଏହି ଔଚିତ୍ୟବୋଧ ପ୍ରତି ସଚେତନ ରହି କାବ୍ୟଭାବୟିତ୍ରୀ ପ୍ରତିଭାମାନେ କାବ୍ୟ ଲିଖନ/ପଠନରୁ–ଆହ୍ଲାଦ, ବିନୋଦ, ଯଶଃ, ଅର୍ଥ, କାମ, ଲୋକଶିକ୍ଷା, ବୃତ୍ତି ବୈଚକ୍ଷଣ, ଧର୍ମ, ବିଶ୍ରାମ, ବୁଦ୍ଧିବିକାଶ, କଳ୍ପନା ଶକ୍ତିର ବିକାଶ, ଉଦାହୃତ, ସ୍ମୃତି ସାଂସ୍କୃତିକ ଅସ୍ମିତା ଓ ମୋକ୍ଷ ଇତ୍ୟାଦି ପ୍ରୟୋଜନଗୁଡ଼ିକ ପୂରଣ କରିଥା'ନ୍ତି ବୋଲି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି। ମୁଖ୍ୟତଃ ଧର୍ମ, ଅର୍ଥ, କାମ, ମୋକ୍ଷ ଓ ଯଶଃ– ମାନବ ଜୀବନର ଏ ସକଳ ପୁରୁଷାର୍ଥକୁ ସମସ୍ତେ ସାମାନ୍ୟ ଅଭିଧାର ବ୍ୟତିକ୍ରମ ମଧ୍ୟରେ କାବ୍ୟ-ପ୍ରୟୋଜନ ଭାବରେ ସ୍ୱୀକାର କରିନେଇଛନ୍ତି। ନିୟତି, ଐତିହ୍ୟ, ପରମାର୍ଥ ଓ ନୀତି– ପ୍ରାଚ୍ୟ ଜୀବନଚର୍ଯ୍ୟା ଓ ପ୍ରାଚ୍ୟ ମାନବବିଦ୍ୟାର ଚତୁଷ୍କ ବିଚାର ମଂଚ ହୋଇ ରହିଛି, ଯାହା କାବ୍ୟ ପ୍ରୟୋଜନର ପରିଧିକୁ ମଧ୍ୟ ପ୍ରଭାବିତ କରିଛି।

ପ୍ରଥମେ ଭରତ ପୁରୁଷାର୍ଥ ସହିତ ବିଶ୍ରାନ୍ତି, ବୁଦ୍ଧିବର୍ଦ୍ଧନ, ପ୍ରୀତି, ଉପଦେଶ ଲୋକଶିକ୍ଷା ସହିତ ଶ୍ରମ-ଦୁଃଖ-ଶୋକ ଅପନୋଦନ ଉପାୟଗୁଡ଼ିକ ଦୃଶ୍ୟକାବ୍ୟରୁ ଉପଲବ୍ଧ ହୋଇଥାଏ ବୋଲି ଦର୍ଶାଇଛନ୍ତି। ଭାମହ ଲକ୍ଷଣଶୂନ୍ୟ ଦୋଷଯୁକ୍ତ କାବ୍ୟକୁ କୁପୁତ୍ର ବତ୍ ନିନ୍ଦା କରିଛନ୍ତି। ସାଧୁ କାବ୍ୟର ଉପଯୋଗିତାକୁ ସମର୍ଥନ କରି ସୁକବି ଦ୍ୱାରା ଚାରୋଟି ପୁରୁଷାର୍ଥ ସହିତ କୀର୍ତ୍ତି, ପ୍ରୀତି ଓ ନୃତ୍ୟଗୀତାଦି କଳାବୈଚକ୍ଷଣ ଏହି କାବ୍ୟଦ୍ୱାରା ପଠନ ଉପଭୋଗ ଜନିତ ଫଳରୂପେ ମିଳିଥାଏ ବୋଲି ସେ ପ୍ରତିପାଦନ କରଛନ୍ତି। ଏପ୍ରକାର ପ୍ରୟୋଜନବୋଧ ପ୍ରତି ଅନୁଗତ ନଥିବା କାବ୍ୟ ରଚନାରେ ଅଧର୍ମ ହୁଏନାହିଁ, ରୋଗହୁଏ ନାହିଁ, କି ଦଣ୍ଡ ମିଳେ ନାହିଁ; ମାତ୍ର କୁକବି ନିନ୍ଦା ପ୍ରାପ୍ତି ସହିତ ସାକ୍ଷାତ୍ ମୃତ୍ୟୁପରି ଅହଂଦୁଃଖ ମିଳିଥାଏ (କୁ କବିତ୍ୱଂ ପୁନଃ ସାକ୍ଷାନ୍ମୃତିମାହୁର୍ମନୀଷିଣଃ)।

ଆଚାର୍ଯ୍ୟ ଦଣ୍ଡୀ ଜନପ୍ରୀତି, କୀର୍ତ୍ତିବିସ୍ତାର, ଧନାର୍ଜ୍ଜନ ଓ ମନୋବାଞ୍ଛିତ ଆନନ୍ଦ ଭୋଗକୁ କାବ୍ୟର ଆବଶ୍ୟକତା ସହିତ ଯୋଡିଦେବା ପରେ ଆଚାର୍ଯ୍ୟ ବାମନ କାବ୍ୟ ଫଳକୁ ଅକୀର୍ତ୍ତି-କୀର୍ତ୍ତି, ଦୃଷ୍ଟ-ଅଦୃଷ୍ଟ/ଐହିକ- ଇହୋତ୍ତର ଚୈତନ୍ୟ ବିକାଶ ସହିତ ସଂପୃକ୍ତ କରିଦେଇଛନ୍ତି। ଐହିକ ବା ଦୃଷ୍ଟ / ଲୋକଜଗତୀୟ ପୁରୁଷାର୍ଥ ଚତୁଷ୍ଟୟକୁ ସେ ପ୍ରୀତିସୂଚକ ପ୍ରୟୋଜନ ସହିତ ଯୋଡି ଦେଇଛନ୍ତି। କାବ୍ୟ ଫଳଶ୍ରୁତିକୁ ଆନନ୍ଦବାଦୀ କାବ୍ୟାନୁଭୂତି ସହିତ ଏହି ମର୍ମରେ ସଂଯୁକ୍ତ କରି ଦେଇଛନ୍ତି। ଅପର ପକ୍ଷରେ ଅଦୃଷ୍ଟ ପ୍ରୟୋଜନ ହେଉଛି ଇହୋତ୍ତର ଚୈତନ୍ୟ ବିକାଶର ଫଳଶ୍ରୁତି। ଏହି ପ୍ରୟୋଜନାତ୍ମକ ଫଳଶ୍ରୁତିଟି କୀର୍ତ୍ତିବୋଧାତ୍ମକ ଆନନ୍ଦବୋଧ ସହିତ ସଂଯୁକ୍ତ। ଉଭୟ କବି ଓ କାବ୍ୟାନନ୍ଦାଭିଳାଷୀ ପାଠକ କାବ୍ୟ ବିରଚନ ଓ ପଠନରୁ ଏ ଉଭୟ ଫଳ ପାଇଥା'ନ୍ତି। ଯେଉଁ କାବ୍ୟ ଦୃଷ୍ଟ

ଅଦୃଷ୍ଟାତ୍ମକ ଚୈତନ୍ୟ ବିକାଶରେ ବିଫଳ ତାହା କୁକବିଦ୍ଧ ବିଡମ୍ବିତ ଅକୀର୍ତ୍ତିକର କୃତି ଭାବରେ ଅବଶ୍ୟ ବର୍ଜନୀୟ। କୁନ୍ତକ କାବ୍ୟପାଠର ପ୍ରୟୋଜନାତ୍ମକ ଆବେଦନକୁ ଆନନ୍ଦସଂଚାରୀ ଫଳଶ୍ରୁତି ଅପେକ୍ଷା ପାଠକର ବ୍ୟାବହାରିକ ଶିକ୍ଷା ସହିତ ସମୀଭୂତ କରିଦେଇଛନ୍ତି। କୁନ୍ତକଙ୍କ ବିଚାରର ସାରାଂଶ ହେଉଛି, କାବ୍ୟ ବ୍ୟାପାର ଓ କବି ବ୍ୟାପାରର ପ୍ରୟୋଜନବୋଧଟି ହେଉଛି– 'ଅନ୍ତଶ୍ଚମତ୍କାର ବିଧାନ।' କବିକର୍ମ ଲୋକର ନ୍ୟାହିକଶିକ୍ଷା ଓ ବ୍ୟବହାରଜ୍ଞାନ ବୃଦ୍ଧିରେ ସହାୟକ ହେବା ଅପେକ୍ଷା ତାହାର ଅନ୍ତଃରୀଣ ସ୍ୱଭାବରେ (ଚିତ୍ତବୃତ୍ତିରେ) ନୈତିକ ଶୁଦ୍ଧତା ଆଣି ଏକ ଅନ୍ତର୍ମୁଖୀ ରମଣୀୟ-ଆହ୍ଲାଦ-ଅନୁଭବର ଅବକାଶ ଯୋଗାଇ ଦେଇଥାଏ। କବି ବ୍ୟାପାର ଶବ୍ଦ ସାଦୃଶ୍ୟବିଧାନରେ ବିଶେଷ ଦୃଷ୍ଟାନ୍ତମୂଳା ବାଣୀଭଙ୍ଗୀ ନିର୍ମାଣକରେ। କାବ୍ୟବ୍ୟାପାର ବା କାବ୍ୟପାଠ ଦେଇ ଏସବୁ ଦୃଷ୍ଟାନ୍ତ ଲୋକଶିକ୍ଷାର ହେତୁ ହୋଇଉଠେ। ଦଶରୂପକକାର ଧନଞ୍ଜୟ ଓ ପ୍ରତାପରୁଦ୍ର ଯଶୋଭୂଷଣକାର ବିଦ୍ୟାନାଥଙ୍କ ଦୃଷ୍ଟିଭଙ୍ଗୀ ଏ ଅବସରରେ ସଂପୂର୍ଣ୍ଣଭିନ୍ନ। ଧନଞ୍ଜୟଙ୍କ ଧାରଣାରେ କାବ୍ୟକୁ ଇତିହାସତୁଲ୍ୟ ଗ୍ରହଣକରି ତହିଁରୁ କେଉଁ ଘଟଣା, କେଉଁ ଚରିତ୍ର,କେଉଁ ପଙ୍‌କ୍ତି କିପ୍ରକାର ପୁରୁଷାର୍ଥ ଦେଉଛି– ଏହା ଆଶାକରିବା ପ୍ରକୃତ କାବ୍ୟ ପଠନର ଉଦ୍ଦେଶ୍ୟ ନୁହେଁ। କାବ୍ୟ ହିଁ କେବଳ କାବ୍ୟ ଓ ପାଠକକୁ ନିଜ ଇଚ୍ଛାରେ (ଲକ୍ଷଣ ନିର୍ଦ୍ଦିଷ୍ଟ ନହୋଇ) ଭୋଗ କରିବା ଭଳି ସ୍ୱୟଂ ସମ୍ବେଦ୍ୟ ରସସ୍ୱାଦ ଯୋଗାଇ ଦେବା ହିଁ ଯଥାର୍ଥ କାବ୍ୟ ପ୍ରୟୋଜନ ପ୍ରସଙ୍ଗ। କାବ୍ୟାଳାପ ମଧ୍ୟରୁ ପ୍ରଭୁସମ୍ମିତ, ସହୃଦସମ୍ମିତ ଓ କାନ୍ତାସମ୍ମିତ ଉପଦେଶାତ୍ମକ ବାଣୀଗୁଡ଼ିକୁ ଉଦାହରଣ ଯୋଗ୍ୟକରି ସଂଗ୍ରହ କରିନେବା ଓ ସଂଚିତ କରି ରଖିବା ହିଁ ସୁପାଠର ଉଦ୍ଦେଶ୍ୟ। ଏ ଦୃଷ୍ଟିରୁ ବିଦ୍ୟାନାଥ କାବ୍ୟାନୁଶୀଳନ ଦ୍ୱାରା ଉଦାହରଣଯୋଗ୍ୟ ବିଶିଷ୍ଟ୍ୟ ଜ୍ଞାନ ବୃଦ୍ଧିପାଇଥାଏ ବୋଲି ଦର୍ଶାଇଛନ୍ତି। କାବ୍ୟାନନ୍ଦର ପ୍ରମୁଖ ବିଶ୍ଳେଷକ ଆଲଙ୍କାରିକ ରୁଚକଙ୍କ ମତରେ ଯେ କୌଣସି ରସବିଶିଷ୍ଟ କାବ୍ୟର ମୁଖ୍ୟ ଆକର୍ଷଣ ଓ ରଚନା ଉଦ୍ଦେଶ୍ୟ ଆନନ୍ଦବୋଧ ଜଡିତ। କାବ୍ୟର ପ୍ରୟୋଜନ ଚିତ୍ତ ଆହ୍ଲାଦକରଣ ଓ ସକଳ ଅନୁଭୂତିକୁ ଆନନ୍ଦର ସହିତ ଗ୍ରହଣ କରି ନେବାର ଏକ ଉତ୍ତମ ଚିତ୍ତାବସ୍ଥା ସୃଷ୍ଟି କରିବା। ଦୁଃଖକୁ ସହିଯିବାରେ, ଶୋକକୁ ସମ୍ବରଣ କରିବାରେ, ବିପ୍ରଲମ୍ଭକୁ ଆତ୍ମସ୍ଥ କରିବାରେ, ବୀରତାକୁ ହରେଇବା ଓ ଜିତେଇବାରେ, ହସକୁ ଆଦର କରିବାରେ, ବାତ୍ସଲ୍ୟ ସହିତ ମିଶିବାରେ, ରୌଦ୍ର୍ୟ ଓ ଭୟଙ୍କୁ ସମ୍ମୁଖୀନ ହେବାରେ ଓ ଶାନ୍ତି ସହିତ ତଲ୍ଲୀନ ହେବାରେ- ସବୁ ପ୍ରକାର କାବ୍ୟିକ ଅନୁଭୂତିର ପ୍ରାପ୍ତି ପରିଣାମଟି ଆନନ୍ଦ। ତେଣୁ ନୈତିକ ପରାମର୍ଶପ୍ରଦାନ, ଜୀବନ ଓ ଜଗତର ମଙ୍ଗଳସାଧନ ଓ ଚିତ୍ତଶୁଦ୍ଧିକରଣ– ଏ ସମସ୍ତ ଅପେକ୍ଷା କେବଳ ଆନନ୍ଦବୋଧକୁ ବିଭିନ୍ନ ଚାତୁରୀରେ ପରଶି ଦେବା ହିଁ କାବ୍ୟ ପ୍ରୟୋଜନ।

କାବ୍ୟ ଆଲୋଚନାରେ କାବ୍ୟରଚନାର କାଳ ବା କବିର ସମକାଳକୁ ଗୁରୁତ୍ୱ ଦେଇଥିବା କାବ୍ୟାନୁଶାସନର ରଚୟିତା ଭାଗଭଟ୍ଟ (୨ୟ) କାବ୍ୟ ପ୍ରୟୋଜନକୁ ସମୟଚେତନା ଓ ଆଭିମୁଖ୍ୟ ସହିତ ଯୋଡ଼ିଦେବାର ପ୍ରୟାସ କମ୍ ନିତ୍ୟ ସମୀକ୍ଷାକଳାର ପରିଚାୟକ ନୁହେଁ। ସମୟରୁ ସମସ୍ତ ପ୍ରୟୋଜନ ଭିନ୍ନ ଓ ବିବିଧ ହୋଇ ଦେଖାଦିଏ। କାବ୍ୟବସ୍ତୁ ଓ ଚରିତ୍ର ଏବଂ ତା'ର ସାଦୃଶ୍ୟାତ୍ମକ ଉପମା ଯୋଜନାରେ କବି ନିଜ ଐତିହ୍ୟବାଚକ ସମୟର ଓ ସମକାଳର ପ୍ରୟୋଜନଗୁଡ଼ିକୁ ଶବ୍ଦାର୍ଥ ଆଭରଣ ଭିତରେ କାବ୍ୟିକ/ସଂଭାବ୍ୟ ସତ୍ୟ ଛଳରେ ଗୁନ୍ଥି ଦେଇଥାଏ। ଉପଯୁକ୍ତ ପାଠକ ତହିଁରୁ କବି ଓ କବିର ସମୟକୁ ଦେଖି ଚିହ୍ନିପାରିଥାଏ। ବ୍ୟକ୍ତିବିବେକ ଓ କବିତ୍ୱଶକ୍ତିର ବିବେକ ନେଇ କାବ୍ୟାଲୋଚନାର ଭିନ୍ନ ଚମତ୍କାରିତା ମହିମଭଟ୍ଟ ପ୍ରଦର୍ଶନ କରିଛନ୍ତି। ତାଙ୍କ ମତରେ କବି ବିବେକ ସାଧାରଣ ଲୌକିକ ଜୀବନର ବିବେକ ନୁହେଁ। ଲୌକିକ ଅନୁଭୂତିର ସତ୍ୟ ତଥ୍ୟଗତ। ମାତ୍ର କବି ବିବେକ ଦ୍ୱାରା ରୂପାୟିତ କାବ୍ୟିକସତ୍ୟ ଜୀବନକୁ ସୁନ୍ଦର, ସମତା, ସଂଗତି, ଔଚିତ୍ୟ ଓ ଯଥାର୍ଥତା ମିଶ୍ରିତ ଏକ ଅଲୌକିକ ଆଦର୍ଶାୟିତ ସାର୍ବିକ ସତ୍ୟ। କବି ନିଜ ବାସ୍ତବାୟିତ ବିବେକ ଦ୍ୱାରା ଅଙ୍ଗେ ଲିଭାଇଥିବା ସବୁ ଅନୁଭୂତିଗତ ସତ୍ୟକୁ କାବ୍ୟରେ ବିନିଯୋଗ କରେ ନାହିଁ। ସଂକୁଚିତ ଆବଶ୍ୟକତାର ପରିପୂରଣ ସହିତ ଜଡ଼ିତ ସତ୍ୟକୁ କବି ବିବେକ ଛାଡିଦିଏ। ଯେଉଁ ସତ୍ୟାନୁଭୂତି ଗୁଡ଼ିକ ସାର୍ବକାଳିକ ମାନବୀୟ ଆଚରଣକୁ ସ୍ଫୋଟାୟିତ କରିପାରେ ସେସବୁକୁ ନିତ୍ୟ କାବ୍ୟୋଚିତ ସତ୍ୟଭାବରେ କବିର କାବ୍ୟବିବେକ ଶାଶ୍ୱତ ସୌନ୍ଦର୍ଯ୍ୟାତ୍ମକ ଦୃଷ୍ଟାନ୍ତ କରି ରୂପାୟଣ କରିଦିଏ। କାବ୍ୟ ରଚନା କାଳରେ ବ୍ୟକ୍ତି ବିବେକକୁ ଉଦାତ୍ତ କାବ୍ୟ ବିବେକରେ ରୂପାନ୍ତରିତ କରି କବି ଅପୂର୍ବ ସୃଜନାନୁଭବର ଆନନ୍ଦ ପାଇଁ ଥିବାବେଳେ ପାଠକ ପାର୍ଥିକ ସତ୍ୟ ଭିତରେ ଅପାର୍ଥିବ ଆନନ୍ଦମୟ ସତ୍ୟକୁ କାବ୍ୟ ଭିତରେ ଦେଖି ତହିଁରେ ନିଜକୁ ମିଶାଇ ଅପୂର୍ବ କାବ୍ୟଫଳ ଆସ୍ୱାଦନ କରିଥାଏ। ସୁତରାଂ କାବ୍ୟଫଳ ହେଉଛି ସାଦୃଶ୍ୟ ସଙ୍କେତର ଫଳ। ମାନବୀୟ ମହତ୍ତମ ଲକ୍ଷଣଗୁଡ଼ିକ ପ୍ରତିଭାସ ରୂପ ଭାବରେ ସାଦୃଶ୍ୟ ଶବ୍ଦଉପମା ମଧ୍ୟରେ କବି ବିବେକ ପାଠକଙ୍କୁ ଯୋଗାଇଦିଏ। କବି ବିବେକ ଦ୍ୱାରା ନିରୂପିତ କାବ୍ୟିକ ସତ୍ୟ ପାଠକର ବ୍ୟକ୍ତିବିବେଚକକୁ ସତ୍ୟ-ମିଥ୍ୟା, ମାୟା-ବାସ୍ତବ, କ୍ଷଣସ୍ଥାୟୀ-ଚିରସ୍ଥାୟୀ ଇତ୍ୟାଦି ଭେଦ ସପ୍ରମାଣ ଜଣାଇଦିଏ। ପାଠକ ସୁକବି ଦ୍ୱାରା ଆଦର୍ଶାୟିତ ହୋଇଥିବା ବିବେକାନୁମୋଦିତ କାବ୍ୟିକ ସତ୍ୟର ମର୍ମାର୍ଥ ସହିତ ଏକୀଭୂତ ହେବାପରେ ତା'ର ଜ୍ଞାନ, ବିଚାର, ରୂଢ଼ିବଦ୍ଧ ଧାରଣା ଓ ଆଚରଣ ସତେଜ, ବିସ୍ତାରିତ ଓ ମାର୍ଜିତ ହୋଇଯାଏ। ଧୈର୍ଯ୍ୟ, ଶାନ୍ତି, ସୁଖ ଓ ବିନୟ ଆଦି ଅସ୍ତିବାଚକ ଗୁଣଗୁଡ଼ିକ ଅଧିକାରୀ ହେବା ସଙ୍ଗେ ସଙ୍ଗେ ପାଠକ କ୍ରୋଧ, ଅସୂୟା, ଖଳବୃତ୍ତି ଓ ମିଥ୍ୟାଚାର ଆଦି ମନ୍ଦସୂଚକ ଲକ୍ଷଣଗୁଡ଼ିକଠାରୁ ଦୂରେଇ ରହିବାର ସଂକଳ୍ପ ନିଏ। ସୁକାବ୍ୟତା

ରାବଣାଦିବତ୍ ଅପସାଂସ୍କୃତିକ ମାନସିକତାକୁ ଚିହ୍ନେଇଦେଇ ତାହାଠାରୁ ତାକୁ ନିବୃତ୍ତ କରି ରାମାଦିବତ୍ କର୍ତ୍ତବ୍ୟ ଓ ସତ୍ୟପାଳନ ପ୍ରତି ଅନୁରକ୍ତ କରିଦିଏ। ଉଚ୍ଚାଙ୍ଗ ରସବୋଧକ କାବ୍ୟପଠନ ଦ୍ୱାରା ମନର ଊଣାଗୁଡ଼ିକ ଭରଣା ହୋଇଯା'ନ୍ତି ଏବଂ ଦୁଃଖ, ଶୋକ, କ୍ଲାନ୍ତି ଓ ଅବସାଦ ଜନିତ ସମସ୍ୟା ଗର୍ତ୍ତରୁ ଉଠି ଆସିବାର ଗୁଣାତ୍ମକ ପ୍ରେରଣା ମିଳିଯାଏ। ଆଲୋକର ଅନୁପସ୍ଥିତିରେ ଅଂଧାରର ବକ୍ଷ ଚିରି ଦିଗ୍‌ବଳୟ ବକ୍ଷରେ ସିନ୍ଦୂରାଫଟିବାର ହୃଦୟାହ୍ଲାଦକାରକ ଦୃଶ୍ୟ ଦେଖିବାକୁ ଉତ୍ତମୋତ୍ତମ କାବ୍ୟ ପଠନରୁ ପ୍ରେରଣା ମିଳିଥାଏ ଏବଂ ସମକାଳକୁ ଏକ ନୂତନ ଔଚିତ୍ୟରେ ଦେଖିବାକୁ ମାପିବାକୁ ଇଚ୍ଛାଶକ୍ତିଟିଏ ବିକଶିତ ହୁଏ।

ଏକାଦଶ ଶତାବ୍ଦୀର ଶେଷଭାଗରେ ଆଚାର୍ଯ୍ୟ ମମ୍ମଟ ପୂର୍ବସୂରୀୟ କାବ୍ୟ ପ୍ରୟୋଜନ ସମ୍ବନ୍ଧୀ ମତକୁ ପରିମାର୍ଜିତ କରି ଦେଇଛନ୍ତି। ତାଙ୍କ ମତରେ କାବ୍ୟ ଛଅଗୋଟି ପ୍ରୟୋଜନବୋଧକୁ ଅବଲମ୍ବନ କରି ଲୋକୋତ୍ତର ବର୍ଣ୍ଣନାନିପୁଣ କବି-କର୍ମ ଭାବରେ ବିଲକ୍ଷଣଯୁକ୍ତ ହୋଇ ରଚିତ ହୋଇଥାଏ। କାବ୍ୟରଚିବା ଓ କାବ୍ୟକୁ ପଢ଼ିବା ଏକ ସଯତ୍ନ ଓ ଅନୁରାଗପ୍ରବଣ ପ୍ରସଙ୍ଗ। ଗ୍ରନ୍ଥ ନିର୍ମାତା ପ୍ରୟୋଜନ ପ୍ରତି ସଚେତନ ଥିଲେ କାବ୍ୟାନୁଭୂତି ଶିବସଂକଳ୍ପନିଷ୍ଠ ହୋଇଯାଏ। କାବ୍ୟପାଠକ ସପ୍ରୟୋଜନ ନିୟତି ନିୟମରହିତ କାବ୍ୟ ପାଠ କରିବା ଦ୍ୱାରା ସର୍ବୋତ୍କୃଷ୍ଟ ଅନୁଭୂତିରେ ବିଦଗ୍ଧ ହୋଇଉଠେ। ଏ ଦୃଷ୍ଟିରୁ କାବ୍ୟଫଳରେ ଉଭୟ ଗ୍ରନ୍ଥକାର ଓ ସହୃଦୟ ପାଠକର ସମାନାଧିକାର ରହିଛି। ମମ୍ମଟ ଛଅଗୋଟି ପ୍ରୟୋଜନ– ଯଶ, ଅର୍ଥପ୍ରାପ୍ତି, ଅମଙ୍ଗଳ ନିବୃତ୍ତ, ପରମ ଆନନ୍ଦ ଅନୁଭୂତି ଓ କାନ୍ତାସମ୍ମିତ ଉପଦେଶ କାବ୍ୟରୁ ମିଳିଥାଏ ବୋଲି ଦର୍ଶାଇଛନ୍ତି (କାବ୍ୟଂ ଯଶସେତର୍ଥକୃତେ ବ୍ୟବହାର ବିଦେ ଶିବେତର କ୍ଷତୟେ/ସଦ୍ୟଃପର ନିବୃର୍ତୟେ କାନ୍ତାସମ୍ମିତ ତୟେପଦେଶ ୟୁଜେ– କାବ୍ୟ ପ୍ରକାଶ-୧/୨)। ସମବଣ୍ଟନ କରିବାକୁ ଯାଇ ପ୍ରୟୋଜନ ଅନୁସାରେ କାବ୍ୟ ରଚନା ପାଇଁ ଯଶ, ଅର୍ଥ ଓ ଅମଙ୍ଗଳ ନିବୃତ୍ତ କାବ୍ୟଫଳ ଅର୍ଦ୍ଧାଂଶ କବିକୁ ମିଳିଥାଏ। ଅନ୍ୟ ଅର୍ଦ୍ଧାଂଶ ବ୍ୟବହାର ଜ୍ଞାନ, ସଦ୍ୟଃ ପରନିବୃତ୍ତିଃ ଭିତ୍ତିଭ ଆନନ୍ଦାନୁଭୂତି ଓ କାନ୍ତାସମ୍ମିତ କୋମଳ ଓ ପାଳନୀୟ ଉପଦେଶ ସହୃଦୟ ପାଇଥାଏ। ସୁତରାଂ କାବ୍ୟ ରଚନା କରୁଛି, ପଢୁଛି, ଶୁଣୁଛି, ବୁଝୁଛି, ଶୁଣାଉଛି, ବୁଝାଉଛି ଆଦି କର୍ମ ସାଧାରଣ ମଣିଷଙ୍କୁ ନିଆରାକରି ଦେଖାଇଦିଏ। ଗୋଟିଏ ସତ୍ୟ ଏଠାରେ ନିଶ୍ଚିତ ହୋଇଯାଏ ଯେ କାବ୍ୟଫଳ ପ୍ରଦାନ ଭିତ୍ତିରେ କାବ୍ୟରଚନା ଓ କାବ୍ୟ ପଠନାବେଦନ ଉଭୟ ପାଠକ ଓ କବିଙ୍କୁ ଫଳବାନ୍ ବା ସଫଳ କରିଦିଏ– ଏପ୍ରକାର ମହତ୍ତମ ବିଚାର ଉପରେ ଭାରତୀୟ ସମୀକ୍ଷାତତ୍ତ୍ୱ ଆସ୍ଥାବାନ୍ ରହିଛି।

ଏହି ମର୍ମରେ ନିମ୍ନମତେ ଅତଏବରେ ପହଞ୍ଚିବା ସାର ହେବ :

- ନୀତିବାଦୀ ଆଚାର୍ଯ୍ୟମାନେ କୀର୍ତ୍ତିବିସ୍ତାର, ଯଶପ୍ରାପ୍ତି, ମୋକ୍ଷ, ଧର୍ମ, ଅମଙ୍ଗଳ ନିବୃତ୍ତି, ହିତସାଧନ, ସମୂହକଲ୍ୟାଣ ଓ ସଦ୍‌ବ୍ୟବହାର ଜ୍ଞାନର ବୃଦ୍ଧି ଇତ୍ୟାଦିକୁ କାବ୍ୟ ନିର୍ମାଣ ଓ ପଠନର ଆବଶ୍ୟକତା ସହିତ ସଂପୃକ୍ତ କରି ଦେଇଛନ୍ତି। ଧାର୍ମିକ ଚେତନାର ବିକାଶ ଓ ଆଦର୍ଶାୟିତ ବାସ୍ତବତା ମଧ୍ୟରେ ନୈତିକ ସଦାଚାରବୃତ୍ତିର ବିକାଶ ଉପରେ କାବ୍ୟ ପ୍ରୟୋଜନ ନିର୍ଦ୍ଦିଷ୍ଟ ହୋଇଛି।
- ଆନନ୍ଦବାଦୀ କାବ୍ୟ ବିଚାରକ ଅର୍ଥ, କାମ, ପ୍ରୀତି, ସୁଖ ପ୍ରଦାନ ସହିତ କାବ୍ୟ ଉଭୟ ରଚୟିତା ଓ ପାଠକଙ୍କୁ ବୋଧାନନ୍ଦ ବା ଲୋକୋତ୍ତର ଚମତ୍କାର ଆନନ୍ଦ ଦେଇ ଉଭୟଙ୍କ ଚିତ୍ତକୁ ଉଦାତ୍ତ, ପ୍ରସାରିତ, ଜାଗ୍ରତ ଓ ସୌନ୍ଦର୍ଯ୍ୟାନୁରକ୍ତ କରିଦିଏ– ଏବଂବିଧ କାବ୍ୟପ୍ରୟୋଜନବୋଧ ଉପରେ ଗୁରୁତ୍ୱାରୋପ କରିଛନ୍ତି। କବି ଜୀବନ ଭୂମିରୁ ଭାବସୌନ୍ଦର୍ଯ୍ୟ ଗ୍ରହଣକରି କାବ୍ୟଭୂମିରେ ତାହାକୁ ରସାନନ୍ଦ ଭାବରେ (ଶବ୍ଦାର୍ଥ ଶରୀରର ସମଗ୍ର ସତ୍ତାରେ) ମିଶାଇ ରଖିଥା'ନ୍ତି। ପାଠକ ବିନୋଦମାନସ ନେଇ ସେହି ଭୂମିରେ ବିଚରଣ କରି ପ୍ରଥମେ ପାର୍ଥିବକ୍ଳାନ୍ତି ଲାଘବରସୁଖ ପାଇବା ପରେ ତାହାର ଅନ୍ତଃସୌନ୍ଦର୍ଯ୍ୟ ସହିତ ମିଶି ଚିନ୍ମୟାନନ୍ଦ ପାଇଥାଏ। ଶ୍ରୀ ଅରବିନ୍ଦଙ୍କ ବିଚାରରେ ଚିନ୍ମୟାନନ୍ଦ ଉଦ୍‌ବୋଧନଶୀଳ କାବ୍ୟତା ହିଁ ସଦାକାଳୀନ ଭବିଷ୍ୟ-କାବ୍ୟତା। ଏ କାବ୍ୟତାର ପ୍ରୟୋଜନ ହେଉଛି ଉଭୟ କବି ଓ ପାଠକଙ୍କୁ ଆନନ୍ଦଦିଗରେ ପ୍ରବୋଧିତ କରାଇନେବା। ଏ ଆନନ୍ଦ ବିଷୟ ଭୋଗନିଷ୍ଠ ଓ କ୍ଷଣିକ ସୁଖବୋଧର କୌତୁକ ଅଥବା ବିନୋଦନାତ୍ମକ ଆନନ୍ଦ ନୁହେଁ; ବରଂ ଜୀବନକୁ ଦିବ୍ୟାରୋହଣର କରିଦେବାର ଏକ ମହାଜାଗୃତିର ଆନନ୍ଦ। ଭଲ କାବ୍ୟ ବଂଧୁପରି ଶାନ୍ତ୍ୱନାଦିଏ ଓ କାନ୍ତାପରି କୋମଳବଚନ କହି ଆନନ୍ଦରେ ଉଦ୍‌ବୋଧିତ କରିଦିଏ। କାବ୍ୟ ଶାସ୍ତ୍ରବାଣୀ ପରି ନୀତିନିଷ୍ଠ ଉପଦେଶ ଦିଏ ନାହିଁ କାନ୍ତାବଚନ ପରି ମନକୁ ଜଡେଇଦିଏ ଓ ଜୀବନର ଶୁଭଙ୍କରଯାତ୍ରା ପାଇଁ ପ୍ରରୋଚିତ କରେ।
- ଚମତ୍କାରବାଦୀ ବା ସୌନ୍ଦର୍ଯ୍ୟବାଦୀ କାବ୍ୟଶାସ୍ତ୍ରୀଂଙ୍କ ବିଚାରରେ ସୌନ୍ଦର୍ଯ୍ୟାନୁଭୂତିର ଜାଗୃତୀକରଣ ନିମନ୍ତେ କାବ୍ୟର ପ୍ରୟୋଜନ ରହିଛି। ସତ୍ୟକୁ ମାନିବା, ଶିବଙ୍କୁ ଲୋଡିବା ଓ ସୁନ୍ଦରକୁ ଦେଖିବାର ଉଦାର-ଉଦାତ୍ତ ଦୃଷ୍ଟିଭଙ୍ଗୀଟିଏ କାବ୍ୟ ପଠନରୁ ମିଳିଥାଏ। ଭଲ ଆଶାକରି, ଅନ୍ୟର ମଙ୍ଗଳ କାମନା କରିବା, ଅପର ଶ୍ରୀକୁ ଅନୁପମ ଦୃଷ୍ଟିରେ ଦେଖିବାର ମହତ୍ତମ ସୌନ୍ଦର୍ଯ୍ୟତାତ୍ତ୍ୱିକ ଭାବନାର ବୀଜ କାବ୍ୟରଚନା ମାଧ୍ୟରେ କବି ପାଠକ

ଉଦ୍ଦେଶ୍ୟରେ ସାଇତି ରଖିଥାଏ। କାବ୍ୟ ପାଠ କରି ପାଠକ ତାହାକୁ ସଂଗ୍ରହ କରି ନିଜ ଉର୍ବର ଚିତ୍ତକ୍ଷେତ୍ରରେ ବପନ କରିଦିଏ। ସ୍ଥୁଳତଃ ନିରୁତା ସୌନ୍ଦର୍ଯ୍ୟର ବିତରଣ ହିଁ କାବ୍ୟର ପ୍ରୟୋଜନ।

- ହିତବାଦୀ ପ୍ରବକ୍ତାଙ୍କ ବିଚାରରେ କବି କର୍ମରେ କେବଳ ସୁନ୍ଦରର ଓ ବିନୋଦନର ପ୍ରସଙ୍ଗ ନଥାଏ। କଳ୍ପନାଶ୍ରିତ ସୌନ୍ଦର୍ଯ୍ୟାନୁଭୂତି ଭିତରେ ବାସ୍ତବାନୁଭୂତି ମିଶିରହିଛି। ବସ୍ତବାନୁଭୂତିର ବିବେକାନୁମୋଦିତ ଓ ନୀତିନିଷ୍ଠ ଦୃଷ୍ଟିଭଙ୍ଗୀରେ ଆଦର୍ଶାୟନ ହୋଇଥାଏ। ପାଠକ କାବ୍ୟର ଆନନ୍ଦ ବଜାରରୁ ଜୀବନର ହିତକର ଔଚିତ୍ୟବୋଧଗୁଡ଼ିକୁ ଓ ବଂଚିବାର ଉଦାର ଆଦର୍ଶଗୁଡ଼ିକୁ ଭାବଗ୍ରହୀତା ରୂପେ ଲାଭ କରିଥାଏ। ସୁତରାଂ କାବ୍ୟର ପ୍ରୟୋଜନ ଶୁଦ୍ଧ ପରମାର୍ଥିକ ଜୀବନନିଷ୍ଠା। ଆଧୁନିକ ହିତବାଦୀ ବିଚାରକଙ୍କ ପରି ସାମାଜିକ ଦାୟବଦ୍ଧତାର ପ୍ରୟୋଜନକୁ ପ୍ରତ୍ୟକ୍ଷଭାବେ ଭାରତୀୟ କାବ୍ୟତତ୍ତ୍ୱ ଅନୁଭବ କରିନାହିଁ। ମାତ୍ର ସକଳକଲ୍ୟାଣ ଓ ସାର୍ବିକ ସୁଖକାମନାକୁ କାବ୍ୟରଚନାରେ ଅଙ୍ଗୀଭୂତ କରାଯାଇଛି।

(ନଅ)

ସୁତରାଂ ଭାରତୀୟ ସମୀକ୍ଷାତତ୍ତ୍ୱର ପ୍ରଭାବଶାଳୀ ଦିଗଟି ହେଉଛି ସମନ୍ୱୟବାଦୀ ବିଚାର। ନିର୍ଦ୍ଦିଷ୍ଟ ପ୍ରସ୍ଥାନବାଦୀମାନେ କାବ୍ୟର ସୌନ୍ଦର୍ଯ୍ୟ ଆକଳନ ଓ ଉତ୍କର୍ଷ ଅପକର୍ଷ ନିରୂପଣ କାଳରେ ଦୁଇଟି ଦିଗରୁ ଆଲୋଚନାରେ ପ୍ରବୃତ୍ତ ହୋଇଛନ୍ତି। ଗୋଟିଏ କାବ୍ୟର ବହିର୍ଭାଗୀୟ ଆଲୋଚନା ଓ ଅନ୍ୟଟି ଆନ୍ତର୍ଭାଗୀୟ ଆଲୋଚନା। ବହିର୍ଭାଗୀ ଆଲୋଚନାରେ ଅଳଙ୍କାର, ରୀତି, ଗୁଣ, ବକ୍ରୋକ୍ତି ଓ ଅନ୍ତର୍ଭାଗୀ ଆଲୋଚନାରେ ରସ, ଧ୍ୱନି ଓ ଔଚିତ୍ୟକୁ ତତ୍ତ୍ୱ-ପରିସରଭୁକ୍ତ କରାଯାଇଛି। ବହିର୍ଭାଗୀ ଆଲୋଚକମାନେ ଶବ୍ଦ ଓ ଅର୍ଥର ଦୋଷଦର୍ଶନ, ଗୁଣ ଦର୍ଶନ, କାବ୍ୟିକ ଶବ୍ଦବିନ୍ୟାସର ବୈଚିତ୍ର୍ୟ ଓ କାବ୍ୟ ନିର୍ମାଣରେ ଅଳଙ୍କାରର ବ୍ୟବହାର ଇତ୍ୟାଦି ଉପରେ ଗୁରୁତ୍ୱ ଦେଇଛନ୍ତି। କବି ନିମନ୍ତେ ଭାବପୁରୁଣା, ଅନ୍ୟ କବି ସହିତ ସମ୍ବାଦ ଘଟାଇ କାବ୍ୟ ଭାବ ନିର୍ମାଣ କରାଯାଇଥାଏ। ଏ ନିର୍ମାଣ ନବନିର୍ବାଣ ବା ପ୍ରତି ନିର୍ମାଣ ହୋଇଥାଏ। ବାହାରର ଶବ୍ଦ ପ୍ରଧାନ ଦୀପ୍ତି ଓ ଚାତୁରୀ ଚାରୁତାଙ୍କୁ ଦେଖାଇବା ମଧ୍ୟରେ ଜଣେ ଅନ୍ୟଜଣଙ୍କୁ କେବଳ ଖଣ୍ଡନ କରିବା ଉପରେ ଧ୍ୟାନ ଦେଇଛନ୍ତି ଓ ନିଜକୁ ମଣ୍ଡନ କରିଛନ୍ତି। କୌଣସି କବି, କାବ୍ୟ ଅଥବା କାବ୍ୟ ସମୀକ୍ଷକଙ୍କୁ କେତେ ପ୍ରକାରର ରୀତି, ଅଳଙ୍କାର, ଗୁଣ ଓ ଶବ୍ଦବୃତ୍ତି ଏବଂ ଏସବୁର ଲକ୍ଷଣ, ନିରୂପଣ, ଲକ୍ଷଣାନୁସାରୀ ବ୍ୟବହାର ଓ ବ୍ୟବହାରରେ ଦୋଷଦର୍ଶନ ଭିତ୍ତିରେ ଶ୍ରେୟ କହିହେବ ନାହିଁ। ଫଳରେ ବକ୍ରୋକ୍ତିବାଦ ପରେ ଶାବ୍ଦିକ

ଓ ଆଳଙ୍କାରିକ ସମୀକ୍ଷା ଶିଥିଳ ହୋଇଯାଇଛି। ଅନ୍ତର୍ଭାଗୀ ଆଲୋଚନା ଭାବପକ୍ଷରେ କାବ୍ୟର ଆତ୍ମା ନିରୂପଣ, ରସନିରୂପଣ ଓ ଅର୍ଥନିଷ୍ଠ ଅଭିବ୍ୟକ୍ତିର ସଫଳତା ନିରୂପଣ ଉପରେ ଗୁରୁତ୍ୱ ଦେଇଛି। ଏହି ଭାବପାକ୍ଷିକ ସମୀକ୍ଷାଧାରାରେ ଧ୍ୱନି ଓ ଔଚିତ୍ୟ ଆସିଲେ ବି ରସର ସର୍ବବ୍ୟାପୀତ୍ୱ ଓ ତହିଁରେ ଶୃଙ୍ଗାରରସର (ସମ୍ଭୋଗ, ବିପ୍ରଲମ୍ଭ, ସଂଯୋଗ, ଅର୍ଥଶୃଙ୍ଗାର, ଧର୍ମଶୃଙ୍ଗାର, ରସଶୃଙ୍ଗାର, କାମଶୃଙ୍ଗାର, ଐତିହ୍ୟ ଶୃଙ୍ଗାର ଆଦି) ଶ୍ରେଷ୍ଠତା ବିଶେଷ ଭାବେ ଆଲୋଚିତ ହୋଇଛି। ଦ୍ୱିତୀୟ ପ୍ରଜାତିର ସମୀକ୍ଷା ବାହ୍ୟଶୃଙ୍ଖଳାଗୁଡ଼ିକୁ ସାଙ୍ଗରେ ନନେଇ ଉପକାରକ ଭାବରେ ସେସବୁକୁ ବିଚାର କରୁଥିବାରୁ ତାହା ବି ଆଶାନୁରୂପ ବଳିଷ୍ଠ ହୋଇପାରିନାହିଁ।

ଏହି ପ୍ରକାର ସମୀକ୍ଷାତତ୍ତ୍ୱର ଏକଦେଶଦର୍ଶୀ ଗତିକୁ ଲକ୍ଷ୍ୟ କରି ସମନ୍ୱୟବାଦୀ ସମୀକ୍ଷା ତତ୍ତ୍ୱର ବିକାଶ ଘଟିଛି। (ଏଠାରେ ଉଲ୍ଲେଖଯୋଗ୍ୟ ଆତ୍ମାନୁଶୀଳନବାଦୀ, ପ୍ରକରଣବାଦୀ, ସମନ୍ୱୟବାଦୀ ସମୀକ୍ଷା ତତ୍ତ୍ୱ ଭାବରେ ଭାରତୀୟ ସମୀକ୍ଷା ପରଂପରାକୁ ଭାଗିଚିହ୍ନଟ କରିବା ଏ ବିଚରା ଆଲୋଚକଟିର ଏକାନ୍ତ ନିଜସ୍ୱ।) ସମନ୍ୱୟବାଦୀ ସମୀକ୍ଷାଶାସ୍ତ୍ରୀମାନେ କାବ୍ୟଶାସ୍ତ୍ରୀୟ ଆଲୋଚନାର ସାମଗ୍ରିକ ଦିଗକୁ (କାବ୍ୟ ଲକ୍ଷଣ, କାବ୍ୟ ହେତୁ, କାବ୍ୟସ୍ୱରୂପ, ପ୍ରକାର, ଶବ୍ଦଶକ୍ତି, ରସବିବରଣ, ନାୟକ ନାୟିକା ଭେଦ, ଧ୍ୱନି, ଧ୍ୱନି ଅନୁସାରୀ କାବ୍ୟଭେଦ, ରୀତି, ଅଳଙ୍କାର, ଅଭିଧାଶକ୍ତି, ଦୋଷ ବିବେଚନ, ଗୁଣବିମର୍ଶ, କାବ୍ୟ ପ୍ରୟୋଜନ, ରସାଙ୍ଗ ନିରୂପଣ, ଅଳଙ୍କାର ବିବେଚନ ଓ ଶବ୍ଦାର୍ଥ ବିଶ୍ଲେଷଣ ଇତ୍ୟାଦି) ଚର୍ଚ୍ଚା ପରିସରଭୁକ୍ତ କରିଛନ୍ତି। ପୂର୍ବବର୍ତ୍ତୀ ଆଲୋଚନା ଧାରାରେ ଏମାନେ ଦୁଇଟି ଦୁର୍ବଳ ଦିଗକୁ ଦେଖିଛନ୍ତି। ପ୍ରଥମତଃ ବାହ୍ୟ ସୌନ୍ଦର୍ଯ୍ୟାତ୍ମକ ଉପାଦାନ ଦ୍ୱାରା କାବ୍ୟକୁ ଭୂଷିତ କରିବା ଦ୍ୱାରା କାବ୍ୟାଭିପ୍ରାୟ ପାଠକର ଚିତ୍ତାଲୋଡନ କରିପାରିନାହିଁ, କେବଳ କିଛି କ୍ଷଣ ପାଇଁ ଇନ୍ଦ୍ରିୟ ଚଞ୍ଚଳାୟିତ କୌତୁକାନନ୍ଦ ପ୍ରଦାନ କରିଛି। ଦ୍ୱିତୀୟତଃ ଯେଉଁଠି କେବଳ କାବ୍ୟର ଅନ୍ତଃସୌନ୍ଦର୍ଯ୍ୟ ଓ ଭାବପକ୍ଷ ଉପରେ ଗୁରୁତ୍ୱ ଦିଆଯାଇଛି ସେଠି କାବ୍ୟ ସର୍ଜନରେ ଭାବୋଚିତ ଶାବ୍ଦିକ ବିନ୍ୟାସରେ ଓ ରସ ଉପଲବ୍ଧିରେ ନାନା ଅନୌଚିତ୍ୟ ଓ କାବ୍ୟ ଦୋଷଗୁଡ଼ିକ ଉପସ୍ଥିତ ରହିଛି। କାବ୍ୟାବେଦନ ଉଦ୍ଦେଶ୍ୟଧର୍ମୀ ହୋଇଛି; ମାତ୍ର ନିରଳସ ପ୍ରୀତିକର ସଫଳତା ପାଇନାହିଁ।

ତେଣୁ ଚିରନ୍ତନ ସଫଳତାର କାବ୍ୟ ସ୍ୱତଃ ସଂଜାତ ହୁଏନାହିଁ, ବରଂ ନିର୍ମାଣ କରାଯାଏ। ଏହି ନିର୍ମାଣରେ ଉଭୟ ଭାବପକ୍ଷ ଓ ରୂପପକ୍ଷରେ ସମତା ରଖାଯାଏ। ଏ ଧରଣର ମାନସିକତା ନେଇ ସମନ୍ୱୟବାଦୀ କାବ୍ୟମୀମାଂସକମାନେ ରସ, ରୀତି, ଗୁଣ, ଧ୍ୱନି, ତାତ୍ପର୍ଯ୍ୟ, ବକ୍ରୋକ୍ତି, ଅଳଙ୍କାର, ଶବ୍ଦାର୍ଥର ଔଚିତ୍ୟସଂପନ୍ନ ସୁନିବନ୍ଧନ ଇତ୍ୟାଦି ଦିଗକୁ ଅବଲମ୍ବନ କରି ଉତ୍କର୍ଷ କାବ୍ୟ ନିର୍ମାଣର ଲକ୍ଷଣାତ୍ମକ ପଦ୍ଧତି ଓ ଉପାୟକୁ

ଆଲୋଚନାର ବୈଶିଷ୍ଟ୍ୟ ରୂପେ ଗ୍ରହଣ କରିଛନ୍ତି। ଏଥି ନିମନ୍ତେ ପୂର୍ବସ୍ୱରୀଙ୍କ ଯୁକ୍ତିର ଦୋଷଗୁଡ଼ିକୁ ଖଣ୍ଡନ କରି ଦୁର୍ବଳତାଗୁଡ଼ିକୁ ମଣ୍ଡନ କରି ନିଜ ବିଚାରରେ ଦୃଢ଼ତା ଦେଖାଇ ସମୀକ୍ଷାତତ୍ତ୍ୱକୁ ଗତିଶୀଳ କରାଇ ନେଇଛନ୍ତି।

ଏହି ମର୍ମରେ ମମ୍ମଟାଚାର୍ଯ୍ୟଙ୍କ ବିଚାର ଓ ବିଶ୍ୱନାଥ କବିରାଜଙ୍କ ଦାର୍ଶନିକ ଆଲୋଚନା ଅନୁଶୀଳନଯୋଗ୍ୟ। ଏକାଦଶ ଶତାବ୍ଦୀର ଶେଷ ଭାବରେ ମମ୍ମଟାଚାର୍ଯ୍ୟଙ୍କ 'କାବ୍ୟ ପ୍ରକାଶ'ରେ କବିର ସର୍ଜନଶୀଳତାକୁ ନିୟତିକୃତ ନିୟମ ରହିତ ଉତ୍କର୍ଷ ବ୍ୟାପାର ବୋଲି ଘୋଷଣା କରାଯିବା ପରେ ଆଲୋଚନାବିଧାନରେ ଏକ ନୂଆ ଚମକ ସୃଷ୍ଟି ହୋଇଛି। ଚମକଟି ହେଉଛି ଯାହା ବ୍ରହ୍ମାନିର୍ମିତ ସୃଷ୍ଟିରେ ବାସ୍ତବ ଓ ଏକ ସ୍ଥିର ଧର୍ମରେ ଦୃଶ୍ୟମାନ ସତ୍ୟ ତାହା କବିର ରଚନାପଣରେ ବିପରୀତ ଧର୍ମରେ ଅସ୍ଥିର ଓ ମାୟା ବାଚକ ହୋଇ ବିଲକ୍ଷଣାକ୍ରାନ୍ତ ଦେଖାଯାଏ। ପଦ୍ମର ସୌରଭ, ଆକାଶର ଭସାବାଦଲ, ସମୁଦ୍ରର ନୀଳାଭ ଆମନ୍ତ୍ରଣ ପ୍ରେୟସୀର ମୁଖରେ, ଚକ୍ଷୁରେ ଓ ଚାଲିରେ କବି ଦେଖି ଦେଖାଇ ଦେଇପାରେ। ସ୍ୱର୍ଗର ଦେବତାମାନେ ବି ସାରୋଳଙ୍କ କବିକଳ୍ପରେ ଏହି କାରଣରୁ ମର୍ତ୍ତ୍ୟର ମାନବ ପାଖରେ ଶରଣାପନ୍ନ ହୋଇ ପ୍ରତିଦାନ ସୂତ୍ରରେ ସାହାଯ୍ୟ ମାଗିବାର ବୈଚିତ୍ର୍ୟ ସହଜସୁଲଭ ହୋଇଉଠେ। ମମ୍ମଟ ଏହି ସତ୍ୟକୁ କବିର ବିଲକ୍ଷଣାତ୍ମକ ବାଙ୍‌ନିର୍ମିତିରେ ଉଦ୍‌ଘାଟନ କରି ନୂଆ ନ୍ୟାୟ ପ୍ରଦାନପୂର୍ବକ ଦର୍ଶାଇଛନ୍ତି ଯେ– କାବ୍ୟ ଦିବ୍ୟ ପ୍ରେରଣାରୁ ନୁହେଁ, କବିକୁ ବାସ୍ତବ ଜଗତରେ ରହି ସକଳ ବିଲକ୍ଷଣ ସଂଗ୍ରହ କରି କାବ୍ୟଜଗତ ନିର୍ମାଣ କରିବାକୁ ପଡେ। ଏ ଜଗତଟି କବିର ନିର୍ମିତି ନିର୍ମାଣ ଜଗତ। ନିର୍ମିତି ନିର୍ମାଣର ବୈଶିଷ୍ଟ୍ୟଗୁଡ଼ିକ ହେଉଛି–

- କବି ନିର୍ମିତି କବିବଚନର ଅଧୀନ। ଅର୍ଥାତ୍ କବିର ନିର୍ମାଣ ପଣର ସ୍ୱାଧୀନତାକୁ ମାନିନେବା ଛଡ଼ା ଅନ୍ୟ ଉପାୟ ନାହିଁ।
- ଅନ୍ୟ ପରତାନ୍ତ୍ରିକ ନିୟମ ଉପରେ (ଭାବ ଭାବ ମଧ୍ୟରେ ସମବାୟୀ, ଅସମବାୟୀ ଓ ଉଦ୍ଦେଶ୍ୟମୂଳା ସମ୍ବନ୍ଧ) କବି ସର୍ଜନଶୀଳତା ନିର୍ଭରଶୀଳ ନୁହେଁ।
- କବିର ସୃଜନାନୁଭବରେ 'ନବରସ ରୁଚିରାଂ'ଭାବ ପ୍ରକଟିତ ହୁଏ। ଅର୍ଥାତ୍ କବି ନିର୍ମିତିରେ (ରଚନାରେ) ଶୃଙ୍ଗାର କରୁଣାଦି ନବରସ ସମପର୍ଯ୍ୟାୟଭିତ୍ତିକ ଆନନ୍ଦ ପ୍ରଦାନ କରିଥା'ନ୍ତି ଓ କବି ସ୍ୱାଧୀନଭାବରେ ଏସବୁ ରସକୁ ନେଇ କାବ୍ୟ ଘଟଣା ଓ ପରିବେଶ ତିଆରି କରିଥା'ନ୍ତି।
- କବିର ନିର୍ମିତି ଆବେଦନଟି କାନ୍ତାସମ୍ମତି ଉପଦେଶାତ୍ମକ ହେବ। ଅନ୍ୟ ଅର୍ଥରେ କବି ନିର୍ମିତି (ରଚନା) ପାଠକକୁ କୌଣସି ଆଦର୍ଶ ଓ ନୀତିକୁ ମାନିବାକୁ ବାଧ୍ୟ କରିବ ନାହିଁ। ବରଂ କାବ୍ୟର ବାଣୀ ସରସଭଙ୍ଗୀରେ

କୋମଳ-ରମଣୀୟ ରୀତିରେ କାନ୍ତବଚନବତ୍ ଉଦାହରଣଧର୍ମୀ ହୋଇ ଗ୍ରହଣ କରିନେବାକୁ ଓ ଅବଶ୍ୟ ଉଚିତ ଅନୁଚିତ ବୁଝି ପାଳନ କରିବାକୁ ନମନୀୟଗୁଣରେ ପ୍ରରୋଚିତ କରୁଥିବ।

ମମ୍ମଟଙ୍କ ମତରେ ଉତ୍ତମ ନିର୍ମିତି ନିର୍ମାଣ କରାଯାଏ। ନିର୍ମାଣ ନିମନ୍ତେ ନିମ୍ନଲିଖିତ ପଦ୍ଧତି ବା ରଚନାକୌଶଳ ଉପରେ ମମ୍ମଟ ଗୁରୁତ୍ୱ ଦେଇଛନ୍ତି।

- ଉତ୍ତମ ନିର୍ମିତିରେ ନିର୍ମାତା ପୂର୍ବସୂରୀୟ କାବ୍ୟଶାସ୍ତ୍ରର ପ୍ରସିଦ୍ଧିଗୁଡ଼ିକୁ ନୂଆ ଅର୍ଥ ଓ ନ୍ୟାୟରେ ପ୍ରକାଶ କରିବା ଉଚିତ।
- ଲୋକଶାସ୍ତ୍ର ଓ କାବ୍ୟାଦିର ଅନୁଶୀଳନ କରି ନିଜ ନିମନ୍ତେ କବି ଉତ୍କର୍ଷ ବଚନ, ପଦଶୃଙ୍ଖଳା ଓ ନିର୍ମାଣ କୌଶଳ ନିରୂପଣ କରିବା ଉଚିତ। ସର୍ବଦା ଉତ୍ତମ କାବ୍ୟର ନିର୍ମାଣ ଭଙ୍ଗୀଟି ଅନଗୃହୀତପୂର୍ବ କାବ୍ୟଭଙ୍ଗୀ।
- ଦୋଷ ରହିତ ଶବ୍ଦ ଓ ଅର୍ଥର ବିନିଯୋଗ କରାଯାଇ ରସୋଚିତ ପଦସଂରଚନା ହେବା ଉଚିତ।
- ମାଧୁର୍ଯ୍ୟାଦି ଗୁଣବିଶିଷ୍ଟ ଶବ୍ଦ ସଂସ୍ଥାନ ଦ୍ୱାରା ବାଣୀବୃତ୍ତି ସଂଘଟନା କରାଯିବ।
- ଅଳଙ୍କାରର ଚାରୁ ସମାବେଶ ଘଟିଥିବ, ମାତ୍ର ଅସ୍ଫୁଟ ଅଳଙ୍କାର ଓ ଆଳଙ୍କାରିକ ବାହୁଲ୍ୟ ନଥିବ।
- କାବ୍ୟନିର୍ମାଣ ଚକ୍ରାୟିତ ଘଟନିର୍ମାଣ ଅନୁରୂପ ଅଟେ। ଉପାଦାନଗୁଡ଼ିକ ମାଟିର ବା ସାଧାରଣ ଜାଗତିକ ଅନୁଭବର। ମାତ୍ର ଆବେଦନ ମାଟିରୁ କୁମ୍ଭକାର ସ୍ୱାଧୀନଭାବେ ଘଟ ନିର୍ମାଣ କରିବା ପରି ନବବୋଧକ ହୋଇଥାଏ।
- ଉତ୍ତମ କାବ୍ୟ ପାଇଁ ଅଭିଧାବୃତ୍ତିକୁ ଅସ୍ୱୀକାର କରି ବ୍ୟଂଜନାବୃତ୍ତିରେ ଭାବାର୍ଥ ଚମତ୍କାରିତା ଆଣିବାକୁ ହେବ। ନଚେତ୍ ବାଚ୍ୟାର୍ଥର ଆଧିକ୍ୟ ହେତୁ କାବ୍ୟ ସାମୟିକ ଆନନ୍ଦ ପ୍ରଦାନର ମଧ୍ୟମକାବ୍ୟରେ ପରିଣତ ହୋଇଯାଏ।
- ନିର୍ମାଣ ବେଳେ ଶବ୍ଦର ବ୍ୟଂଜନାବୃତ୍ତିକ ଆରୋପଣ ପ୍ରତି ସତର୍କ ରହିବାକୁ ପଡେ। ନଚେତ୍ ଶ୍ରେୟ ନିର୍ମିତିର ନିର୍ମାଣରେ ଶବ୍ଦ ଓ ତାହାର ତାତ୍ପର୍ଯ୍ୟ ଉତ୍ପାଦକ ଅର୍ଥ ସ୍ଫୁଟନଧର୍ମରୁ ବିଚ୍ୟୁତ ହୋଇଯାଏ। ଏହାଦ୍ୱାରା ଦିଅଁ ଗଢ଼ିବାକୁ ଯାଇ ମାଙ୍କଡ ଗଢ଼ିବାର ନ୍ୟାୟରେ ଆଳଙ୍କାରୀ ଚିତ୍ରଧର୍ମର ତୁଚ୍ଛତାରେ ଅବର କାବ୍ୟ ବା ଶ୍ରୀରହିତ ଅଧମ କାବ୍ୟ ଘଟନ ସହଜ ହୋଇଯାଏ।
- ଉତ୍ତମ କାବ୍ୟତାର ଶାବ୍ଦିକ ବ୍ୟଂଜନା ବୃତ୍ତିରେ ବକ୍ରୋକ୍ତିରହିବ; ମାତ୍ର ତାହା ବିଦଗ୍ଧ ନହୋଇ କୋମଳ ଚାରୁତାର ଉକ୍ତିହେବ।

- ଅଳଙ୍କାର କାବ୍ୟର ଶୋଭାକାରକଧର୍ମ ହେବ; ମାତ୍ର ତାହା ସ୍ପଷ୍ଟ ହେବ, ଯଥୋଚିତ ହେବ, ସାମାନ୍ୟ ହେବ ଓ ରସ ଉତ୍ପାଦନକ୍ଷମ ହେବ; କିନ୍ତୁ ଅସ୍ଫୁଟ ନହେବା ଶ୍ରେୟସ୍କର।
- ଧ୍ୱନି ଅର୍ଥଘଟନରେ ବିନିଯୁକ୍ତ ନହୋଇ ରସ ପ୍ରବୋଧନାତ୍ମକ ହେବା ସୁନିର୍ମାଣ ବ୍ୟାପାରର ଅନ୍ୟତମ ବିଶେଷତ୍ୱ।
- ଶବ୍ଦଗୁଡ଼ିକ ରସାନୁକୂଳ ଔଚିତ୍ୟ ପଣରେ ବିଭାସିତ ହେବ।
- ସାଧାରଣ ଭାବର ସ୍ୱାଭାବିକତା କାବ୍ୟିକ ବାସ୍ତବତାରେ ରୂପାନ୍ତରିତ ହେବା ହିଁ ନିର୍ମିତି ନିର୍ମାଣ। ଏ ନିର୍ମାଣରେ ଉପମାବର୍ଗୀୟ ଅଳଙ୍କାରଗୁଡ଼ିକ ସ୍ୱାଭାବିକତାର ସାଦୃଶ୍ୟ ସଙ୍କେତ ଦର୍ଶାଇବାରେ ବିନିଯୁକ୍ତ ହୋଇଥା'ନ୍ତି।

ସ୍ଥୁଳତଃ ସମନ୍ୱୟବାଦୀ ସମ୍ମଟ କାବ୍ୟ ନିର୍ମାଣ କୌଶଳକୁ ରସ ବା ଭାବର ପ୍ରତିଭାସନ କଳା ଭାବରେ ବିବେଚନା କରିଛନ୍ତି।

### (ଦଶ)

ଭାରତୀୟ ସମୀକ୍ଷାତତ୍ତ୍ୱର ସମନ୍ୱୟବାଦୀ ବିଚାର ବିଶ୍ୱନାଥଙ୍କ ବେଳକୁ ସଂପୂର୍ଣ୍ଣ ମଣ୍ଡନଧର୍ମୀ ସମାଲୋଚନା ହେବାକୁ ପ୍ରଯତ୍ନ କରିଛି। ସୃଷ୍ଟିଶୀଳ ନିର୍ମିତିର ଭାଷା, ଭାବ, ଅଳଙ୍କାର, ତାତ୍ପର୍ଯ୍ୟ, ରୀତି, ଚାତୁରୀ ଓ ବୃତ୍ତି ଇତ୍ୟାଦି ପ୍ରତିଟି କାବ୍ୟାଙ୍ଗର ସାମ୍ରିକ ଉତ୍କର୍ଷ ସମ୍ବନ୍ଧୀ ଆଲୋଚନା ଉପରେ ଗୁରୁତ୍ୱ ଦିଆଯାଇଛି। ଏସବୁ କାବ୍ୟ ଉପକାରକଗୁଡ଼ିକୁ ବିଶ୍ଳେଷଣ କରି ସେମାନଙ୍କ ଲକ୍ଷଣ ଓ ଭୂମିକା ନିରୂପଣ କରି, ସେମାନଙ୍କ ମଧ୍ୟରେ ଥିବା ସାପେକ୍ଷ ସମ୍ବନ୍ଧର ଚମତ୍କାର ବିଶେଷତ୍ୱଗୁଡ଼ିକୁ କଳନା କରି ନିର୍ମିତି ବା ସାହିତ୍ୟସୃଷ୍ଟିର ବିଫଳତା ଅପେକ୍ଷା ଚମତ୍କାର ଆହ୍ଲାଦଦାୟିନୀ ସଫଳତାକୁ ଗଠନାତ୍ମକ ଭଙ୍ଗୀରେ ଦେଖାଇଦେବା ସମାଲୋଚନାର ଉଦ୍ଦେଶ୍ୟ ହୋଇଛି। କାବ୍ୟ-ବର୍ହିଦେଶର ସୌନ୍ଦର୍ଯ୍ୟକୁ ଆଧାର କରି ତାହାର ଅନ୍ତର୍ଦେଶରେ ଥିବା ଚମତ୍କାରୀ ଆବେଦନାତ୍ମକ ଆଭିମୁଖ୍ୟକୁ ଚିହ୍ନଟକରି ସହୃଦୟକୁ କାବ୍ୟ ଜଗତ ସହିତ ସମୀଭୂତ କରିବାର ଦାୟବଦ୍ଧତା ସମୀକ୍ଷକଙ୍କୁ ଲିଭାଇବାକୁ ପଡ଼ିଛି। ନିଜ ଭାଷାର ଅନୁପମ ସୃଷ୍ଟିଗୁଡ଼ିକୁ ରମଣୀୟ କରି ଚିହ୍ନାଇ ଦେବା ଓ ଅନ୍ୟ କୃତି ସହିତ ସେଗୁଡ଼ିକର ସୌନ୍ଦର୍ଯ୍ୟ ସମ୍ବାଦକୁ ନିରୂପର କରିବା ସାହିତ୍ୟ ତତ୍ତ୍ୱଦର୍ଶୀଙ୍କର ଅନ୍ୟତମ ଉଦ୍ଦେଶ୍ୟ ହୋଇଛି।

ଏଥି ପ୍ରତି ସଚେତନ ରହି ରାଜଶେଖରଙ୍କ ପ୍ରଦତ୍ତ 'ରସଃଆତ୍ମା' ଓ ମହିମଭଟ୍ଟଙ୍କ ବିଚାର 'କାବ୍ୟସ୍ୟାତ୍ମନି ସଙ୍ଗିନି ରସାଦିରୂପେ' ପ୍ରତି ଅନୁରକ୍ତ ରହି ବିଶ୍ୱନାଥ କବିରାଜ ସାହିତ୍ୟ ଦର୍ପଣରେ ଉତ୍କର୍ଷ କାବ୍ୟ ଓ କାବ୍ୟ ସମୀକ୍ଷାର ସ୍ୱରୂପକୁ ଦର୍ପଣାୟିତ/ପ୍ରତିଫଳନ

ଧର୍ମରେ ଦେଖାଇ ଦେଇଛନ୍ତି। ରୁଦ୍ରଟଙ୍କ ଠାରୁ ଅଳଙ୍କାର, ଗୁଣ, ରୀତି, ଧ୍ୱନି ଓ ରସ ପ୍ରଭୃତି ସଂପ୍ରଦାୟଙ୍କ ମଧ୍ୟରେ ଏକ ସମନ୍ୱୟ ଆଣିବାଂକୁ ଯେଉଁ ପ୍ରଚେଷ୍ଟା ଆରମ୍ଭ ହୋଇଥିଲା ତାହାଙ୍କୁ ବିଶ୍ୱନାଥ ପୂର୍ଣ୍ଣସିଦ୍ଧି ଦେଇଛନ୍ତି। ବିଶ୍ୱନାଥଙ୍କ ମତରେ କାବ୍ୟର ଆତ୍ମା ରସ। ଶବ୍ଦ ଓ ଅର୍ଥ ତା'ର ଶରୀର। ଆତ୍ମାର ଉଦାତ୍ତଧର୍ମ ଅନୁସାରେ ଶରୀରର ଶୋଭା ନିରୂପିତ ଓ ବିକଶିତ ହୋଇଥାଏ। ଚକ୍ଷୁ, ନାସିକା ଓ ଓଷ୍ଠ୍ୟାଦି ଅବୟବ ଯେପରି ଯଥାସ୍ଥାନରେ ରହି ମାନବ ଶରୀରର ଶ୍ରୀବୃଦ୍ଧି ସାଧନ କରନ୍ତି ସେହିପରି କାବ୍ୟରମଣୀର ଶରୀରରେ ପଦସମୂହର ଯଥୋପଚିତ ସଂସ୍ଥାନ ରସ, ରସାଭାବ, ଭାବ ଓ ରସାଙ୍ଗସ୍ଫୂର୍ତ୍ତିର ଉପକାର ସାଧନ କରିଥା'ନ୍ତି। ଏ କାରଣୁ ବୈଦର୍ଭୀ ପାଞ୍ଚାଳୀ ଆଦି ରୀତିଗୁଡ଼ିକର ପଦ ସଂଘଟନାକୁ ବିଶ୍ୱନାଥ ରସାନୁକୂଳ କରି ନିର୍ଦ୍ଦିଷ୍ଟ କରି ଦେଇଛନ୍ତି।

ଏତତ୍‌ବ୍ୟତୀତ ସେ ଗୁଣ ଓ କାବ୍ୟାତ୍ମା ରୂପୀ ରସମଧ୍ୟରେ ସ୍ଥିର, ନିତ୍ୟ ଓ ଅବିନାଭାବ ବିଦ୍ୟମାନ ଥିବା ଦେଖାଇଦେଇ ଚିତ୍ତଦ୍ରବୀରସର ବିବିଧ ଭାବାଦି ଅବସ୍ଥାର ଦୀପ୍ତୀକରଣ ଓ ବ୍ୟାପ୍ତିକରଣ ଧର୍ମ ଭାବରେ ଗୁଣର ଭୂମିକାକୁ କାବ୍ୟ ନିର୍ମାଣରେ ନିର୍ଦ୍ଦିଷ୍ଟ କରିଦେଇଛନ୍ତି। ଶବ୍ଦାର୍ଥରୂପ କାବ୍ୟ କଳେବର ଶୋଭାବର୍ଦ୍ଧନକାରୀ ଅସ୍ଥିରଧର୍ମ ହେଉଛି ଅଳଙ୍କାର। ଅଳଙ୍କାର କାବ୍ୟର ସୌନ୍ଦର୍ଯ୍ୟ ସଂପାଦନକାରୀ ଉପାଦାନ। କବିର ସମୟକୁ ପ୍ରଚଳିତଥିବା ପ୍ରସିଦ୍ଧିଗୁଡ଼ିକୁ ଅତିକ୍ରମ କରି କାବ୍ୟର ଅନ୍ତଃସୌନ୍ଦର୍ଯ୍ୟକୁ ଚମତ୍କାର ଅଭିବ୍ୟକ୍ତି ଦେବାରେ ସଶକ୍ତ ସହଯୋଗ କରୁଥିବା ଧ୍ୱନି ହିଁ ଯଥାର୍ଥରେ ଉତ୍ତମ ଓ ଉତ୍କର୍ଷ କାବ୍ୟ ନିର୍ମାଣର ନିତ୍ୟ ଉପକାରକ ଧର୍ମ। ଏ ପ୍ରକାର ସଂଶ୍ଳେଷଣାତ୍ମକ ସମୀକ୍ଷାତତ୍ତ୍ୱର ଅଭିବୃଦ୍ଧି ସାଧନ କରିଥିବା ରାଜଶେଖର, ମମ୍ମଟ ଓ ବିଶ୍ୱନାଥଙ୍କ ସମୀକ୍ଷାପଣ ପରବର୍ତ୍ତୀ ଦାୟାଦମାନଙ୍କୁ ସୂଚେଇ ଦେଇ ଯାଇଛନ୍ତି ଯେ–

- ସମାଲୋଚକ ପ୍ରଥମେ ସହୃଦୟ ପାଠକ ପରେ କାବ୍ୟ ସୌନ୍ଦର୍ଯ୍ୟ ଆକଳକ।
- ପୁରାତନ ଦୃଷ୍ଟିକୁ ବିଶ୍ଳେଷଣ କରି ନୂଆଦୃଷ୍ଟିରେ କାବ୍ୟର ଉତ୍କର୍ଷ ଦେଖାଇବା ପ୍ରକୃତ ସମୀକ୍ଷାପଣ।
- ସମାଲୋଚନାର ବାଗ ଓ ଉପାୟ ଏକଦେଶଦର୍ଶୀ, ଭାବପ୍ରବଣ ମାନସିକତା ସଂପନ୍ନ ନୁହେଁ– ଏହା ସାମଗ୍ରିକ ଉତ୍କର୍ଷତା ପ୍ରତିପାଦନ୍‌ର ଏକ ଯୁକ୍ତିନିଷ୍ଠ ସମ୍ୟକ ଦର୍ଶନ।
- ଭଲ ସମୀକ୍ଷା ପାଇଁ ସମୀକ୍ଷକଙ୍କୁ ପାଠକ ଭାବରେ ଆବେଗିକ ସମ୍ବନ୍ଧଟିଏ କାବ୍ୟ ସହିତ ରଖିବାକୁ ପଡ଼ିବ। ତହିଁରୁ ନିବୃତ୍ତ ହୋଇ ସମୂହ ପ୍ରୟୋଜନ ପ୍ରତି କାବ୍ୟ ଗର୍ଭସ୍ଥ ଭାବ କେତେଦୂର ଗଠନାତ୍ମକ ଓ ଅଭିଳାଷ ଚରିତାର୍ଥକ ତାହାକୁ ନିରପେକ୍ଷ ଦୃଷ୍ଟିଟିଏ ନେଇ ସିଦ୍ଧାନ୍ତନିଷ୍ଠ କରିବ।

- ପ୍ରାଚ୍ୟ ସମୀକ୍ଷାବିଚାର ଅନୁଭବ କରି ଦେଖାଇଦେଇଛି ଯେ କାବ୍ୟ-କବିତା ପ୍ରଜାତିକ ରଚନା ଭିତରେ ଗଦ୍ୟାୟିତ ଗାମ୍ଭୀର୍ଯ୍ୟପଣର ଦର୍ଶନଟିଏ ଥାଏ ଓ ଗମ୍ଭୀର ଗଦ୍ୟଧର୍ମୀ ପ୍ରସଙ୍ଗ ପଦ୍ୟାୟିତ କୋମଳ ଲାଳିତ୍ୟ ଓ ଇଙ୍ଗିତର ମିଳନିକାକୁ ଲୋଡ଼ିଥାଏ। ସମୀକ୍ଷାର ଲକ୍ଷ୍ୟ ହେଉଛି ଅନୁପମ ସୃଷ୍ଟିରେ ଥିବା ଏପ୍ରକାର ମହତ୍ତ୍ୱକୁ ଦେଖାଇ କୃତିର କମନୀୟତାକୁ ଭାବଗ୍ରାହୀ କ୍ରୀଡକ ପରି ପାଠକ ସାମ୍ନାରେ ପ୍ରଦର୍ଶିତ କରିଦେବା।

ଏ ଆଲୋଚନାର ଶେଷରେ ଏତିକି କଥିତବ୍ୟ ଯେ କୌଣସି ସମୀକ୍ଷା, ସମୀକ୍ଷକ ଓ ସମୀକ୍ଷାତତ୍ତ୍ୱ ଶେଷ ସ୍ତବକ ବାଢ଼ିପାରନ୍ତି ନାହିଁ। ସମାଲୋଚନାର ଧାରା, ଉପାୟ ଓ ନବନ୍ୟାୟିକ ସୂତ୍ରାନୁସଂଧାନ ମହାକାଳ ବକ୍ଷରେ ଚାଲିଥାଏ। ଭାରତୀୟ ସମୀକ୍ଷାତତ୍ତ୍ୱ ବିଶ୍ୱାୟନ ମାନଚିତ୍ରରେ ନୂଆ ପ୍ରକାରେ ଦେଖାଯିବାର ସଂଭାବନା କ୍ରମଶଃ ଉଜ୍ଜ୍ୱଳ ହୋଇଉଠୁଛି। ତେଣୁ ଚମତ୍କାରବାଦୀ ଭାରତୀୟ ସମୀକ୍ଷାତତ୍ତ୍ୱର ଶେଷ ନାହିଁ...।





* ଏ ଗ୍ରନ୍ଥ ଗୋଟିଏ ପାଠଘର ।

* ଏ ପାଠଘରର ଆଠୋଟି ବଖରାରେ ଆଠୋଟି ନୂଆ ...
ର କ୍ରିୟାକଳ୍ପୀୟ ମୂର୍ତ୍ତି ସଜା ହୋଇରହିଛି ।

* ଏହାକୁ ପାଠ କରିବାଦ୍ୱାରା ଆମ ସାହିତ୍ୟର ରତ୍ନାଗ...
ନୂଆ ଢଙ୍ଗରେ ଖୋଲିଯିବ ଏବଂ ତାହା ଭିତରୁ ...
ଚେତନାର ବିଚିତ୍ର ଦୃଶ୍ୟାଂଶମାନ ଦେଖିହେବ ।

* ଆମ ସାହିତ୍ୟ ଭିତରେ ଜଗତୀକରଣର ଐଶ୍ୱର୍ଯ୍ୟ ରହି...
ତାହାକୁ ଅନୁମାନ କରିହେବ; ଚାହିଁଲେ ଭୋଗ ବି
କରିହେବ ।

* ଏ ପାଠଘର ସହିତ ପାଠକ ନିଜକୁ ଯୋଡିଦେଲେ ନିଜ
କବିତାର ବିଶାଳତା ଓ ଅନ୍ୟମାନଙ୍କ ସହିତ ଥିବା ସମର୍ଥ
ଅନୁରୂପତାକୁ ବୁଝିପାରିବେ । ଭଲ ରଚନାଟିଏ
ରଚିପାରିବେ ଓ ଭଲ ରଚନାଟିକୁ ପ୍ରସାରିତ କରିପାରିବେ ।



ନିଉ ହୋରାଇଜନ୍ ପବ୍ଲିକେସନ୍